ପ୍ରକାଶିକା :

ଶ୍ରୀମତୀ କମଳାକୁମାରୀ ସାମନ୍ତରାୟ

ପ୍ରଥମ ପ୍ରକାଶ :

ନଭେମ୍ବର ୧୮, ୧୯୭୩

ଦ୍ୱିତୀୟ ମୁଦ୍ରଣ—୨୦୦୦

ଜାନୁୟାରୀ ୧୫, ୧୯୭୬

ପ୍ରଚ୍ଛଦପଟ-ଶିଳ୍ପୀ :

ଶ୍ରୀ ଅଜିତ୍ କୁମାର ଦାସ

ମୁଦ୍ରାକର :

ଶ୍ରୀ ସତ୍ୟନାରାୟଣ ପ୍ରେସ, କଟକ-୨

ମୂଲ୍ୟ :

ପନ୍ଦର ଟଙ୍କା ମାତ୍ର

ଯେଉଁ ବେସରକାରୀ ସ୍କୁଲ କଲେଜର

ଶିକ୍ଷକମାନଙ୍କ ଅସରନ୍ତି କରୁଣ କାହାଣୀ

ମୋର ଚକ୍ଷୁକୁ ଅଶ୍ରୁଳ, କର୍ଣ୍ଣକୁ କଳଙ୍କିତ,

ମସ୍ତିଷ୍କକୁ ବିଚଳିତ କରେ,

ସର୍ବାଙ୍ଗରେ ବେପଥୁ ସୃଷ୍ଟି କରେ,

ଯେଉଁମାନଙ୍କ

ମୁହଁରେ ହସ, ଆଖିରେ ଜ୍ୟୋତି, ହୃଦୟରେ ସନ୍ତୋଷ
ଦେଖିବା ଲାଗି

ନିଜକୁ ସମର୍ପି ଦେଇଛି,

ସେହି ଅଗଣିତ ଶିକ୍ଷକ ବନ୍ଧୁମାନଙ୍କ ହାତରେ

'ଜଣେ ଶିକ୍ଷକର ନିଜ କଥା'.

ଉତ୍ସର୍ଗ କଲି ।

ସେବକ ବନମାଳୀ

# ଭୂମିକା

କ୍ଷମତାଶାଳୀ ରାଷ୍ଟ୍ରନାୟକ, ସଫଳ ରାଜନୀତିକ ନେତା, ତକ୍‌ମାଧାରୀ ସେନାପତି ଅଥବା ପଦ୍ମଭୂଷିତ ଲେଖକମାନଙ୍କ ବ୍ୟତୀତ ଅନ୍ୟ କାହାରି ପକ୍ଷରେ ଆତ୍ମଜୀବନୀ ଲେଖିବା ଏକ ବିଡ଼ମ୍ବନା—ପାଠକ ସାଧାରଣଙ୍କ ମଧ୍ୟରେ ଏପରି ଏକ ଧାରଣା ଏବେ ସୁଦ୍ଧା ରହିଛି । ସାଧାରଣ ପାଠକ ଦୃଷ୍ଟିରେ ଏପରି ସାଧାରଣ ଜୀବନ ବୃତ୍ତାନ୍ତ ନିତାନ୍ତ ଶୂନ୍ୟଗର୍ଭ । ସେଥିରେ ନା ଅଛି ରୋମାଞ୍ଚ, ନା ଅଛି ଉତ୍ତେଜନା, ନା ଅଛି ଉପଲବ୍ଧି ! କିନ୍ତୁ ସେମାନେ ଭୁଲି ଯାଉଥାନ୍ତି ଯେ, ପ୍ରତ୍ୟେକ ବ୍ୟକ୍ତିର ଜୀବନ ନିଜସ୍ୱତାରେ ଉଜ୍ଜ୍ୱଳ ଅଭିବ୍ୟକ୍ତିର ଗୋଟିଏ ଗୋଟିଏ ପଲ୍ଲବ । ପ୍ରତ୍ୟେକର ଜୀବନ ଏକ ସାଧନା । ପ୍ରତ୍ୟେକର ଜୀବନରେ ଅଛି ଏପରି ଅନେକ କଥା, ଅନେକ ଅଭିଜ୍ଞତା—ଯାହା ଲିପିବଦ୍ଧ ହୋଇ ରହିବା ଆବଶ୍ୟକ ଉତ୍ତର ପୁରୁଷର ଦିଗ୍‌ଦର୍ଶନ ପାଇଁ ! ଶିକ୍ଷାବ୍ରତୀ ଶ୍ରୀ ବନମାଳୀ ବ୍ରହ୍ମଚାରୀଙ୍କ ଆତ୍ମଜୀବନୀ ସେହି ସାଧାରଣ ସତ୍ୟରୁ ବହିର୍ଭୂତ ନୁହେଁ ।

ଏହାର ଭୂମିକା ଲେଖିବା ପାଇଁ ଲେଖକ ମହୋଦୟ ମୋତେ ଅନୁରୋଧ କରି ଯଥାର୍ଥରେ ମୋତେ ଅନୁଗୃହୀତ କରି ଅଛନ୍ତି । ଏହାର ପାଣ୍ଡୁଲିପି ପାଠ କଲି ବେଳେ ବିସ୍ମୃତ କୈଶୋରର ବହୁ ସ୍ମୃତି ମୋର ଚେତନାରେ କେବଳ ଯେ ଉଜ୍ଜୀବିତ ହୋଇଛି, ତାହା ନୁହେଁ, ଛାୟା ଓ ଆଲୋକରେ ତିଳତଣ୍ଡୁଳିତ ସେଇ ସବୁ ସ୍ମୃତିର ରୋମନ୍ଥନ ପାଇଁ ମୋତେ ଏହା ମଧ୍ୟ ଯୋଗାଇଛି ଏକ ପ୍ରୀତିପ୍ରଦ ଅବକାଶ ।

ଅନମନୀୟ ମନୋଭାବ ହେତୁ ଉତ୍କଳ-ସାହିତ୍ୟ-ପ୍ରେସରୁ ବିଦାୟ ନେଇ ଆସିବା ପରେ ଜୀବିକାର୍ଜନ ପାଇଁ ବନମାଳୀ ବାବୁ ଯେଉଁ ଜାନପୁର ମେଟ୍‌କାଫ୍ ଏମ୍. ଇ. ସ୍କୁଲରେ କିଛିକାଳ ଶିକ୍ଷକତା କରିଥିଲେ, ୧୯୩୧ ସାଲରୁ ୧୯୩୪ ସାଲ ପର୍ଯ୍ୟନ୍ତ ମୁଁ ସେହି ସ୍କୁଲର ଛାତ୍ର ଥିଲି । ସେହି ସମୟରେ ବନମାଳୀ ବାବୁ ଥିଲେ ଆମ୍ଭମାନଙ୍କର ସେକେଣ୍ଡ ପଣ୍ଡିତ !

ସେତେବେଳକୁ ତାଙ୍କର "ନେପୋଲିୟନ" ପୁସ୍ତକ ପ୍ରକାଶିତ ହୋଇ ସାରିଥିଲା । ଓଡ଼ିଆ ସାହିତ୍ୟ ସହିତ ମୋର ପ୍ରଥମ ପରିଚୟ ଘଟିଥିଲା ସମ୍ଭବତଃ ଏଇ ପୁସ୍ତକ ମାଧ୍ୟମରେ ।

ମୁଁ ଅବଶ୍ୟ ସ୍କୁଲ ଛାତ୍ରାବାସର ଅନ୍ତେବାସୀ ନ ଥିଲି । ମୁଁ ଥିଲି ଦିବାଢ଼ାପୁରୀ ଛାତ୍ର ! ସେଥିପାଇଁ ସୁପରିଣ୍ଟେଣ୍ଡେଣ୍ଟ୍ ରୂପେ ବନମାଳୀ ବାବୁଙ୍କ ପରିସର ଭିତରକୁ ଆସିବା ପାଇଁ ମୋର ସୁଯୋଗ କିମ୍ବା ଅବକାଶ ନ ଥିଲା । ମାତ୍ର ମୋର ଅଧିକାଂଶ ସମୟ ଛାତ୍ରାବାସରେ କଟୁଥିବାରୁ ମୁଁ ତାଙ୍କର ପରୋକ୍ଷ ସମ୍ପର୍କରେ ଆସିବାର ବହୁ ଅବକାଶ ପାଇଥିଲି । ଜଣେ ଲେଖକରୂପେ ମୋର କିଶୋର ଦୃଷ୍ଟିରେ ସେ ଯେ କେବଳ ଥିଲେ ହିମାଳୟସମ ତାହା ନୁହେଁ, ତାଙ୍କର ହୃଦୟଗ୍ରାହୀ ଆଚରଣ, ନୈଷ୍ଠିକ ଆଦର୍ଶବାଦ ଓ ନୀରବ ବ୍ୟକ୍ତିତ୍ୱ, ମୋ ଦୃଷ୍ଟିରେ ତାଙ୍କୁ ଯେପରି ରହସ୍ୟାବୃତ କରି ରଖିଥିଲା । ମୋର ଯେତେଦୂର ମନେ ପଡ଼େ, ସେ ଥିଲେ ଏକମାତ୍ର ଶିକ୍ଷକ, ଯିଏ ସେତେବେଳେ ଖଦଡ଼ ବସ୍ତ୍ର ପରିଧାନ କରୁଥିଲେ । ସେ ଦିନର ପରିସ୍ଥିତିରେ ଖଦଡ଼ର ମହତ୍ତ୍ୱ ବା ଗୁରୁତ୍ୱ ମୁଁ ଅବଶ୍ୟ ବୁଝି ନ ଥିଲି; କିନ୍ତୁ ଖଦଡ଼ ପିନ୍ଧିବା ଯେ ଥିଲା ଏକ ବିଦ୍ରୋହ ଘୋଷଣା, ତାହା ମୁଁ ବେଶ୍ ଉପଲବ୍ଧି କରିଥିଲି ।

କାନପୁର ମେଟ୍‌କାଫ୍ ମି. ଇ. ସ୍କୁଲରେ ସେତେବେଳେ ଥିଲା ଦୁଇଗୋଟି ସ୍ୱତନ୍ତ୍ର ହଷ୍ଟେଲ । ଗୋଟିଏ ସ୍କୁଲରେ ଦୁଇଗୋଟି ସ୍ୱତନ୍ତ୍ର ହଷ୍ଟେଲର ତାତ୍ପର୍ଯ୍ୟ ମୁଁ ସେତେବେଳେ ଅବଶ୍ୟ ବୁଝି ପାରି ନ ଥିଲି । ଆଜି ବନମାଳୀ ବାବୁଙ୍କ ଆତ୍ମଚରିତ ପାଠ କରିବା ପରେ, ସେ ରହସ୍ୟ ଉଦ୍‌ଘାଟିତ ହୋଇଯାଇଛି । ଜାତିଭେଦ ପ୍ରଥା ଉପରେ ଦୁଇଗୋଟି ସ୍ୱତନ୍ତ୍ର ହଷ୍ଟେଲ ମୂଣ୍ଡ ଟେକି ଉଠିଥିବା, ବନମାଳୀ ବାବୁ ତାଙ୍କ ଆତ୍ମଚରିତରେ ଲେଖିଛନ୍ତି । ତାହାର ପ୍ରତିବାଦ ଓ ପ୍ରତିରୋଧରେ ସେ କିପରି ଅନମନୀୟ ଆଦର୍ଶବାଦର ପରିଚୟ ଦେଇଛନ୍ତି, ଏହି ଆତ୍ମଜୀବନୀରେ ତାହାର ବିବରଣୀ ମଧ୍ୟ ସୁସ୍ପଷ୍ଟ । ଶିକ୍ଷା କ୍ଷେତ୍ରରେ ସେ ପ୍ରକାର ଆଦର୍ଶବାଦର ଆଜି ବହୁ ପ୍ରୟୋଜନ ରହିଛି ।

ଏହି ସ୍କୁଲରେ ଥିଲା ବେଳେ ହିଁ ଆରମ୍ଭ ହୋଇଥିଲା, ବନମାଳୀ ବାବୁଙ୍କର ସାଧାରଣ ଜୀବନ । ବିବାହ କନ୍ୟା ବିବାହ ଦେବାଠାରୁ ଆରମ୍ଭ କରି ବୋହଲ ପରି ଏକ ଗ୍ରାମାଞ୍ଚଳରେ ଏକକ ଉଦ୍ୟମରେ ଗୋଟିଏ ସ୍କୁଲ ପ୍ରତିଷ୍ଠା ପର୍ଯ୍ୟନ୍ତ ଘଟଣାବଳୀ, ଆଜିର ପରିପ୍ରେକ୍ଷୀରେ ଅକିଞ୍ଚିତ୍କର ମନେ ହୋଇପାରେ—ମାତ୍ର ସେଦିନ ସେସବୁ ଥିଲା ଗୋଟିଏ ଗୋଟିଏ ଦୁଃସାହସିକ ଘଟଣା ।

ଏବେ ସାଧାରଣ କ୍ଷେତ୍ରରେ ଆଜି ସେ ଦିନର ଦେଶବ୍ରତୀ କର୍ମୀ ନାହାନ୍ତି । କ୍ଷମତା ରାଜନୀତିର ସର୍ବଗ୍ରାସୀ ପ୍ରଭାବ ଅନାସକ୍ତ ଦେଶପ୍ରେମ ଓ ଲୋକସେବାରେ ସବୁ ପ୍ରେରଣା ନିଶ୍ଚିହ୍ନ କରି ଦେଇଛି । ସେଥିପାଇଁ କ୍ଷମତାଧୀନ ବ୍ୟକ୍ତି ଅଥବା ଶାସନ-କଳର ବିନା ପୃଷ୍ଠପୋଷକତାରେ କୌଣସି ସାଧାରଣ କାର୍ଯ୍ୟ କରିବା ଆଜି ସମ୍ଭବ ନୁହେଁ ! ଗ୍ରାମାଞ୍ଚଳରେ ପାଠାଗାରଟିଏ ଚଳାଇବା ପାଇଁ ସୁଦ୍ଧା ରାଜପୁରୁଷମାନଙ୍କ ଉଦ୍ଦେଶ୍ୟରେ ଫୁଲମାଳ ଗୁନ୍ଥିବାଠାରୁ ଆରମ୍ଭ କରି, ବହୁ ବିଶେଷଣ-ବିଭୂଷିତ କରି ମାନପତ୍ର ମାନ ଲେଖିବା ଆଜି ପ୍ରୟୋଜନ ପଡୁଛି । କିନ୍ତୁ ସେଦିନ ଜଣେ ନିଃସମ୍ବଳ ଶିକ୍ଷକ ନିଜର କର୍ମଶକ୍ତି ଉପରେ କେବଳ ନିର୍ଭର କରି, ବୋହଲରେ ଯେପରି ସ୍କୁଲଟିଏ ପ୍ରତିଷ୍ଠିତ କରି ପାରିଥିଲେ, ତାହାର କାହାଣୀ କମ୍ ରୋମାଞ୍ଚକର ଓ ଶିକ୍ଷଣୀୟ ନୁହେଁ ।

ଶିକ୍ଷା ଓ ଶିକ୍ଷାନୁଷ୍ଠାନ ପୁଣି ଗୁରୁ ଓ ଛାତ୍ରଙ୍କ ମଧ୍ୟରେ ସମ୍ପର୍କ କ୍ଷେତ୍ରରେ ଆଜି ଅବଶ୍ୟ ବହୁ ପରିବର୍ତ୍ତନ ଘଟିଛି ! ଶିକ୍ଷକମାନେ ଆଜି କେଉଁ ପରିମାଣରେ ଅନାସକ୍ତ ଶିକ୍ଷାପ୍ରେମୀ ଓ ଛାତ୍ର ତଥା ବୃହତ୍ତର ସମାଜର କଲ୍ୟାଣବ୍ରତୀ, ତାହାର ମୂଲ୍ୟାଙ୍କନ ସେଇ ଶିକ୍ଷକମାନେ କରିବେ । କିନ୍ତୁ ଆଜି ସୁଦ୍ଧା ଗ୍ରାମାଞ୍ଚଳରେ ଶିକ୍ଷକମାନେ ତଥାପି ଜନ-ସମାଜର ପଥପ୍ରଦର୍ଶକ, ବନ୍ଧୁ ଓ ପରାମର୍ଶଦାତା ରୂପେ ରହିଛନ୍ତି । ଏ ଦିଗରେ ବନମାଳୀ ବାବୁଙ୍କ ଆଦର୍ଶ ଯେ ଅନୁକରଣୀୟ, ସେଥିରେ ସନ୍ଦେହ ନାହିଁ । ତାଙ୍କର କର୍ମସାଧନା ଶିକ୍ଷାନୁଷ୍ଠାନର ସଙ୍କୁଚିତ ପରିସର ମଧ୍ୟରେ ସୀମାବଦ୍ଧ ନରହି ପାରିପାର୍ଶ୍ୱିକ ସମାଜର ସଂସ୍କାର, ଉନ୍ନୟନ ତଥା ଉଜ୍ଜୀବନରେ ଯେପରି ନିୟୋଜିତ ହୋଇଅଛି, ଏହି ଆତ୍ମଚରିତ ହିଁ

ତାହାର ସାକ୍ଷ୍ୟ ପ୍ରଦାନ କରିବ । ଯୌବନର ମଧ୍ୟାହ୍ନରୁ ସେ ବିପତ୍ନୀକ ରହି, ସମାଜ ସେବାରେ ନିଜକୁ ନିୟୋଜିତ ରଖି ଆସି ଅଛନ୍ତି । ନିଜର ଜୀବନଦର୍ଶନ ପ୍ରକାଶ କରି ସେ ଶିକ୍ଷାବିଭାଗର ଜନୈକ ଅଧିକାରୀଙ୍କୁ ଏକ ପତ୍ରରେ ଲେଖିଛନ୍ତି—"କର୍ମ ଏବ ବ୍ରହ୍ମ" ଅର୍ଥାତ୍ ସତ୍‌କାର୍ଯ୍ୟ ମାଧ୍ୟମରେ ଭଗବାନଙ୍କୁ ଲଭ କରାଯାଏ, ଏହାହିଁ ମୋର ଦର୍ଶନ । ସତ୍‌କାର୍ଯ୍ୟର ପ୍ରକାର ଓ ପରିସର ବଢ଼ାଇ ମୁଁ ଯେଉଁସବୁ ଜ୍ଞାନ ହାସଲ କରିଛି, ଗୀତା, ଭାଗବତ, ଧର୍ମଶାସ୍ତ୍ର ପଢ଼ି ସେତେ ଜ୍ଞାନ ପାଇଥାନ୍ତି କି ନାହିଁ ସନ୍ଦେହ ।"

କେବଳ ଶିକ୍ଷକ ଓ ସମାଜ-ସଂସ୍କାରକ ରୂପେ ନୁହେଁ—ଜଣେ ସଙ୍ଗଠକ ରୂପେ, ଅରକ୍ଷଣୀୟ ଶିକ୍ଷକ ସମାଜକୁ ସଙ୍ଗଠିତ କରି ସେମାନଙ୍କ ଜୀବନ ଓ ଭାବନାକୁ ସେ ବହୁ ପରିମାଣରେ ସୁରକ୍ଷିତ କରି ପାରି-ଅଛନ୍ତି, ଏହା ନିଃସନ୍ଦେହ । ଏଥିପାଇଁ ତାଙ୍କୁ ଶିକ୍ଷାବିଭାଗର କର୍ତ୍ତା ଓ ଅଧିକାରୀମାନଙ୍କ ସହିତ ବହୁ କ୍ଷେତ୍ରରେ ଯେପରି ସଂଘର୍ଷର ସମ୍ମୁଖୀନ ହେବାକୁ ପଡ଼ିଛି, ଏଇ ଆତ୍ମଚରିତରେ ତାହାର କାହାଣୀ ବର୍ଣ୍ଣିତ ହୋଇଅଛି ।

ଓଡ଼ିଆ ସାହିତ୍ୟରେ ଆତ୍ମଚରିତର ସଂଖ୍ୟା ପ୍ରାୟ ନଗଣ୍ୟ କହିଲେ ଚଳେ । ବନମାଳୀ ବାବୁଙ୍କ ଆତ୍ମଚରିତ ଓଡ଼ିଆ ସାହିତ୍ୟର ସେହି ବିଭାଗକୁ କେତେକାଂଶରେ ପରିପୁଷ୍ଟ କରିବ, ଏଥିରେ ମୋର ସନ୍ଦେହ ନାହିଁ ।

ଶିବାମ୍ବି

୭, ଡିସେମ୍ବର, ୧୯୭୩

**ସୁରେନ୍ଦ୍ର ମହାନ୍ତି**

# କାହିଁକି ?

ବହୁ ଶିକ୍ଷକ ଓ ନାଟ୍ୟକାର ଗୁଣବନ୍ତ ଦେଇ ମୋତେ ମୋର ଜୀବନ ଚରିତ ଲେଖିବା ପାଇଁ ଅନୁରୋଧ କରି ଆସୁଛନ୍ତି । ମୁଁ ସେମାନଙ୍କୁ ଉତ୍ତର ଦିଏ—ମୁଁ କୋଉ ମଣିଷରେ ଲେଖା ଯେ କୋଉଠାରେ ଜୀବନ ଚରିତ ଲେଖିବି ? ଏହି କଥାର ପ୍ରତିବାଦ କରି ଜଣେ ଶିକ୍ଷକ କହିଲେ—"କେହି ନିଜ ମୁହଁ ଦେଖି ପାରନ୍ତି ନାହିଁ । ସେମିତି ଆପଣ ନିଜର ବୈଶିଷ୍ଟ୍ୟ ଏବଂ ଆପଣଙ୍କଠାରେ ଆତ୍ମଚରିତ ଲେଖିବାର କି ସମ୍ବଳ ଅଛି, ତାହା ଜାଣି ନ ପାରିବା ସ୍ୱାଭାବିକ । ମାତ୍ର ଆପଣ ସାଧାରଣ ମନୁଷ୍ୟର ପର୍ଯ୍ୟାୟରେ ନାହାନ୍ତି ବୋଲି ମୁଁ ଉପଲବ୍ଧି କରି ପାରୁଛି । ଆପଣ ଲେଖନ୍ତୁ ।"

ଶିକ୍ଷକ ବନ୍ଧୁଙ୍କର କଥା କେଇପଦ ଶୁଣି ମୁଁ ଲଜ୍ଜିତ ହେଲି ସିନା, ପର ମୁହୂର୍ତ୍ତରୁ ଆତ୍ମଚରିତ ଲେଖିବି କି ନା, ତାହାର ସପକ୍ଷ ବିପକ୍ଷରେ ବହୁବାର ଚିନ୍ତା କରିବାକୁ ଲାଗିଲି ।

ସର୍ବଶ୍ରୀ ଫକୀର ମୋହନ ସେନାପତି, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, କାଳନ୍ଦୀ ଚରଣ ପାଣିଗ୍ରାହୀ, ଗୋଦାବରୀଶ, ହରିଚନ୍ଦ୍ର ନାୟକ, ବୈଷ୍ଣବ ପାଣି, ଲକ୍ଷ୍ମୀନାରାୟଣ ସାହୁ—ଏହି ବଶିଷ୍ଟ ସାଧକ ଓ ମନୀଷିବୃନ୍ଦ ଆତ୍ମଜୀବନ ଚରିତ ପ୍ରଣୟନ କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି ଏବଂ ରାଜ୍ୟର ବର୍ତ୍ତମାନ ଓ ଭାବୀ ନାଗରିକମାନଙ୍କୁ ଦେଶ ପ୍ରେମ, ଜାତି ପ୍ରେମ, ଭାଷା ପ୍ରେମ ଇତ୍ୟାଦିରେ ଅନୁପ୍ରାଣିତ କରିବା ପାଇଁ ସମ୍ବଳ ରଖିଦେଇ ଯାଇଛନ୍ତି । ବିଶାଳ ଉତ୍କଳରେ ଅସଂଖ୍ୟ କୃତବିଦ୍ୟ ବ୍ୟକ୍ତି ନାନା ଭାବରେ ଜନ୍ମଭୂମିର ଗର୍ବ ଓ ଗୌରବର ଅଭିବୃଦ୍ଧି ଘଟାଇ ଥିଲେହେଁ ସେମାନଙ୍କ ମଧ୍ୟରୁ ମାତ୍ର କେତେ ଜଣଙ୍କର ଆତ୍ମଚରିତ ସାହିତ୍ୟ-ଭଣ୍ଡାରରେ ଦେଖିବାକୁ ମିଳିବା ଦେଶପ୍ରେମୀଙ୍କ ପକ୍ଷରେ ଅବଶ୍ୟ ଦୁଃଖର ବିଷୟ ।

ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ଓ ଲକ୍ଷ୍ମୀନାରାୟଣ ଏହି ମହାର୍ଷିତ୍ରୟ ପ୍ରଥମ ଜୀବନରେ ଶିକ୍ଷକତା କରିଥିଲେ ହେଁ ସେମାନଙ୍କ ପରବର୍ତ୍ତୀ ଜୀବନର ଭୂମିକା ପରିପ୍ରେକ୍ଷୀରେ ସେମାନଙ୍କୁ ଶିକ୍ଷକ ପର୍ଯ୍ୟାୟରେ ରଖିଲେ ଠିକ୍ ହେବ ନାହିଁ । ସୁତରାଂ କହିବାକୁ ହେବ, ଏ ପର୍ଯ୍ୟନ୍ତ କୌଣସି ଶିକ୍ଷକ ଆତ୍ମଚରିତ ଲେଖିବାକୁ ପ୍ରୟାସ କରି ନାହାନ୍ତି ।

ରାଜନୈତିକ ନେତା, ସମାଜସେବୀ, କବି, ଲେଖକ, ବୈଜ୍ଞାନିକ ଓ ଶିକ୍ଷାବିତ୍ ଇତ୍ୟାଦି ବିଭିନ୍ନ ଶ୍ରେଣୀର ବିଜ୍ଞ ଓ କୃତୀ ବ୍ୟକ୍ତିମାନଙ୍କର ଦେଶ ଓ ସମାଜ ଗଠନରେ ଯେତିକି ଆବଶ୍ୟକତା ଅଛି, ଶିକ୍ଷକମାନଙ୍କର ପ୍ରୟୋଜନୀୟତା ତାହାଁରୁ କମ ନୁହେ, ବରଂ ବେଶୀ । ଯେହେତୁ ଶିକ୍ଷାହିଁ ସବୁର ମୂଳ । ଏଣୁ ମୁଁ ନିଜେ ଶିକ୍ଷକ ଭାବରେ ସ୍ୱଚରିତ ଲେଖି ଭାରତୀଙ୍କ ପାଦତଳେ ସମର୍ପଣ କରିବାକୁ ସ୍ଥିର କଲି ।

ମୁଁ ଜୀବନରେ ଓଡ଼ିଆ, ବଙ୍ଗଳା ଓ ଇଂରାଜୀ ଭାଷାରେ ବହୁ ଜୀବନଚରିତ ପଢ଼ିଛି । ଅଧ୍ୟୟନ କାଳରେ ମୁଁ ଯେଉଁ ଆନନ୍ଦ ଉପଭୋଗ କରେ, ତାହା ବର୍ଣ୍ଣନାତୀତ । ପଢ଼ୁ ପଢ଼ୁ ମୋ ମନରେ କେତେ କଥା ଖେଳିଯାଏ ଏବଂ ମୁଁ କେମିତି ସେହି ଚରିତ-ଲେଖକ ପରି ମଣିଷଟିଏ ହୁଅନ୍ତି ବୋଲି ମନରେ ଆଶା ଜାଗେ । କେହି ମୋତେ ଭୁଲ୍ ନ ବୁଝିଲେ ମୁଁ ସ୍ୱୀକାର କରିବ ଯେ, ମୁଁ ଅନେକଶ୍ରୋସୀ ହୋଇ ଜୀବନଚରିତ କେବଳ ପଢ଼ିଯାଏ ନାହିଁ, ତହିଁରେ ବର୍ଣ୍ଣିତ ପ୍ରତ୍ୟେକ ଅଲୌକିକ ଘଟଣାର ଉପଯୁକ୍ତ ଦାୟାଦ ହେବାକୁ ମୁଁ ମନେ ମନେ ସଂକଳ୍ପ କରେ ଏବଂ ଦୈନନ୍ଦିନ ଜୀବନରେ ସେଥିପାଇଁ ସାଧନା କରେ । ଜୀବନଚରିତର ପ୍ରଭାବ ମୋ ଉପରେ ବହୁତ ପଡ଼ିଛି ଏବଂ ଭଗବତ୍ କୃପାରୁ ସଂପୃକ୍ତ ବ୍ୟକ୍ତିଙ୍କର ଅନୁରୂପ ସଦ୍‌ଗୁଣ ହାସଲ କରିବାରେ କଥଞ୍ଚିତ୍ ସମର୍ଥ ହୋଇଛି । ତେଣୁ ଚରିତ୍ର ଗଠନ ପାଇଁ ଚରିତ ଅଧ୍ୟୟନର ଆବଶ୍ୟକତା ଅପରିହାର୍ଯ୍ୟ ।

ଉପରୋକ୍ତ କାର୍ଯ୍ୟବ୍ୟସ୍ତତା ହେତୁ ଆତ୍ମଚରିତ ଲେଖିବାର କାମନାକୁ ରୂପାୟିତ କରିବାରେ ବିଳମ୍ବ ଘଟିଲା । ଯେଉଁ ଶିକ୍ଷକ ବନ୍ଧୁ ଉତ୍ସାହ ଦେଇଥିଲେ ସେ ବାରମ୍ବାର ସ୍ମାରକ ପତ୍ର ପଠାଇଲେ । ଫଳରେ,

ମୁଁ 'ଶିକ୍ଷକ ଦର୍ପଣ'ରେ ସମାନ୍ୱୟେ ତନୋଟି ସଂଖ୍ୟାରେ 'ଜଣେ ଶିକ୍ଷକର ନିଜ କଥା' ଲେଖିବା ପରେ ପୁଣି ଦୀର୍ଘକାଳ ପାଇଁ ନିଷ୍କ୍ରିୟ ରହିଗଲି ।

କଟକର କେତେ ଜଣ ସାହିତ୍ୟିକ ବନ୍ଧୁ ମୋର ୬୧ତମ ଜୟନ୍ତୀ ପାଳନ ପାଇଁ ସିଦ୍ଧାନ୍ତ କରିବାରୁ ସେହି ଉଦ୍ଦେଶ୍ୟରେ ପ୍ରକାଶ ପାଇବାକୁ ଥିବା 'ସ୍ମରଣିକା'ରେ ଲେଖା ଦେବା ପାଇଁ କେତେ ଜଣ ବନ୍ଧୁ ମୋର ସଂକ୍ଷିପ୍ତ ଜୀବନଚରିତ ପାଇବାକୁ ବ୍ୟଗ୍ରତା ପ୍ରକାଶ କଲେ । ମୁଁ ସେମାନଙ୍କ ଇଚ୍ଛା ପୂରଣ କରିବା ସଙ୍ଗେ ସଙ୍ଗେ ସମ୍ପୂର୍ଣ୍ଣ ଜୀବନ କାହାଣୀ ଲେଖିବାରେ ଲାଗି ପଡ଼ିଲି ।

'କାଳ ଥିଲେ ନୋଳ ନାହିଁ' ନ୍ୟାୟରେ ମୁଁ ବାଲ୍ୟକାଳରେ ବୁଦ୍ଧିମାନ୍, ପାଠରେ ମନୋଯୋଗୀ ଓ ଅଧ୍ୟବସାୟୀ ଥିଲେ ହେଁ ପିତୃମାତୃହୀନତା ଓ ଦାରିଦ୍ର୍ୟ ଯୋଗୁଁ ମୁଁ ମଧ୍ୟ-ଇଂରାଜୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ହାଇସ୍କୁଲରେ ପ୍ରବେଶ ଲାଭ କରି ନ ପାରି ସେତେବେଳର 'ଅଧମତାରିଣୀ' ଅନୁଷ୍ଠାନ କଟକ ଟ୍ରେନିଂ ସ୍କୁଲରେ ଭର୍ତ୍ତି ହେଲି । ସୁତରାଂ ମୋର ଶିକ୍ଷା ଅଳ୍ପ, ବିଦ୍ୟା ବୁଦ୍ଧି କମ୍, ଦୃଷ୍ଟି କୋଣ ସୀମିତ ଏବଂ ମୁଁ ଉଲ୍ଲେଖଯୋଗ୍ୟ ଘଟଣାବଳୀରେ ଦରିଦ୍ର । ତଥାପି ମୁଁ ଆତ୍ମଚରିତ ଲେଖିବାକୁ ଯିବା ବାମନର ଚନ୍ଦ୍ରକୁ ଧରିବା ଭଳି ଉପହାସର ବିଷୟ । ମୁଁ ଏକଥା ମଧ୍ୟ ଜାଣୁଛି ଯେ, ଏପରି ଅନେକ ଲୋକ ଅଛନ୍ତି ଯେଉଁମାନେ କି ମୋର ଆତ୍ମଚରିତ ଦେଖି ନିଶ୍ଚିତ ଭାବରେ ନାସିକା କୁଞ୍ଚନ କରିବେ । ତଥାପି ଓଡ଼ିଆ ସାହିତ୍ୟରେ 'ଆତ୍ମଚରିତ'ର ସଂଖ୍ୟାକୁ ବଢ଼ାଇବା ପାଇଁ ମୋର ସମସ୍ତ ହୀନତା ଓ ବିଷୟ-ଦାରିଦ୍ର୍ୟକୁ ଭୁଲି ଯିବାକୁ ବାଧ୍ୟ ହେଲି ଏବଂ ବହୁ ବର୍ଷ ତଳର ଘଟଣାବଳୀକୁ ସ୍ମୃତିପଥକୁ ଆଣି ଲେଖନୀ ଚଳାଇଲି ।

ବିଦ୍ୟାବୁଦ୍ଧି, ଶିକ୍ଷାଦୀକ୍ଷା ଓ ଦୃଷ୍ଟିକୋଣ ଇତ୍ୟାଦିରେ ମୁଁ ଦରିଦ୍ର ବୋଲି ଆଗରୁ କହିଛି । ତେଣୁ ମୋର ଆତ୍ମଚରିତରେ ଦରିଦ୍ର ସୁଲଭ ବିଷୟ ବିନ୍ୟାସହିଁ ଦେଖିବାକୁ ମିଳିବ । ମହାନ୍ ଦେଶପ୍ରେମୀଙ୍କର ବିପୁଳ ସ୍ୱାର୍ଥତ୍ୟାଗ, ରାଜନୈତିକ ନେତାଙ୍କର ଅଲୌକିକ ଓ ଦୁଃସାହସିକ କ୍ରିୟାକଳାପ, କବି ଓ ଲେଖକଙ୍କର ଧର୍ମସ୍ପର୍ଶୀ ଭାବଧାରା, ବୀରମାନଙ୍କର

ରୋମହର୍ଷଣ କାହାଣୀ ଏବଂ ବୈଜ୍ଞାନିକମାନଙ୍କର ଅଚିନ୍ତନୀୟ ଆବିଷ୍କାର ଓ ଉଦ୍ଭାବନ ଅନୁରୂପ କୌଣସି ବୈଚିତ୍ର୍ୟ ଏଥିରେ ନାହିଁ । ଜଣେ ଶିକ୍ଷକ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରି ସାରା ଜୀବନରେ କିପରି ଦରିଦ୍ର ସେବାରେ ଆନନ୍ଦ ପାଇଛନ୍ତି ଏବଂ ତହିଁରୁ ଦରିଦ୍ରର ସେବାହିଁ ଭଗବତ୍ ସେବା ବୋଲି ହୃଦୟଙ୍ଗମ କରିଛନ୍ତି—'କର୍ତ୍ତବ୍ୟ ହିଁ ଭଗବାନ୍' ଜ୍ଞାନରେ ଦଶ ଓ ଦେଶର ସେବା କରି କୃତାର୍ଥ ହୋଇଛନ୍ତି—ଦେଶର ସନ୍ତାନମାନଙ୍କୁ ସୁଶୀଳ ଓ ସୁନାଗରିକ ଭାବରେ ଗଢ଼ିବା ପାଇଁ ତାହାର ସମସ୍ତ ଧ୍ୟାନ ଧାରଣା ଓ ଆନ୍ତରିକତାକୁ ଉତ୍ସର୍ଗ କରିଛନ୍ତି—ଅନ୍ୟାୟ ପ୍ରତି ଅସହିଷ୍ଣୁ ହୋଇ ତାହାର ବିଲୋପ ପାଇଁ ସଫଳ ପଦକ୍ଷେପ ନେବାରେ ତ୍ରୁଟି କରି ନାହାଁନ୍ତି, ଏହିପରି ବିଷୟବସ୍ତୁ ସବୁ ମୋ ଚରିତର ଉପଜୀବ୍ୟ ।

ମୋର କୃତବିଦ୍ୟ ଗୁରୁ ଶ୍ରୀ ସୁରେନ୍ଦ୍ର ମହାନ୍ତି, ଏମ୍. ପି. ବହି ଖଣ୍ଡିକ ପଢ଼ି ତାଙ୍କର ମନ୍ତବ୍ୟ ଦେଇଥିବାରୁ ମୁଁ ନିଜକୁ ଧନ୍ୟ ମନେ କରୁଛି ।

ମୋର ଏହି ଆତ୍ମଚରିତ ପଢ଼ି କେହି ଉପକୃତ ହେଲେ ନିଜକୁ କୃତାର୍ଥ ମନେ କରିବି ।

**ବନମାଳୀ ବ୍ରହ୍ମଚାରୀ**

ଉନସତ୍ତରିତମ
ଜନ୍ମବାସର
ନଭେମ୍ବର ୧୮, ୧୯୭୩
କଟକ

# ସୂଚୀ



---

# ଜନ୍ମ ଓ ବାଲ୍ୟ ଜୀବନ

କେନ୍ଦ୍ରାପଡ଼ା ଥାନାରେ ରଜାଙ୍ଗ ଗ୍ରାମଟି । ବହୁକାଳ ପୂର୍ବେ ଏଠାରେ ଜଣେ ରାଜାଙ୍କ ଉଆସ ଥିଲା ବୋଲି କିମ୍ବଦନ୍ତୀ ଶୁଣିବାକୁ ମିଳେ । ସେ କାଳର ପଣ୍ଡଖାର ସୂଚନା ଏବେ ବି ଅଛି । ଗାରେ ମାଟି ଖୋଳାଗଲାବେଳେ ବହୁ ଜାଗାରୁ କୂଅ ବାହାରୁଛି ଏବଂ ଗୋଟିଏ କୂଅରୁ ସୁନ୍ଦର ମୃଣ୍ମୟ ପାତ୍ର ସବୁ ବାହାରିଥିଲା । ରାଜାଙ୍କ ଉଗର ବାସ କରୁଥିବା ଗ୍ରାମଟି ବର୍ତ୍ତମାନ ଉଗରସାହି ନାମରେ କଥିତ । ଘୋଡ଼ାହତା, ଶଙ୍ଖହତା, ମସାଲଚ ନାମରେ ଚକସବୁ ଅଛି, ଯହିଁରୁ ଅନୁମିତ ହୁଏ, ରାଜାଙ୍କ ଅଶ୍ୱରକ୍ଷକ, ଶଙ୍ଖବାଦକ ଓ ମସାଲଧାରୀମାନଙ୍କୁ ସେହି ଜମି ସବୁ ଜାଗିର ସ୍ୱରୂପ ଦିଆଯାଇଥିଲା ।

ରଜା ଉଆସ ଛାଡ଼ି ବାହାରକୁ ଗଲାବେଳେ ଜଣେ ଲୋକ ଆଗରେ ଯାଇ ରାସ୍ତାର ଅବସ୍ଥା ଦେଖୁଥିଲା । ଦିନେ ଦେଖାଗଲା, ଶୁକ୍ଳ ବଳ ନାମରେ ଜଣେ ଲୋକ ରାସ୍ତା ମଝିରେ କ୍ଷୌର ହେଉଛି । ସେ ସେଠାରୁ ଉଠିଯିବା ପାଇଁ ରାଜାଙ୍କ ଲୋକ ଆଦେଶ ଦେବାରୁ ଉତ୍ତର ମିଳିଲା—ମୁଁ ଉଠିବ ନାହିଁ । ରଜା କ'ଣ ମୋ ବାଡ଼ରେ ଗଡ଼ଆ ଖୋଳାଇବେ କି ? ତାହାର ଏହି ଔଦ୍ଧତ୍ୟ ରାଜା ସହି ପାରିଲେ ନାହିଁ । ରାଜାଙ୍କ ଆଦେଶରେ ତାହାର ଘରଦ୍ୱାର ଭାଙ୍ଗି ଦିଆଗଲା ଏବଂ ତାକୁ ସେଠାରୁ ଅଧକ୍ରୋଶର ଦୂରରେ ଘରବାଡ଼ି ଜମି ମିଳିଲା । ସେହି ଜମିକୁ ଆଜିକାଲି ଶୁକଳଡିହ କୁହାଯାଏ । ତାହାର ବାଡ଼ରେ ଯେଉଁ ପ୍ରକାଣ୍ଡ ଗଡ଼ଆ ଖୋଳାଗଲା, ତାହାର କ୍ଷେତ୍ରଫଳ ୭ ମାଣ ୭ ଗୁଣ୍ଠ ୭ ବିଶ୍ୱା ବୋଲି ଲୋକେ କହନ୍ତି ।

ଏହାର ବହୁ ଅଂଶ ପୋତିହୋଇ ପଡ଼ିଲାଣି । ପୋଖରୀ ଖୋଳାଯିବା ସମୟରେ ଭୂଗର୍ଭରୁ ଶିବ ଲିଙ୍ଗ ମିଳିବାରୁ ରାଜା ସେଥିପାଇଁ

ମନ୍ଦିର ନିର୍ମାଣ କରାଇ ଦେଲେ ଓ ଶୁକ୍ଳ ବଳର ନାମାନୁସାରେ ଶିବ-ମନ୍ଦିରର ନାମ 'ଶୁକ୍ଳେଶ୍ୱର ମନ୍ଦିର' ହୋଇଛି ।

ଏହି ଗ୍ରାମରେ ପରମେଶ୍ୱର ପଣ୍ଡା ତାଙ୍କର ପାଞ୍ଚ ପୁତ୍ରଙ୍କ ସହ ବାସ କରୁଥିଲେ । ତାଙ୍କର ଗୋଟିଏ ଭଉଣୀ ବାଳ-ବିଧବା ହେତୁ ବାପ ଘରେ ଥିଲେ । ପରମେଶ୍ୱର ତାଙ୍କର କନିଷ୍ଠ ପୁତ୍ର ହୃଷୀକେଶଙ୍କୁ ଭଉଣୀଙ୍କୁ ପୋଷ୍ୟ ପୁତ୍ର କରି ଦେଇଥିଲେ ।

ରଜାଙ୍ଗଠାରୁ ଅଳ୍ପ ଦୂରରେ ଦୋହଳ ଗ୍ରାମ ଅବସ୍ଥିତ । ଏହି ଗ୍ରାମଟି ଭିଙ୍ଗାରପୁର ଚୌଧୁରୀ ବଂଶର ଜମିଦାରୀ ଅନ୍ତର୍ଗତ ଥିଲା । ହରି ରଥଙ୍କ ପିତା ଢାକାରେ ବଙ୍ଗାଳୀ ଘରେ ରୋଷେଇ ବାସ କରି କିଛି ଆୟ କରୁଥିଲେ । ତାଙ୍କର ଚାରିଅଣା ଅଂଶର ସର୍ବରାକାରୀ ଥିଲା । ସେ ପ୍ରଜାଙ୍କଠାରୁ ଖଜଣା ଆଦାୟ କରି ଜମିଦାରଙ୍କୁ ବୁଝାଉଥିଲେ ଏବଂ ସେଥିପାଇଁ ଶତକଡ଼ା ୪୫ ଟଙ୍କା ଗୁଡ଼ ପାଉଥିଲେ ।

ଜମିଦାରଙ୍କ ତହସିଲଦାରମାନେ ଏହି ସର୍ବରାକାରମାନଙ୍କ ଉପରେ ବଡ଼ ଜୁଲମ କରୁଥିଲେ । କେହି ଖଜଣା ଦାଖଲ ନ କଲେ ତାକୁ ଖରାରେ ଠିଆ କରାଯାଉଥିଲା ଏବଂ କାହାକୁ ନଡ଼ିଆ ଗଛରେ ବାନ୍ଧି ଦିଆଯାଉଥିଲା । ଥରେ ହରି ରଥେ ଏହିପରି କିଛି ଦଣ୍ଡ ଭୋଗିବାରୁ ଢାକାରେ ଥିବା ପିତାଙ୍କୁ ତାହା ଜଣାଇ ଟଙ୍କା ପଠାଇବାକୁ ଲେଖିଲେ । ପିତା ଉତ୍ତର ଦେଲେ—ଆରେ ହରିଆ, ମୁଁ ଯଦି ଶୁଣିବି ସରବରାକାରୀ ବିକ୍ରୀ କରି ଦିଆଯାଇଛି, ତେବେ ଘରକୁ ଯିବି । ନଚେତ୍ ନାହିଁ ।

ହରି ରଥେ ସର୍ବରାକାରୀ ବିକିବା ପାଇଁ ଗ୍ରାହକ ଖୋଜିଲେ । ହୃଷୀକେଶଙ୍କ ମା'ଙ୍କ ପାଖରେ କିଛି ଟଙ୍କା ଥିଲା । ପ୍ରାୟ ବାର ଏକର ଜମି ଥିବା ସର୍ବରାକାରୀକୁ ସେ ପଚିଶ ଟଙ୍କା ଦେଇ କିଣିଲେ । ମୁଁ ପିଲାଦିନେ ସେହି ସର୍ବରାକାରୀ କିଣା ହେବା କବଲା ଖଣ୍ଡ କ ଦେଖିଛି ।

ଏହା ପରେ ହୃଷୀକେଶ ମା'ଙ୍କ ସହିତ ଦୋହଳ ଗ୍ରାମକୁ ଚାଲି-ଆସିଲେ । ଏହି ହୃଷୀକେଶଙ୍କ ଏକମାତ୍ର ପୁତ୍ର ଶ୍ରୀଚରଣ ମୋର ପିତା । ସେ ବାଲ୍ୟକାଳରେ ପିତୃମାତୃହୀନ ହେବାରୁ ନରସିଂହପୁର ଗ୍ରାମରେ

ମାତୃଳାଳୟରେ ବାସ କରିବାକୁ ଲାଗିଲେ । ଏଇଠାରେ ତାଙ୍କର ବ୍ରତ, ବିବାହ ଓ ପୁନର୍ବିବାହ କାର୍ଯ୍ୟ ସଂପନ୍ନ ହୋଇଥିଲା । କିଛି କାଳ ପରେ ସେ ଦୋହଲକୁ ଫେରି ଆସିଲେ ।

ମୋର ପିତୃଦେବ ପ୍ରାୟ ୪୫ ବର୍ଷ ବୟସରେ ବିପତ୍ନୀକ ହେଲେ । ଆଗକାଳରେ ପ୍ରାୟ ପ୍ରତିବର୍ଷ ବହୁ ଲୋକ ହଇଜାରେ ପ୍ରାଣ ହରାଉଥିଲେ । ମୋର ମା ଯାଗ୍ନ ଦେବୀ ନିଜର ଜ୍ୟେଷ୍ଠପୁତ୍ର ମନମୋହନ ଏବଂ ଦୁଇଟି କନ୍ୟା ରାଣୀ ଓ ମଣି ସହ ଇହଧାମ ତ୍ୟାଗ କଲେ । ମୁଁ ଓ ମୋର ବଡ଼ ଭଉଣୀ ବିନୋଦମା ବଞ୍ଚି ରହିଲୁ । ସେତେବେଳକୁ ମୋର ବୟସ ଦୁଇ ବର୍ଷ ଓ ଭଉଣୀ ବିନୋଦମାର ବୟସ ଚାରି ବର୍ଷ । ବାପା ହିତୀୟ ଦାର ପରିଗ୍ରହ କରିବାକୁ ବାଧ୍ୟ ହେଲେ ।

ଆମ ଘର ପାଖରେ ଗୌରୀ ନାମରେ ବିଧବାଙ୍କର ଘର ଥିଲା । ସେ ଏକା ଥିଲେ ଓ ବହୁକଷ୍ଟରେ ଜୀବନ ଯାପନ କରୁଥିଲେ । ସେ ବାପାଙ୍କ ମାଉଁସ ଭଉଣୀ ଅର୍ଥାତ୍ ମାଉସୀ । ଆମେ ଭାଇ ଭଉଣୀ ଦୁହେଁ ଅତି ଛୋଟ ଥିବାରୁ ଏବଂ ମାଉସୀଙ୍କୁ ଜୀବନ ବଞ୍ଚାଇବା ପାଇଁ ଡକାଳୟ ପଡୁଥିବାରୁ ବାପା ତାଙ୍କୁ ଆମର ଦାୟିତ୍ୱ ଦେଲେ ଓ ନିଜ ଘରେ ରଖାଇଲେ । ସହାୟଶୂନ୍ୟା ଅବଳା ଅତି ଆନନ୍ଦରେ ଓ ଶାନ୍ତିରେ ରହି ଆମ୍ଭମାନଙ୍କୁ ମଣିଷ କଲେ । ମୋର ବାର ବର୍ଷ ବୟସରେ ବାପା ମରିଗଲେ । ସେତେବେଳକୁ ମା (ଗୌରୀ), ମୋର ସାବତ ମା ଶୋଭନା, ଆମେ ଭାଇ ଭଉଣୀ ଦୁହେଁ ଏବଂ ସାବତମାଙ୍କ ଦୁଇଟି କନ୍ୟା, ସରସ୍ୱତୀ ଓ ଦୁର୍ଗାବତୀ —ଏହି ଛଅଜଣଙ୍କୁ ନେଇ ଆମ ସଂସାର ଥିଲା । ୧୯୦୫ ମସିହା ନଭେମ୍ବର ୧୮ ତାରିଖରେ ମୁଁ ଜନ୍ମଗ୍ରହଣ କରିଥିଲି । ବର୍ତ୍ତମାନ ମୁଁ ଓ ସାବତମା ଦୁହେଁ ମାତ୍ର ଅଛୁ ।

# ବାଲ୍ୟ ଶିକ୍ଷା

ବର୍ତ୍ତମାନ ଡୋହଲ ମଡ଼େଲ ହାଇସ୍କୁଲ୍ ଯେଉଁଠି ଅବସ୍ଥିତ, ସେଠାରେ ଆଗେ ବେଲଗଛର ଗୋଟାଏ ଜଙ୍ଗଲ ଥିଲା । ଜଙ୍ଗଲ ମଧ୍ୟରେ ଥିବା ମହାପୁରୁଷ ଗାଦି ବେଲମାନ ମହାପୁରୁଷ ନାମରେ ଅଭିହିତ । ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ସେଇଠି କେତେକ ପିଲଙ୍କୁ ପଢ଼ାଉଥିଲେ । ସେ ଉଚ୍ଚ ପ୍ରାଥମିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ମୋର ଖଡ଼ିପାଠ ତାଙ୍କର ପାଖରେ ଆରମ୍ଭ ହୋଇଥିଲା । ଆମେ ଶିକ୍ଷକଙ୍କୁ 'ଆପଣେ' କହୁଥିଲୁ ।

ଦିନକର କଥା ଲେଖୁଛି । ଆମ ଗାଁରୁ ମୁଁ, ହରିଆ ଓ ଆର୍ତ୍ତା ପଢ଼ିବାକୁ ଯାଉଥିଲୁ । ଦିନେ ମୁଁ ସେ ଦୁଇ ଜଣଙ୍କ ନାଁରେ 'ଆପଣେ' ଙ୍କୁ କଣ କହିଥିଲି, ମୋର ମନେ ନାହିଁ । ସେଥିପାଇଁ ସେମାନେ ଦଣ୍ଡ ପାଇଥିଲେ ଏବଂ ମୋତେ ଦଣ୍ଡିତ କରିବାକୁ ସୁଯୋଗ ଖୋଜୁଥିଲେ । ସ୍କୁଲକୁ ଯିବା ବାଟରେ ପ୍ରକାଣ୍ଡ ନଳିତା କିଆରି ପଡ଼େ । ସେ ଦୁହେଁ ମୋତେ ଦିନେ ସ୍କୁଲକୁ ନ ଯାଇଁ ନଳିତା କିଆରିରେ ଲୁଚିବାକୁ କହିଲେ । ମୁଁ ରାଜି ହେଲି । ଲୁଚିବାର ପ୍ରାୟ ଅଧ ଘଣ୍ଟା ପରେ ଆର୍ତ୍ତା କହିଲା— ତୁମେ ଦୁହେଁ ଥାଅ । ମୁଁ ଝାଡ଼ା ଫେରି ଆସେ । ସେ 'ଆପଣେ'ଙ୍କ ପାଖରେ ପହଞ୍ଚି କହିଲା—"ବନମାଳୀ ନଳିତା କିଆରିରେ ଲୁଚିଛି । ମୁଁ ହରିଆକୁ ଜଗାଇ ଦେଇ ଆସିଛି ।" ମୋତେ ମାଡ଼ ଖୋଇବା ପାଇଁ ସେ ଦୁହିଁଙ୍କ ଯୋଜନା ମୁଁ ବା କେମିତି बुझନ୍ତି ? ଆପଣେ ବେତଟିଏ ଧରି ଧ୍ଲେଙ୍ଗେଇ ଧ୍ଲେଙ୍ଗେଇ ଆସି ମୋ ପାଖରେ ପହଞ୍ଚିଲେ । ଆର୍ତ୍ତା ଓ ହରିଆ ପୁଲିସ ଚୋରକୁ ଧରି ନେବା ପରି ନେଲେ । 'ଆପଣେ' ପଛେ ପଛେ ଚାଲିଲେ ।

ସ୍କୁଲରେ ପହଞ୍ଚିବା ପରେ ଆପଣେ ଚଳେ ଖଡ଼ିରେ ଚାରୋଟି ମୁଣ୍ଡୁଳା କାଟିଦେଲେ । ଦୁଇଟି ମୁଣ୍ଡୁଳାରେ ଦୁଇ ଗୋଡ଼ ରଖିଲି । ଅନ୍ୟ ମୁଣ୍ଡୁଳାରେ ଡାହାଣ ହାତଟି ରଖି ବାମ ହାତଟିରେ ପିଠିକୁ ସ୍ପର୍ଶ କଲି । ଆପଣେ ଆଦେଶ ଦେଲେ ଯେ, ବାଁ ହାତ ତଳକୁ ଖସିଲେ ବେତ

ପାହାର ଖାଇବାକୁ ହେବ । ଏପରି ଭାବରେ ଦଣ୍ଡ, ପୁଣି ବେତ ପାହାର ମୋତେ ବଡ଼ ବାଧିଲା । ମୁଁ ଏକାଜିଦ୍ ଧରିଲି ଯେ, ତାଙ୍କ ପାଖରେ ଆଉ ପଢ଼ିବି ନାହିଁ ।

ମୋର ମଧ୍ୟମ ମାତୁଳ ଶ୍ରୀ ନନ୍ଦକିଶୋର ରଥ ଉ: ପ୍ରା: ପାସ୍ କରି କିଛି ଦିନ ଶିକ୍ଷକତା କରିବା ପରେ ଆଣ୍ଠୁରେଣ୍ଟି ବାତ ରୋଗି ଅଚଳ ହୋଇଗଲେ । ସେ ପାଦାଙ୍ଗୁଳି ଓ ହସ୍ତାଙ୍ଗୁଳିରେ ଭରାଦେଇ ଚଳପ୍ରଚଳ ହେଉଥିଲେ । ଶିକ୍ଷକତା ଘରେ ରହିଥିଲେ । ସେତେବେଳେ ତାଙ୍କର ଦରମା ଥିଲା ମାସିକ ଦୁଇଟଙ୍କା । ଅଙ୍କ ଓ ସାହିତ୍ୟରେ ତାଙ୍କର ଅସାଧାରଣ ଜ୍ଞାନ ଥିଲା । ବାପା ମୋତେ ଓ ମୋ ଭଉଣୀକୁ ତାଙ୍କ ପାଖରେ ବସାଇ ଦେଲେ । କ୍ରମେ ୧୦।୧୫ ଜଣ ପିଲା ତାଙ୍କ ପାଖରେ ପଢ଼ିବାକୁ ଲାଗିଲେ । ବେଶୀ ପିଲା ହେବାରୁ ନି: ପ୍ରା: ସ୍କୁଲଟିଏ ମଞ୍ଜୁର ହେଲା । ତାଙ୍କର ଦରମା ତିନି ଟଙ୍କା ହେଲା । ଉଚ୍ଚ ପ୍ରାଥମିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଯେଉଁମାନେ ବେଶୀ ପଢ଼ିବାକୁ ସମର୍ଥ ହେଉ ନ ଥିଲେ, ସେମାନେ ମଧ୍ୟ ତାଙ୍କ ପାଖକୁ ଆସୁଥିଲେ । ଉଦ୍ଦେଶ୍ୟ, ଅଙ୍କ ଓ ସାହିତ୍ୟରେ ଦୋରସ୍ତ ହୋଇଯିବେ ।

ଆମ ଗାଁରେ ଶ୍ରୀ ନକୁଳ ଚରଣ ମିଶ୍ର ଉ. ପ୍ରା. ପାସ୍ କରି ଘରେ ବସିଥାନ୍ତି । ମାମୁଁଙ୍କ ପରାମର୍ଶ ଅନୁସାରେ ସେ ଆମ୍ଭମାନଙ୍କୁ ପଢ଼ାଇବାକୁ ଲାଗିଲେ । ସେ କିଛିକାଳ ଶିକ୍ଷକତା କରିବା ପରେ ଗୁରୁଟ୍ରେନିଂ ପଢ଼ିବାକୁ ପଞ୍ଚାମୁଣ୍ଡାଇ ସ୍କୁଲଗଲେ । ଟ୍ରେନିଂ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେ ତମାଳୋ ଉ. ପ୍ରା. ସ୍କୁଲର ହେଡ୍‌ପଣ୍ଡିତ ଭାବରେ ନିଯୁକ୍ତ ହୋଇଥିଲେ । ପରେଇଭାବରେ ମଧ୍ୟ-ଭର୍ଣ୍ଣାକୁଲାର ଟ୍ରେନିଂ (M. V. T.) ପାସ୍ କରିବା ପରେ କଟକ ଟ୍ରେନିଂ ସ୍କୁଲରେ ତିନି ବର୍ଷ ପଢ଼ି ଜଣେ ଭି. ଏମ୍. ( Vernacular master ) ହେଲେ । ସେତେବେଳେ ସେମାନଙ୍କୁ ନର୍ମାଲ ଟ୍ରେନିଂ ପାସ୍ ବୋଲି କୁହାଯାଉଥିଲା । ଟ୍ରେନିଂ ପାସ୍ ପରେ ସେ କେନ୍ଦ୍ରାପଡ଼ା ହାଇସ୍କୁଲରେ ନିଯୁକ୍ତି ପାଇ ୧୯୭୧ ମସିହାରେ ଚାକିରିରୁ ଅବସର ଗ୍ରହଣ କରିଛନ୍ତି ।

ମୋର ମାମୁ ବଡ଼ ଆନ୍ତରିକଭାବରେ ପାଠ ପଢ଼ାଉଥିଲେ । ମୋ ପ୍ରତି ତାଙ୍କର ବିଶେଷ ଦୃଷ୍ଟି ଥିଲା । ତାଙ୍କ ପାଖରେ ତୃତୀୟ ଶ୍ରେଣୀରେ

(Standard) ମୁଁ ବଙ୍ଗଳା ଅକ୍ଷର ଶିଖି ବଙ୍ଗଳା ବହି ପଢ଼ି ପାରୁଥିଲି । ଓଡ଼ିଆ ବ୍ୟାକରଣ, ଯାହାକି ଚତୁର୍ଥ ପଞ୍ଚମ ଶ୍ରେଣୀରେ ପଢ଼ା ହେବାର କଥା, ସେ ମୋତେ ତାହା ପଢ଼ାଇଥିଲେ । ତାଙ୍କ ପାଖରୁ ନି. ପ୍ରା. ବୃତ୍ତି ପାଇ ମୁଁ ଦୋହଲ ଉ. ପ୍ରା. ସ୍କୁଲରେ ନାମ ଲେଖାଇଲି । ସ୍କୁଲ ସ. ଇ. କୃଷ୍ଣପ୍ରସାଦ ଚୌଧୁରୀ (ଡାକନାମ ଦେ'ବାବୁ) ପରିଦର୍ଶନରେ ଆସିଲେ ମୋର ମାମୁଁ ମୋତେ ବ୍ୟାକରଣ ପଚାରିବାକୁ ତାଙ୍କୁ ଅନୁରୋଧ କରନ୍ତି । ସେ ମୋଠାରୁ ଉତ୍ତର ପାଇ ବିସ୍ମିତ ହୋଇଯାଇ ମୋତେ ପ୍ରଶଂସା କରନ୍ତି ।

ଏହି ସ୍କୁଲର ହେଡ୍‌ପଣ୍ଡିତ ଶ୍ରୀ ଚକ୍ରଧର ଦାଶ ସେତେବେଳର ଭର୍ଣ୍ଣାକୁଲାର ପାସ୍ କରି ଟ୍ରେନିଂ ପାଇଥିଲେ । ତାଙ୍କର ଦରମା ଥିଲା ମାସିକ ଟ ୯-୦୦ । ଦ୍ୱିତୀୟ ପଣ୍ଡିତ ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡାଙ୍କର ଯୋଗ୍ୟତା ସେତିକି ଥିଲେ ହେଁ ମାସକୁ ଟ ୭-୦୦ ଦରମା ପାଉଥିଲେ । ତୃତୀୟ ପଣ୍ଡିତ ଶ୍ରୀ ଭିକାରୀ ଚରଣ ରାଉଳ ଉ. ପ୍ରା. ପାସ୍ କରି ମାସିକ ଟ ୩-୦୦ ଦରମା ପାଉଥିଲେ । ସେତେବେଳେ କେନ୍ଦ୍ରାପଡ଼ା ସବ୍‌ଡିଭିଜନ ମଧ୍ୟରେ ଶ୍ରୀ ଚକ୍ରଧର ଦାଶ ଜଣେ ଅତି ଉପଯୁକ୍ତ ଶିକ୍ଷକ ବୋଲି ବିବେଚିତ ହେଉଥିଲେ ଏବଂ ପ୍ରତି ବର୍ଷ ଦୋହଲ ସ୍କୁଲ ଉ. ପ୍ରା. ବୃତ୍ତି ଲାଭ କରୁଥିଲା ।

ଆମ୍ଭେମାନେ ସାହିତ୍ୟ, ଅଙ୍କ, ଇତିହାସ, ଭୂଗୋଳ, ବିଜ୍ଞାନ, ସ୍ୱାସ୍ଥ୍ୟରକ୍ଷା, ଜ୍ୟାମିତି, ପରିମିତି ଓ ଚିତ୍ରାଙ୍କନ ଏହିସବୁ ବିଷୟ ପଢ଼ୁଥିଲୁ । ତା ଛଡ଼ା ଲିଖନ ପାଠ ବହିରୁ ଦଶ ପ୍ରକାର ପଟା, କେତେ ପ୍ରକାର ତମସୁକ ଓ କବଲା ମୁଖସ୍ଥ କରିବାକୁ ପଡ଼ୁଥିଲା । ରବିବାର ଦିନଟି ଏହି 'ଲିଖନ ପାଠ' ପାଇଁ ଉଦ୍ଦିଷ୍ଟ ଥିଲା ।

ସ୍କୁଲରେ ଅନୁପସ୍ଥିତି, ଅଧ୍ୟୟନରେ ଅମନୋଯୋଗିତା ଏବଂ ବ୍ୟାବହାରିକ ତ୍ରୁଟି ପାଇଁ ହେଡ୍‌ପଣ୍ଡିତ ମହାଶୟ କଠୋରଭାବରେ ବେତ୍ରାଘାତ ଦେଉଥିଲେ ଏବଂ ସେତେବେଳେ ଏହା ସବୁ ସ୍କୁଲରେ ପ୍ରଚଳିତ ଥିଲା । କୌଣସି ଅଭିଭାବକ ବା ଗ୍ରାମ ଏହି ଦଣ୍ଡ ବିରୁଦ୍ଧରେ କେବେ ଅଭିଯୋଗ କରୁ ନ ଥିଲେ । ବରଂ ବେତ ନ ବସିଲେ ପାଠ ହେବ ନାହିଁ ବୋଲି ସମସ୍ତଙ୍କର ଧାରଣା ଥିଲା ।

ମୁଁ ୪ର୍ଥ ଶ୍ରେଣୀରେ ଖୁବ୍ ମନଦେଇ ପଢ଼ୁଥିଲି । ସ୍କୁଲରେ ରାତ୍ରରେ ବୃତ୍ତି ପରୀକ୍ଷାପାଇଁ ମନୋନୀତ ୫ମ ଶ୍ରେଣୀର ପିଲାଙ୍କୁ ପଢ଼ାଯାଉଥିବାର ଏବଂ ପଣ୍ଡିତ ମହାଶୟ ଏଭଳି ପିଲା ପାଇଁ ଅଧିକ ଯତ୍ନ ନେଇଥାନ୍ତି । ମୁଁ ତାହା ଦେଖି ୪ର୍ଥ ଶ୍ରେଣୀରୁ ରାତ୍ରରେ ସ୍କୁଲରେ ପଢ଼ିବାକୁ ମନ ବଳାଇଲି । ବାପା ମୋର ଆଗ୍ରହ ଦେଖି ପ୍ରାୟ ରାତ୍ର ଆଠ ନଅଟା ବେଳକୁ ସ୍କୁଲକୁ ଯାଇଁ ମୋତେ ଘେନି ଆସୁଥିଲେ ।

ବାପା ପ୍ରତି ହାଟପାଳି ଦିନ ଗୁଡ଼ୋଳି ହାଟକୁ ଯାଆନ୍ତି । କିଛି ଗୁଡ଼ାଳ ବିକ୍ରି ହେଲେ ପାଳକ ପାଇଁ ତେଲ ଲୁଣ ପରିବା ଇତ୍ୟାଦି କିଣାଯିବ । ସେ ମୋତେ ସଙ୍ଗରେ ଡାକି ନିଅନ୍ତି । ମୁଁ ଗୁଡ଼ାଳ ପାଖରେ ବସିଲେ ସେ ଅନ୍ୟ କାମ କିଛି କରିବେ । ମୋର ହାଟକୁ ଯିବାକୁ ମନ ହେଉ ନ ଥାଏ, ବାଧ୍ୟ ହୋଇ ଯାଏ । ହାଟକୁ ଗଲେ ମୋର ପାଠପଢ଼ାରେ କ୍ଷତି ହେବ ବୋଲି ମୁ ବୁଝି ପାରୁଥାଏ । ଥରେ ମୁଁ ହାଟକୁ ଯିବାକୁ ମନା କରିବାରୁ ବାପା ମୋତେ ବହୁତ ମାରିଲେ । ମୁ ସହି ନ ପାରି କହିଲି-- ଯାଉଛି ମାମୁଁ ଘର ଗଡ଼ିଆରେ ବୁଡ଼ି ମରିବି । ମାମୁଁ ଘରଟା ଖୁବ୍ ପାଖରେ ଓ ତାଙ୍କର ଗୋଟିଏ ନୂଆ ଗଡ଼ିଆ ଖୋଳା ହୋଇଥାଏ । ଘର ଛାଡ଼ି ଶହେ ଗଜ ଯିବାପରେ ମୋର ପଡ଼ୋଶୀ ମହିଳା ଜଣକ ମୋତେ ଧରି ପକାଇ ବୁଝାଇଲା । ମୁଁ ଫେରି ଆସିଲି । ସେହିଦିନଠାରୁ ବାପା ମୋତେ ଆଉ କେବେ ହାଟକୁ ଯିବାକୁ ବାଧ୍ୟ କରି ନାହାନ୍ତି ।

୧୯୧୯ ମସିହା ଜାନୁଆରୀରେ ପିତୃଦେବ ପରଲୋକ ପ୍ରାପ୍ତ ହେଲେ । ମୁଁ ୫ମ ଶ୍ରେଣୀକୁ ପ୍ରମୋସନ ପାଇଥାଏ । ତାଙ୍କର ମୃତ୍ୟୁ ସଙ୍ଗେ ସଙ୍ଗେ ଆମେ କରାଳ ଦାରିଦ୍ର୍ୟର ଶିକାର ହୋଇ ପଡ଼ିଲୁଁ । ମୋର ଉପନୟନ ଓ ବଡ଼ ଭଉଣୀ ବିନୋଦିନୀର ବିବାହ କାର୍ଯ୍ୟ ବାପା ସାରି ଦେଇଥିଲେ । ଅନ୍ୟ ଭଉଣୀ ଦୁଇଟି ଖୁବ୍ ସାନ ଥିଲେ । ବଡ଼ ଭଉଣୀର ପୁନର୍ବିବାହ ଏକାନ୍ତ ଜରୁରୀ ଥିଲା । ମୋର ମା ଓ ପାଳିତ ମା କି କଷ୍ଟରେ ଆମ୍ଭମାନଙ୍କୁ ବଞ୍ଚାଇ ମଣିଷ କଲେ, ତାହା ମନେ ପଡ଼ିଲେ ଚକ୍ଷୁ ଅଶ୍ରୁଳ ହୋଇ ଉଠେ । ବାପା ଥିଲା ବେଳେ ମୁଁ ପ୍ରତିଦିନ ପାଏ ଲେଖାଏ କ୍ଷୀର ଖାଉଥିଲି । ତାହା ବନ୍ଦ ହୋଇଗଲା । ଗୋଡ଼ ମିଶା ବର୍ମା ଗୁଡ଼ାଳ ଓ ମାଣ୍ଡିଆ ଜାଉ ନ ଖାଇବା ପାଇଁ ମୁଁ କେତେ କାନ୍ଦିଛି, କେତେ

ରୁଷିଛି ଏବଂ ସଗରେ କାନ୍ଥକୁ ଡେସ ହୋଇଥିବା ମନ୍ଦୁରି ଉପରେ ନିଜକୁ ଲୁଗୁଇଛି ।

ଜ. ପ୍ରା. ବୃତ୍ତି ପରୀକ୍ଷାର ଗୃଏମାସ ଆଗରୁ ସ୍କୁଲରେ ସନ୍ଧ୍ୟାରେ ରହିବାକୁ ପଡ଼େ । ହିଷ୍ଟ୍ରୀ ପଣ୍ଡିତେ ବୋଝାଇ କରି ଦିଅନ୍ତି ଓ ହେଡ୍ ପଣ୍ଡିତେ ପଢ଼ାପଢ଼ ଦେଖନ୍ତି । ପୁରୁଣା ବୃତ୍ତି ପରୀକ୍ଷାର ପ୍ରଶ୍ନ ସବୁର ଉତ୍ତର ମୁଁ ଲେଖେ ଓ ପଣ୍ଡିତେ ତାକୁ ସଂଶୋଧନ କରନ୍ତି । ପ୍ରକୃତରେ ପରୀକ୍ଷାର୍ଥୀ ପାଇଁ ଏହା ଖୁବ୍ ଆବଶ୍ୟକ । ଅନେକେ ମୁହଁରେ ଭଲ ଉତ୍ତର ଦିଅନ୍ତି, ମାତ୍ର ଲେଖିଲା ବେଳେ ବହୁତ ଭୁଲ୍ କରି ପକାନ୍ତି । ଏଣୁ ପରୀକ୍ଷା ପୂର୍ବରୁ ଲେଖା ଉପରେ ଜୋର ଦେବାକୁ ପଡ଼ିଥାଏ ।

ମୋତେ ମିଶାଇ ତିନି ଜଣଙ୍କର ରାତି ବଖତକ ଖାଦ୍ୟ ଯୋଗାଇବାକୁ ହେବ । ସଞ୍ଜ ପୂର୍ବରୁ ପଣ୍ଡିତେ ମୋତେ ଘରକୁ ପଠାନ୍ତି, କେଉଁ ଦିନ ଗୁଡ଼ଜଳ ନେବା ପାଇଁ, କେଉଁଦିନ ପନିପରିବା ବା ଜାଳେଣି କାଠ ନେବା ପାଇଁ । ମୁଁ ଯେଉଁ ଉଦ୍ଦେଶ୍ୟରେ ଘରକୁ ଯାଏ, ଅନେକ ସମୟରେ ତାହା ଜୁଟେ ନାହିଁ । ପଣ୍ଡିତେ ମୋର ଅଭାବ କଥା ଜାଣନ୍ତି । ତେଣୁ ବିରକ୍ତ ହୁଅନ୍ତି ନାହିଁ । ମୋତେ ତାଙ୍କ ଘରକୁ ପଠାଇ ଦିଅନ୍ତି ଆବଶ୍ୟକ ଜିନିଷ ଆଣିବାକୁ ।

ବାପା ମରିଯାଇଥାନ୍ତି । ଅଭାବ ଲାଗି ରହିଥାଏ । ଚତୁର୍ଥ ଶ୍ରେଣୀରେ ରାତିରେ ଅନ୍ୟ ପିଲାଙ୍କ ସାଥିରେ ପଢ଼ିବା ପାଇଁ ମୁଁ ସିନା ବାପାଙ୍କ ପାଖରେ ଜିଗର କରୁଥିଲି, ମାତ୍ର ପଞ୍ଚମ ଶ୍ରେଣୀରେ ମୋର ସେ ଉତ୍ସାହ ରହିଲା ନାହିଁ । ରାତିଟା ସ୍କୁଲରେ କଟାଇବାକୁ ମୁଁ ବଡ଼ କଷ୍ଟକର ମନେ କରୁଥିଲି । ପୂର୍ବପରି ପାଠ ପଢ଼ାରେ ମୋର ମନ ରହୁ ନ ଥିଲା । ସେଥିପାଇଁ ବୃତ୍ତିଟା ପାଇ ପାରିବି ନାହିଁ ବୋଲି ମନରେ ଆଶଙ୍କା ହେଉଥିଲା । ମୁ ଘରକୁ ଗଲେ ବାଟରେ ପ୍ରାୟ ଶହେ ହାତ ଲମ୍ବର ଗୋଟାଏ ଯୋଡ଼ ବା ଜଳାଧାର ପାରି ହେବାକୁ ପଡ଼ୁଥିଲା । ମୁଁ ପାଣିରେ ଗୋଡ଼ ଦେବା ମାତ୍ରେ ଭୋ ଭୋ କରି କାନ୍ଦୁଥିଲି ଏବଂ ଈଶ୍ୱରଙ୍କୁ ଡାକି କହୁଥିଲି—"ବାପା ମରିଯାଇଛନ୍ତି । ପାଠରେ ମନ ଲାଗୁନାହିଁ । ଯଦି ବୃତ୍ତି ନପାଏ, ପଢ଼ି ପାରିବି ନାହିଁ । ହେ ଭଗବାନ୍, ମୋତେ ଯେମିତି ବୃତ୍ତି ମିଳିବ ।" ଭଗବାନ୍ ମୋ ଦୁଃଖ

ଶୁଣିଥିଲେ । ମୁଁ କେନ୍ଦ୍ରାପଡ଼ା ( ବୃତ୍ତିଭଜନରେ ପ୍ରଥମ ସ୍ଥାନ ଅଧିକାର କରି ବୃତ୍ତି ପାଇଥିଲି ।

ବାପା ଘରେ ଗୋଟିଏ ଷ୍ଟେସନାରୀ ଦୋକାନ କରିଥିଲେ । ମୁଁ ଅନେକ ସମୟରେ ସେଥିରୁ ପଇସା ଚୋରି କରି ଗରିବ ଲୋକଙ୍କୁ ପଇସାଏ, ଦୁଇ ପଇସା ଦେଉଥିଲି । ଗୁନ୍ଦୋଳ ହାଟକୁ ଗଲେ ଦୁଇ ପଇସାଠାରୁ ଚାରି ପଇସା ମୂଲ୍ୟର 'ନଟୁଚୋର', 'କେମାଦେଈ କାନ୍ଦ' 'ଅଜା ନାତି ରହସ୍ୟ' ଇତ୍ୟାଦି ବହି ସବୁ କିଣୁଥିଲି । ବହି କିଣିବା ମୋର ଗୋଟାଏ ଝୁଙ୍କ୍ ଥିଲି । ପ୍ରାୟ ଅଧପେଟରୀ ବହି କିଣିଥିଲି ଏବଂ ମଝିରେ ମଝିରେ ସେଗୁଡ଼ିକୁ ଖରା ଦେଇ ଯତ୍ନରେ ରଖୁଥିଲି ।

ମୁଁ ଉ. ପ୍ରା. ସ୍କୁଲରେ ପଢ଼ୁଥିବା ବେଳେ ଆମ ଘରେ ଗୋଟିଏ କଣ୍ଡରା ପିଲା (ହରିଜନ) ଚାକିରି କରୁଥିଲା । କଣ୍ଡରା ପିଲାକୁ ଛୁଇଁଲେ ଜାତି ଯିବ ବୋଲି ଲୋକେ କହୁ ଥିବାର ମୁଁ ଜାଣୁଥିଲି । ତଥାପି ସୁଯୋଗ ପାଇଲେ ମୁଁ ଆମର ସେହି ଚାକର ପିଲାଟିକୁ ଛୁଏଁ ଏବଂ ତାହା ସହ ଖେଳେ । ଏହା ଅବଶ୍ୟ ମୁଁ କାହାର ଜ୍ଞାତସାରରେ କରୁ ନ ଥିଲି । ପିଲା ଦିନରୁ ମୋର ଜାତିଭେଦରେ ବିଶ୍ୱାସ ନ ଥିଲା ।

ପ୍ରତ୍ୟେକ ହିନ୍ଦୁ ଘରେ ଗୁରୁବାର ଓଷା ବା ମାଣବସା ଓଷା ହୁଏ । କୌଣସି ନିର୍ଦ୍ଦିଷ୍ଟ ଗୁରୁବାର ଦିନ ଖଟୁଲିରେ ଧାନପୂର୍ଣ୍ଣ ମାଣ ରଖି ପୂଜା କରାଯାଏ । ଖିରି, ଖେଚୁଡ଼ି ଓ ପିଠା ଇତ୍ୟାଦି ଯାହା ନୈବେଦ୍ୟ ଦିଆଯାଏ, ତାହାକୁ କୁଟୁମ୍ବର ସମସ୍ତେ ଖାଆନ୍ତି । କିନ୍ତୁ ବନ୍ଧୁ ବାନ୍ଧବଙ୍କୁ ବା ଝିଅଙ୍କୁ ବା ବାହାର ଲୋକଙ୍କୁ ଦିଆଯାଏ ନାହିଁ । କାରଣ, ଲୋକଙ୍କର ବିଶ୍ୱାସ, ଘରୁ ଲକ୍ଷ୍ମୀ ଚାଲିଯିବେ । ମୋତେ ଏ କଥା ଭଲ ଲାଗୁ ନ ଥିଲା ଏବଂ ମୁଁ ମୋର ସାଙ୍ଗମାନଙ୍କୁ ତାହା ଖାଇବାକୁ ଦେଇ ଆନନ୍ଦ ଲାଭ କରୁଥିଲି । ଥରେ ମୋର ବୁଢ଼ୀମା ଏହା ଦେଖିପାରି ଭୟଙ୍କର ବିରକ୍ତ ହୋଇଥିଲେ ଏବଂ ଘର ଶ୍ରୀହୀନ ହୋଇ ପଡ଼ିବାର ଆଶଙ୍କା କରି ହୃଦୟରେ ତୀବ୍ର ଯନ୍ତ୍ରଣା ଅନୁଭବ କରିଥିଲେ ।

ଉ. ପ୍ରା. ପଢ଼ିବାବେଳେ ମୁଁ 'ରାଜଭାଷା' ବହି ସାହାଯ୍ୟରେ ଇଂରାଜୀ ଅକ୍ଷର ନିଜେ ନିଜେ ଶିଖିଥିଲି ଏବଂ ଛଟା ଅକ୍ଷର ଲିଖି ଯେ କୌଣସି ପ୍ରବାସୀ ଲୋକଙ୍କର ଠିକଣା ଲେଖି ପାରୁଥିଲି । ଉ. ପ୍ରା.

ସ୍କୁଲରେ ବ୍ରାଞ୍ଚ ପୋଷ୍ଟ ଅଫିସ ଥିଲା ଓ ହେଡ଼ପଣ୍ଡିତ ଶ୍ରୀ ଚକ୍ରଧର ଦାସ ପୋଷ୍ଟମାଷ୍ଟର କାମ କରି ଦରମା ପାଉଥିଲେ । ପଣ୍ଡିତେ ମୋ ଗାଁର ଚିଠି ମୋ ହାତରେ ପଠାଉଥିଲେ ଏବଂ ମୁଁ ତାହାଁରୁ ଇଂରାଜୀ ଠିକଣା ଦେଖି କାହାରି ବିନା ସାହାଯ୍ୟରେ ଇଂରାଜୀରେ ଠିକଣା ଲେଖିବାର ଶକ୍ତି ଅର୍ଜନ କରିଥିଲି ।

ମୁଁ ପିଲାଦିନେ ନାଟ ବା ସୁଆଙ୍ଗ ଦେଖିବାକୁ ଭଲ ପାଉଥିଲି । ପାଖ ଗାଁରେ ନାଟ ହେଲେ ମୁଁ ଚଞ୍ଚଳ ଯାଇ ଗୋଟିଏ ଭଲ ଜାଗା ଦଖଲ କରି ବସେ । ସେତେବେଳେ ବୈଷ୍ଣବ ପାଣିଙ୍କ ସୁଆଙ୍ଗ ବେଶୀ ପ୍ରଚଳିତ ଥିଲା । ମୁଁ ଛୋଟ ପିଲା ହେଲେହେଁ ଅଭିନୟଗୁଡ଼ିକ ମୋ ହୃଦୟରେ ଆନନ୍ଦ ଓ ଦୁଃଖର ସ୍ପନ୍ଦନ ସୃଷ୍ଟି କରୁଥିଲା । ଜାର ଶବର ଶ୍ରୀକୃଷ୍ଣଙ୍କୁ ଶରବିଦ୍ଧ କରିବା, ବୀର ଅଭିମନ୍ୟୁ ଚକ୍ରବ୍ୟୂହରେ ପ୍ରାଣ ହରାଇଲା ପରେ ତାଙ୍କର ସ୍ତ୍ରୀ ଶୋକ ବିହ୍ୱଳ ହୋଇ କାନ୍ଦିବା ଦୃଶ୍ୟ ଦେଖି ମୁଁ କାନ୍ଦି କାନ୍ଦି ହୋଇ କାନ୍ଦିଥିବାର ଏବଂ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଉନ୍ନିଦ୍ର ରହି ବିଭିନ୍ନ ଦୃଶ୍ୟରେ ମୋର ଆଖି ଅଶ୍ରୁଳ ହେଉଥିବାର ଏବେ ବି ମୋର ମନେ ପଡ଼େ ।

୫ମ ଶ୍ରେଣୀରେ ପଢ଼ିବା ପର୍ଯ୍ୟନ୍ତ ମୁଁ ସଙ୍ଗ ପିଲାଙ୍କ ସାହାଯ୍ୟରେ ରାବଣ ବଧ, କଂସ ବଧ ଇତ୍ୟାଦିର ସୁଆଙ୍ଗ କରିବାକୁ ଭଲ ପାଉଥିଲି । ରଜ ଛୁଟିରେ ତିନି ଚାରି ଦିନ ଧରି ସୁଆଙ୍ଗ ହୁଏ । ମୁଁ ସବୁଥିରେ ରାଜା ହୁଏ । ଗାଁର ପିଲାମାନେ ଆମ ସୁଆଙ୍ଗ ଦେଖନ୍ତି ।

ଘର ପାଖ ଦାନପୁର ମୁକାମରେ ଅନେକ ଝୋଟ ଗୋଦାମ ଅଛି । ସେ ସବୁର ମାଲିକ ବଙ୍ଗାଳି ଥିଲେ । ସେମାନେ ଅନେକ ସମୟରେ ଫୁଟବଲ ଖେଳୁଥିଲେ । ଏହି ଖେଳ ମୁଁ ପ୍ରଥମେ ସେଇଠି ଦେଖିଥିଲି ଏବଂ ସାଙ୍ଗ ପିଲାଙ୍କ ସଙ୍ଗରେ କନାରେ ଫୁଟ୍‌ବଲ୍ ତିଆରି କରି ଖେଳୁଥିଲି ।

ଏହି ଖେଳ ଓ ସୁଆଙ୍ଗର ପ୍ରବର୍ତ୍ତକ ମୁଁ ଥିଲି ।

ମୁଁ ଉ. ପ୍ରା. ବୃତ୍ତି ପାଇ ୧୯୨୦ ମସିହାରେ ପଟ୍ଟାମୁଣ୍ଡାଇ ମ. ଇ. ସ୍କୁଲରେ ଭର୍ତ୍ତିହେଲି ଓ ମୋର ମାମୁଁଙ୍କ ପାଖରେ ରହିଲି । ସେ ତତ୍‌କାଳୀନ ଗୁରୁ ଟ୍ରେନିଂ ସ୍କୁଲର ହେଡ଼ ପଣ୍ଡିତ ଥିଲେ । ସେଠାରେ

ଶ୍ରୀ ନଟବର କାନୁନ୍‌ଗୋ ପ୍ରଧାନ ଶିକ୍ଷକ ଥିଲେ । ଶ୍ରୀ ବଂଶୀଧର ଦାସ, ଶ୍ରୀ ରଘବହାଣ ରାୟ, ଶ୍ରୀ ଭଗବତ ସାହୁ ଓ ଶ୍ରୀ ପଦ୍ମନାଭ ପାଢ଼ୀ ସହକାରୀ ଶିକ୍ଷକ ଥିଲେ । ମୁଁ ଭଲ ପଢ଼ୁଥିଲି ବୋଲି ଶିକ୍ଷକମାନେ ମୋତେ ଭାରି ସ୍ନେହ କରୁଥିଲେ । ସହପାଠୀମାନଙ୍କ ମଧ୍ୟରେ ଶ୍ରୀ ମଇନୁଦ୍ଦିନ ଅହମ୍ମଦଙ୍କ ସଙ୍ଗରେ ମୋର ଘନିଷ୍ଠ ବନ୍ଧୁତା ଥିଲା । ସେ ମୋ ପୂର୍ବରୁ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ମୁଁ କିନ୍ତୁ ପରେ ତାଙ୍କୁ ଟପି ପ୍ରଥମ ହେଲି । ଏହି ବନ୍ଧୁ ପରବର୍ତ୍ତୀ ଜୀବନରେ ଜଣେ I. A. S. ହୋଇଥିଲେ ଏବଂ ଖାଁ ସାହେବ ଉପାଧି ପାଇଥିଲେ ।

ସ୍କୁଲରେ ବାପୁା ନାମରେ ଗୋଟିଏ ପିଅନ ଥିଲା । ସ୍କୁଲର ବଗିଚ୍ଚ କହିଲେ ପ୍ରାୟ ଦୁଇ ଗୁଣ୍ଠ ଜମିର କଥା । ବାପୁା ବଗିଚ୍ଚ କାମ ନିଜେ ନ କରି ପଞ୍ଚାମୁଣ୍ଡାଇ ବଜାରରୁ ଦୁଇ ତିନ ଜଣ ମୂଲିଆଙ୍କୁ ବେଶୀ ପଇସାର ଲୋଭ ଦେଖାଇ ଡାକିଆଣେ ଏବଂ ସେମାନେ ଦୁଇ ତିନ ଘଣ୍ଟା କାମ କଲାପରେ ସେମାନଙ୍କୁ ମୂଲ ନ ଦେଇ ବାହାର କରି ଦିଏ । ଅନେକ ସମୟରେ ଉଭୟଙ୍କ ମଧ୍ୟରେ ମୂଲ ଲାଗି ବଚସା ଆରମ୍ଭ ହୋଇଯାଏ ଏବଂ ବାପୁା ସେମାନଙ୍କୁ ମାରିବାକୁ ହାତ ଉଞ୍ଚାଇ ଚୁପ କରି ଦିଏ । ପ୍ରାୟ ପ୍ରତିଦିନ ଏହି ଲୀଳା ଦେଖିବାକୁ ମିଳେ । ସେଥିଲାଗି ମୋ ମନରେ ମୂଲିଆଙ୍କ ପ୍ରତି ସହାନୁଭୂତି ଜାତ ହେଲା । ବାପୁାର ବ୍ୟବହାର ଅସହ୍ୟ ହେବାରୁ ମୁଁ ଦିନେ ପ୍ରଧାନ ଶିକ୍ଷକଙ୍କୁ ସବୁ କଥା ଜଣାଇଲି । ସେ କହିଲେ—"ବଗିଚ୍ଚର କାମ ବାପୁାର । ସେ ଯେମିତି କରୁ, ମୋର କିଛି କହିବାର ନାହିଁ ।"

ମୋପରି କ୍ଷୁଦ୍ର ବାଳକ ଜଣେ ପ୍ରଧାନ ଶିକ୍ଷକଙ୍କୁ ଅଧିକ କ'ଣ ବା କହିପାରିବ ? ଖାଲି ଏତିକି କହିଲି—ଭାରି ଅନ୍ୟାୟ ହେଉଛି—ଆଜ୍ଞା । ଆପଣ ନିଜେ ବୁଝନ୍ତୁ । ତା'ପରେ ଫେରି ଆସିଲି ।

ଦୁଇ ତିନ ଦିନ ପରେ ପ୍ରଧାନ ଶିକ୍ଷକ ମୋତେ ଅଫିସକୁ ଡକାଇ ପଠାଇଲେ । ହସି ହସି କହିଲେ, "ବାବାରେ, ତୁ ମୋତେ ମହାଶିକ୍ଷା ଦେଲୁ । ବାପୁା ଆଉ କେବେ ସେପରି କରିବ ନାହିଁ ।" ମୁଁ ଆଉ ବାପୁାର ଦୁର୍ଗୁଣ ଦେଖିଲି ନାହିଁ ।

ମହାତ୍ମା ଗାନ୍ଧୀ ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନର ସୂତ୍ରପାତ କଲେ । ମୁଁ ସପ୍ତମ ଶ୍ରେଣୀରେ ପଢ଼ୁଥାଏ । ସ୍କୁଲ ପାଖ ପଡ଼ିଆରେ ବିରାଟ ସଭା ହେବ ଏବଂ ବକ୍ତୃତା ଦେବେ ବାଗ୍ମୀ ପଦ୍ମମଣି ମଙ୍ଗରାଜ । ପ୍ରଧାନ ଶିକ୍ଷକ ସବୁ ପିଲାଙ୍କୁ ଶୁଣାଇ ଦେଲେ ଯେ, କେହି ଯେମିତି ସଭାକୁ ନ ଯାନ୍ତି । ମୋତେ ବିଶେଷ କରି କହିଲେ ଯେ, ମୁଁ ଯଦି ସଭାରେ ଯୋଗ ଦେବି, ମୋର ଉ. ପ୍ରା. ବୃତ୍ତି କଟିଯିବ । ମୁଁ ଲୁଚିକରି ସଭାକୁ ଯାଇଥିଲି ଓ ମଙ୍ଗରାଜଙ୍କ ବକ୍ତୃତା ଶୁଣି ଏତେଦୂର ମୋହିତ ହୋଇଥିଲି ଯେ, ସେହି ସମୟରୁ ଖଦଡ଼ ପିନ୍ଧିବାକୁ ସଂକଳ୍ପ କରିଥିଲି । ସେଦିନର ସଂକଳ୍ପରୁ ମୁଁ କେବେ ବିଚ୍ୟୁତ ହୋଇନାହିଁ ।

ମୋର ମାମୁଁ ବୃନ୍ଦାବନ ରଥ ଜଣେ ଆଦର୍ଶ ଶିକ୍ଷକ ଥିଲେ । ସେ ଭି. ଏମ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସାରା ଜୀବନ ଗୁରୁଟ୍ରେନିଂ ସ୍କୁଲର ହେଡ୍‌ପଣ୍ଡିତ ଭାବରେ ବିତାଇ ଥିଲେ । ତାଙ୍କର ଅଧ୍ୟୟନ ସ୍ପୃହା ଅସାଧାରଣ ଥିଲା । ତାଙ୍କର ନିଜସ୍ୱ ପୁସ୍ତକାଳୟରେ ଉଚ୍ଚ କୋଟିର ମୂଲ୍ୟବାନ୍ ବହି ସବୁ ଥିଲା । ସେ ଏକାଧାରରେ ସମାଜ-ସଂସ୍କାରକ, ପରୋପକାରୀ ଓ ଦେଶହିତୈଷୀ ବ୍ୟକ୍ତି ଥିଲେ । ବଡ଼ଲାଟ ସଭାରେ ଶାରଦା ଆଇନ ଗୃହୀତ ହେବା ପୂର୍ବରୁ ସେ ସମାଜ ଚଳଣିକୁ ଭ୍ରୂକ୍ଷେପ ନ କରି ନିଜର ଜ୍ୟେଷ୍ଠା କନ୍ୟାକୁ ଷୋହଳ ବର୍ଷ ବୟସରେ ବିବାହ ଦେଇ ସମାଜରେ ନିନ୍ଦିତ ହୋଇଥିଲେ । ମହାତ୍ମା ଗାନ୍ଧୀଙ୍କ ଅସ୍ପୃଶ୍ୟତା ନିବାରଣ ଅଭିଯାନ ପୂର୍ବରୁ "ସେ ହରିଜନଙ୍କୁ ସ୍ପର୍ଶ କରିବା, ତାଙ୍କ ସହ ମାଟିବୁହା ଇତ୍ୟାଦି କାମ କରିବା ଏବଂ ସେମାନଙ୍କୁ ଘର ଭିତରେ ପଶି ଯେ କୌଣସି କାମ କରିବାକୁ ସୁଯୋଗ ଦେବାରେ ଆନନ୍ଦ ଲାଭ କରୁଥିଲେ । ରଜପର୍ବରେ ମୂଲିଆ ଶ୍ରେଣୀର ଲୋକଙ୍କୁ ଡାକିଆଣି ସେମାନଙ୍କ ସାହାଯ୍ୟରେ ଗ୍ରାମର ରାସ୍ତା ଘାଟର ସଂସ୍କାର କରାଇବାରେ ସେ ଅଭ୍ୟସ୍ତ ଥିଲେ । ସେ ସରକାରୀ ଚାକିରୀ କରୁଥିଲେହେଁ ୧୯୨୧ ମସିହାରୁ ନିୟମିତଭାବରେ ଖଦଡ଼ ପରିଧାନ କରୁଥିଲେ ଏବଂ ଥରେ ଜଣେ ତାଙ୍କର ଉପର ହାକିମ ଖଦଡ଼ ନ ପିନ୍ଧିବାକୁ ମୌଖିକ ଭାବରେ ତାଗିଦ୍ କଲେହେଁ ସେ ତହିଁରେ ଭୟଭୀତ ହୋଇ ନ ଥିଲେ ।

ତାଙ୍କର କଠୋର ଶାସନରେ ରହି ମୁଁ ଅନେକ ସଦ୍‌ଗୁଣ ହାସଲ କରିଥିଲି । ଷଷ୍ଠରୁ ସପ୍ତମକୁ ପ୍ରଥମ ହୋଇ ପ୍ରମୋସନ ପାଇବାରୁ ମୁଁ କାହାରି ପାଖରେ ଗର୍ବ ପ୍ରକାଶ କରିଥିଲି । ଆଉଥରେ ପର ବୁଦ୍ଧିରେ ପଡ଼ି ପଶାକାଠ ଗଡ଼ାଇଥିଲି । ଏହା ଜାଣି ସେ ମୋତେ ଏତେ ପ୍ରହାର କଲେ ଯେ, ତାହା ଭୁଲିହେବାର ନୁହେଁ । ତହିଁ ସଙ୍ଗେ ସଙ୍ଗେ ସେ ଗୋଟିଏ ଖାତାରେ ସଂସ୍କୃତ, ଇଂରାଜୀ ଓ ଓଡ଼ିଆରେ ଥିବା ନୀତିବାକ୍ୟ-ମାନ ପ୍ରତିଦିନ ଲେଖିଦେବାକୁ ଲାଗିଲେ । ମୁଁ ତାଙ୍କ ଆଦେଶାନୁସାରେ ସେଗୁଡ଼ିକ ମୁଖସ୍ଥ କରି ତାଙ୍କୁ ଶୁଣାଉଥିଲି । ଥରେ ଦୋଳଛୁଟିରେ ମୁଁ ତାଙ୍କୁ ଖଣ୍ଡିଏ କାମିଜ ମାଗିଲି । ସେ ଦେଲେ ନାହିଁ । ସେହି ସମୟରୁ ମୁଁ କେବେ କାମିଜ ପିନ୍ଧି ନାହିଁ । ପିନ୍ଧିବା ଆରମ୍ଭ କଲି ଆବଶ୍ୟକତା ଦୃଷ୍ଟିରୁ ସଂଘ ଗଠନ ପରେ । ତାସ, ପଶାଖେଳ ମୋତେ ମୋଟେ ଜଣା ନାହିଁ । ମୂଳତଃ କହିବାକୁ ଗଲେ, ମାମୁଁଙ୍କର ସମସ୍ତ ପ୍ରକାର ସୁଗୁଣ ମୋ ଜୀବନରେ ପ୍ରତିଫଳିତ ହୋଇଥିଲା ।

———

# କଟକ ଟ୍ରେନିଂ ସ୍କୁଲରେ ଅଧ୍ୟୟନ

ମଧ୍ୟ-ଇଂରାଜୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ହାଇସ୍କୁଲରେ ପଢ଼ିବା ଭଳି ଆର୍ଥିକ ଶକ୍ତି ମୋର ନ ଥିଲା । ତେଣୁ ମୁଁ କଟକ ଟ୍ରେନିଂ ସ୍କୁଲରେ ପଢ଼ିବା ପାଇଁ ସ୍ଥିର କଲି । ଭର୍ଣ୍ଣାକୁଲାର ଓ ମଧ୍ୟ ଇଂରାଜୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କୁ ଏହି ସ୍କୁଲରେ ତିନି ବର୍ଷ ପଢ଼ିବାକୁ ହେଉଥିଲା ଏବଂ ପ୍ରତିବର୍ଷ ୨୫ ଜଣ ଲେଖାଏଁ ଛାତ୍ର ପ୍ରବେଶ ଲାଭ କରୁଥିଲେ । ମୁଁ ୧୯୨୨ ମସିହାରେ ପଢ଼ିବାପାଇଁ ଦରଖାସ୍ତ କଲି ଏବଂ ବହୁବଳରୁ ପରୀକ୍ଷାରେ ଉପସ୍ଥିତ ପ୍ରାୟ ଶତାଧିକ ପ୍ରାର୍ଥୀଙ୍କ ମଧ୍ୟରୁ ମନୋନୀତ ହେଲି ।

ଷ୍ଟାଇପେଣ୍ଡ ମିଳୁଥିଲା ମାସିକ ଆଠଟଙ୍କା ମାତ୍ର । ଏହି ଟଙ୍କାରେ କଷ୍ଟେ ମଷ୍ଟେ ଚଳି ହୋଇ ଯାଉଥିଲା । ଘରୁ ସାହାଯ୍ୟ ଆଣିବା ଦରକାର ପଡ଼ୁ ନ ଥିଲା ।

ଏହି ସ୍କୁଲରେ ସାହିତ୍ୟ ଓ ବ୍ୟାକରଣ ବିଷୟରେ ଉଚ୍ଚ କୋଟିର ଆଲୋଚନା ହେଉଥିଲା । ଇତିହାସ, ଭୂଗୋଳ, ଗଣିତ, ବୀଜଗଣିତ, ପରିମିତି ଓ ସଂସ୍କୃତରେ ମାଟ୍ରିକ୍ ଛାତ୍ରମାନେ ଯେତିକି ଜ୍ଞାନ ହାସଲ କରୁଥିଲେ, ଆମର ଜ୍ଞାନ ତଦନୁରୂପ ଥିଲା । ପ୍ରଥମ ବାର୍ଷିକ ଶ୍ରେଣୀରେ ଆମେ ଉର୍ଦ୍ଦୁ ପଢ଼ିଥିଲୁ, ମାତ୍ର ପରେ ତାହା ବନ୍ଦ ହୋଇ ଯାଇଥିଲା ।

ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଶ୍ରୀ ଦାଶରଥି ପାଣିଗ୍ରାହୀ । ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ, ଶ୍ରୀ ଚନ୍ଦ୍ରମଣି କର, ପଣ୍ଡିତ କୁଳମଣି ଦାଶ କାବ୍ୟତୀର୍ଥ ସହକାରୀ ଶିକ୍ଷକ ଥିଲେ । ଡ୍ରିଲ୍ ଓ ଡ୍ରଇଁ ପାଇଁ ଜଣେ ଜଣେ ଶିକ୍ଷକ ଥିଲେ । ପଣ୍ଡିତ ଆର୍ତ୍ତତ୍ରାଣ ଶତପଥୀ ସ୍କୁଲ୍ ସଂଲଗ୍ନ ପ୍ରାକ୍ଟିସିଂ ମ. ଇ. ସ୍କୁଲର ଶିକ୍ଷକ ଥାଇ ଆମ୍ଭମାନଙ୍କୁ ପଦ୍ୟ ସାହିତ୍ୟ ଓ ପରିମିତି ପଢ଼ାଉଥିଲେ ।

ମୁଁ ଭଲ ପଢ଼ୁଥିଲି । ତେଣୁ ଶିକ୍ଷକ ବୃନ୍ଦ ମୋ ଉପରେ ସବୁବେଳେ ସନ୍ତୁଷ୍ଟ ଥିଲେ । ମୁଁ ମୋର ସୁନ୍ଦର ହସ୍ତାକ୍ଷର ପାଇଁ ସମସ୍ତଙ୍କ

ଦୃଷ୍ଟି ଆକର୍ଷଣ କରୁଥିଲି । ସେତେବେଳେ ପୁସ୍ତକ-ପ୍ରକାଶକ ମାନେ ଗୀତ ନାଟ୍ୟର ଲେଖକମାନଙ୍କଠାରୁ ପାଣ୍ଡୁଲିପି କିଣି କରି ନେଇ ଥିଲେ କିମ୍ବା ଲଭ୍ୟାଂଶ ଦେବା ସର୍ତ୍ତରେ ଗ୍ରହଣ କରୁଥିଲେ । ତାହାର ସଂଶୋଧନ ଓ ପୁନଃଲିଖନ ପାଇଁ ପ୍ରକାଶକମାନେ ଆର୍ତ୍ତତ୍ରାଣ ବାବୁଙ୍କ ଉପରେ ଦାୟିତ୍ୱ ଦେଉଥିଲେ । ଆର୍ତ୍ତତ୍ରାଣ ବାବୁ ମୋର ସୁନ୍ଦର ହସ୍ତାକ୍ଷର ଓ ସମ୍ୟକ୍ ସାହିତ୍ୟ ଜ୍ଞାନ ଥିବା ଯୋଗୁଁ ମୋ ଦ୍ୱାରା କରାଇ ନେଉ ଥିଲେ ଏବଂ ପ୍ରତି ପାଣ୍ଡୁଲିପି ପାଇଁ ମୋର ପାରିଶ୍ରମିକ ବାବଦରେ ମୋତେ ଦଶଟଙ୍କା ଲେଖାଏ ଦେଉଥିଲେ । ତିନି ବର୍ଷ ଅଧ୍ୟୟନ କାଳ ଭିତରେ ମୁଁ ଏ ବାବଦରେ କିଛି ଅର୍ଥ ଉପାର୍ଜନ କରିଥିଲି ।

ଶ୍ରୀ ଦାଶରଥି ପାଣିଗ୍ରାହୀ ନିମ୍ନ ପ୍ରାଇମେରୀ ଶ୍ରେଣୀଠାରୁ ମଧ୍ୟ ଇଂରାଜୀ ପର୍ଯ୍ୟନ୍ତ ଗଣିତ ପାଠ୍ୟପୁସ୍ତକ ସବୁ ଲେଖିଥିଲେ । ଶ୍ରୀ ସେନ୍‌ଗୁପ୍ତ ଓ ପଣ୍ଡିତ ଦାଶ ମଧ୍ୟ ଅନେକ ବହି ପ୍ରଣୟନ କରି ଥିଲେ । ମୁଁ ସେମାନଙ୍କର ସବୁ ବହିର ପାଣ୍ଡୁଲିପି ଭଲ ଅକ୍ଷରରେ ଲେଖିବା ପରେ ମୁଦ୍ରଣ ପାଇଁ ଛାପାଖାନାକୁ ଯାଇଥିଲି । ମୋର ପାରିଶ୍ରମିକ ବାବଦକୁ ମୁଁ ପ୍ରଧାନ ଶିକ୍ଷକଙ୍କ ସହ ବିନା ବ୍ୟୟରେ ସମ୍ବଲପୁର ପରିଭ୍ରମଣରେ ଯାଇଥିଲି । ସେହିପରି ସେନ୍‌ଗୁପ୍ତଙ୍କ ସହ କଲିକତା ଓ ପଣ୍ଡିତ ଦାଶଙ୍କ ସହ ମହେନ୍ଦ୍ରଗିରି ଦର୍ଶନ ମୋ ଭାଗ୍ୟରେ ଜୁଟିଥିଲା ।

ମୁଁ ମୋର ଭଲ ଅକ୍ଷର ପାଇଁ ନାନା ଭାବରେ ଉପକୃତ ହୋଇଛି । ସେଥିପାଇଁ ମୁଁ ଛାତ୍ରମାନଙ୍କ ସୁନ୍ଦର ହସ୍ତାକ୍ଷର ଦିଗରେ ସଚେଷ୍ଟ ଥିଲି ଏବଂ ଏବେ ଯେଉଁ ସ୍କୁଲରେ ପଢ଼ାଏ, ତାହାର ଛାତ୍ରମାନଙ୍କୁ ହସ୍ତାକ୍ଷର ସୁନ୍ଦର କରିବା ପାଇଁ ଉତ୍ସାହ ଦିଏ ଏବଂ ଶିକ୍ଷକମାନଙ୍କୁ ମଧ୍ୟ ଅନୁରୋଧ କରିଥାଏ ।

ଟ୍ରେନିଂ ସ୍କୁଲରେ ପଢ଼ିବା ବେଳେ ମୋର ରକ୍ତଶୂନ୍ୟତା ଘଟିଲା ଏବଂ ଥରେ ମୁଁ ଟ୍ରେଟ ଧରଣର ଅସ୍ୱ ଚକପ୍ରାର ସମ୍ମୁଖୀନ ହୋଇଥିଲି । ତେଣୁ ଷ୍ଟାଇପେଣ୍ଡ ଟଙ୍କାରେ ଅତିରିକ୍ତ ଖରଚ ବହନ କରିବା ମୋ ପକ୍ଷରେ ବଡ଼ ଅସମ୍ଭବ ଥିଲା । ନାଁ ଲେଖା ବେଳେ ମାମୁଁ ସାହାଯ୍ୟ କରି ଥିବାରୁ ଲଜ୍ଜରେ ତାଙ୍କୁ ଆଉ ମାଗି ପାରିଲି ନାହିଁ । ଘରେ ମା ଓ ସାବତ ମା ମଧ୍ୟ କିଛି ସାହାଯ୍ୟ କରିବା ଅବସ୍ଥାରେ ନ ଥିଲେ । ତେଣୁ, କ ପ୍ରକାର

ଦୁଃଖ ଓ ଅସୁବିଧା ଭିତରେ ମୁଁ ପାଠ ପଢ଼ୁଥିଲି, ତାହା କେବଳ ମୋତେ ଜଣା । ତେବେ ପଣ୍ଡିତ ଆର୍ତ୍ତତ୍ରାଣ ଶତପଥୀଙ୍କ ପରୋକ୍ଷ ସାହାଯ୍ୟ ଏବଂ ଉତ୍କଳ ସାହିତ୍ୟ ସମାଜରୁ ପ୍ରତିଯୋଗିତାମୂଳକ ପ୍ରବନ୍ଧ ଲେଖି ପାଇଥିବା ପନ୍ଦର ଟଙ୍କା ପୁରସ୍କାର ମୋର ଦୁଃଖ ଦୂରୀକରଣରେ ସହାୟକ ହୋଇଥିଲା ।

ମୋର ସତୀର୍ଥମାନଙ୍କ ମଧ୍ୟରେ କବି ଉପେନ୍ଦ୍ର ବିଦ୍ୟାର୍ଥୀ ଓ ଶ୍ରୀ ଭଗବାନ ପତି ଏବଂ ସହାଧ୍ୟାୟୀମାନଙ୍କ ମଧ୍ୟରେ ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର କରଙ୍କ ନାମ ଉଲ୍ଲେଖଯୋଗ୍ୟ ।

୧୯୨୪ ମସିହା ଡିସେମ୍ବର ମାସରେ ମୁଁ ତୃତୀୟ ବାର୍ଷିକ ପରୀକ୍ଷା ଦେଇସାରି କଟକ ଟ୍ରେନିଂ ସ୍କୁଲରୁ ବିଦାୟ ନେଲି ।

# ମୋର ବୈବାହିକ ଜୀବନ

ମୁଁ ପଞ୍ଚମ ଶ୍ରେଣୀରେ ପଢ଼ିବାବେଳେ ମୋର ବିବାହ ପାଇଁ ନିର୍ବନ୍ଧ ହୋଇ ସାରିଥିଲା । ସାମାଜିକ ପ୍ରଥା ଅନୁଯାୟୀ ଧୋତି ସୁନାମୁଦି ଓ ଶଙ୍ଖା ଶାଢ଼ୀର ବିନିମୟ ହୋଇଥିଲା । କନ୍ୟାର ଘର ଆମ ଘରଠାରୁ ଦୁଇ ଫର୍ଲଙ୍ଗ୍ ମାତ୍ର ଦୂର । ମୁଁ ଦୋହଳ ଉ. ପ୍ରା. ସ୍କୁଲକୁ ପଢ଼ିବାକୁ ଯିବା ରାସ୍ତା ପାର୍ଶ୍ୱରେ ଶ୍ରୀ ଶୁକ୍ଳେଶ୍ୱରଙ୍କ ମନ୍ଦିର ଅବସ୍ଥିତ । ସାଧାରଣତଃ ସୋମବାର ଦିନ ଗାଁର ଝିଅ ବୋହୂମାନେ ଶିବ ମନ୍ଦିରକୁ ଆସିଥାନ୍ତି । ଦିନକର କଥା । ମୁଁ ସ୍କୁଲକୁ ଗଲାବେଳେ ମନ୍ଦିର ପାଖକୁ ଯାଇଥିଲି । ମୋର ଅଜା ସ୍ଥାନୀୟ କେହି ଜଣେ ମୋର ଭାବୀ ପତ୍ନୀକୁ ଦେଖାଇଦେଇ ଥଟ୍ଟା କରିବାକୁ ଲାଗିଲେ । ମୁଁ ଦେଖିଲି, କନ୍ୟାଟି ମୋଠାରୁ ବଡ଼ ଜଣାଯାଉଛି । ସେତିକବେଳୁ ମନ କେଜାଣି କାହିଁକି ଗୋଳେଇ ଘାଣ୍ଟି ହେଲା । ମୁଁ ସ୍କୁଲକୁ ଯିବାବେଳେ ମନ୍ଦିରକୁ ଯାଏ ଏବଂ ଠାକୁରଙ୍କୁ ପ୍ରଣତି ଜଣାଇ କହେ—ଯେ କନ୍ୟାଟା ମରିଯାଉ କିମ୍ବା ବିବାହଟା ଭାଙ୍ଗିଯାଉ ।

ଏ ମନ ଭାବୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା । ହୈବାତ୍ ମୋର ପିତୃଦେବ ୪୫ ବର୍ଷ ବୟସରେ ଇହଧାମ ତ୍ୟାଗ କଲେ । ତେଣୁ ବର୍ଷେ ଅଶୌଚ ନ ହେଲେ ବିବାହକାର୍ଯ୍ୟ ସମ୍ପନ୍ନ ହୋଇ ପାରିବ ନାହିଁ । ବର୍ଷକ ପରେ କନ୍ୟାର ବୟସ ୧୨ ବର୍ଷ ହେବ । ସେତେବେଳେ ବ୍ରାହ୍ମଣ କନ୍ୟା ୮,୧୦ ବା ୧୧ ବର୍ଷ ବୟସରେ ବିବାହ କରୁଥିଲା । ୧୨ ବର୍ଷ ହେଲେ କନ୍ୟା ବାଛନ୍ଦ ହୋଇଯାଏ, ଅର୍ଥାତ୍ ଆଜିଯାଏ କାହିଁକି ତାହାର ବିବାହ ହୋଇ ନାହିଁ ବୋଲି ଲୋକେ ନାନା ପ୍ରକାର ସନ୍ଦେହ କରନ୍ତି । ଏଣୁ ସେଠାରେ ବିବାହ ପ୍ରସ୍ତାବ ଭାଙ୍ଗିଗଲା ଏବଂ ନିର୍ବନ୍ଧ ଦିନ ଯେଉଁସବୁ ଦ୍ରବ୍ୟର ବିନିମୟ ହୋଇଥିଲା, ତାହା ପ୍ରତ୍ୟେକେ ଫେରାଇ ନେଲେ ।

ମୁଁ ପଞ୍ଚାମୃତାଇରୁ ପଢ଼ା ସାରି ଘରକୁ ଫେରିବା ପରେ ମୋର ମା ମୋ ଗାଁଠାରୁ ଏକ ମାଇଲ ଦୂରବର୍ତ୍ତୀ ଭାଗବତପୁର ଗ୍ରାମର ସ୍ୱର୍ଗତ ବାଳକୃଷ୍ଣ ଦାଶଙ୍କ ଜ୍ୟେଷ୍ଠାକନ୍ୟା ଲକ୍ଷ୍ମୀ ସହ ମୋର

ବିବାହ ପ୍ରସ୍ତାବ ହୋଇଯାଇଛି ବୋଲି ମୋତେ ଶୁଣାଇ ଦେଲେ । ମୋର ବୟସ ସେତେବେଳକୁ ପ୍ରାୟ ପନ୍ଦର ବର୍ଷ । ବିବାହ କଥା ଶୁଣିଲେ ମନରେ ଗୋଟିଏ ଉଲ୍ଲାସର ସୃଷ୍ଟି ହେବା ସାଧାରଣ ଘଟଣା । ମାତ୍ର ମୁଁ ରାଗିଯାଇ ଗର୍ଜନ କଲି ଏବଂ ବିବାହ ପାଇଁ ଆସିବି ନାହିଁ ବୋଲି କଡ଼ାକଡ଼ ସ୍ୱରରେ ଶୁଣାଇ ଦେଲି । ମୋର ମାଉଳା ବୃନ୍ଦାବନ ରଥ ମୋତେ ଅନେକ ସମୟରେ କହୁଥିଲେ ଯେ, ପାଠ ପଢ଼ି ରୋଜଗାର ନ କରିବା ପର୍ଯ୍ୟନ୍ତ ବିବାହ କରିବା ଉଚିତ ନୁହେଁ । ମୋର ବୟସ ଅଳ୍ପ ହେଲେହେଁ ମୁଁ ନିଜର ଦାରିଦ୍ର୍ୟ ସମ୍ବନ୍ଧରେ ସଚେତନ ଥିଲି ଏବଂ ମାଉଳାଙ୍କ ଉପଦେଶର ସାରବତ୍ତା ଉପଲବ୍ଧି କରି ପାରୁଥିଲି ।

୧୯୨୧ ମସିହାରେ କଟକ ଟ୍ରେନିଂ ସ୍କୁଲର ପ୍ରଥମ ବାର୍ଷିକ ଶ୍ରେଣୀର ଛାତ୍ର ମୁଁ । ମୋ ପାଖକୁ ବିବାହର ଦିବସ ଜଣାଇ ବଡ଼ ମାମୁଁ ପତ୍ର ଲେଖିଲେ । ମୁଁ ବିବାହ କରିବି ନାହିଁ ବୋଲି ଜଣାଇ ଦେଲି । ତେଣୁ ସେ ବାଧ୍ୟ ହୋଇ କଟକ ଯାଇ ପ୍ରଧାନ ଶିକ୍ଷକଙ୍କୁ ଧରିଲେ । ସେ ମହାଶୟ ମୋତେ ବହୁତ ବୁଝାଇ ବିବାହ କରିବାକୁ ପରାମର୍ଶ ଦେବାରୁ ମୁଁ ତାଙ୍କ କଥା ଅସମ୍ମାନ କରି ପାରିଲି ନାହିଁ । ମୋର ଶ୍ୱଶୁର ମୋତେ 'ଧରିବର' କରି ନେଲେ । ବିବାହ ପାଇଁ ଆମର ପଇସାଟିଏ ଖରଚ ହେଲା ନାହିଁ ।

୧୯୨୫ ମସିହାରେ ମୁଁ ବାଙ୍କିରେ ଗୋଟିଏ ପ୍ରାଥମିକ ସ୍କୁଲର ଶିକ୍ଷକ ଥିବାବେଳେ ପୁନର୍ବିବାହ ସମ୍ପର୍କରେ ମୋତେ ପତ୍ର ଲେଖାଗଲା । ପରେ ପରେ ମୋର ମାନସିକ ବିପ୍ଳବ ଆରମ୍ଭ ହେଲା । ଭୀଷଣ ଦାରିଦ୍ର୍ୟ ହିଁ ତାହାର କାରଣ । ମୁଁ ପ୍ରତିଦିନ ସନ୍ଧ୍ୟାରେ ବାଙ୍କିର ଇଷ୍ଟଦେବତା ଚର୍ଚ୍ଚିକାଙ୍କ ମନ୍ଦିରକୁ ଯାଇ 'ମା, ମୋତେ ସଂସାର ଭଲ ଲାଗୁ ନାହିଁ । ମୋତେ କେମିତି ମୁକ୍ତ କରିଦେ'—ଏଇପରି ଦୁଃଖ ଜଣାଇବାରେ ଅଭ୍ୟସ୍ତ ହେଲି । ସେହି ବର୍ଷ ପୁନର୍ବିବାହ କାର୍ଯ୍ୟ ସରିଗଲା ।

୧୯୩୨ ମସିହା ଦୋଳପୂର୍ଣ୍ଣିମା ଦିନ ମୋର ସ୍ତ୍ରୀ ଧନୁଷ୍ଟଙ୍କାର ରୋଗରେ ଆକ୍ରାନ୍ତ ହୋଇ ସାତ ଦିନର କନ୍ୟା ସନ୍ତାନକୁ ଛାଡ଼ି ଇହଧାମ ତ୍ୟାଗ କଲା ।

---

# ପ୍ରାଥମିକ ସ୍କୁଲରେ ଶିକ୍ଷକତା

୧୯୨୪ ମସିହା ଡିସେମ୍ବର ମାସରେ କଟକ ଟ୍ରେନିଂ ସ୍କୁଲରେ ମୋର ଛାତ୍ରଜୀବନର ପରିସମାପ୍ତି ଘଟିଲା । ଏଣିକି ଚାକିରୀ ପାଇଁ ଆଖି ବୁଲାଇବାର କଥା । ସେତେବେଳେ ଗୁରୁଟ୍ରେନିଂ (ଆଜିକାଲିର ଏଲିମେଣ୍ଟାରି ଟ୍ରେନିଂ) ସ୍କୁଲର ହେଡ଼ପଣ୍ଡିତ, ମଧ୍ୟ-ଇଂରାଜୀ ସ୍କୁଲର ହେ. ପ. ଓ ସେ. ପ. ଏବଂ ହାଇସ୍କୁଲର ଓଡ଼ିଆ ଶିକ୍ଷକ, ଏଗୁଡ଼ିକ ଥିଲା ଆମ ଯୋଗ୍ୟତାର ଅନୁରୂପ କାର୍ଯ୍ୟ । ଆମେ ଉତ୍ତୀର୍ଣ୍ଣ ହୋଇଥିବା ୨୫ଜଣ ଛାତ୍ରଙ୍କ ପାଇଁ ସରକାରୀ ଚାକିରୀର ଦ୍ୱାର ରୁଦ୍ଧ ହୋଇ ଆସୁଥିଲା । କାରଣ, ଆମେ ହେଉଛୁ କଟକ ଟ୍ରେନିଂ ସ୍କୁଲର ସର୍ବଶେଷ ଦଳ, ଯେଉଁମାନେ କି ମଧ୍ୟ ଇଂରାଜୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଏଠାରେ ତିନି ବର୍ଷ ତାଲିମ୍ ପାଉଥିଲେ । ଆମ ପରେ ଟ୍ରେନିଂ ସ୍କୁଲରେ ପ୍ରବେଶ କରିବାର ସର୍ବନିମ୍ନ ଯୋଗ୍ୟତା ମାଟ୍ରିକ୍ ହେବାରୁ ସେମାନଙ୍କୁ ଆକୃଷ୍ଟ କରିବାପାଇଁ ସରକାରୀ ଚାକିରୀଯାକ ତାଙ୍କରି ପାଇଁ ରହୁଥିଲା । ଛଅ ମାସ ପରେ ତାଲିମପ୍ରାପ୍ତ ମାଟ୍ରିକ୍ ଶିକ୍ଷକମାନେ ଉଠୁଣିବାର କଥା । ସେତେବେଳେ ରାଜ୍ୟ ଭିତରେ ମଧ୍ୟ-ଇଂରାଜୀ ସ୍କୁଲ ସଂଖ୍ୟା ଖୁବ୍ କମ୍ । କଟକ ଜିଲାରେ ୩୦ଟା ସ୍କୁଲ ଥିଲା କି ନାହିଁ ସନ୍ଦେହ । ୧୯୩୨ ମସିହାରେ ମୁଁ ଯେତେବେଳେ ନିଜ ଗ୍ରାମ ହୋଦଲରେ ମଧ୍ୟ-ଇଂରାଜୀ ସ୍କୁଲଟିଏ ପ୍ରତିଷ୍ଠା କଲି, ସେତେବେଳେ ମୋ ସ୍କୁଲ ୩୧ଶ ସ୍ଥାନରେ ରହିବାରୁ ଡେପୁଟି ଇନ୍‌ସପେକ୍ଟର ମହୋଦୟ ମେନେଜିଂ କମିଟିଠାରୁ 'ଆମେ ଜିଲାବୋର୍ଡ଼ ଗ୍ରାଣ୍ଟ୍ ପାଇଁ ଦାବୀ କରି ପାରିବୁ ନାହିଁ' ବୋଲି ଲେଖାଇ ନେବାପରେ ସ୍କୁଲ ମଞ୍ଜୁର କରିଥିଲେ । ଆମେ ଶୁଣିବାକୁ ପାଇଥିଲୁ, କେବେ କେଉଁ କଲେକ୍ଟର କଟକ ଜିଲାରେ ୩୦ଟି ମଧ୍ୟ-ଇଂରାଜୀ ସ୍କୁଲ ଦରକାର ବୋଲି ଲେଖିଦେଇ ଯାଇଥିଲେ । ଏହି କାରଣରୁ ମୋ ସ୍କୁଲ ବାରବର୍ଷ ପର୍ଯ୍ୟନ୍ତ ସରକାରଙ୍କଠାରୁ କୌଣସି ପ୍ରକାରେ ସାହାଯ୍ୟ ମାଗି ପାଇପାରି-ନ ଥିଲା । ସୁତରାଂ ମୁଁ ପାସ୍ କଲାବେଳକୁ ମ. ଇ. ସ୍କୁଲ ସଂଖ୍ୟା କେତେ ଥିବ, ତାହା ସହଜରେ ଅନୁମେୟ । ଖବରକାଗଜରେ ଚାକିରିର ବିଜ୍ଞାପନ ନ ଦେଖି ଓ କୌଣସି ଠାରେ ନିଜକୁ ନିୟୋଜିତ କରିବାର ଆଶା ନ ପାଇ ମୁଁ ଅତି ବେକାର ଜୀବନ କଟାଇବାକୁ ଲାଗିଲି ।

ଏହି ସମୟରେ ବଡ଼ଲାଟ ସଭାରେ ଗୃହୀତ ବାଧ୍ୟତାମୂଳକ ଶିକ୍ଷାର ପ୍ରବର୍ତ୍ତନ ପାଇଁ ବାଙ୍କୀରେ ପରୀକ୍ଷାମୂଳକ ଭାବରେ କେତୋଟି ପ୍ରାଥମିକ ସ୍କୁଲ ପ୍ରତିଷ୍ଠିତ ହେଲା । ମୋର ଉତ୍କଟ ଦାରିଦ୍ର୍ୟ ମୋତେ ଯେ କୌଣସି ଚାକିରିରେ ଅର୍ଥୋପାର୍ଜନ ପାଇଁ ବାଧ୍ୟ କରୁଥିଲେ ହେଁ ଟ୍ରେନିଂ ସ୍କୁଲରେ ଅଧ୍ୟୟନ ସମୟରେ ମୁଁ ଜଣେ ଉତ୍ତମ ଛାତ୍ରରୂପେ ପରିଚିତ ଥିବାରୁ ଗୋଟିଏ ପ୍ରାଥମିକ ସ୍କୁଲରେ ଶିକ୍ଷକତା କରିବାକୁ ନିଜକୁ ମଙ୍ଗେଇ ପାରିଲି ନାହିଁ । ମାତ୍ର ଟ୍ରେନିଂ ସ୍କୁଲର ହେଡ଼ମାଷ୍ଟର ୮ ଦାଶରଥି ପାଣିଗ୍ରାହୀ ମୋତେ ଭବିଷ୍ୟତରେ ସରକାରୀ ଚାକିରିରେ ନିଯୁକ୍ତ କରାଇ-ଦେବାର ଆଶା ଦେଇ ବାଙ୍କି ଯିବାକୁ ବାଧ୍ୟ କଲେ । ମୁଁ ଗୁରୁଦେବଙ୍କ ଆଦେଶ ଲଙ୍ଘନ କରି ପାରିଲି ନାହିଁ ।

ସେତେବେଳକୁ ମୋର ବୟସ ପ୍ରାୟ ଅଠର । ଓଡ଼ିଶାର କୌଣସି ରାଜପଥରେ ମୋଟର, ବସ୍ ଚଳାଚଳ ଆରମ୍ଭ ହୋଇ ନାହିଁ । କେନ୍ଦ୍ରାପଡ଼ା କେନାଲରେ ଚାଲୁଥିବା ଷ୍ଟିମର ଯୋଗୁ ଆମର କଟକ ଯାତ୍ରା ସହଜରେ ହେଉଥିଲା । ମାତ୍ର କଟକରୁ ବାଙ୍କି ୨୮ ମାଇଲ ବାଟ ପାଦରେ ଅତିକ୍ରମ କରିବା ଛଡ଼ା ଅନ୍ୟ ଉପାୟ ନ ଥିଲା । ଆଜି ମନେ-ପଡ଼େ, ପାହାଡ଼ ଜଙ୍ଗଲ ଦେଇ ଯାଇଥିବା ସେ ରାସ୍ତାକୁ ଅତିକ୍ରମ କଲାବେଳେ କିପରି ଶ୍ରାନ୍ତକ୍ଲାନ୍ତ ହେଉଥିଲି ।

ପ୍ରାୟ ଚାରି ବର୍ଗମାଇଲ ଭିତରେ ଷୋଳଟି ସ୍କୁଲ ବସିଥିଲା । ପ୍ରତ୍ୟେକରେ ଦୁଇଜଣ ଲେଖାଏ ଶିକ୍ଷକ ଥିଲେ । ରଙ୍ଗିଆ ନିକଟରେ ଶାହାଡ଼ାପଦା ଗ୍ରାମର ପ୍ରାଥମିକ ସ୍କୁଲରେ ମୁଁ ହେଡ଼ ପଣ୍ଡିତରୂପେ ନିଯୁକ୍ତ ହେଲି । ମୋ ପୂର୍ବରୁ ନଟବର ମିଶ୍ର ଓ ଯଜ୍ଞଭଦ୍ର ମିଶ୍ର ଏହି ଦୁଇଜଣ ହତଭାଗ୍ୟ ଇ. ଏମ୍. ଶିକ୍ଷକତା କରିବାକୁ ସେଠାକୁ ଆସିଥିଲେ । ଆମ ତିନି ଜଣଙ୍କୁ ଛାଡ଼ିଦେଲେ ଅନ୍ୟ ହେଡ଼ ପଣ୍ଡିତମାନେ ଏମ୍. ଭି. ଟି. ଥିଲେ ଏବଂ ସବୁ ସ୍କୁଲର ଦ୍ୱିତୀୟ ଶିକ୍ଷକମାନେ ମି. ଇ. ପାଶ କରିଥିଲେ ।

ସ୍କୁଲଗୁଡ଼ିକ ମୁକ୍ତ ପ୍ରାନ୍ତରରେ ଅବସ୍ଥିତ ଥିଲା । କାନ୍ଥ ଦିଆ ହୋଇ ନ ଥିଲା । ପବନ ବହିଲେ ଶିକ୍ଷାଦାନରେ ବଡ଼ ବ୍ୟାଘାତ ଘଟୁଥିଲା । ମୋଭଳି ଦୂରବର୍ତ୍ତୀ ଶିକ୍ଷକମାନଙ୍କ ପକ୍ଷରେ ରହିବା ଓ ରୋଷାଇ କରି ଖାଇବାପାଇଁ ସ୍କୁଲ ଘର ସବୁ ଉପଯୋଗୀ ନ ହେବାର କଥା । ମୁଁ

ବାକିରେ ପଡ଼ଶ୍ରୀବା ପୂର୍ବରୁ ମୋର ସହପାଠୀ ନଟବର ମିଶ୍ର ଗୋଟିଏ ପ୍ରାଥମିକ ସ୍କୁଲରେ ନିଯୁକ୍ତ ପାଇ ସାରିଥିଲେ । ଚର୍ଚ୍ଚିକା ହାଟ ପାଖରେ ଗୋଟିଏ ଘରେ ବସା କରି ରହୁଥାନ୍ତି । ଘରଟିର ଲମ୍ବ ୧୫ ଫୁଟ ଓ ଓସାର ୧୦ ଫୁଟ ହେବ । ମୁଁ ତାଙ୍କର ସାଙ୍ଗରେ ରହିଲି । ଛୋଟ ଘରଟିରେ ଆମେ ଦୁଇଜଣ କପଟ ଅସୁବିଧାରେ ଚଳୁଥିଲୁ, ତାହା ଲେଖିବା ଦରକାର ନାହିଁ । ପରେ ଆମେ ଗୁରୁ ପାଞ୍ଚଜଣ ମିଶି ଆଉ ଗୋଟିଏ ଅପେକ୍ଷାକୃତ ସୁନ୍ଦର ଘର ଭଡ଼ାରେ ପାଇଥିଲୁ ।

ବାଧ୍ୟତାମୂଳକ ଶିକ୍ଷାର ନିୟମ ଅନୁଯାୟୀ ଚଉଦ ବର୍ଷରୁ କମ୍ ବୟସର ପିଲାଙ୍କୁ ପିତା ବା ଅଭିଭାବକ ଶାରୀରିକ ଶ୍ରମଦ୍ୱାରା ଅର୍ଥୋପାର୍ଜନ କାର୍ଯ୍ୟରେ ଲଗାଇପାରିବେ ନାହିଁ । ଏଥିପାଇଁ ସବୁ ପିଲା ପଢ଼ିବାକୁ ବାଧ୍ୟ । ମୋ ସ୍କୁଲରେ ପ୍ରାୟ ୭୦୮୦ ଜଣ ପିଲା ଥିବାର ମନେ ପଡ଼ୁଛି । ଏ କଥା ସତ ଯେ, ମୁଁ କାର୍ଯ୍ୟରେ ଯୋଗ ଦେବା ପରଠାରୁ ଅନେକ ଦିନ ପର୍ଯ୍ୟନ୍ତ ମୋର ମସ୍ତିଷ୍କ ବିଚଳିତ ହେଉଥିଲା । ଛାତ୍ରଜୀବନରେ ଯେଉଁ ଆଶା ଓ ସୌଭାଗ୍ୟର ପିରାମିଡ୍ ମନେ ମନେ ରଚନା କରିଥିଲି, ତାହା ବଦଳରେ ଉଇହୁଙ୍କାରେ ସନ୍ତୁଷ୍ଟ ରହିବା ମୋ ପକ୍ଷରେ କମ୍ କଷ୍ଟକର ନଥିଲା । ତଥାପି ଗତ୍ୟନ୍ତର ନ ଥିବାରୁ ମନ ଆସ୍ତେ ଆସ୍ତେ ଘର ଧରିଲା ଏବଂ ମୁଁ ମୋର କର୍ତ୍ତବ୍ୟରେ ନିଜକୁ ବୁଡ଼ାଇ ଦେଲି ।

ସେତେବେଳେ ସେ ଅଞ୍ଚଳରେ ପିଲାମାନଙ୍କୁ ଯେଉଁ ପ୍ରଣାଳୀରେ ଶିକ୍ଷା ଦିଆଯାଉଥିଲା, ତାହା ମୋତେ ଅଦ୍ଭୁତ ମନେ ହେଲା । ଉଦାହରଣ ସ୍ୱରୂପ, ମୋର ସେକେଣ୍ଡ ପଣ୍ଡିତ ପିଲାମାନଙ୍କୁ ବନାନ-ଶିକ୍ଷା ଏହିପରି ଦେଉଥିଲେ —କ ଇକାର କି, ଡ ଇକାର ଡି, ଝ ଇକାର ଝି, ସେହିପରି ଡ ରଫଳା ଡ୍ର, ଝ ରଫଳା ଝ୍ର (ଉଚ୍ଚାରଣ ଡର, ଝର) ଇତ୍ୟାଦି । ଅର୍ଥାତ୍ ଆକାରଠାରୁ ଆରମ୍ଭ କରି ଯେତେ ପ୍ରକାର 'ଫଳା' ଅଛି, ତାହା ପ୍ରତ୍ୟେକ ବ୍ୟଞ୍ଜନ ବର୍ଣ୍ଣରେ ଯୁକ୍ତ କରିବାର ପଦ୍ଧତି ପ୍ରଚଳିତ ଥିଲା । ଯେଉଁ ବର୍ଣ୍ଣରେ ଯେଉଁ 'ଫଳା'ର ସଂଯୋଗ ଆଦୌ ହୋଇ ପାରିବ ନାହିଁ, ତାହା ବି ବାଦ୍ ଯାଉ ନଥିଲା । ଶିକ୍ଷକମାନଙ୍କର ଆଦର୍ଶ ପଠନ ଦୋଷଯୁକ୍ତ ଥିଲା । ଛାତ୍ରମାନଙ୍କର ହସ୍ତାକ୍ଷର ପ୍ରତି ବୈଜ୍ଞାନିକ ଦୃଷ୍ଟିକୋଣର ଉପଯୋଗ

ହେଉ ନ ଥିଲା । ଏହାପରେ ଅନେକ ପ୍ରକାର ଦୋଷ ତ୍ରୁଟି ମୋ ଆଖିକୁ ଆସିବାରୁ ମୁଁ ପୂର୍ବ ପରମ୍ପରା ଉଠାଇଦେଇ ନୂତନ ପ୍ରଣାଳୀରେ ଶିକ୍ଷାଦାନ ଆରମ୍ଭ କଲି ଓ କରାଇଲି । ଅନ୍ୟ ସ୍କୁଲର ଶିକ୍ଷକମାନଙ୍କ ସହ ଦେଖା ହେଲେ ମୁଁ ପ୍ରଚଳିତ ପ୍ରଣାଳୀ ବିରୁଦ୍ଧରେ ଯୁକ୍ତି କରୁଥିଲି ଓ ସେମାନେ ମୋ ଯୁକ୍ତିର ଉପାଦେୟତା ସ୍ୱୀକାର କରି ତାହା ଗ୍ରହଣ କରୁଥିଲେ । ମୁଁ ଯେତେଦିନ ସେଠାରେ ଥିଲି, ଅନନ୍ୟଚିତ୍ତ ହୋଇ ମୋର କର୍ତ୍ତବ୍ୟ କରୁଥିଲି ଏବଂ ଭବିଷ୍ୟତରେ ମୋର ରୁଚି ଅନୁକୂଳ ଚାକିରି ମିଳିବ ବୋଲି ଆଶା ପୋଷି ଆଶ୍ୱସ୍ତ ହେଉଥିଲି ।

ଥରେ ଜିଲ୍ଲାବୋର୍ଡ଼ର ଚେୟାରମାନ ୰ ଗୋପବନ୍ଧୁ ଚୌଧୁରୀ ବାଙ୍କି ଯାଇଥିଲେ । ମୁଁ ଯିବ୍ରି ଶିକ୍ଷକଙ୍କୁ ସଙ୍ଗରେ ନେଇ ତାଙ୍କୁ ଭେଟିଲି ଏବଂ ଆମ୍ଭମାନଙ୍କର କେତେକ ଦାବୀ ପ୍ରତି ତାଙ୍କର ସୁଦୃଷ୍ଟି ଆକର୍ଷଣ କଲି । ସେ ସଙ୍ଗେ ସଙ୍ଗେ ପ୍ରତ୍ୟେକ ସ୍କୁଲକୁ କାଳି, କଲମ, କାଗଜ ଖରଚ ବାବଦରେ ମାସିକ ତିନଟଙ୍କା ମିଳିବାର ବ୍ୟବସ୍ଥା କରିଥିଲେ ଏବଂ ଦରମା କଥା ପରେ ବିଚାର କରିଯିବ ବୋଲି ପ୍ରତିଶ୍ରୁତି ଦେଇଗଲେ । ସେତେବେଳେ ହେଡ୍ ପଣ୍ଡିତମାନଙ୍କର ଦରମା ପନ୍ଦର ଟଙ୍କା ଓ ସେକେଣ୍ଡ ପଣ୍ଡିତମାନଙ୍କର ବାରଟଙ୍କା ଥିଲା ।

ବାଙ୍କି ଯେତେବେଳେ ଖାସମହାଲ ଥିଲା ଏବଂ ଡେପୁଟି କଲେକ୍ଟର ଶ୍ରୀ ବିରେନ୍ଦ୍ରକୃଷ୍ଣ ଦାସ ଅଧିକାରୀ ଏମ୍. ଏ., କାବ୍ୟତୀର୍ଥ ତାହାର ସର୍ବମୟ କର୍ତ୍ତା ଥିଲେ । ଚେୟାରମ୍ୟାନଙ୍କ ସହ ଆମ୍ଭମାନଙ୍କର ଆଳାପ ଦିନ ସେ ବାଙ୍କିରେ ନ ଥିଲେ । କିଛି ଦିନପରେ ଗ୍ରୀଷ୍ମ ଛୁଟି ପଡ଼ିଲା । ଛୁଟିପରେ ସ୍କୁଲରେ ଯୋଗ ଦେବା ବେଳେ ଖଣ୍ଡିଏ ଲେଖାଏ କୈଫିୟତ ପତ୍ର ମିଳିଲା । ସେଥିରେ ଚେୟାରମ୍ୟାନଙ୍କ ସହ ସାକ୍ଷାତ ସମ୍ପର୍କରେ ମୋ ନେତୃତ୍ୱ ପ୍ରତି କଟାକ୍ଷପାତ କରାଯାଇଥିଲା ଏବଂ ଯେଉଁ ଶିକ୍ଷକମାନେ ପ୍ରଚଳିତ ଦରମାରେ ଅସନ୍ତୁଷ୍ଟ ହୁଅନ୍ତି, ସେମାନଙ୍କୁ ଚାକିରି ଛାଡ଼ି ଚାଲି ଯିବାକୁ ଧମକ ଦିଆ ଯାଇଥିଲା ।

ବିରେନ୍ଦ୍ର ବାବୁଙ୍କର ଏତାଦୃଶ ବ୍ୟବହାର ମୋ ହୃଦୟରେ ତୀକ୍ଷଣ ଆଲୋଡ଼ନ ସୃଷ୍ଟି କଲା । ବିଭାଗୀୟ କର୍ତ୍ତୃପକ୍ଷଙ୍କୁ ଦୁଃଖ ଜଣାଇ ତାହାର ପ୍ରତିକାର ପ୍ରାର୍ଥନା କରିବାର ଅଧିକାର ସବୁ କାଳରେ ସମସ୍ତ-

ଙ୍କର ଥାଏ ଓ ଇଚ୍ଛା ମଧ୍ୟ ସ୍ୱାଭାବିକ । ବିରେନ୍ଦ୍ରବାବୁ ପ୍ରକାଶ୍ୟ ପକ୍ଷରେ ଦୁଃସ୍ଥ ଶିକ୍ଷକମାନଙ୍କୁ ଏପରି ଅବମାନନା ଦେବାକୁ ଆରମ୍ଭ କଲେ, ମୁଁ ତାହା ବରଦାସ୍ତ କରି ପାରିଲି ନାହିଁ ଏବଂ ସେ ଯେତେ ବଡ଼ ହେଉନା କାହିଁକି ସେହିପରି ସାହସରେ ତାଙ୍କୁ ଅପଦସ୍ଥ କରିବା ପାଇଁ ଶପଥ ନେଲି ।

ସ୍କୁଲଘରଗୁଡ଼ିକର ଅସମ୍ପୂର୍ଣ୍ଣତା ଜନିତ ଶିକ୍ଷାଦାନରେ ବିଭ୍ରାଟ, ବାସଗୃହ ଅଭାବରୁ ଶିକ୍ଷକମାନଙ୍କ ଅସୁବିଧା ଏବଂ ବିରେନ୍ଦ୍ର ବାବୁଙ୍କ ହୃଦୟହୀନ ବ୍ୟବହାର ଯୋଗୁଁ ବାଧ୍ୟତାମୂଳକ ଶିକ୍ଷାର ସାଫଲ୍ୟରେ ଆଶଙ୍କା—ଏହିସବୁ ବିଷୟ ମୁଁ ବେକ୍‌ଠୋକ୍ ଭାବରେ ବର୍ଣ୍ଣନା କରି 'ଉତ୍କଳ ଦୀପିକା'ରେ ପ୍ରକାଶିତ ହେବା ପାଇଁ ଗୋଟିଏ ଲେଖା ପଠାଇ ଥିଲି । ତାହା ପାଇବା ପରେ ସମ୍ପାଦକ ମହୋଦୟ ଲେଖାରେ ପ୍ରକାଶିତ କେତେକ ଆପତ୍ତିଜନକ ଭାଷାର ପରିବର୍ତ୍ତନ ପାଇଁ ମୋର ଅନୁମତି ମାଗି ପତ୍ର ଲେଖିଲେ । ପତ୍ର ଖଣ୍ଡିକ ମୋ ହାତକୁ ଆସିବା ପୂର୍ବରୁ ଜଣେ ଶିକ୍ଷକ ତାହା ପାଇ ବିରେନ୍ଦ୍ର ବାବୁଙ୍କୁ ଆଗତୁରା ସମ୍ବାଦ ଦେଇ ଦେଲେ ।

ପତ୍ର ଖଣ୍ଡିକ ଯେଉଁ ଦିନ ପ୍ରକାଶିତ ହେଲା, ସେହି ଦିନ ଚର୍ଚ୍ଚିକା ବଜାରରେ ଚୋଟାଏ ହଇଚଇ ପଡ଼ିଗଲା । ମୁଁ ସାମାନ୍ୟ ଶିକ୍ଷକ ହୋଇ ଜଣେ ପ୍ରଭୂତ କ୍ଷମତାଶାଳୀ ଅଫିସରଙ୍କ ବିରୁଦ୍ଧରେ ଲେଖନୀ ଚଳାଇ ଥିବାରୁ ମସ୍ତବଡ଼ ଅପରାଧ କରିଛି ବୋଲି ସମସ୍ତେ ଦୋଷ ଦେଲେ ଏବଂ ସେଥିପାଇଁ ମୋର ସର୍ବନାଶ ହୋଇଯିବ ବୋଲି କେହି କେହି ମଧ୍ୟ କହିଲେ । ମୋର ଚାକିରିରେ ମୂଳ ନ ଥିଲା କି ଚୂଳ ନ ଥିଲା । ସୁତରାଂ ସର୍ବନାଶ ବୋଇଲେ ମୋର ଚାକିରି ଖଣ୍ଡିକ ଯିବ ବୋଲି ମୁଁ ସଫା ଜାଣି ପାରିଥିଲି ଏବଂ ସେଥିପାଇଁ ମଧ୍ୟ ମୋର ଭ୍ରୂକ୍ଷେପ ନ ଥିଲା ।

ମୁଁ ପତ୍ରିକାରେ ଲେଖିଥିଲି ବୋଲି ମୋତେ ଦୁଇ ତିନିଦିନ ଭିତରେ ପାଟପୁର ନାମକ ଦୂରବର୍ତ୍ତୀ ସ୍କୁଲକୁ ବଦଳି କରାଗଲା । ଏହି ସମୟରେ ବିରେନ୍ଦ୍ର ବାବୁ ଶିକ୍ଷକମାନଙ୍କୁ ପ୍ରଚଳିତ ସମୟଠାରୁ ବେଶୀ ସମୟ ଖଟାଇବାକୁ ଆଦେଶ ଦେଇ ସର୍କୁଲାର ଜାରି କଲେ । ତାଙ୍କର ଧାର୍ଯ୍ୟ ସମୟ ଆଇନ ସଙ୍ଗତ ନ ହେବାରୁ ମୁଁ ଏଜୁକେସନ କୋଡ୍‌ର ନିର୍ଦ୍ଦିଷ୍ଟ ଧାରା ଏବଂ ମନୋବିଜ୍ଞାନ ସମ୍ମତ ଯୁକ୍ତି ଉଦ୍ଧାର କରି ତାଙ୍କ ଆଦେଶ ପାଳନ କରିପାରିବି ନାହିଁ ବୋଲି ବିନୀତ ଭାବରେ ଜଣାଇ ଦେଲି ।

ଏହି ପାଟପୁର ପଣ୍ଡିତ ଗୋବିନ୍ଦ ରଥଙ୍କ ଜନ୍ମସ୍ଥାନ ରୂପେ ପ୍ରଖ୍ୟାତି ଲାଭ କରିଛି । ରଥ ମହାଶୟ ସେ ବେଳର ନର୍ମାଲ ଟ୍ରେନିଂ ପାସ୍ କରି-ଥିଲେ । ସେ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ସହ କଟକରେ ଯେଉଁ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିଥିଲେ, ତାହା ଆଜି ପ୍ୟାରୀମୋହନ ଏକାଡେମି ନାମରେ ପରିଚିତ । ସେ ବଡ଼ ସାହସୀ, ପରୋପକାରୀ ଓ ଅନ୍ୟାୟ-ଅସହିଷ୍ଣୁ ବ୍ୟକ୍ତି ଥିଲେ । ବାଙ୍କି ଖାସ୍‌ମାହାଲ ଥିଲା ଏବଂ ଶାସନକର୍ତ୍ତାମାନେ ପ୍ରଜାମାନଙ୍କ ଉପରେ ଭାରି ଅତ୍ୟାଚାର କରୁଥିଲେ । ସେ ହାକିମମାନଙ୍କ ବିରୁଦ୍ଧରେ ଆନ୍ଦୋଳନ କରି ଲୋକମାନଙ୍କ ଦୁଃଖର ଲାଘବ ଘଟାଇ-ଥିଲେ । ଶୁଣାଯାଏ, ସେ ତିନି ଜଣ ଡେପୁଟି କଲେକ୍ଟରଙ୍କ ବିରୁଦ୍ଧରେ ହାଇକୋର୍ଟରେ ମକଦ୍ଦମା ଦାଏର କରି ସେମାନଙ୍କୁ ଉଚିତ ଶିକ୍ଷା ଦେଇଥିଲେ ।

ମୁଁ ପାଟପୁର ସ୍କୁଲରେ କାର୍ଯ୍ୟ କରିବା ସମୟରେ ପଣ୍ଡିତ ରଥଙ୍କ ସମ୍ପର୍କରେ ଅନେକ ହାସ୍ୟରସାତ୍ମକ କଥା ଶୁଣିଥିଲି ଏବଂ ତାଙ୍କ ବୀରତ୍ୱବ୍ୟଞ୍ଜକ କାର୍ଯ୍ୟାବଳୀରେ ମୋର ଜୀବନ ପ୍ରଭାବିତ ହୋଇଥିଲା ।

ମୁଁ ପ୍ରଥମେ ଛୋଟ ସ୍କୁଲଟିରେ ଚାକିରି କରି ଭାଗ୍ୟକୁ ନିନ୍ଦୁଥିଲି ସତ୍ୟ, ମାତ୍ର ପରେ ରାଣୀ ଶୁକଦେଈ ଓ ପଣ୍ଡିତ ଗୋବିନ୍ଦ ରଥଙ୍କ ବିରାଟ ବ୍ୟକ୍ତିତ୍ୱ ଓ ନିର୍ମଳ ଦେଶପ୍ରେମରେ ଦୀକ୍ଷିତ ହେବାର ସୁଯୋଗ ପାଇଥିବାରୁ ଏବଂ ବିରେନ୍ଦ୍ର କୃଷ୍ଣ ଅଧିକାରୀଙ୍କ ଔଦ୍ଧତ୍ୟର ମୁକାବିଲା କରିବା ଭଳି ଶକ୍ତି ସଞ୍ଚୟ କରି ପାରିଥିବାରୁ ସେହି ଛୋଟ ସ୍କୁଲଟି ମୋ ପକ୍ଷରେ ଚିର ସ୍ମରଣୀୟ ହୋଇ ରହିଛି । ମୋର ଶିକ୍ଷକ-ଜୀବନର ପ୍ରାରମ୍ଭରେ ବାଙ୍କିରୁ ଯେଉଁ ବିପ୍ଳବର ଶିକ୍ଷା ପାଇ ବହିଷ୍କୃତ ହୋଇ ଆସିଲି, ତାହା ହିଁ ମୋର ଭବିଷ୍ୟତ ଜୀବନ-ସରଣୀରେ ପଥପ୍ରଦର୍ଶକ ପରି ସହାୟକ ହେଲା ।

କିଛି ଦିନ ପରେ 'ବିରେନ୍ଦ୍ର ବାବୁଙ୍କ ବିଚିତ୍ର ବିଗ୍ରହ' ଶୀର୍ଷକ ଆଉ ଗୋଟିଏ ଲେଖା ଉତ୍କଳ ଦୀପିକାରେ ପ୍ରକାଶ ପାଇଁ ପଠାଇଲି । ଲେଖାଟିର ବିଶେଷତ୍ୱ ଏହି ଯେ, ତହିଁରେ ବ୍ୟବହୃତ ପ୍ରତ୍ୟେକ ଶବ୍ଦର ମୂଳରେ 'ବ' ଅକ୍ଷର ଥିଲା । ତାହାକୁ ରଚନା କରିବା ପାଇଁ ମୋତେ ପ୍ରାୟ ତିନି ଚାରି ଦିନ ଲାଗିଥିଲା । ମୋର ମାମୁଁ ବାଲିଆ ଗୁରୁ ଟ୍ରେନିଂ ସ୍କୁଲର ହେଡ୍ ପଣ୍ଡିତ ଥିଲେ । ସେ ଲେଖାଟି ପଢ଼ି ମୋତେ ଚାକିରି ଛାଡ଼ି ପଳାଇ ଆସିବାକୁ ପତ୍ର ଦେଲେ ଏବଂ ନ ଆସିଲେ ମୋତେ ନିର୍ଯ୍ୟାତିତ

ହେବାକୁ ପଡ଼ିବ ବୋଲି ଆଶଙ୍କା ଥିବାର ସୂଚନା ଦେଇଥିଲେ । ମାତ୍ର ମୁଁ ତହିଁରେ କର୍ଣ୍ଣପାତ କଲି ନାହିଁ ।

ବରେନ୍ଦ୍ର ବାବୁ ଏଥର ଜାତକ୍ରୋଧ ହୋଇ ଉଠିଲେ ଏବଂ ମୋତେ ଚାକିରିରୁ ବରଖାସ୍ତ କରିବା ପୂର୍ବରୁ ମୋ ଉପରେ ଉତ୍ତମ ମଧ୍ୟମ ଚଳାଇବାର ବ୍ୟବସ୍ଥା କରୁଛନ୍ତି ବୋଲି ମୁଁ ସମ୍ବାଦ ପାଇଲି । ବରେନ୍ଦ୍ର ବାବୁ ବାଙ୍କି ହାଇସ୍କୁଲର ପ୍ରତିଷ୍ଠାତା ଥିଲେ । ସେ ସେହି ସ୍କୁଲର କେତେକ ପିଲାଙ୍କୁ ପ୍ରାଥମିକ ସ୍କୁଲ ଶିକ୍ଷକମାନଙ୍କ ଫୁଟ୍‌ବଲ୍ ମ୍ୟାଚ୍ ପାଇଁ ଆହ୍ୱାନ କରି ଖେଳ ଭିତରେ ମୋତେ ମାଡ଼ ଦେବାକୁ ସେମାନଙ୍କୁ ପ୍ରବର୍ତ୍ତାଇଲେ । ଶ୍ରୀ ଚଣ୍ଡେଶ୍ୱର ମିଶ୍ର ( ନୟାଗଡ଼ର ଭୂତପୂର୍ବ ଓକିଲ) ନାମରେ ହାଇସ୍କୁଲର ଏକାଦଶ ଶ୍ରେଣୀର ଛାତ୍ର ଜଣେ କବିତା ଲେଖି ମୋ ହାତ୍ର ସଂଶୋଧିତ କରାଇ ନେଉଥିଲେ । ଏଥିଯୋଗୁଁ ସେ ମୋତେ ଭଲ ପାଉଥିଲେ ଏବଂ ମୋ ବିରୁଦ୍ଧରେ ଚକ୍ରାନ୍ତ ମୋତେ ଆଗରୁ ଜଣାଇ ଦେଇଥିଲେ । ଏକଥା ଜାଣିପାରି ମୁଁ ସାବଧାନ ହେବାରୁ ମୋତେ ମାଡ଼ ଦେବା ଯୋଜନା ରୂପାୟିତ ହୋଇ ପାରିଲା ନାହିଁ ।

ଏହି ସମୟରେ ମୋର ହିତୈଷୀ ବନ୍ଧୁମାନେ ମୋତେ ଇସ୍ତଫା ଦେଇ ଚାଲିଆସିବାକୁ ଅନୁରୋଧ କଲେ । ମାତ୍ର ମୁଁ ତାହା ପସନ୍ଦ କଲି ନାହିଁ । ମୁଁ ବରଂ ବରଖାସ୍ତ ହେବି, ମାତ୍ର ଭୟରେ ପଳାଇ ଯିବି ନାହିଁ, ଏହାହିଁ ହେଲା ମୋର ବ୍ରତ । ବରେନ୍ଦ୍ର ବାବୁ ଶିକ୍ଷା ପରିଷଦର ସଭ୍ୟମାନଙ୍କ ସହ ପରାମର୍ଶ କରି ମୋତେ ଡ଼ିସ୍‌ମିସ୍ କରି ଦେଲେ ଏବଂ ମୁଁ ତହିଁରେ ଗୁରୁତ୍ୱ ନ ଦେଇ ନିର୍ବିଘ୍ନରେ ନେଉଟି ଆସିଲି ।

ସେତେବେଳେ ରାଧାଚରଣ ଦାସ କଟକ ଜିଲା ସ୍କୁଲ ସମୂହର ଇନ୍‌ସ୍‌ପେକ୍ଟର ଏବଂ ଗୋପବନ୍ଧୁ ଚୌଧୁରୀ ଜିଲା ବୋର୍ଡ଼ ଚେୟାରମ୍ୟାନ୍ ଥିଲେ । ପ୍ରଥମେ ସେମାନଙ୍କ ସହ ପରାମର୍ଶ କରିବାରୁ ସେମାନେ ମୋତେ ଅପିଲ୍ ଦାଏର୍ କରିବାକୁ ଉପଦେଶ ଦେଲେ । ମୁଁ ତାହା କଲି ଏବଂ ନିର୍ଦ୍ଦୋଷରେ ଖଲାସ ହେଲି । ମୋତେ ସେହି ସ୍କୁଲରେ ଯୋଗ ଦେବାକୁ ଆଦେଶ ମିଳିଲା, ମାତ୍ର ମୁଁ ଆଉ ପ୍ରାଥମିକ ସ୍କୁଲକୁ ଯିବାକୁ ଶ୍ରେୟସ୍କର ମନେ କଲି ନାହିଁ ।

———

# ଉତ୍କଳ ସାହିତ୍ୟ ପ୍ରେସ୍‌ରେ

ବାଙ୍କିରେ ବାଧ୍ୟତାମୂଳକ ପ୍ରାଥମିକ ସ୍କୁଲରେ ଅଧକ୍ଷ ବା ହେଡ୍ ପଣ୍ଡିତ କାର୍ଯ୍ୟ ମୋର ବାଞ୍ଛନୀୟ ନ ଥିଲା । ତେଣୁ ମୁଁ ନ୍ୟାୟ, ସତ୍ୟ ବା ଅହିଂସାର ବଳ କଷୁ କଷୁ ଅନ୍ୟାୟରେ ଚାକିରିରୁ ବରଖାସ୍ତ ହେଲେହେଁ ମୋ ମନରେ ଦୁଃଖ ନ ଥିଲା, ବରଂ ମୁଁ ଆନନ୍ଦ ଲାଭ କରିଥିଲି । ପରେ ଯେତେବେଳେ ମୋର ଅପିଲ୍ ବିଚାରରେ ମୁଁ ନିର୍ଦ୍ଦୋଷ ବୋଲି ପ୍ରମାଣିତ ହେଲି ଏବଂ ମୋତେ ପୁଣି ସେହି ସ୍କୁଲକୁ ଡାକରା ଆସିଲା, ସେତେବେଳେ ମୋର ଆନନ୍ଦ ବହୁ ଗୁଣରେ ବଢ଼ି ଯାଇଥିଲା । ହେଲେ, ମୁଁ ଆଉ ବାଙ୍କି ଯିବାକୁ ପ୍ରସ୍ତୁତ ନ ଥିଲି ।

ଘରେ ଯେତେ ଦିନ ବସି ରହିଲି, ଏଣେ ତେଣେ ଅନ୍ୟ ଚାକିରି ପାଇଁ ଦରଖାସ୍ତ ପକାଇଥିଲି । ଯେଉଁ ଦିନ ବାଙ୍କିକୁ ଫେରିଯିବା ପାଇଁ ଜିଲ୍ଲା ବୋର୍ଡର ପତ୍ର ପାଇଲି, ସେହି ଦିନ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଓ "ଉତ୍କଳ ସାହିତ୍ୟର" ସ୍ୱନାମଧନ୍ୟ ସମ୍ପାଦକ ସ୍ୱର୍ଗତ ବିଶ୍ୱନାଥ କରଙ୍କ ହାତ ଲେଖା ନିଯୁକ୍ତି ପତ୍ର ଗୋଟିଏ ଲେଖାଏ ମୋ ପାଖରେ ପହଞ୍ଚିଲା । ଏକା ଦିନକେ ତିନୋଟି ଚାକିରିର ସମ୍ଭାବନା ମୋର ନୈରାଶ୍ୟମୟ ପ୍ରାଣରେ କମ୍ ଆଶାର ସଞ୍ଚାର କରିନାହିଁ । ଏତେ ପଢ଼ି ପ୍ରାଥମିକ ସ୍କୁଲକୁ ଯିବା ମୋ ପକ୍ଷରେ ତ ସ୍ପୃହଣୀୟ ନ ଥିଲା । ତେଣୁ ସେ କଥା ଶୀଘ୍ର ପାସୋରି ପକାଇଲି ! ଉତ୍କଳମଣିଙ୍କ ନିଯୁକ୍ତି ପତ୍ରକୁ ମୁଁ ତିନ ଚାରିଦିନ ପର୍ଯ୍ୟନ୍ତ ପଢ଼ୁଥାଏ ଏବଂ ତାଙ୍କର ସ୍ୱାକ୍ଷର ମଧ୍ୟରେ ପବିତ୍ରଦ୍ରଷ୍ଟା ତାଙ୍କ ଋଷିପ୍ରତିମ ପ୍ରତିମାକୁ ବାରମ୍ବାର ଆଖି ଆଗକୁ ଆଣି ପୁଲକ ଲାଭ କରୁଥାଏ । ବନ୍ୟାଞ୍ଚଳରେ ଆର୍ତ୍ତ ଓ ବୁଭୁକ୍ଷୁଙ୍କ ସେବା କଲ୍ପେ ଏବଂ ବେକାର ଜୀବନକୁ ଉପାର୍ଜନକ୍ଷମ କରିବା ଉଦ୍ଦେଶ୍ୟରେ ସେ ମୋତେ ଆହ୍ୱାନ କରିଥାନ୍ତି । ସେଥିପାଇଁ ସୂତାକଟା ଶିଖାଇବାର ଯୋଗ୍ୟତା ଦରକାର ହେଉଥାଏ । ବାଙ୍କିରେ ଶିକ୍ଷକତା କଲାବେଳେ ବିଭାଗୀୟ ନିୟମରେ ବାଧ୍ୟ ହୋଇ ସୂତାକଟା କିଛି ଶିଖିଥାଏ ସତ୍ୟ, ମାତ୍ର ତାହା ଯେ ସୂତାକଟା ଶିକ୍ଷକ ହେବାପାଇଁ ଯଥେଷ୍ଟ ନୁହେଁ, ତାହା ମୁଁ ଭଲ

ରୂପେ ଜାଣିଥିଲି । ଏଣୁ ଦାୟିତ୍ୱ ବହନ କରି ଠକାଇବା ଶ୍ରେୟସ୍କର ହେବ ନାହିଁ ଜାଣି ସେ ଗୃକର ଆଶା ତ୍ୟାଗ କଲି ।

ବାକି ରହିଲା ଉତ୍କଳ ସାହିତ୍ୟ ପ୍ରେସରେ ପ୍ରୁଫ୍ ରିଡ଼ର କାମ । କଟକ ଟ୍ରେନିଂ ସ୍କୁଲରେ ଅଧ୍ୟୟନ କାଳରେ ପଣ୍ଡିତ ଶ୍ରୀ କୁଳମଣି ଦାଶ କାବ୍ୟତୀର୍ଥ ମୋର ପୂଜାସ୍ପଦ ଗୁରୁ ଥିଲେ । ସେ ଜ. ପ୍ରା. ପାସ୍ କରି କିଛି ଦିନ ପ୍ରାଇମେରୀ ସ୍କୁଲରେ ଶିକ୍ଷକତା କରିବା ପରେ ମଧ୍ୟ-ଭର୍ଣ୍ଣାକୁଲାର ସ୍କୁଲରେ ନାମ ଲେଖାଇଲେ । ତା ପରେ ସେ କଟକ ଟ୍ରେନିଂ ସ୍କୁଲରେ ପଢ଼ିଲେ ଏବଂ ସେଥିରୁ ଉତ୍ତୀର୍ଣ୍ଣ ହୋଇ ବାଲେଶ୍ୱର ଗୁରୁ ଟ୍ରେନିଂ ସ୍କୁଲରେ ହେଡ୍ ପଣ୍ଡିତ ହେଲେ । ଏ ପର୍ଯ୍ୟନ୍ତ ସେ ଇଂରାଜୀ ଆଦୌ ଜାଣି ନ ଥିଲେ । ଗୁରୁ ଟ୍ରେନିଂ ସ୍କୁଲରେ ଶିକ୍ଷକତା ସମୟରେ ସେ ବାହାର ଛାତ୍ର ଭାବରେ ଏଣ୍ଟ୍ରାନ୍ସ ଓ କାବ୍ୟତୀର୍ଥ ପରୀକ୍ଷାରେ କୃତକାର୍ଯ୍ୟ ହୋଇଥିଲେ । ତାଙ୍କୁ ଆଦର୍ଶ କରି ମୁଁ ବି ତାଙ୍କରି ପରି ପଣ୍ଡିତ ହେବି ବୋଲି ଆଶା ପୋଷଣ କରିଥିଲି । କଟକରେ ଗୃକଷ୍ଟ କଲେ ମାଟ୍ରିକ ଓ କାବ୍ୟତୀର୍ଥ ହେବା ପାଇଁ ମୋତେ ଅନୁକୂଳ ସୁଯୋଗ ମିଳିବ ବୋଲି ମୁଁ ଅତି ଆନନ୍ଦରେ ପ୍ରୁଫ୍ ରିଡ଼ର କାମ ଗ୍ରହଣ କଲି । ମାସିକ ଦରମା ପନ୍ଦର ଟଙ୍କା । ଟ୍ରେନିଂ ସ୍କୁଲରେ ପଢ଼ିବା ବେଳେ ମୁଁ ସଂସ୍କୃତ ପ୍ରଥମା ପରୀକ୍ଷାରେ ପ୍ରଥମ ବିଭାଗରେ ଉତ୍ତୀର୍ଣ୍ଣ ହୋଇ ମଧ୍ୟମା ଶ୍ରେଣୀରେ ନାମ ଲେଖାଇଥିଲି ଏବଂ ନିଜେ ନିଜେ ଇଂରାଜୀ ଆଲୋଚନା କରି ମୋ ଜ୍ଞାନ ବଢ଼ାଉଥିଲି ।

ସେତେବେଳେ ଉତ୍କଳ ସାହିତ୍ୟ ପ୍ରେସର ଖୁବ୍ ସୁନାମ ଥିଲା । ନିର୍ଭୁଲ ଓ ସୁନ୍ଦର ଛପା ପାଇଁ ବଡ଼ ବଡ଼ ଲେଖକ ଓ ସାହିତ୍ୟିକମାନେ ସେହି ପ୍ରେସ୍ ଉପରେ ନିର୍ଭର କରୁଥିଲେ । ପ୍ରେସର ସ୍ୱତ୍ୱାଧିକାରୀ ୰ ବିଶ୍ୱନାଥ କର ଜଣେ ଉଚ୍ଚକୋଟିର ସାହିତ୍ୟିକ ଓ ପ୍ରଗଲ୍ଭ ବକ୍ତା ଥିଲେ ଏବଂ ବିହାର ଓଡ଼ିଶା ବିଧାନସଭାକୁ ଅନୁନ୍ନତ ସମ୍ପ୍ରଦାୟ ପକ୍ଷରୁ ପ୍ରତିନିଧି ଭାବରେ ମନୋନୀତ ହୋଇଥିଲେ । ଏହି ପ୍ରେସରେ କାମ କଲେ ଉଚ୍ଚାଶା ପୂରଣ ଦିଗରେ ଆବଶ୍ୟକ ସାହାଯ୍ୟ ମିଳିବ ବୋଲି ମୁଁ ଚିନ୍ତା କରୁଥିଲି ।

୧୯୨୭ ମସିହାର ଶେଷ ଭାଗରେ ମୁଁ ଉକ୍ତ ପ୍ରେସରେ ମାସିକ ଟ ୧୫.୦୦ ଦରମାରେ ନିଯୁକ୍ତ ହେଲି । ୧୦ଟାରୁ ୫ଟା କାମ କରିବାର କଥା ପ୍ରାୟ ୬ ମାସ ପରେ ମୋର ଦରମା ଆଉ ଟ ୫.୦୦ ବଢ଼ିଲା । ଦରମା ବଢ଼ିବା ସଙ୍ଗେ ସଙ୍ଗେ ମୋର କାର୍ଯ୍ୟର ସମୟ ମଧ୍ୟ ବଢ଼ିଲା । କେବଳ ସମୟ ବଢ଼ିଥିଲେ ମୁଁ ଅସୁଖୀ ହୋଇ ନ ଥାନ୍ତି । ମୋର କାର୍ଯ୍ୟ ସମୟରେ ଅନିର୍ଦ୍ଦିଷ୍ଟତା ମୋତେ ବଡ଼ ବାଧିଲା । କେଉଁଦିନ ସକାଳ ସାତଟାରୁ ପ୍ରେସରେ ହାଜର ହେବାକୁ ପଡ଼ିଲା । ଦିନେ ଦିନେ ରାତିସାରା ଉଜାଗର ରହି କାମ କରିବାକୁ ପଡ଼ୁଥିଲା । ଏହାର ଫଳରେ, ଯେଉଁ ଦୁଇ ଟିକୋଟି ଟିଉସନ ଧରିଥିଲି, ସେଥିରେ ବ୍ୟାଘାତ ଘଟିଲା । ଯେତେ ପ୍ରକାର ମାନସିକ ଅଶାନ୍ତି ଘଟିଲେ ହେଁ ମୁଁ ଧୈର୍ଯ୍ୟ ଧରି ସବୁ ବରଦାସ୍ତ କରୁଥିଲି । କାରଣ ଚାକିରି ଖଣ୍ଡିକ ମୋ ପକ୍ଷରେ ମୂଲ୍ୟବାନ୍ ଥିଲା ।

ଯାହା କିଛି ଛପାହୁଏ, ତାହାର ପ୍ରୁଫ୍ ଦେଖି ସଂଶୋଧନ କରିବା କାମ ହେଲା ମୋର । ସାଧାରଣତଃ ଜିନିଷ ଛଡ଼ା ଉଚ୍ଚ କୋଟିର ସାହିତ୍ୟ, 'ଉତ୍କଳ ସାହିତ୍ୟ'ର ମାସିକ ସଂଖ୍ୟା ଓ ୰ ଗୋପାଳଚନ୍ଦ୍ର ପ୍ରହରାଜଙ୍କର "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷା କୋଷ" ଇତ୍ୟାଦି ସେତେବେଳେ ମୁଦ୍ରିତ ହେଉଥିଲା । ପାଣ୍ଡୁଲିପି ଅବସ୍ଥାରେ ନାନା ବହି ପଢ଼ି ମୁଁ ଆନନ୍ଦ ଲାଭ କରୁଥିଲି ଏବଂ ମୋର ଜ୍ଞାନର ମାନ ମଧ୍ୟ ବଢ଼ୁଥିଲା । ଓଡ଼ିଶାର ଗଣ୍ୟମାନ୍ୟ ସାହିତ୍ୟିକ ମାନେ ନିଜ ନିଜ ବହିର ତତ୍ତ୍ୱ ନେବା ପାଇଁ ଅନେକ ସମୟରେ ପ୍ରେସକୁ ଆସୁଥିଲେ । ସେମାନଙ୍କ ସହ ପରିଚୟ ଲାଭ ଏବଂ ନୂଆ ନୂଆ ବହି ପଢ଼ି କୌତୂହଳ ଚରିତାର୍ଥ କରିବାରେ ଯେଉଁ ଆନନ୍ଦ ପାଉଥିଲି, ତହିଁରେ ପ୍ରେସରେ ଅନିର୍ଦ୍ଦିଷ୍ଟ ଭାବରେ କାମ କରୁଥିବା ଯୋଗୁ ଯେଉଁ ଚିତ୍ତ ବିକ୍ଷେପ ଘଟୁଥିଲା, ତାହା ଦବି ଯାଉଥିଲା ।

"ଉତ୍କଳ ସାହିତ୍ୟର" ପ୍ରୁଫ୍ ମାନସବୁ ବିଶ୍ୱନାଥ ବାବୁ ନିଜେ ଦେଖୁଥିଲେ । ଏପରିକି ସେ ବିଧାନସଭାରେ ଯୋଗ ଦେବାପାଇଁ ପାଟନା ଗଲେ ପ୍ରୁଫ୍ ତାଙ୍କ ପାଖକୁ ପଠାଯିବା ପାଇଁ କଡ଼ାକଡ଼ି ନିର୍ଦ୍ଦେଶ ଥିଲା । ସେ ନିଜେ ପ୍ରୁଫ୍ ନ ଦେଖିଲେ ଭୁଲ୍ ରହିଯିବାର ଆଶଙ୍କା ତାଙ୍କ ମନରେ ଖେଳୁଥିଲା । ସେଥିପାଇଁ ଏପରି ବ୍ୟବସ୍ଥା । ସେତେବେଳେ ସ୍ୱର୍ଗତ ଜଗବନ୍ଧୁ ସିଂହଙ୍କର "ସୁବର୍ଣ୍ଣ ଦୃଷ୍ଟାନ୍ତ" ( A Book of Golden

Deeds ର ଅନୁବାଦ ' ବହି ଛପା ହେଉଥିଲା । ମୁଁ ପ୍ରୁଫ୍ ଦେଖିଲା ବେଳେ ପାଣ୍ଡୁଲିପିରେ ଅନେକ ଗୁରୁତର ଭ୍ରମାଦ ସବୁ ଥିବାର ବିଶ୍ୱନାଥ ବାବୁଙ୍କୁ ଦେଖାଉଥିଲି । ସେଥିରେ ସେ ଏକମତ ହେଉଥିଲେ ଏବଂ ଆବଶ୍ୟକ ସଂଶୋଧନ କରିଦେବା ପାଇଁ ମୋତେ କହୁଥିଲେ । ମୋର ସଂଶୋଧନ ତାଙ୍କର ମନଃପୂତ ହେଲା କି ନାହିଁ ଜାଣିବା ପାଇଁ ତାଙ୍କୁ ଦେଖାଉଥିଲି । ସେ ମୋର ଜ୍ଞାନର ପରିଚୟ ପାଇ ପ୍ରୀତ ହୋଇଥିଲେ । ଆଉ ଥରେ "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ"ର ପ୍ରୁଫ୍ ସଂଶୋଧନ ବେଳେ ମୁଁ ବିଶ୍ୱନାଥ ବାବୁଙ୍କର ତିନି ଚାରିଟା ବର୍ଣ୍ଣାଶୁଦ୍ଧି ପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲି । ସେ ଅବାକ୍ ହୋଇ ଯାଇଥିଲେ ଓ ସସ୍ମିତ ଇଙ୍ଗିତରେ ମୋର ଜ୍ଞାନର ତାରିଫ୍ କରିଥିଲେ । ମୋର ଜ୍ଞାନର ପରିଚୟ ପାଇବା ପରେ ବିଶ୍ୱନାଥ ବାବୁ 'ଉତ୍କଳ ସାହିତ୍ୟ'ର ପ୍ରୁଫ୍ ଆଉ ଦେଖିଲେ ନାହିଁ ।

ଟ୍ରେନିଂ ସ୍କୁଲରେ ଅଧ୍ୟୟନ ସମୟରେ "ବିବିଧ ଖେଳ ଶିକ୍ଷା" ନାମରେ ଖଣ୍ଡିଏ ବହି ଲେଖିଥିଲି । ତାହା ଏହି ସାହିତ୍ୟ ପ୍ରେସରେ ଛପାଇ ବିକ୍ରିଲବ୍ଧ ଧନ ହସ୍ତଗତ ହେବା ପରେ ପ୍ରେସର ଧାର ପରିଶୋଧ କରିଥିଲି । ସେତେବେଳକୁ ମୁଁ "ଦୟାନନ୍ଦ ସରସ୍ୱତୀ" ନାମରେ ବହି ଖଣ୍ଡିଏ ଲେଖୁଥାଏ । ଭୂତପୂର୍ବ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କର ପିତା ୰ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ମୁନସଫ୍ ଚାକିରିରୁ ଅବସର ଗ୍ରହଣ କରିବା ପରେ "ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ" ଗଢ଼ି ଓଡ଼ିଆ ବହି ସବୁ ପ୍ରକାଶ କରୁଥାନ୍ତି । ତାଙ୍କ ବହି ସବୁ ଉତ୍କଳ ସାହିତ୍ୟ ପ୍ରେସ୍‌ରେ ଛପା ହେଉଥାଏ । ସେଥିପାଇଁ ସେ ଅନେକ ସମୟରେ ପ୍ରେସକୁ ଆସନ୍ତି ଓ ବହିଗୁଡ଼ିକ ଯେପରି ନିର୍ଭୁଲ ଭାବରେ ଛପାହୁଏ, ସେଥିପ୍ରତି ଦୃଷ୍ଟି ଦେବାକୁ ମୋତେ ଅନୁରୋଧ କରନ୍ତି । ଏହି ସୂତ୍ରରେ ମୋର ଲକ୍ଷ୍ମୀନାରାୟଣ ବାବୁଙ୍କ ସହ ଘନିଷ୍ଠ ପରିଚୟ ଘଟିଲା ଏବଂ ସେ ମୋର 'ଦୟାନନ୍ଦ ସରସ୍ୱତୀ'କୁ ସଂଘ ତରଫରୁ ପ୍ରକାଶ କଲେ ।

ଲକ୍ଷ୍ମୀନାରାୟଣ ବାବୁ ବାଳଗଙ୍ଗାଧର ତିଳକଙ୍କ ପ୍ରଣୀତ ଓ ଜଗବନ୍ଧୁ ସିଂହଙ୍କ ଦ୍ୱାରା ଅନୂଦିତ "ଗୀତା ରହସ୍ୟ" ବହି ଖଣ୍ଡିକ ସଂଘ ତରଫରୁ ପ୍ରକାଶ କରିବା ପାଇଁ ଠିକ୍ କଲେ । ପାଣ୍ଡୁଲିପି ଭଲ ଅକ୍ଷରରେ

ଲେଖା ହୋଇ ନ ଥିଲା ଏବଂ ତହିଁରେ ନାନା ପ୍ରକାର ଭୁଲ ଭଟକା ମଧ୍ୟ ଥିଲା । ତାକୁ ସଂଶୋଧନ କରି ଓ ପୁଣି ଥରେ ଭଲ ଅକ୍ଷରରେ ଲେଖି ପ୍ରେସରେ ଦେବାକୁ ହେବ । ଏଥି ମଧ୍ୟରେ ଲକ୍ଷ୍ମୀନାରାୟଣ ବାବୁ ପରୋକ୍ଷରେ ଏବଂ ମୋ ସହ ପ୍ରତ୍ୟକ୍ଷ କଥାବାର୍ତ୍ତାରେ ମୁଁ ସେ କାମ କରି ଦେବାକୁ ସମର୍ଥ ହେବ ବୋଲି ଜାଣିଲେ ଏବଂ ମୋତେ ବହି ଖଣ୍ଡି କରି ଦାୟିତ୍ୱ ଦେଲେ । ସର୍ବ କଳେବର ସେହି ପାଣ୍ଡୁଲିପିକୁ ପ୍ରେସ ପାଇଁ ଉପଯୁକ୍ତ କରିବା ପାଇଁ ମୋତେ ପ୍ରାୟ ଛଅମାସ ଲାଗିଥିଲା ଓ ମୁଁ ମୋର ପାରିଶ୍ରମିକ ବାବଦରେ ପାଞ୍ଚଶ ଟଙ୍କା ପାଇଥିଲି ।

କଟକ ଟ୍ରେଡ଼ିଂ କମ୍ପାନୀ 'ପଞ୍ଚାମୃତ' ନାମରେ ମାସିକ ଶିଶୁ ପତ୍ରିକାଟିଏ ପ୍ରକାଶ କରୁଥିଲେ । ତାହା ଏହି ପ୍ରେସରେ ଛପା ହେଉଥିଲା ଏବଂ ମୁଁ ପ୍ରାୟ ପ୍ରତି ମାସରେ ସେଥିରେ ଲେଖା ଦେଉଥିଲି ।

ଉତ୍କଳ ସାହିତ୍ୟ ପ୍ରେସରେ ମୋର ଆର୍ଥିକ ଦିଗ ଯେତେ ଭଲ ନ ଥିଲେହେଁ ସାହିତ୍ୟ ସାଧନା ଦିଗରେ ମାନସିକ ପ୍ରଫୁଲ୍ଲତା ଓ ଉତ୍ସାହ ଯଥେଷ୍ଟ ଥିଲା । ତା ଛଡ଼ା ମୁଁ ଅଭ୍ୟାସ କରି ଇଂରାଜୀ ଖବର କାଗଜ ଓ ଇଂରାଜୀ ବହିସବୁ ନିଜେ ନିଜେ ପଢ଼ି ଜ୍ଞାନ ବଢ଼ାଉଥିଲି ।

ପ୍ରେସରେ ବର୍ଷେ ଖଣ୍ଡେ କାର୍ଯ୍ୟ କରିବା ପରେ ମୋର ପୁନର୍ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ସେଥିପାଇଁ ମୁଁ ସାତ, ଆଠ ଦିନ ଛୁଟି ନେଇ ଘରକୁ ଯାଇଥିଲି । ମାତ୍ର ପ୍ରାୟ ପନ୍ଦର ଦିନ ରହିଗଲି ।

ଦିନକର କଥା । ମୁଁ ପ୍ରେସରେ କାମ କରୁଥାଏ । ବିଶ୍ୱନାଥ ବାବୁ ଆସି ମେନେଜରଙ୍କ ସହ କଣ କଥାବାର୍ତ୍ତା କଲେ କେଜାଣି ଶେଷକୁ ମୋତେ ଲକ୍ଷ୍ୟକରି ଗୁଡ଼ିଏ ବକିଗଲେ । ତାଙ୍କ କହିବାର ସାରାଂଶ ହେଲା, ମନଇଚ୍ଛା ଘରକୁ ଯିବେ, ମନଇଚ୍ଛା ଆସିବେ । ଏଥିରେ କି କାମ ହେବ ? ଏହା ଶୁଣି ମୁଁ ଧୈର୍ଯ୍ୟ ଧରି ରହି ପାରିଲି ନାହିଁ । ଏକେତ, ପ୍ରେସରୁ ପାଉଥିବା ଦରମା କଟକ ସହରରେ ଭଲ ଭାବରେ ଚଳିବା ପାଇଁ ଯଥେଷ୍ଟ ନୁହେଁ । ପୁଣି କାର୍ଯ୍ୟ କରିବାର ନିର୍ଦ୍ଦିଷ୍ଟ ସମୟ ନ ଥିବାରୁ ଟିଉସନଟିଏ ଧରି କିଛି ଆୟ କରିବାର ସୁଯୋଗ ଘଟୁ ନ ଥାଏ । ସ୍ୱାଭାବିକତଃ ବିରକ୍ତି-ବିଧୁରତା ମୋର ପ୍ରତି ଶିରାରେ ଓତପ୍ରୋତ ଭାବରେ

ଜଡ଼ିତ ଥାଏ । ଏପରି ଅବସ୍ଥାରେ ସେ ଯାହା କହିଲେ, ତାହା ମୋତେ ଘରି ବାଧିଲା ଏବଂ ତାହାର ଯଥାର୍ଥ ଉତ୍ତର ଦେବାକୁ ମୋର ବିବେକ ବାଧ କଲା । ମୁଁ କହିଲି—ମୁଁ ମାତ୍ର କୋଡ଼ିଏ ଟଙ୍କା ପାଏ, କିନ୍ତୁ କେତେ ଘଣ୍ଟା ଖଟିବି, ତା'ର ଠିକଣା ନାହିଁ । ଆପଣଙ୍କର ଯେତେବେଳେ ଦରକାର ହେବ ସେତେବେଳେ ମୋତେ ଡାକିବେ । ମୋ ପାଇଁ ଏ ପର୍ଯ୍ୟନ୍ତ ଧରାବନ୍ଧା ରୁଟିନ ତିଆରି ହୋଇ ନାହିଁ । କମ୍ପୋଜିଟରମାନେ ଅଧିକା ସମୟ ଖଟିଲେ ଅଧିକା ପାଇବେ, ତାହା ସାଙ୍ଗକୁ ଜଳଖିଆର ବ୍ୟବସ୍ଥା ଅଛି । ମାତ୍ର ରାତିସାରା କାମ କରିବାକୁ ପଡ଼ିଲେ, ମୁଁ ଘରୁ ଖାଇ ଘୋଡ଼ା ଆଗରେ ଡିଏଁ । ଏପରି ସ୍ଥଳେ ମୁଁ ସାତଦିନ ଜାଗାରେ ପନ୍ଦର ଦିନ ଅନୁପସ୍ଥିତ ରହିଗଲେ, ମୋର କାହିଁକି ଅପରାଧ ହେବ ? ମୋତେ ଏ ଚାକିରି ପୋଷେଇବ ନାହିଁ । ମୁଁ ଯାଉଛି ।"

ମୋର କଥା ସରିଲା ବେଳକୁ ମୁଁ ଦାଣ୍ଡ ଦରଜା ଡେଇଁ ବାହାରେ ଠିଆ ହେଲିଣି । ଏହି ଘଟଣା ପରେ ବିଶ୍ୱନାଥ ବାବୁଙ୍କ ବଡ଼ ପୁଅ ମହାନନ୍ଦ କର ମୋ ବସାକୁ ଯାଇଁ ମୋର ଦରମା ପ୍ରଥମେ ତିରିଶ, ତା ପରେ ତିରିଶ ଟଙ୍କା ପର୍ଯ୍ୟନ୍ତ ବଢ଼ାଇ ଦେଇ ମୋତେ ପ୍ରେସକୁ ଯିବାକୁ ଅନୁରୋଧ କଲେ । ମାତ୍ର ମୁଁ ଆଉ ଛାପାଖାନା ଚାକିରି କରିବି ନାହିଁ ବୋଲି ସଂକଳ୍ପ କରି ସାରିଥିଲି ।

ମୁଁ ପ୍ରେସରେ ପ୍ରାୟ ଦୁଇବର୍ଷ ଥିଲି । ସେହି ସମୟରେ କୌଣସି ପ୍ରକାରେ ସମୟ କରି ମୁଁ ଯେଉଁ ତିନୋଟି ପିଲାଙ୍କର ଗୃହ ଶିକ୍ଷକ ଭାବରେ କାର୍ଯ୍ୟ କରୁଥିଲି, ସେମାନେ ଆଜି ଉଚ୍ଚପଦାରୂଢ଼ ହୋଇ ଥିବାରୁ ମୁଁ ସେମାନଙ୍କୁ ଚିହ୍ନାଇ ଦେବାକୁ ଗର୍ବ ଓ ଗୌରବ ଅନୁଭବ କରୁଅଛି । Public Service Commission Chairman ପଦରୁ ଅବସର ପ୍ରାପ୍ତ ଶ୍ରୀ ଗୋପବନ୍ଧୁ ମିଶ୍ର, ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ (State Institute of Education, Bhubaneswar) ର ଉପାଧ୍ୟକ୍ଷ ଶ୍ରୀ ପ୍ରାଣବନ୍ଧୁ କର, ଏ ଦୁହେଁ ମୋର ଗୁରୁଦେବ ୰ ସ୍ୱର୍ଗତ ଚିନ୍ତାମଣି କରଙ୍କର ଯୋଗ୍ୟ ସନ୍ତାନ ଅଟନ୍ତି । ମୁଁ ସେମାନଙ୍କୁ ପଢ଼ାଇବା ବେଳେ ସେମାନଙ୍କର ପ୍ରତିଭାର ଆଭାସ ପାଉଥିଲି । ମୋର ଅନ୍ୟତମ ଗୁରୁଦେବ ୰ କୃଷ୍ଣଚନ୍ଦ୍ର ସେନ୍ ଗୁପ୍ତଙ୍କର ପୁତ୍ର ୰ ରବୀନ୍ଦ୍ରନାଥ ସେନ୍‌ଗୁପ୍ତ M. B. B. S. (ଆମେରିକା

ଫେରନ୍ତା) ବୁର୍ଲା ମେଡ଼ିକାଲ କଲେଜର ଅଧ୍ୟାପକ ଥିଲେ । ଏ ଛନ୍ଦରେ କେତେବେଳେ କେମିତି ଦେଖା ହେଲେ, ମୋ ପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନରେ ତ୍ରୁଟି କରନ୍ତି ନାହିଁ ।

ଉତ୍କଳ ସାହିତ୍ୟ କ୍ଷେତ୍ରରେ କାର୍ଯ୍ୟ କରୁଥିବା ସମୟରେ ମୋର ମେସ୍ ଜୀବନ ସମ୍ବନ୍ଧରେ ସଂକ୍ଷେପରେ କିଛି ଲେଖିବାକୁ ଇଚ୍ଛା ହେଉଛି ।

ଆମେ ସାତ, ଆଠ ଜଣ ମିଶି ଗୋଟିଏ ମେସ୍ କରିଥାଉଁ । ମୋର ସହପାଠୀ ଦୁଇଜଣ, ସହପାଠୀ ଦ୍ୱୟଙ୍କର ଗାଆଁର କେତେ ଜଣ, ଯେଉଁ-ମାନେ କି ଅଦାଲତ କଲେକ୍ଟରୀରେ କିରାଣି କାମ କରୁଥାନ୍ତି—ଏହିମାନଙ୍କୁ ନେଇ ମେସ୍ ପରିବାର ଗଠିତ ହୋଇଥିଲା । ପୂଝାରୀ ଜଣେ ଥାଏ, ଆଉ ଜଣେ ସ୍ତ୍ରୀ ଲୋକ ଯଥା ସମୟରେ ଆସି ବାସନ ମାଜି ଦେଇଯାଏ । ଆମ ମେସ୍‌ର ବାବୁମାନେ ମାସକୁ କୋଡ଼ିଏ, ପଚିଶ ବା ତିରିଶ ଏହିପରି ଦରମା ପାଉଥାଉଁ । ଦରମା ସିନା ଅଳ୍ପ, କିନ୍ତୁ ମୋ ଛଡ଼ା ସମସ୍ତେ ନିଜକୁ ବଡ଼ ଅଫିସର ମନେ କରୁଥାଆନ୍ତି । ସେତେବେଳେ ଗୋଟିଏ ଗୋଟିଏ ପଇସାରେ ଦୁଇଟା ବରା, ତିନିଟା ଗୁଲୁଗୁଲା, ତିନିଖଣ୍ଡ ଭଙ୍ଗା ପାନ ମିଳୁଥିଲା । କେଉଁଦିନ ବରା, କେଉଁଦିନ ଗୁଲୁଗୁଲା, ଆମର ସକାଳୁଆ ଜଳଖିଆର ଜିନିଷ ଥିଲା । ପୂଝାରୀ ଯଦି ଏସବୁ ଜିନିଷ ବଜାରରୁ ଆଣିବାର ହେଳା କରେ, ବା ବଜାର ସଉଦା କରିବା କମ୍ବା ଖେଷାଇବାସରେ ତାହାର ସାମାନ୍ୟ ତ୍ରୁଟି ଦେଖାଯାଏ, ତେବେ ବାବୁମାନେ ଜଳ୍ପଣ ସାପପରି ଫଁ ଫଁ ହୁଅନ୍ତି ଏବଂ ତା ପ୍ରତି ମନଇଚ୍ଛା ବାକ୍ୟ ବାଣ ବୃଷ୍ଟି କରନ୍ତି ।

ଏଥିରେ କି ପୂଝାରୀ ଆଉ ରହେ ? ତେଣୁ ପ୍ରତି ମାସରେ ନୂଆ ନୂଆ ପୂଝାରୀଙ୍କ ଆଗମନ ସ୍ୱାଭାବିକ ହୋଇ ପଡ଼େ । ଗୋଟିଏ ଗଲା ମାନେ ତ ଆଉ ଜଣେ ଆସେନା, ମଝିରେ ତିନି ପାଞ୍ଚଦିନ ବା ସପ୍ତାହେ ଖଣ୍ଡେ ଫାଙ୍କା ପଡ଼େ । ସମସ୍ତେ ମିଳିମିଶି ବଜାର ସଉଦା ଓ ରୋଷେଇ ବାସ କରି ଦେବାପାଇଁ ମୁଁ ପ୍ରସ୍ତାବ ବାଢ଼େ । ତାହା ଅନୁମୋଦିତ ଓ ସମର୍ଥିତ ହୁଏ, ମାତ୍ର କାର୍ଯ୍ୟରେ ପରିଣତ ହୋଇପାରେ ନାହିଁ । ନାନା କାମର ଛଳନା କରି ସମସ୍ତେ ଅସଲ ବେଳରେ ଅନୁପସ୍ଥିତ ରହନ୍ତି । ମୁଁ ପୂଝାରୀ ଅବତାର ଗ୍ରହଣ କରେ ।

ଥରେ ମୁଁ ଖେଷେଇ କରୁଥାଏ । ଆମ ମେସ୍‌ର ଜଣେ ବାବୁ ଆସି ପହଞ୍ଚିଲେ । ମୁଁ ତାଙ୍କୁ କହିଲି, "ଯାଅ ତ ପଇସା କର ଲଙ୍କା ଆଣିବ ।" ସେ ମୁହଁଟା ଆମ୍ବିଳା କରି ଜୋତାରେ ଗୋଡ଼ ପୂରାଇବାକୁ ବସିଲେ । ଦୋକାନଟି ଆମ ବସା ପାଖରୁ ଶଏ ହାତ ଦୂରରେ । ମୁଁ ତାଙ୍କୁ ଅପେକ୍ଷା ନ କରି ଗାମୁଛା-ପିନ୍ଧା ଖୋଲା ଦେହ ଓ ହଳଦୀ ଗରଗର ହାତରେ ଦୋକାନରୁ ଜିନିଷ ଧରି ଚାଲି ଆସିଲି ।

ଆଉ ଥରେ ପ୍ରାୟ ପାଞ୍ଚଟା ବେଳେ ପରିବା କିଣିବା ପାଇଁ ବାହାରିଲି । ଲୁଗା ଖଣ୍ଡିକ ପିନ୍ଧିଥାଏ, ଦେହରେ ଗାମୁଛା ଘୋଡ଼ାଇ ହୋଇଥାଏ, ହାତରେ ଝୁଡ଼ି ଓହଳି ଥାଏ । ସାଙ୍ଗରେ ଚଲେ ସେହି ବାବୁ ଯେ କି ଲଙ୍କାମରିଚ କିଣିବାରେ ଅପାରଗ ହୋଇଥିଲେ । ସେ କହିଲେ— "ହେଃ, ଏମିତି ବେଶରେ ଯାଉଚୁ । ସମସ୍ତେ ଭାବିବେ ପୂଝାରିଟା ।" ମୁଁ କହିଲି— "କଟକ ସହରରେ ମୋ ଭଳି କ୍ଷୁଦ୍ର ଜୀବକୁ କେହି ପୂଝାରି ବୋଲି ସିଦ୍ଧାନ୍ତ କଲେ ମୋର କଣ କ୍ଷତି ହେବ, ମୁଁ ବୁଝି ପାରୁ ନାହିଁ ।"

ଯାଉଁ ଯାଉଁ ଜଣେ ଦୋକାନୀ ଡାକ ଦେଲା— "ହୋ ନନା, ଏଇଠିକି ଆସ ।" ସାଙ୍ଗ ଜଣକ କହିଲେ— "ଦେଖିଲୁ, ମୁଁ ଯାହା କହୁଥିଲି, ସତ ହେଲା କି ନାଁ । ସେ ନନା ବୋଲି ଡାକିଲା ତୋତେ ପୂଝାରି ମନେ କରି ।" ମୁଁ କହିଲି— "ମୁଁ ବ୍ରାହ୍ମଣ, ତେଣୁ ତା ହାର ନନା ଡାକିବା ଠିକ୍ ହୋଇଛି । ତତେ କାହିଁକି ଖରାପ ଲାଗୁଛି" ?

ସେହି ବାବୁମାନଙ୍କ ଘର କଟକ ସବ୍‌ଡିଭିଜନରେ ହୋଇ ଥିବାରୁ ତାଙ୍କର ଗାଁ ବାଲା, ପଡ଼ୋଶୀ ବା ବନ୍ଧୁବାନ୍ଧବ ବହୁତ ଲୋକ ମକଦ୍ଦମା ଉଦ୍ଦେଶ୍ୟରେ ଆସି ଆମ ବସାରେ ରହନ୍ତି । ଆମର ବାସନ ମଜାଳି ପ୍ରତିଦିନ ବାରଟା ବେଳେ ଆସିଥାଏ । ବସାରେ ଅଧିକା ଲୋକ ହେଲେ ଦଳେ ଖାଇ ସାରିବା ପରେ ଅନ୍ୟ ଦଳଙ୍କ ପାଇଁ ବାସନ ମାଜିବା ଦରକାର ପଡ଼େ । ମାଜିବ କିଏ ? ବସାର ବାବୁ ମାନେ ତ ବାବୁ । ତାଙ୍କର ଯିଏ ଆସନ୍ତି ସେ ବି ବାବୁ । ବାସନ ମଜାଳି ତ ଅବେଳରେ ଆସିବାର ନୁହେଁ । ତେଣୁ ଆମ ବାବୁମାନେ ପୂଝାରିକୁ ଇଙ୍ଗିତ କରନ୍ତି । ଯେଉଁ ସମୟର କଥା କହୁଛି, ସେତେବେଳକୁ ଯିଏ ପୂଝାରି ଥାଏ, ତାହାର

ବୟସ ଷାଠଏ ହେବ । ମୁଁ ତ ତାଙ୍କୁ ପିତୃତୁଲ୍ୟ ମନେ କରେ ଏବଂ ଘରକୁ ଆସିଲେ ବା ଘରୁ ଫେରିଲେ ତାଙ୍କୁ ନମସ୍କାର କରେ । ମୋ ଆଗରେ ସେ ଅଇଣ୍ଠା ବାସନ ମାଜିବେ, ଏହା କ ହୋଇପାରେ ? ମୁଁ ଉଠିପଡ଼ି ହୋଇ ବାସନ ମାଜିବାରେ ଲାଗିଯାଏ । ଆମ ବାବୁମାନେ ଦେଖନ୍ତି; ମାତ୍ର ସେମାନଙ୍କର ଭାବାନ୍ତର ଦେଖିବାକୁ ପାଏନା ।

ମୁଁ ବାବୁମାନଙ୍କର ଅପଥା ବାବୁପଣିଆ ଦେଖି ମନେ ମନେ ବିରକ୍ତ ହେଉଥାଏ ଏବଂ ସେମାନଙ୍କୁ ଛାଡ଼ି ଅନ୍ୟତ୍ର ଚାଲି ଯିବାକୁ ଭାବୁଥାଏ । ସେତେବେଳେ ଶ୍ରୀ କୁଳମଣି କର ଉତ୍କଳ ସାହିତ୍ୟ ପ୍ରେସର ମେନେଜର.ଥିଲେ । ସେ ମୋର ଅସୁବିଧା ଦେଖି ମୋତେ ତାଙ୍କ ବସାରେ ସ୍ଥାନ ଦେଲେ । ସେ ସସ୍ତ୍ରୀକ ରହୁଥିଲେ । ମୁଁ ପ୍ରାୟ ତିନି ଚାରିମାସ କାଳ ତାଙ୍କ ବସାରେ ବଡ଼ ଆରାମରେ କଟାଇଲି । ତାଙ୍କର ଶିଶୁପୁତ୍ର ରଜତ (ବର୍ତ୍ତମାନ ସ୍କୁଲ ଇନ୍‌ସପେକ୍ଟର) କୁ କାଖ ଓ ଗେଲ୍ କରିବାର ସୁଯୋଗ ଘଟିଥିଲା । ତା ପରେ ପ୍ରେସ ଚାକିରି ଛାଡ଼ି ମୁଁ ଘରମୁହାଁ ହେଲି ।

---

# କାନପୁର ମେଟକାଫ୍ ସ୍କୁଲ

ମୁଁ ଉତ୍କଳ ସାହିତ୍ୟ ପ୍ରେସରୁ ବିଦାୟ ନେଇ ଘରକୁ ଚାଲିଆସିଲି । ଅର୍ଥ ଚିନ୍ତା ମୋତେ ସବୁବେଳେ ବ୍ୟସ୍ତ କରୁଥାଏ । ଘରେ ପହଞ୍ଚିବାର ଅଳ୍ପ କେତେ ଦିନ ପରେ ମୁଁ କାନପୁର ମେଟକାଫ୍ ମି. ଇ. ସ୍କୁଲର ସେକ୍ରେଟାରୀ ଡାକ୍ତର ବ୍ରଜନାଥ ମିଶ୍ରଙ୍କ ପାଖକୁ ଖଣ୍ଡିଏ ପତ୍ର ଲେଖିଥିଲି । ମୁଁ ଚଣ୍ଡାମୁଣ୍ଡାଇରେ ମାଇନର ପଢ଼ିବାବେଳେ ବ୍ରଜବାବୁ ସେଠାରେ ଡାକ୍ତର ଥିଲେ ଏବଂ ଅସହଯୋଗ ଆନ୍ଦୋଳନ ବେଳକୁ ଚାକିରି ଛାଡ଼ି ଦେଇଥିଲେ । ମୋର ମାମୁଁ ଚଣ୍ଡାମୁଣ୍ଡାଇ ଗୁରୁ ଟ୍ରେନିଂ ସ୍କୁଲର ହେଡ୍-ପଣ୍ଡିତ ଥିବାରୁ ତାଙ୍କର ମାଧ୍ୟମରେ ବ୍ରଜବାବୁଙ୍କ ସହ ମୋର ବିଶେଷ ପରିଚିତି ଘଟିଥିଲା । ପତ୍ରରେ ମୋର ଆର୍ଥିକ ଦୁଃସ୍ଥିତି କଥା ତାଙ୍କୁ ଲେଖିଥିଲି ଓ ତାଙ୍କ ସ୍କୁଲରେ ଚାକିରି ଖାଲି ଥିଲେ ମୋର ନିଯୁକ୍ତି ପାଇଁ ଅନୁରୋଧ କରିଥିଲି । ସେ ମୋର ପତ୍ର ଯେଉଁଦିନ ପାଇଲେ, ସୌଭାଗ୍ୟକୁ ସେହିଦିନ ପରିଚାଳନା ସମିତିର ସଭା ବସିଥିଲା ଓ ତହିଁରେ ଜଣେ ଶିକ୍ଷକ ନିଯୁକ୍ତି ପ୍ରଶ୍ନ ବିଚାର କରିବାର ଥିଲା । ସେ ମୋ ପତ୍ର-ଖଣ୍ଡିକ ପଢ଼ି ସଭ୍ୟମାନଙ୍କୁ ଶୁଣାଇଦେଲେ ଏବଂ ସମସ୍ତେ ମୋର ଲିଖନ ଶୈଳୀରୁ ଚାରିତ୍ର୍ୟର ପରିଚୟ ପାଇ ମୋତେ ମନୋନୀତ କଲେ ବୋଲି ତାଙ୍କରି ଠାରୁ ଶୁଣିଥିଲି । ମୋ ପାଖକୁ ନିଯୁକ୍ତି ପତ୍ର ଆସିଲା, ମାତ୍ର ସେତେବେଳେ ବନ୍ଦୋବସ୍ତ କାର୍ଯ୍ୟ ଚାଲିଥିବାରୁ ମୁଁ ନିର୍ଦ୍ଦିଷ୍ଟ ତାରିଖରେ କାର୍ଯ୍ୟରେ ଯୋଗ ଦେଇ ପାରିଲି ନାହିଁ ।

ମୋର ଅତ୍ୟଧିକ ବିଳମ୍ବ ଦେଖି କମିଟି ଅନ୍ୟ ଜଣେ ଶିକ୍ଷକ ନିଯୁକ୍ତ କରିଦେଲେ । ଉକ୍ତ ଶିକ୍ଷକ ଶନିବାର ଦିନ କାର୍ଯ୍ୟରେ ଯୋଗ ଦେଇ ରବିବାର ଦିନ ଘରକୁ ଗଲେ ଏବଂ ନିଜର ଜିନିଷପତ୍ର ଧରି ସୋମବାର ଦିନ ଯଥା ସମୟରେ ପହଞ୍ଚିବେ ବୋଲି କହିଗଲେ । ମୁଁ ଏସବୁ କଥା କିଛି ଜାଣି ନ ଥିଲି । ରବିବାର ଦିନ ସ୍କୁଲରେ ପହଞ୍ଚି ହେଡ୍‌ମାଷ୍ଟରଙ୍କ ଠାରୁ ଶୁଣିବାକୁ ପାଇଲି । ସେ ବଡ଼ ଦୁଃଖିତ ହେଲେ

ଏବଂ ମୋତେ ଶିକ୍ଷକଭାବରେ ପାଇବା ପାଇଁ ସମସ୍ତେ ବଡ଼ ଆଶା କରିଥିଲେ ଓ ଦୀର୍ଘକାଳ ଅପେକ୍ଷା କଲେ ବୋଲି କହିଲେ । ମୁଁ କହିଲି, "ହେଉ ତେବେ ମୁଁ ଫେରି ଯାଉଛି ।" ହେଡ୍‌ମାଷ୍ଟର କହିଲେ, "ଆପଣ ରହିଯାନ୍ତୁ ଦେଖାଯିବ ।" ମୁଁ ପଳାଇ ଆସିବାକୁ ବ୍ୟସ୍ତ ହେଲେ ହେଁ ସେ ମୋତେ କୌଣସି ପ୍ରକାରେ ଛାଡ଼ିଲେ ନାହିଁ ।

ଜଣକୁ ନିଯୁକ୍ତି ଦେବା ପରେ ମୋତେ ପୁଣି ଅଟକାଇବାର ରହସ୍ୟ ମୁଁ ଜାଣି ପାରିଲି ନାହିଁ । ସୋମବାର ଦିନ ହେଡ୍‌ମାଷ୍ଟର ବାବୁ ମୋତେ ଷଷ୍ଠ ଶ୍ରେଣୀରେ ସାହିତ୍ୟ ପଢ଼ାଇବାକୁ କହିଲେ । ମୁଁ ଦୋଦୋପାଞ୍ଚ ହେଉଥାଏ । ଏ ପୁଣି କଉଁଳ କଥା । ମୁଁ ତ ନିଯୁକ୍ତି ପତ୍ର ପାଇ ନାହିଁ । ସେଥିପାଇଁ ଶ୍ରେଣୀକୁ ଯିବାକୁ ପଶ୍ଚାତ୍‌ପଦ ହେଉଥିଲି । ମାତ୍ର ସେ ମୋ ହାତ ଧରି ଟାଣିନେଇ ଏକ ପ୍ରହେଳିକା ସୃଷ୍ଟି କଲେ ।

ସେଦିନ ଘଣ୍ଟା ପର୍ଯ୍ୟନ୍ତ ବିଭିନ୍ନ ଶ୍ରେଣୀରେ ରୁଟିନ୍ ଅନୁସାରେ କାମ କଲି । ନିଯୁକ୍ତି ପାଇଥିବା ଶିକ୍ଷକ ସ୍କୁଲ ସମୟ ଭିତରେ ଆସି ପାରିଲେ ନାହିଁ । ତହିଁ ଆରଦିନ ମୁଁ ଗୋଟିଏ ନିଯୁକ୍ତି ପତ୍ର ପାଇଲି । ସେକ୍ରେଟାରୀଙ୍କ ସହ ପ୍ରଧାନ ଶିକ୍ଷକଙ୍କର ଏହିପରି କଥାବାର୍ତ୍ତା ହୋଇଥିଲା ଯେ, ନିଯୁକ୍ତି ପାଇଥିବା ଶିକ୍ଷକ ଯଥା ସମୟରେ ନ ପହଞ୍ଚିଲେ ତାଙ୍କୁ ନିରସ୍ତ କରାଯିବ । ସେ ଶିକ୍ଷକ ସୋମବାର ରାତିରେ କାଗଜପତ୍ର ଧରି ପହଞ୍ଚିଲେ, ମାତ୍ର ତାଙ୍କ ଅଡ଼ୁଆ ଭୁଲ ହୋଇଥିବାରୁ ତାଙ୍କୁ ବିଦାୟ ଦିଆଗଲା ।

ମୁଁ ଚାକିରିଟି ପାଇ ନିଶ୍ଚିନ୍ତ ହେଲି । ବିନା ଦରଖାସ୍ତରେ ଚାକିରି ମିଳିବା ଏବଂ ମୋର ଦକ୍ଷତା ଉପରେ ଅତିରିକ୍ତ ଆଶା ଓ ବିଶ୍ୱାସ ସ୍ଥାପନ କରି ସେକ୍ରେଟାରୀ ଓ ହେଡ଼ମାଷ୍ଟର ଉଭୟେ ମୋତେ ସ୍କୁଲରେ ସ୍ଥାନ ଦେବାପାଇଁ ବ୍ୟଗ୍ରତା ପ୍ରକାଶ କରିବା, ଏହି ଦୁଇଟି ଘଟଣା ମୋତେ ଐନ୍ଦ୍ରଜାଲିକ ବ୍ୟାପାର ବୋଧ ହେଲା । ମୁଁ ସେତେବେଳେ ଆନନ୍ଦ ଲାଭ କଲି ସତ୍ୟ, ମାତ୍ର ପରବର୍ତ୍ତୀ ଜୀବନରେ ମୁଁ ଏଥିପାଇଁ ଅନୁତାପ କଲି ଯେ, ମୋ ଯୋଗୁଁ ସେହି ଶିକ୍ଷକଙ୍କର ଦାନାପାଣିରେ ବ୍ୟାଘାତ ସୃଷ୍ଟି ହେଲା । ମୁଁ ସ୍ୱାର୍ଥତ୍ୟାଗ କରିଥିଲେ ସେ ସାମାନ୍ୟ ତ୍ରୁଟି ପାଇଁ ଚାକିରିରୁ ବଞ୍ଚିତ ହୋଇ ନ ଥାନ୍ତେ ।

ବାଙ୍କିରେ ବର୍ତ୍ତେକାଳ ପ୍ରାଥମିକ ସ୍କୁଲର ଶିକ୍ଷକ ହୋଇ ଶିକ୍ଷକ ସମାଜରେ ଆତ୍ମସମ୍ମାନ ଲାଗି ପ୍ରଭୂତ କ୍ଷମତାଶାଳୀ ବୀରେନ୍ଦ୍ରବାବୁଙ୍କ ସହ ସାରଭାବରେ ମୁକାବିଲା କରିଥିଲି ଏବଂ ପରିଣାମରେ ପ୍ରଥମେ ପରାଜୟ ଓ ପରେ ବିଜୟ ଲାଭ କରି ହୃଦୟ ଭିତରେ ବିପ୍ଳବର କ୍ଷେତ୍ର ପ୍ରସ୍ତୁତ କରିଥିଲି । ସେଠାରେ ଯାହା ସବୁ ଘଟିଲା, ତହିଁରୁ ମୁଁ ସ୍ପଷ୍ଟବାଦିତା, ସାହସ, ନିର୍ଭୟ ଓ ଆତ୍ମସମ୍ମାନ ଧନଠାରୁ ମହାର୍ଘ୍ୟ ବୋଲି ନିଜ କାର୍ଯ୍ୟରେ ପ୍ରମାଣିତ କଲି । ସାମ୍ବତ୍ୟ ପ୍ରେସରେ ପୁଣି ଅନୁରୂପ ଅବସ୍ଥାର ସମ୍ମୁଖୀନ ହେଲି ଏବଂ ଆତ୍ମସମ୍ମାନ ଲାଗି ଗୃହକଷ୍ଟରେ ଜଳାଞ୍ଜଳି ଦେବାକୁ ପଛେଇଲି ନାହିଁ ।

କାନପୁର । ଏଠାରେ ଗୃହକଷ୍ଟଲାଗି ବା ଆତ୍ମସମ୍ମାନ ଲାଗି କାହାରି ବିରୁଦ୍ଧରେ ବିପ୍ଳବ କରିବା ଆବଶ୍ୟକ ହୋଇନାହିଁ । ବିପ୍ଳବ ଘଟିଛି ଅନ୍ତର ମଧ୍ୟରେ, କର୍ତ୍ତବ୍ୟ ଅକର୍ତ୍ତବ୍ୟ ମଧ୍ୟରେ, ବିବେକ ଓ ଅବିବେକ ମଧ୍ୟରେ । ଯଦ୍ଦ୍ୱାରା ମୁଁ ବିଶେଷ ପରିମାଣରେ ଉପକୃତ ହୋଇଛି ପରବର୍ତ୍ତୀ ଜୀବନରେ । କେବେହେଲେ ମୁଁ ଗତାନୁଗତିକତାକୁ ଜାବୁଡ଼ି ଧରି ନାହିଁ କି ଶୁଷ୍କ ପରମ୍ପରାରେ ଭାସି ଯାଇ ନାହିଁ । ସବୁବେଳେ ସ୍ଥାନ କାଳପାତ୍ର ବିଚାର କରି କର୍ତ୍ତବ୍ୟରେ ଅଗ୍ରସର ହୋଇଛି । ଏହାକୁ ମୁଁ ମାନସିକ ବିପ୍ଳବ ବୋଲି କହୁଛି । ମୋର ଅନ୍ତର୍ବିପ୍ଳବର ଅଭ୍ୟୁତ୍ଥାନ ଘଟିଲା ଏହି କାନପୁର ସ୍କୁଲରେ । ଏଇଠି ମୋର ଭବିଷ୍ୟତ ଜୀବନର ଘଟଣା-ବହୁଳତା ଦାନ୍ଦି ବାଟ ଫିଟିଥିଲା । ଏହିଠି ମୋର ରାଜନୈତିକ ଓ ସାମାଜିକ କ୍ରିୟା କଳାପର ମୂଳଭିତ୍ତି ଗଠିତ ହୋଇଥିଲା । ଏହିଠାରେ ମୁଁ ଦୁଃସାଧ୍ୟ ଶୂଳବେଗର ଶିକାର ହୋଇଥିଲି, ପୁଣି ବିନା ଔଷଧରେ ରୋଗ ଉପଶମ କରିବାର ମନ୍ତ୍ର ଶିଖି ଚରିତାର୍ଥ ପାଇଁ ନିୟମସ୍ଥ ହୋଇଥିଲି । ଭାବୀ ଜୀବନରେ ଜଣେ ନିଷ୍ଠାପର କର୍ମୀଭାବରେ ନିଜକୁ ପରିଚୟ କରାଇବାର ଯେଉଁ ସୌଭାଗ୍ୟ ମୁଁ ଅର୍ଜନ କରିଥିଲି, ତାହା କାନପୁର ଜଳବାୟୁରେ ଅଙ୍କୁରିତ ହୋଇଥିଲା । ଏହିସବୁ କାରଣରୁ କାନପୁର ମୋ ଜୀବନର ଚେତନାକେନ୍ଦ୍ର ଓ ଭାଗ୍ୟବିଧାତା ଭାବରେ ମୋର ସ୍ମୃତି-ସିଂହାସନରେ ଅଧିଷ୍ଠିତ ହୋଇ ରହିଛି ଏବଂ ଆଜୀବନ ରହିଥିବ ।

ମୁଁ ଏହି ସ୍କୁଲରେ ସାହିତ୍ୟ, ଗଣିତ, ଜ୍ୟାମିତି ଓ ଭୂଗୋଳ ପଢ଼ାଉଥିଲି । ପ୍ରଥମ ଦିନର ଅଧ୍ୟାପନାରେ ମୁଁ ମୋର ଦୁର୍ବଳତା ବୁଝିବାର ସୁଯୋଗ ପାଇଲି ଏବଂ ଛାତ୍ରମାନେ ଯେ ମୋତେ ଚାହେଁ କରୁ ନ ଥିବେ, ତାହା ଆଶଙ୍କା କରୁଥିଲି । ଏପରି ଆଶଙ୍କାଦ୍ୱାରା ମୋର ଏହି ଉପକାର ହେଲା ଯେ, ମୁଁ ବିନା ପ୍ରସ୍ତୁତିରେ ଶ୍ରେଣୀକୁ ନ ଯିବା ପାଇଁ ସଂକଳ୍ପ କଲି । ମୋର ଇଚ୍ଛା ହେଉଥାଏ, ପିଲାଏ ମୋତେ ଜ୍ଞାନୀ ବୋଲି ଜାଣନ୍ତୁ ଏବଂ ମୋତେ ଭଲ ପଢ଼ାଇ ଆସେ ବୋଲି ପ୍ରଚାର କରନ୍ତୁ ।

ଏହି କାମନାର ବଶବର୍ତ୍ତୀ ହୋଇ ମୁଁ ଅବସର ସମୟରେ ପଢ଼ାଇବାକୁ ଥିବା ବିଷୟ ସମ୍ପର୍କରେ ବିଶଦ ଆଲୋଚନା କରିବାକୁ ଲାଗିଲି ଏବଂ ଦୁଇ ତିନି ମାସ ଭିତରେ ଛାତ୍ରମାନଙ୍କ ମଧ୍ୟରେ ମୋ ସମ୍ବନ୍ଧରେ ଭଲ ଧାରଣା ଜାତ ହୋଇଥିବାର ଲକ୍ଷ୍ୟ କଲି । ସେତେବେଳକୁ ମୋ ପ୍ରଣୀତ 'ବିବିଧ ଖେଳ ଶିକ୍ଷା', 'ନେପୋଲିୟନ' ଓ 'ଦୟାନନ୍ଦ ସରସ୍ୱତୀ' ପ୍ରକାଶିତ ହୋଇ ସାରିଥିଲା । ଛାତ୍ରମାନେ ଯେତେବେଳେ ଏ କଥା ଜାଣିଲେ, ସେମାନଙ୍କ ହୃଦୟରେ ମୋ ପ୍ରତି ଅସୀମ ସ୍ନେହ ଓ ଭକ୍ତିର ଉଦ୍ରେକ ହେଲା । କିନ୍ତୁ ଏଥିରେ ବିଚଳିତ ହୋଇଥିଲେ ସ୍କୁଲର ହେଡ଼ପଣ୍ଡିତ ୰ ଆନନ୍ଦ ଚନ୍ଦ୍ର ମିଶ୍ର । ସେ ଈର୍ଷାନ୍ୱିତ ହୋଇ ମୋର ଛାତ୍ରପ୍ରିୟତାକୁ ନଷ୍ଟ କରିବା ପାଇଁ ଚେଷ୍ଟା କଲେହେଁ ତାଙ୍କୁ ନିରାଶ ହେବାକୁ ପଡ଼ିଥିଲା ।

ଥରେ ସ୍କୁଲର ପୁରସ୍କାର ବିତରଣ ଉତ୍ସବ ପାଇଁ ପ୍ରଧାନ ଶିକ୍ଷକ ମୋତେ ଦୁଇଟି ଗୀତ ଲେଖିବାକୁ କହିଲେ । ମୋ ରଚିତ ଗୀତ ଗାନ କରାଗଲା । ସ୍କୁଲର ହେଡ଼ପଣ୍ଡିତ ମୁଁ କାହିଁକି ଗୀତ ଲେଖିଲି ବୋଲି ମୋ ସଙ୍ଗରେ କଳହ ଆରମ୍ଭ କରିଦେଲେ । ମୁଁ ପ୍ରଧାନ ଶିକ୍ଷକଙ୍କ ଆଦେଶ ପାଳନ କରିଛି । ତେଣୁ ସେ ପ୍ରଧାନ ଶିକ୍ଷକଙ୍କୁ କୈଫିୟତ ମାଗନ୍ତୁ କହି ସେ ସ୍ଥାନରୁ ଚାଲିଯିବାରୁ ରକ୍ଷା ପାଇଥିଲି । କେତେକ ସେ ନିଜର ମହତ୍ତ୍ୱ ପଦାରେ ପକାଇବା ସଙ୍ଗେ ସଙ୍ଗେ ମୋର ମର୍ଯ୍ୟାଦାକୁ ମଧ୍ୟ ଦୂଷିତ କରିଥାନ୍ତେ ।

ସେତେବେଳେ ହଷ୍ଟେଲରେ ପ୍ରାୟ ପଚିଶ ଜଣ ପିଲା ରହୁଥିଲେ । ମୁଁ ଥିଲି ସୁପରିଣ୍ଟେଣ୍ଡେଣ୍ଟ୍ ବା ତତ୍ତ୍ୱାବଧାରକ । ମୋ

ସ୍କୁଲ୍ର ପିଲାମାନେ ଜାତି ଅନୁସାରେ ପୃଥକ୍ ଘରରେ ବସି ଭୋଜନ କରୁଥିଲେ । ମୁଁ କିନ୍ତୁ ସେ ପ୍ରଥା ସମର୍ଥନ ନ କରି ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ଏକତ୍ର ବସିବା ପାଇଁ ବୁଝାଇ ଦେଲି । ହଷ୍ଟେଲରେ ହରିଜନ ଓ ମୁସଲମାନ ପିଲା ମଧ୍ୟ ଥିଲେ । ମୁଁ ଦେଖିଲି, ମୋର ପ୍ରସ୍ତାବ ସମସ୍ତଙ୍କୁ ଭଲ ଲାଗିଲା । କେହି ହେଲେ ପ୍ରତିବାଦ କଲେ ନାହିଁ । ଏ ଘଟଣା ହଷ୍ଟେଲରେ ରହୁଥିବା ତଥାକଥିତ ନୈଷ୍ଠିକ ବ୍ରାହ୍ମଣ ଶିକ୍ଷକ ଆନନ୍ଦ ବାବୁଙ୍କର ମନଃପୂତ ହେଲା ନାହିଁ । ସେ କେତେକ ପିଲାଙ୍କୁ ଶିଖେଇ ଗୋଟିଏ ପୃଥକ୍ ମେସ୍ କଲେ ଏବଂ ନବାଗତ କେତୋଟି ପିଲାଙ୍କୁ ହଷ୍ଟେଲରେ ସ୍ଥାନ ଦେଇ ତାଙ୍କୁ ଦଳଭୁକ୍ତ କଲେ ।

ଯେହେତୁ ମୁଁ ସୁପରିଣ୍ଟେଣ୍ଡେଣ୍ଟ୍ ଓ ସେ ଶିକ୍ଷକ, ମୋ ବିନାନୁମତିରେ ନୂଆ ପିଲାଙ୍କୁ ହଷ୍ଟେଲରେ ରଖିବା ଓ ସ୍ୱତନ୍ତ୍ର ମେସ୍ କରିବା ମୋର ଚକ୍ଷୁଶୂଳ ହେବାର କଥା । ବିଶେଷତଃ ତାଙ୍କର ଜାତିଭେଦ ଭିତ୍ତିକ କାର୍ଯ୍ୟ ମୋ ପକ୍ଷରେ ଅସହ୍ୟ ହୋଇ ଉଠିଲା । ସ୍ୱତନ୍ତ୍ର ମେସ୍ ଗଢ଼ିଥିବା ପିଲାଙ୍କୁ ଡାକି କହିଲି ଯେ, ସେମାନେ ହୁଏତ ମୋ ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରନ୍ତୁ, ନଚେତ୍ ହଷ୍ଟେଲ ଛାଡ଼ି ଚାଲିଯାନ୍ତୁ । ସ୍ୱତନ୍ତ୍ର ମେସ୍ ପାଇଁ ଅନୁମତି ଦିଆଯାଇ ପାରିବ ନାହିଁ । ମୋର ଏହି କଥା ପାଖ କୋଠରୀରେ ସେହି ଶିକ୍ଷକ ଶୁଣିଲେ ଏବଂ ଅତ୍ୟନ୍ତ ରାଗାନ୍ୱିତ ହୋଇ, ମୋ ପାଖକୁ ଦୌଡ଼ିଆସି ଅଯଥା ଯୁକ୍ତି ତର୍କରେ ଆକାଶ ଫଟାଇଲେ । ବାହାର ଲୋକେ ଏବଂ ଉପସ୍ଥିତ ଥିବା ଛାତ୍ରମାନେ ଆମ ଦୁହିଁଙ୍କ କଳହ ଦେଖିଲେ ମୁହଁରେ ଲୁଗା ଦେଇ ହସିବେ ଏବଂ ଆମର ବ୍ୟକ୍ତିତ୍ୱ ଉପରେ ବାଧା ଆସିବ, ଏହା ବିଚାରି ମୁଁ ତାଙ୍କ ଗୋଡ଼ତଳେ ପଡ଼ି କହିଲି--ଆପଣ ଏଠାରୁ ଚାଲି ଯାଆନ୍ତୁ । ପାଟି କରନ୍ତୁ ନାହିଁ । ଉତ୍ତପ୍ତ ତାଳରେ ତେଲ ପଡ଼ିଲା ପରି ସେ ଶାନ୍ତ ହୋଇଗଲେ । ତାପରେ ମୁଁ କହିଲି, "ଆପଣଙ୍କ ପଣ୍ଡିତଙ୍କ ନିକଟରେ ମୁଁ ମୁଣ୍ଡ ନୁଆଁଇଲି, ଏକଥା ମନେ ରଖନ୍ତୁ ।"

ଏ ଘଟଣା ଏତିକରେ ସରିଲା ନାହିଁ । ସେ ପରିଚାଳନା ସମିତିରେ ମୋ ବିରୁଦ୍ଧରେ ଦରଖାସ୍ତ କଲେ । ମୁଁ ସଭ୍ୟମାନଙ୍କୁ କହିଲି—"ବରଂ ମୁଁ ସୁପରିଣ୍ଟେଣ୍ଡେଣ୍ଟ ପଦ ଛାଡ଼ି ଦେବି । ମାତ୍ର ପିଲାମାନଙ୍କୁ ସଙ୍କୀର୍ଣ୍ଣତା

ଶିଖାଇ ପାରିବ ନାହିଁ । ସଭ୍ୟମାନେ ମୋର କାର୍ଯ୍ୟକୁ ସମର୍ଥନ କଲେ । ସ୍ୱତନ୍ତ୍ର ମେସ୍ ଭାଙ୍ଗି ଦିଆଗଲା ।

ହଷ୍ଟେଲ ପିଲାମାନେ ପ୍ରତି ମାସରେ ମୁଣ୍ଡପିଛା କରିକି ବାରସେର ଚାଉଳ ଓ ଅଢ଼େଇ ଟଙ୍କା ଦେଉଥିଲେ । ଚାଉଳ ଠିକମତ ଆଦାୟ ହୁଏ, ମାତ୍ର ସମସ୍ତେ ନିୟମିତ ଭାବରେ ଟଙ୍କା ଦେଇ ପାରନ୍ତି ନାହିଁ । ଖାଦ୍ୟ, ପୋଷାକ ଓ ବେଶଭୂଷା, ସବୁଥିରେ ମୁଁ ଆଡ଼ମ୍ବର-ଶୂନ୍ୟ । ତେଣୁ ପିଲାମାନେ ମଧ୍ୟ ମୋରି ପରି ହୁଅନ୍ତୁ ବୋଲି ମୋର ମତ ହେବା ସ୍ୱାଭାବିକ । କେଉଁ ଦିନ ଡାଲି ତରକାରି, କେଉଁ ଦିନ ଡାଲମା, ପୁଣି କେବେ ଖାଲି ଡାଲି ବା ତରକାରିରେ ଚଳିଯିବା ପାଇଁ ମୁଁ ବ୍ୟବସ୍ଥା କରିଥାଏ । ହେଡ୍‌ମାଷ୍ଟର ଓ ତାଙ୍କର ଦୁଇଟି ପୁଅ ଏବଂ ହେଡ୍‌ପଣ୍ଡିତ ଓ ତାଙ୍କର ଦୁଇଟି ପୁଅ ହଷ୍ଟେଲରେ ରହୁଥିଲେ । ଉଭୟଙ୍କଠାରେ ମେସ୍ ବାକି ଅପେକ୍ଷାକୃତ ଅଧିକ ଥାଏ । ଦିନେ କେବଳ ଡାଲି ହୋଇଥିଲା । ହେଡ଼ମାଷ୍ଟର ତାହା ଦେଖି ମୋତେ ତରକାରି ହୋଇ ନ ଥିବାର କାରଣ ପଚାରିଲେ । ମୁଁ ଟଙ୍କାର ଅଭାବ କଥା ଜଣାଇଲି । ସେ ମନେ କଲେ, ମୁଁ ବୋଧ ହୁଏ ମେସ୍ ଟଙ୍କା ନିଜ କାର୍ଯ୍ୟରେ ଲଗାଇ ଦେଇ ପିଲଙ୍କୁ ହଇରାଣ କରୁଛି । ତେଣୁ ସେ ମେସ୍‌ର ଜମା ଖରଚ ଖାତା ଦେଖିବାକୁ ଚାହିଁଲେ । ଦେଖାଗଲା, ଆୟରୁ ବ୍ୟୟ ବେଶୀ ହୋଇଛି ଏବଂ ସେହି ଅଧିକ ଟଙ୍କା ମୁଁ ମୋ ହାତରୁ ଦେଇଛି । ତେଣୁ ସେ କହିଲେ, "ବାକିଦାର ପିଲାଙ୍କୁ ବାହାର କରି ଦେଉ ନାହାଁନ୍ତି କାହିଁକି ?" ମୁଁ ଉତ୍ତର ଦେଲି, "ଯଦି ବାହାର କରି ଦେବାକୁ ପଡ଼ିବ, ତେବେ ଆଗେ ଆପଣ ଦୁଇ ପୁତ୍ରଙ୍କ ସହ ଓ ତାପରେ ହେଡ୍‌ପଣ୍ଡିତ ମହାଶୟ ଦୁଇ ପୁତ୍ରଙ୍କ ସହ ବାହାରିଯିବା ଉଚିତ । କାରଣ ଆପଣ ଦୁଇଜଣ ସର୍ବାଧିକ ବାକି କରି ବସିଛନ୍ତି ।"

ଶ୍ରୀ ବ୍ରଜବନ୍ଧୁ ଦାଶ ପ୍ରଧାନ ଶିକ୍ଷକ ଥିଲେ । ସେ ଯେପରି କ୍ଷମା, ସେହିପରି ଜଣେ ଆଦର୍ଶବାଦୀ ଶିକ୍ଷକ ଥିଲେ । ମୋ କଥାର ମୂଲ୍ୟବତ୍ତା ଓ ଗୁରୁତ୍ୱ ବୁଝି ସେ ନୀରବରେ ଚାଲିଗଲେ ଏବଂ ସେହିଦିନ ସଞ୍ଜବେଳକୁ ତାଙ୍କର ସମସ୍ତ ଦେୟ ଦେଇ ଦେଲେ । ହେଡ଼ପଣ୍ଡିତ ମହାଶୟ ଶୁଣି ନ ଶୁଣିଲା ପରି ରହିଲେ । ହେଡମାଷ୍ଟରଙ୍କ ବିଚାରଶୀଳତା ମୋତେ ଖୁବ୍ ଆନନ୍ଦ ଦେଇଥିଲା ।

ବ୍ରଜବନ୍ଧୁ ବାବୁ ଆଇ. ଏ. ପାସ୍ କରି ନଥିବାରୁ ତାଙ୍କୁ ସ୍କୁଲରୁ ବିଦାୟ ନେବାକୁ ପଡ଼ିଲା । ତାପରେ ସେ 'ସାରସ୍ୱତ ଭଣ୍ଡାର' ନାମକ ବହି ଦୋକାନରେ ଚାକିରି କଲେ । କିଛି କାଳ ପରେ ସେ ରାଣୀହାଟରେ ନିଜର ଗୋଟିଏ ବହି ଦୋକାନ ଖୋଲିଲେ । ସେ ୪ର୍ଥ ଶ୍ରେଣୀଠାରୁ ୭ମ ଶ୍ରେଣୀ ପର୍ଯ୍ୟନ୍ତ ଇଂରାଜୀରେ ଟ୍ରାନ୍ସଲେସନ ବହି ଏବଂ ୬ଷ୍ଠ, ୭ମ ଶ୍ରେଣୀ ପାଇଁ ଇଂରେଜୀରେ ପ୍ରବନ୍ଧ ବହି ଲେଖିଥିଲେ । ତାଙ୍କ ପ୍ରଣୀତ ବହିଗୁଡ଼ିକ ସେତେବେଳେ ଖୁବ ଉପାଦେୟ ହୋଇଥିଲା ।

ତାଙ୍କ ପରେ ଶ୍ରୀ ଅକ୍ଷୟ କୁମାର ଚକ୍ରବର୍ତ୍ତୀ ସ୍କୁଲର ପ୍ରଧାନ ଶିକ୍ଷକ ହୋଇ ଆସିଲେ । ସେ ସାମୁଦ୍ରିକ ବିଦ୍ୟାରେ ପାରଦର୍ଶୀ ଥିଲେ । ସେ ମୋର ହସ୍ତରେଖା ଅଧ୍ୟୟନ କରି କହି ଦେଲେ ଯେ, ମୋର ୨୭ ବର୍ଷ ବୟସରେ ସ୍ତ୍ରୀ ବିୟୋଗ ଘଟିବ । ସେତେବେଳକୁ ମୋର ସ୍ତ୍ରୀ ସସତ୍ତ୍ୱା ଥିଲା । ପ୍ରସୂତି ବେଳରେ ଅନେକେ ଇହଧାମ ତ୍ୟାଗ କରୁଥିଲେ । ମୋର ପିତା ପିଲାଦିନୁ ମାତାଙ୍କୁ ହରାଇଥିଲେ ଏବଂ ମୋର ଭାଗ୍ୟରେ ମଧ୍ୟ ତାହାହିଁ ଘଟିଥିଲା । ଏଣୁ ମୋ ମନରେ ଏହି ଚିନ୍ତା ଉଦୟ ହେଲା ଯେ, ହୁଏତ ମୋର ସ୍ତ୍ରୀ ସନ୍ତାନ ଜନ୍ମ ପରେ ମୃତ୍ୟୁ ମୁଖରେ ପଡ଼ିବ । ଯଦି ତାହାହିଁ ହୁଏ, ତେବେ ମୁଁ ପୁନର୍ବାର ବିବାହ କରିବି କି ନାହିଁ ବୋଲି ବହୁ ସମୟରେ ଚିନ୍ତା କରିବାକୁ ଲାଗିଲି ।

ପ୍ରାୟ ୧୯୨୪ ମସିହାରେ ମୋ ଗ୍ରାମର ଗୋଟିଏ ଚଉଦ ବର୍ଷର ବ୍ରାହ୍ମଣ ବାଳିକା ବିଧବା ହେଲା । ସେ ବଡ଼ ରୂପବତୀ ଥିଲା ଏବଂ କିପରି ଜୀବନର ଅବଶିଷ୍ଟ କାଳ ଅତିପାତ କରିବ ବୋଲି ତା ପ୍ରତି ମୋର ସମବେଦନା ଜାତ ହେଲା । ପଣ୍ଡିତ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ଜୀବନ ଚରିତ ମୁଁ ପଢ଼ିଥିଲି ଏବଂ ତହିଁରୁ ତାଙ୍କର ବିଧବା-ବିବାହ ସମ୍ପର୍କରେ ବହୁତ କିଛି ଜାଣିଥିଲି । ତେଣୁ ସେହି କନ୍ୟାଟି କିପରି ପୁଣି ଥରେ ବିବାହ କରି ପାରନ୍ତା, ସେଥିଲାଗି ମୋ ମନ ଆନ୍ଦୋଳିତ ହେବାକୁ ଲାଗିଲା । କନ୍ୟାର ଜେଜେଇ ବଂଶୀଧର ରଥ ରେଳବାଇରେ ଚାକିରି କରୁଥିଲେ । ପ୍ରଥମେ ତାଙ୍କୁ ମଗାଇଲି । ମୋର କନିଷ୍ଠ ମାତୁଳ ପଣ୍ଡିତ ବୃନ୍ଦାବନ ରଥ ଓ ବାଲ୍ୟଗୁରୁ ପଣ୍ଡିତ ନକୁଳ ଚରଣ ମିଶ୍ର ମୋର ଗାଁର ଲୋକ । ମୁଁ ସେ ଦୁହିଁଙ୍କୁ ମୋ ମନ କଥା କହିଲି । ମୋର ମାତୁଳ ବଡ଼ ସଂସ୍କାରବାଦୀ ଥିଲେ ।

ବିଧବା ବିବାହ ସମ୍ପର୍କରେ ମୋର ଉତ୍ସାହକୁ ସେ ପ୍ରଶଂସା କରିଥିଲେ । ପଣ୍ଡିତ ନକୁଳ ଚରଣ ମିଶ୍ର ଖାଣ୍ଟି ପ୍ରକୃତିର ଲୋକ । ସମାଜ ବିରୁଦ୍ଧରେ ଯିବାକୁ ତାଙ୍କର ସାହସ ନ ଥିଲା । ତଥାପି ମୁଁ ତାଙ୍କର ସ୍ନେହ ଏବଂ ସେ ପୁଣି ମୋର ମାତୁଳଙ୍କର ସ୍ନେହ ଥିବାରୁ ଆମେ ଦୁହେଁ ଏକମତ ହେବାରୁ ସେ ନାହିଁ କରି ପାରିଲେ ନାହିଁ । କନ୍ୟା ପିତା ଆମ୍ଭମାନଙ୍କଠାରୁ ସାହସ ପାଇ ରାଜି ହେଲେ । ବହୁ ଆଡ଼ମ୍ବରରେ ବିବାହ କାର୍ଯ୍ୟ ନିଷ୍ପନ୍ନ ହେଲା । ଶ୍ରୀ ଶରତ୍ ଚନ୍ଦ୍ର ମୁଖାର୍ଜି ବି. ଏ. ଆମ୍ଭମାନଙ୍କ ନିମନ୍ତ୍ରଣ ରକ୍ଷା କରି ବିବାହ ଦିବସରେ କନ୍ୟାର ବାସଗୃହରେ ଉପସ୍ଥିତ ହୋଇ ଆମ୍ଭମାନଙ୍କୁ ଅଭୟ ବାଣୀ ଶୁଣାଇଥିଲେ ଏବଂ ସର୍ବସାଧାରଣଙ୍କୁ ଏ ପ୍ରକାର ବିବାହ ପ୍ରତି ଅନୁକୂଳ ମତ ପୋଷଣ କରିବାକୁ ବୁଝାଇଥିଲେ ।

ଏହାପରେ ଆଉ ଦୁଇଟି ବିଧବା କନ୍ୟାର ବିବାହରେ ମୁଁ ସକ୍ରିୟ ଭାଗ ନେଇଥିଲି ଏବଂ ଗୋଟିଏ କନ୍ୟାକୁ ନିଜେ ପିତୃଭାବରେ ସମର୍ପଣ କରିଥିଲି ।

ବିବାହ ସମ୍ପର୍କରେ ମୁଁ ଏଇ କଥା ଚିନ୍ତା କରୁଥିଲି ଯେ, ଅନୂଢ଼ା କନ୍ୟାର ପାଣିଗ୍ରହଣ କରିବା ମୋ ପକ୍ଷରେ ଉଚିତ ହେବନାହିଁ, ଯେହେତୁ ମୁଁ ବିଧବା ବିବାହର ପ୍ରବର୍ତ୍ତକ । ପୁଣି ମୁଁ ଯଦି ବିଧବାଟିଏ ବିବାହ କରେ, ତେବେ ମୋର ବିମାତା ଥିବାରୁ କାଳେ ମୋର ଭବିଷ୍ୟତ୍ ସ୍ତ୍ରୀ ଓ ବିମାତାଙ୍କ ମଧ୍ୟରେ ମନୋମାଳିନ୍ୟ ଘଟିବ ଏବଂ ତାହାର ଫଳରେ କେହି ଆତ୍ମହତ୍ୟା କରିଦେବେ, ଏହାହିଁ ବିବାହ ସମ୍ପର୍କରେ ମୁଁ ଦ୍ୱିଧାଗ୍ରସ୍ତ ହେବାର କାରଣ ।

ଠିକ୍ ଏତିକିବେଳେ ଉତ୍କଳମଣି ଗୋପବନ୍ଧୁଙ୍କର ଜୀବନ ଚରିତ ପ୍ରକାଶିତ ହେଲା । ଶ୍ରୀ ସତ୍ୟବାଦୀ ନନ୍ଦ ତାହା ଲେଖିଥିଲେ । ମୁଁ ତାହାକୁ ପଢ଼ି ଜାଣିଲି ଯେ, ଗୋପବନ୍ଧୁ ସ୍ତ୍ରୀ ବିୟୋଗ ପରେ ଦ୍ୱିତୀୟ ଦାର ପରିଗ୍ରହ ନ କରି ଦେଶ ଓ ଦେଶର ସେବାରେ ଜୀବନ ଉତ୍ସର୍ଗ କରିବାପାଇଁ ଠିକ୍ କରିଥିଲେ । ତାଙ୍କ ଜୀବନର ଏହି କଥାଟି ମୋ ହୃଦୟରେ ଗଭୀର ରେଖାପାତ କଲା ଏବଂ ମୁଁ ବିବାହ ନ କରି ତାଙ୍କର ପରି ଦେଶସେବା କରିବା ପାଇଁ ସଙ୍କଳ୍ପବଦ୍ଧ ହେଲି ।

ବର୍ତ୍ତମାନ ଚିନ୍ତା କଲି, କି ପ୍ରକାର ଦେଶସେବା କରିବି ? ୧୯୧୬ ମସିହାରେ ରାୟବାହାଦୁର ଭିକାରୀ ଚରଣ ପଟ୍ଟନାୟକ ମୋ ନିଜ

ଗ୍ରାମ ଦୋହଲୀରେ ଗୋଟିଏ ମ. ଇ. ସ୍କୁଲ ପ୍ରତିଷ୍ଠା କରିଥିଲେ, ମାତ୍ର ତାହା ବର୍ଷକ ମଧ୍ୟରେ ଭାଙ୍ଗିଗଲା । ପୁନଶ୍ଚ ୧୯୨୪ ମସିହାରେ ଶ୍ରୀ ଅକ୍ଷୟ କୁମାର ଚକ୍ରବର୍ତ୍ତୀ ତାଙ୍କ ନିଜ ଗ୍ରାମ ଗୁନ୍ଦୋଳରେ ମ. ଇ. ସ୍କୁଲ ବସାଇଲେ । ଉପଯୁକ୍ତ ତତ୍ତ୍ୱାବଧାନ ଅଭାବରୁ ଏହା ମଧ୍ୟ ଲୋପ ପାଇଲା । ତେଣୁ ମୁଁ ମୋର ଜନ୍ମସ୍ଥାନ ଦୋହଲୀରେ ମ. ଇ. ସ୍କୁଲଟିଏ ପ୍ରତିଷ୍ଠା କରି ମନ ପ୍ରାଣ ସମର୍ପି ଦେବାକୁ ସ୍ଥିର କଲି ।

ସମୟ ପାଇଲେ ମୁଁ ମୋର ପ୍ରସ୍ତାବିତ ସ୍କୁଲ ସମ୍ପର୍କରେ ଚିନ୍ତା କରୁଥାଏ । ସ୍କୁଲ କେଉଁଠି ହେବ, ଟଙ୍କା କୁଆଡ଼ୁ ଆସିବ, କିଏ ଶିକ୍ଷକ ରହିବେ, କି ପ୍ରକାର ଘରଦ୍ୱାର ହେବ—ଏହାହିଁ ମୋର ଭଜନମାଳା ହୋଇଥାଏ । ପଣ୍ଡିତ ଗୋପବନ୍ଧୁଙ୍କ ଜୀବନ ଚରିତରୁ ତାଙ୍କର 'ବନ-ବିଦ୍ୟାଳୟ' ସମ୍ବନ୍ଧରେ ଯେଉଁ ଜ୍ଞାନ ଲାଭ କଲି, ତାହାର ସପକ୍ଷ ବିପକ୍ଷରେ କେତେ କଥା ମନକୁ ଆସୁଥାଏ ।

କାନପୁର ମେଟକାଫ୍ ମ. ଇ. ସ୍କୁଲ, ଯେଉଁଠି ମୁଁ ଶିକ୍ଷକତା କରୁଛି, ତାହା ମୋ ଗ୍ରାମରୁ ୧୨।୧୩ ମାଇଲ ଦୂର ହେବ । ମୋ ଗ୍ରାମର ୮।୧୦ ଜଣ ପିଲା ମୋ ପାଖରେ ରହି ପଢ଼ୁଥାନ୍ତି । ମୋର ଜଣେ ସୂର୍ଯ୍ୟବନ୍ଧୁ ମାଗୁଣି ନାୟକ ( ବର୍ତ୍ତମାନ ସ୍ୱର୍ଗତ ) ତାଙ୍କର ଦଶ ବର୍ଷର ପୁଅଟିକୁ ଆଣି ୪ର୍ଥ ଶ୍ରେଣୀରେ ନାମ ଲେଖାଇ ଦେଲେ ।

ସେ ଘରକୁ ଫେରିଲା ବେଳେ କାନ୍ଦିଲେ । ମୁଁ ପଚାରିଲି—ମଉସା, କାନ୍ଦିଲ କାହିଁକି ? ସେ କହିଲେ, "ଛୁଆଟାକୁ ଏତେ ଦୂରରେ ଛାଡ଼ି ଦେଇ ଯାଉଥିବାରୁ ମନରେ ଦୁଃଖ ହେଉଛି । ଘର ପାଖରେ ଯଦି ସ୍କୁଲ ଥାଆନ୍ତା, ସେ କାହିଁକି ଏତେ ବାଟ ଆସିଥାନ୍ତା ?" ମୁଁ ସଙ୍ଗେ ସଙ୍ଗେ କହି ପକାଇଲି—ମଉସା, ତୁମେ ଯଦି ଦୁଇଶହ ଟଙ୍କା ଦେବ, ତେବେ ମୁଁ ଘର ପାଖରେ ସ୍କୁଲ ଠିଆ କରିଦେବି ।

ସେ ଏକଥା ଶୁଣି ଅବାକ୍ ହୋଇଗଲେ ଏବଂ ଏତେ ଅଳ୍ପ ଟଙ୍କାରେ କିପରି ମ. ଇ. ସ୍କୁଲଟିଏ ହୋଇ ପାରିବ ବୋଲି ସେ ବୋଧ-ହୁଏ ଚିନ୍ତା କରି ପାରିଲେ ନାହିଁ । ମୋ ମନ ଭିତରେ 'ବନବିଦ୍ୟାଳୟ' ର ଯେଉଁ ଚିତ୍ର ଉଙ୍କି ମାରୁଥାଏ, ତାହାହିଁ ମୋର ଚିନ୍ତାଧାରାର ପାଥେୟ

ହୋଇଥାଏ । ମୁଁ ତାଙ୍କୁ ସଂକ୍ଷେପରେ ସବୁ କଥା ବୁଝାଇ ଦେଲି ଏବଂ ପରବର୍ତ୍ତୀ ଶନିବାର ଦିନ ମୁଁ ଘରକୁ ଗଲେ ସେ ଦୁଇଶହ ଟଙ୍କା ଦେବେ ବୋଲି କହିଗଲେ ।

ରବିବାର ସକାଳ । ମୁଁ ଶେଯରୁ ଉଠି ନାହିଁ । ବାହାରୁ ଡାକ ଶୁଭିଲା—'ବାବୁ', 'ବାବୁ' । ମୁଁ ଯାଇଁ ଦେଖେ, ମଉସା ହସ ହସ ମୁହଁରେ ଉପସ୍ଥିତ । ମୋତେ ଦେଖିଲା ମାତ୍ରେ ମୋ ହାତକୁ ଦୁଇଶହ ଟଙ୍କା ବଢ଼େଇ ଦେଇ କହିଲେ, "ଏଥର ଲାଗିଯା ।"

ଗୁପ୍ତେଶ୍ୱର ପୋଖରୀ ଉପରେ ଏ୯-୨୮ ଡେସିମିଲର ପ୍ରକାଣ୍ଡ ଅନାବାଦୀ ଜମି ଖଣ୍ଡେ । ଦୋହଳୀ ଓ କେଶରପୁର, ଏହି ଦୁଇ ଗ୍ରାମର ସର୍ବରାକାରମାନେ ତାହାର ମାଲିକ । ମୁଁ ଦୋହଳୀ ସର୍ବରାକାର ଓ ମୋର ଅଂଶ ଗୃହଅଣା । ମୁଁ ବଡ଼ ଅଂଶୀଦାର । ସେହିଦିନ ସବୁ ସର୍ବରା-କାରଙ୍କୁ ଭେଟିଲି । ସମସ୍ତଙ୍କର ସ୍କୁଲ ପ୍ରତିଷ୍ଠା ପାଇଁ ପ୍ରବଳ ଆଗ୍ରହ ଥାଏ । ତେଣୁ ସମସ୍ତେ ସ୍କୁଲ ପାଇଁ ବିନା ଖଜଣାରେ ଓ ବିନା ମୂଲ୍ୟରେ ସେହି ଜମି ଖଣ୍ଡିକ ଦାନ କରିବାକୁ ରାଜି ହୋଇଗଲେ । ବୋଧହୁଏ ତାହାର ପରଦିନ ଅର୍ଥାତ୍ ସୋମବାର ଦିନ ସେହି ଜମି ଉପରେ ସ୍କୁଲ ପାଇଁ ଶୁଭ ଦିଆଗଲା ବହୁ ଲୋକଙ୍କ ଉପସ୍ଥିତିରେ । କେତେ ଦିନ ପରେ ଆମେ ସର୍ବରାକାରମାନେ କେନ୍ଦ୍ରାପଡ଼ା ଯାଇ ସ୍କୁଲ ନାଁରେ ଜମି ଖଣ୍ଡିକ ରେଜଷ୍ଟ୍ରି କରି ଆଣିଲୁ । କ୍ରମେ ଏ ବାର୍ତ୍ତା ଗାଁକୁ ଗାଁ ପ୍ରଚାରିତ ହେଲା । ସମସ୍ତଙ୍କ ମନରେ ସ୍କୁଲ ପ୍ରତି ସ୍ନେହ ଓ ଉତ୍ସାହ ବୃଦ୍ଧି ପାଇଲା ।

ଗ୍ରୀଷ୍ମ ଛୁଟିରେ ଘରକୁ ଗଲି । ଜଣେ ମୂଲିଆକୁ ସାଙ୍ଗ କରି ଓ ହାତରେ କୁରାଢ଼ି ଧରି ବାଉଁଶ ସଂଗ୍ରହରେ ଲାଗିଲି । ମୁଁ ନିଜେ ପ୍ରାୟ ତିନିଶହ ବାଉଁଶ ହାଣିଥିଲି ଏବଂ ଦିନେ ଜହ୍ନ ରାତିରେ ଗ୍ରାମର ପ୍ରାୟ ପଚିଶ ଜଣ ଲୋକଙ୍କୁ ନେଇ ହଣା ଯାଇଥିବା ବାଉଁଶ ସବୁ ବୁହାଇ ଆଣି ଗୁପ୍ତେଶ୍ୱର ପୋଖରୀ ଭିତରେ ପକାଇଲି । ଆଗେ ଘର ତିଆରି ହେବ, ପରେ କାନ୍ଥ ଦିଆଯିବ, ଏହା ହିଁ ମୋର ଯୋଜନା ଥିଲା । ଖୁଣ୍ଟ ହେବା ପାଇଁ ନିମ ଓ ବରି ଡାଳ, ଓଉ ହେବା ପାଇଁ ଜାମୁକାଠ ଏବଂ ଛପର ହେବାପାଇଁ ଚାଳ ଦରକାର । ଏ ସବୁ ବିନା ମୂଲ୍ୟରେ ସଂଗ୍ରହ କରିବା

ପାଇଁ ବଇଜନ୍ଥ ଯୁବକଙ୍କୁ ଦାୟିତ୍ୱ ଦେଲି । ମଉସା ମାଗୁଣୀ ନାୟକ ନିଜେ ରହି ଘର ତିଆରି କରାଇବେ ବୋଲି ସମ୍ମତ ହେଲେ । ସେହି ସମୟରୁ ମୁଁ ପ୍ରତି ଶନିବାର ଘରକୁ ଯିବାକୁ ଲାଗିଲି । କାର୍ଯ୍ୟର ଅଗ୍ରଗତି ତଦାରଖ କରିବା ସଙ୍ଗେ ସଙ୍ଗେ କିଛି କିଛି ଚାନ୍ଦା ସଂଗ୍ରହ ମଧ୍ୟ କଲି ।

ବାଉଁଶ ହାଣିବା ସମୟରେ ପ୍ରତ୍ୟେକ ବ୍ୟକ୍ତି ଦୁଇଖଣ୍ଡ ଲେଖାଏ ବାଉଁଶ ଦେଉଥିଲେ । ବୁଦା ଭିତରେ ସବୁଠାରୁ ଭଲ ବାଉଁଶ ଦେଖି ମୁଁ ହାଣୁଥିଲି । ନରସିଂହପୁର ମୌଜାରେ ଗୋଟିଏ ଧୋବଣୀର ଭଲ ବାଉଁଶ ବୁଦାଟିଏ ଥାଏ । ମୁଁ ମାଗିବାରୁ ସେ ମନା କରିଦେଲା । ତହୁଁ ମୁଁ କହିଲି, "ମାଉସି, ଦେବାକୁ ହେବ । ନ ଦେଲେ ତୋ ଗୋଡ଼ ତଳେ ପଡ଼ିଯିବି ।" ସେ ସାଙ୍ଗେ ସାଙ୍ଗେ କହିଲା, "ବାପ, ସେଇ ବୁଦାରୁ ଦୁଇ ଖଣ୍ଡ ମନ ଇଚ୍ଛା ହାଣିନେ ।"

ସାଧାରଣ କାର୍ଯ୍ୟ କରିବାକୁ ବାହାରି ମୁଁ ପ୍ରଥମ କରି ଧୋବଣୀ ପାଖରେ ଅତି ବିନମ୍ରତା ପ୍ରକାଶ କରିଥିଲି । ପରେ ବହୁ କ୍ଷେତ୍ରରେ ଏହି-ପରି ମୁହଁରେ ଗୋଡ଼ ତଳେ ପଡ଼ିବା କଥା କହି ଓ କାର୍ଯ୍ୟରେ ତାହା କରି ଅସମ୍ଭବକୁ ସମ୍ଭବ କରିଛି । ଲୋକେ ଏ ପର୍ଯ୍ୟନ୍ତ ମୋର ଏହି କଥାଟିକୁ ଦୃଷ୍ଟାନ୍ତ ପରି ବ୍ୟବହାର କରୁଥିବା ମୋ ପକ୍ଷରେ ଗର୍ବର ବିଷୟ ।

ଏହି କାନପୁର ମେଟ୍‌କାଫ୍ ସ୍କୁଲରେ ତିନିଜଣ କୃତବିଦ୍ୟ ଛାତ୍ରଙ୍କ ସମ୍ପର୍କରେ କିଛି ଲେଖିଲେ ଅପ୍ରାସଙ୍ଗିକ ହେବ ନାହିଁ । ବିଶିଷ୍ଟ ଲେଖକ, ସାହିତ୍ୟିକ ଓ ଲୋକସଭା ସଦସ୍ୟ ଶ୍ରୀ ସୁରେନ୍ଦ୍ର ମହାନ୍ତି ମୋ ପାଖରେ ପ୍ରାୟ ଦୁଇ ବର୍ଷ ପଢ଼ିଥିଲେ ।

କୃଷି ବିଭାଗରେ ଡେପୁଟୀ ଡିରେକ୍ଟର ଶ୍ରୀ ଗଜେନ୍ଦ୍ର ନାଥ ରାଉତ ଏଠାରେ ଚତୁର୍ଥ ଶ୍ରେଣୀରେ ପଢ଼ିଲା ବେଳେ ମୁଁ ତାହାର ପ୍ରତିଭାର ପରିଚୟ ପାଇଥିଲି ଏବଂ ସେହି କାରଣରୁ ମୁଁ ଦୋହଲା ସ୍କୁଲରେ ତାକୁ ପଞ୍ଚମ ଶ୍ରେଣୀ ପରିବର୍ତ୍ତେ ଷଷ୍ଠ ଶ୍ରେଣୀକୁ ଉନ୍ନୀତ କରାଇ ଦେଇଥିଲି । ସେହି ଗଜେନ୍ଦ୍ର ଦୁଇଥର ଆମେରିକା ଯାଇଁ ଉଚ୍ଚ ଶିକ୍ଷା ଲାଭ କରିଥିଲା ।

ଶ୍ରୀ ରବୀନ୍ଦ୍ର ନାଥ ମିଶ୍ର ଷଷ୍ଠ ଶ୍ରେଣୀରେ ପଢ଼ିବା ବେଳେ କବିତା ଲେଖି ମୋତେ ଦେଖାଉଥିଲା । ଅତ୍ୟନ୍ତ ଦରିଦ୍ର ହେତୁ ସେ ସ୍କୁଲରେ ବିନା ବେତନରେ ପଢ଼ୁଥିଲା ଏବଂ ମୁଁ ତାକୁ ଛାତ୍ରା-ବାସରେ ରଖାଇ ସଂପୂର୍ଣ୍ଣ ବ୍ୟୟଭାର ବହନ କରୁଥିଲି । ସେ ସପ୍ତମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇ ବହିରେ ଡୋର ବାନ୍ଧି ରହିଗଲା । ସେହି ରବୀନ୍ଦ୍ର ପରବର୍ତ୍ତୀ ଜୀବନରେ 'ଉତ୍କଳ ବାଣୀ ଭଣ୍ଡାର' ବହି ଦୋକାନ ଖୋଲି, କେତେ ଖଣ୍ଡ ବହି ଲେଖି ବର୍ତ୍ତମାନ ଲକ୍ଷପତି ହୋଇଛି । ଓଡ଼ିଆ ବଜାରରେ ତାହାର ରାଜକୀୟ ପ୍ରାସାଦ ଦେଖିଲେ ସୁଦାମାର ଦାରିଦ୍ର୍ୟ ଭଞ୍ଜନ କଥା ମନେ ପଡ଼େ ।

---

# ପ୍ରାକୃତିକ ଚିକିତ୍ସା

କାନପୁର ସ୍କୁଲରେ ଯୋଗ ଦେବାର କିଛି ଦିନ ପରେ ମୁଁ ଶୂଳ ରୋଗରେ ଆକ୍ରାନ୍ତ ହେଲି । ଯେଉଁଦିନ କବିରାଜଙ୍କ ସହ ରୋଗ ସମ୍ପର୍କରେ ଆଲୋଚନା କରୁଥିଲି, ସେ ଦିନ ସେ କହିଥିଲେ ଯେ, ମୁଁ ଯୌବନ ସମୟରେ ଜଳଖିଆ ଖାଇ ନ ଥିବାରୁ ଅର୍ଥାତ୍ ଭୋକ ମାରିଥିବାରୁ ଏହି ରୋଗ ଭୋଗିବାକୁ ପଡ଼ିଲା । ପ୍ରକୃତରେ ମୁଁ ଅତି ଦରିଦ୍ର ଥିଲି, ପୁଣି ପିଲାଦିନୁ ପିତାମାତାଙ୍କୁ ହରାଇଥିଲି ଓ ଏଭଳି ଏକ ପରିମାତା ପାଇଥିଲି, ଯାହାଙ୍କର ମୋ ପ୍ରତି ପୁତ୍ରବତ୍ ସ୍ନେହ ଶ୍ରଦ୍ଧାର ଘୋର ଅଭାବ ଥିଲା । ଏହି ସବୁ କାରଣରୁ ନୀରବରେ ସବୁକଥା ସହିଯିବାକୁ ହେଉଥିଲା ।

କବିରାଜଙ୍କ ବ୍ୟବସ୍ଥା ଅନୁସାରେ ସକାଳେ, ସନ୍ଧ୍ୟାରେ ପୁଣି ମଧ୍ୟାହ୍ନରେ ଓ ରାତିରେ ଏବଂ ଖାଇବାବେଳେ ଆଦ୍ୟେ, ମଧ୍ୟେ, ପ୍ରାନ୍ତେ ଔଷଧ ଖାଇବାକୁ ପଡ଼ିଲା । ପଥ୍ୟାପଥ୍ୟ ବିଷୟର କରି ସଂଯତ, ମସଲା-ବିରହିତ ଖାଦ୍ୟରେ ଅଭ୍ୟସ୍ତ ହେଲି । ତଥାପି ଛଅମାସ ପରେ ବି ରୋଗର ଉପଶମ ଘଟିଲା ନାହିଁ । ଶୂଳରୋଗ କେଡ଼େ ଯନ୍ତ୍ରଣା ଦାୟକ, ତାହା କେବଳ ଅନୁଭବୀଙ୍କୁ ହିଁ ଜଣା । ପାଠ ପଢ଼ାଇବା ବେଳେ ପେଟକୁ ମାଡ଼ିଲେ ଟେବୁଲ୍ ଧାରରେ ନାହିମୂଳ ଠେସ ଦେଇ କଥଞ୍ଚିତ୍ ଶାନ୍ତି ପାଏ । କେତେବେଳେ ହଷ୍ଟେଲକୁ ଚାଲିଯାଇ ଟିକେ ଶୋଇପଡ଼େ । ପିଲାଙ୍କର ପାଠ ପଢ଼ାରେ କ୍ଷତି ହେଉଛି ଜାଣି ମୁଁ ବଡ଼ ମନସ୍ତାପ ଭୋଗ କରୁଥାଏ ଏବଂ କେମିତି ଶୀଘ୍ର ରୋଗମୁକ୍ତ ହେବି ବୋଲି ମନେ ମନେ ଭଗବାନଙ୍କୁ ଡାକୁଥାଏ ।

ବୈବାତ୍ ଦିନେ ମହାତ୍ମା ଗାନ୍ଧୀଙ୍କର Guide to Health ବହିର ଓଡ଼ିଆ ଅନୁବାଦ 'ସ୍ୱାସ୍ଥ୍ୟ ସୋପାନ' ମୋ ଆଖିରେ ପଡ଼ିଲା । ତାହାର ପ୍ରଥମ ଧାଡ଼ିରେ ଲେଖାଥିଲା—ଔଷଧ ନ ଖାଇ ଯେତେ ଲୋକ ମରନ୍ତି, ଔଷଧ ଖାଇ ତହିଁରୁ ବେଶୀ ଲୋକ ମରନ୍ତି । ବହି ଖଣ୍ଡିକରେ ପ୍ରାକୃତିକ ଚିକିତ୍ସା ଉପରେ ଗୁରୁତ୍ୱ ଦିଆଯାଇଛି ଏବଂ ବିନା ଔଷଧରେ ଭଲହେବା

ପାଇଁ ପ୍ରଚେଷ୍ଟାକୁ ଉତ୍ସାହିତ କରାଯାଇଛି । ମୁଁ ବହି ଖଣ୍ଡିକ ଆମୂଳଚୂଳ ପଢ଼ିଗଲି । ମୋ ମନରେ ଅଭିନବ ପୁଲକର ସଂଚାର ହେଲା ଏବଂ ଔଷଧ ସେବନ ବନ୍ଦ କରିଦେଇ ମହାତ୍ମା ଗାନ୍ଧୀଙ୍କ ପ୍ରଦର୍ଶିତ ପନ୍ଥା ଅନୁସରଣ କରିବା ପାଇଁ ମନେ ମନେ ଠିକ୍ କଲି । ମୁଁ ପୂର୍ବପରି ଔଷଧ ଖାଉଛି, ପ୍ରାକୃତିକ ଚିକିତ୍ସା ମଧ୍ୟରୁ କେବଳ ଅନ୍ଧ୍ୟା ସ୍ନାନକୁ ଅଭ୍ୟାସ କରୁଛି, ଏହିପରି ସମୟରେ ଦିନେ ସଞ୍ଜବେଳେ ଗଡ଼ିଆରେ ଗାଧୋଇବା ବେଳେ ଭୟଙ୍କର ଜ୍ୱରରେ ପେଟକୁ ମାରିଲା । ମୁଁ ପାହାଚ ଉପରେ ବସି ଉତ୍କଳବର ମଧୁସୂଦନଙ୍କ ପ୍ରଣୀତ 'ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ' କବିତାଟିକୁ ଆବୃତ୍ତି କରୁଥାଏ ଏବଂ ତାହାଁ ସଙ୍ଗେ ସଙ୍ଗେ ବିକଳ ହୋଇ କାନ୍ଦୁଥାଏ । କବିତାଟି ଶେଷ ହେବା ପରେ କହିଲି—"ହେ ଭଗବାନ୍, ମୁଁ ମରିଯିବି ପଛକେ ଆଉ ଔଷଧ ଖାଇବି ନାହିଁ । ଏଣିକି ତୁମ ଇଚ୍ଛା ।" ପବିତ୍ର ସନ୍ଧ୍ୟା ସମୟରେ ପାଣି ଭିତରେ ଏହି ଯେଉଁ ପ୍ରତିଜ୍ଞା କଲି, ଭବିଷ୍ୟତରେ ତାହାଁରୁ ସ୍ଖଳିତ ହୋଇ ନାହିଁ ।

ଏହି ଘଟଣା ପରେ ପ୍ରାକୃତିକ ଚିକିତ୍ସାର ସାଧନା କଲି । ପାଖରେ ଯେତେ ପ୍ରକାର ଔଷଧ ଥିଲା, ଫୋପାଡ଼ ଦେଲି । ଗାନ୍ଧିଜୀ ଚେନି ଖାଇବାକୁ ମନା କରିଥିବାରୁ ତାହା ମଧ୍ୟ ବାରଣ ଦେଲି । ରାତିରେ ମାଟି ଉପରେ ବିଛଣା ନ ପକାଇ ଶୋଇଲି । ମୁଣ୍ଡ ତଳେ ବାଲିର ମୁଠୁଲା ବା ତକିଆ ବ୍ୟବହାର କଲି । ପ୍ରତ୍ୟୁଷରୁ ଉଠି ଖୋଲା ଦେହରେ କିଛି ସମୟ ବୁଲିଲି । ରାତିରେ ଅଳିଭ୍ ତେଲ ମାଖି ରୁଟି ଖାଇବାକୁ ଅଭ୍ୟାସ କଲି । ଖାଇବା, ପିଇବା, ଚାଲିବା, ବୁଲିବା ସବୁ କଥାରେ ମୋର କ୍ଷିପ୍ରତା ସ୍ୱାଭାବିକ ଥିବାରୁ ଏବଂ ଜୀର୍ଣ୍ଣ ଶକ୍ତିର ବୃଦ୍ଧି ପାଇଁ ଖାଦ୍ୟ ଜିନିଷକୁ ବେଶୀ ଚୋବାଇ ଖାଇବା ଦରକାର ପଡ଼ିବାରୁ ମୁଁ ଆଗରେ ଘଣ୍ଟା ରଖି ଖାଇବାକୁ ଲାଗିଲି । ପ୍ରତ୍ୟେକ କାର୍ଯ୍ୟ ପାଇଁ ରୁଟିନ୍ ବାନ୍ଧି ଦେବାରୁ ମେଳା ମହୋତ୍ସବ ଓ ବିବାହ ବ୍ରତ ଇତ୍ୟାଦି ଶୁଭକର୍ମରେ ଯୋଗଦେବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ । ଫଳତଃ, ମୋର ରସନା ସଂଯତ ହୋଇଗଲା ଏବଂ ମୁଁ ଲୋଭକରି ଖାଇ ପେଟ ଦୋଷ ଘଟାଇବାକୁ ସୁଯୋଗ ପାଇଲି ନାହିଁ । ଏହି ସମୟରେ ଶ୍ରୀ ଚୂଣିଲାଲ ଭଟ୍ଟାଚାର୍ଯ୍ୟଙ୍କ ପ୍ରଣୀତ ବଙ୍ଗଳା ବହି 'ଖାଦ୍ୟ', ସ୍ୱାମୀ ନିଗମାନନ୍ଦ ପରମହଂସଙ୍କ 'ଯୋଗୀଗୁରୁ' ଏବଂ ପ୍ରାକୃତିକ ଚିକିତ୍ସା ସମ୍ବନ୍ଧୀୟ କେତେ ଖଣ୍ଡ

ବଙ୍ଗଳା ଓ ଇଂରାଜୀ ବହି ସବୁ ପଢ଼ି ମୁଁ ନିଜର ଆହାର ବିହାର, ବେଶଭୂଷା ଓ ରୀତି ନୀତିକୁ ଗୋଟାଏ ନିର୍ଦ୍ଦିଷ୍ଟ ଧାରାରେ ପକାଇଥିଲି ।

ମୋର ଦୃଢ଼ ମନୋବଳ, କଠୋର ପ୍ରତିଜ୍ଞା ଏବଂ ପ୍ରାକୃତିକ ଚିକିତ୍ସାରେ ନିଷ୍ଠାପର ସାଧନା ଯୋଗୁଁ ଏହି ସ୍କୁଲ ପରିତ୍ୟାଗ କଲି ବେଳକୁ ମୁଁ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କଲି । ଭଗବାନଙ୍କ ଆଶୀର୍ବାଦରୁ ମୁଁ ସେହି ସମୟଠାରୁ ରୋଗମୁକ୍ତ ଅବସ୍ଥାରେ କାଳାତିପାତ କରୁଛି ଏବଂ ଦିନେ ହେଲେ ମୋତେ କୌଣସି ଔଷଧ ସେବନ କରିବାକୁ ପଡ଼ି ନାହିଁ ।

ଡକ୍ଟର ଚୁନିଲାଲଙ୍କ 'ଖାଦ୍ୟ' ବହିରେ ଅରୁଆ ଚାଉଳ ଖେଚୁଡ଼ି ଖାଇବା ପାଇଁ ପରାମର୍ଶ ଦିଆଯାଇଥିଲା । ତଦନୁସାରେ ମୁଁ ପ୍ରାୟ ୨୫ ବର୍ଷ କାଳ ମଧ୍ୟାହ୍ନରେ ଅରୁଆ ଖେଚୁଡ଼ି ଓ ରାତିରେ ରୁଟି-ଦୁଧ ଖାଇବାରେ ଅଭ୍ୟସ୍ତ ଥିଲି । ୧୯୫୬ ମସିହାରୁ ମୁଁ ଶିକ୍ଷକ ସଂଘର ଦାୟିତ୍ୱ ଗ୍ରହଣ କରି ଗୃହତ୍ୟାଗୀ ହେବାରୁ ଖାଦ୍ୟ ପରିବର୍ତ୍ତନ କରିବାକୁ ବାଧ୍ୟ ହେଲି ।



## ଦୋହଲ

## ସହଯୋଗ ମ. ଇ. ସ୍କୁଲ ପ୍ରତିଷ୍ଠା

କାନପୁର ମେଟ୍‌କାଫ୍ ମ. ଇ. ସ୍କୁଲରୁ ଇସ୍ତଫା ଦେଇ ମୁଁ ୧୯୩୧ ଡିସେମ୍ବର ମାସରେ ଗାଁକୁ ଗଲି । ମ. ଇ. ସ୍କୁଲ ପାଇଁ ତିନି ବଖରା ଘର କେବଳ ତିଆରି ସରିଥିଲା । ମାଟି କାନ୍ଥ ଓ ଛଣ ଛପର । କବାଟ ଝରକା ଲଗି ନ ଥିଲା । ଏହା ପୂର୍ବରୁ କେନ୍ଦ୍ରାପଡ଼ା ହାଇସ୍କୁଲରୁ କେତେକ ପୁରୁଣା ବେଞ୍ଚ, ଡେସ୍କ, ଟେବୁଲ ଓ କଳାପଟା ସୁଲଭ ମୂଲ୍ୟରେ କିଣି ଆଣିଥିଲି ।

୧୯୩୨ ଜାନୁଆରୀ ୨ ତାରିଖରେ ମ. ଇ. ସ୍କୁଲର ଶୁଭାରମ୍ଭ ହେଲା । ସହଯୋଗ ସମିତିମାନଙ୍କରୁ ବେଶୀ ସାହାଯ୍ୟ ମିଳିବା ଆଶାରେ ସ୍କୁଲର ନାମ ରଖାଗଲା ଦୋହଲ ସହଯୋଗ ମ. ଇ. ସ୍କୁଲ । ୪ର୍ଥରୁ ୭ମ ପର୍ଯ୍ୟନ୍ତ ଏକାବେଳକେ ଚାରୋଟି ଶ୍ରେଣୀ ଖୋଲାଗଲା । ନିକଟବର୍ତ୍ତୀ ମ. ଇ. ସ୍କୁଲମାନଙ୍କରେ ପଢ଼ୁଥିବା ୬ଷ୍ଠ ଓ ୭ମ ଶ୍ରେଣୀର ଛାତ୍ରମାନେ ଟ୍ରାନ୍ସଫର ସାର୍ଟିଫିକେଟ ନେଇ ହାଜର ହେଲେ । ନିମ୍ନ ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ଯେଉଁ ଛାତ୍ର ଛାତ୍ରୀମାନେ ଆସିଲେ, ସେମାନଙ୍କୁ କେଉଁ ଶ୍ରେଣୀରେ ଗ୍ରହଣ କରିବି ବୋଲି ଦ୍ୱନ୍ଦ୍ୱରେ ପଡ଼ିଲି । ସେତେବେଳେ ଉଚ୍ଚ ପ୍ରାଥମିକ ସ୍କୁଲରେ ଇଂରାଜୀ ପଢ଼ା ହେଉ ନ ଥିଲା ଏବଂ ମ. ଇ. ସ୍କୁଲମାନଙ୍କରେ ୪ର୍ଥ ଶ୍ରେଣୀଠାରୁ ଉପରକୁ ଇଂରାଜୀର ପ୍ରାଧାନ୍ୟ ଥିଲା । ତେଣୁ ୫ମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ମ. ଇ. ସ୍କୁଲରେ ୪ର୍ଥ ଶ୍ରେଣୀରେ ନାମ ଲେଖାଉଥିଲେ । ନିୟମାନୁଯାୟୀ ୩ୟ ଓ ୫ମରୁ ଉତ୍ତୀର୍ଣ୍ଣ ଛାତ୍ରଛାତ୍ରୀମାନଙ୍କୁ ଯଦି ୪ର୍ଥ ଶ୍ରେଣୀରେ ଗ୍ରହଣ କରିବି, ତେବେ ସମ୍ଭାଳି ହେବ ନାହିଁ; ଯେହେତୁ ଛାତ୍ର ସଂଖ୍ୟା ଅତ୍ୟଧିକ ଥିଲେ ଏବଂ ତା ଛଡ଼ା ୫ମ ଶ୍ରେଣୀଟି ଶୂନ୍ୟ ରହିଯିବ ।

ତେଣୁ ମୁଁ ଏହିପରି ବ୍ୟବସ୍ଥା କଲି ଯେ, ୩ୟ ଶ୍ରେଣୀରୁ ଉତ୍ତୀର୍ଣ୍ଣ ପିଲାମାନେ ୪ର୍ଥ ଶ୍ରେଣୀରେ ଏବଂ ୫ମରୁ ଉତ୍ତୀର୍ଣ୍ଣ ପିଲାମାନେ ୫ମ

ଶ୍ରେଣୀରେ ନାଁ ଲେଖାଇବେ । ଉଭୟ ଶ୍ରେଣୀର ପିଲା ଇଂରାଜୀ A.B.C. ଆରମ୍ଭ କଲେହେଁ ୫ମର ପିଲାମାନେ ଇଂରାଜୀ ଛଡ଼ା ସମସ୍ତ ବିଷୟରେ ଜ୍ଞାନ ଲଭ କରିଥିବାରୁ ଏ ଶ୍ରେଣୀରେ ଇଂରାଜୀ ଉପରେ ବେଶୀ ଜୋର ଦେବାକୁ ହେବ ଏବଂ ଇଂରାଜୀ ଶିକ୍ଷକ ଇଂରାଜୀରେ କ୍ଷିପ୍ର ଅଗ୍ରଗତି ପାଇଁ ଆନ୍ତରିକ ଭାବରେ ଉଦ୍ୟମ କରିବେ ।

ପ୍ରବେଶିକା ଶ୍ରେଣୀରେ ମୋଟରେ ୧୨୦ ଜଣ ଛାତ୍ରଛାତ୍ରୀ ନାମ ଲେଖାଇ ଥିବାର ମନେ ପଡ଼ୁଛି ।

କାନପୁର ମେଟ୍‌କାଫ୍ ମ. ଇ. ସ୍କୁଲରେ ଶ୍ରୀ ରାଧାମୋହନ ଚକ୍ରବର୍ତ୍ତୀ ମୋ ସହ ଶିକ୍ଷକତା କରୁଥିଲେ । ତାଙ୍କ ଘର ମୋ ଗାଁ ଦୋହଳଠାରୁ ଅଳ୍ପ ଦୂରବର୍ତ୍ତୀ ଏବଂ ସେ ଜଣେ ତାଲିମ ପ୍ରାପ୍ତ ମାଟ୍ରିକ୍ ଥିଲେ । ଦୋହଳରେ ସ୍କୁଲ ହେଲେ ସେ ମୋ ସହିତ ଯୋଗ ଦେବା ପାଇଁ ପ୍ରତିଶ୍ରୁତି ଦେଇଥିଲେ । ମୋର ଜଣେ ସହାଧ୍ୟାୟୀ ଶ୍ରୀ କୃଷ୍ଣଚନ୍ଦ୍ର ଜେନା ତାଲିମ ପ୍ରାପ୍ତ ମଧ୍ୟ-ଇଂରାଜୀ ଥିଲେ ଏବଂ ସେ କିଛି କାଳ ଏହି ସ୍କୁଲରେ କାମ କରିବା ପରେ ପ୍ରାଥମିକ ସ୍କୁଲକୁ ଚାଲିଯିବେ ବୋଲି କଥା ହୋଇ ଥିଲା । ଶ୍ରୀ ଚକ୍ରବର୍ତ୍ତୀ ସେକେଣ୍ଡ ମାଷ୍ଟର, ମୁଁ ହେଡ଼ ପଣ୍ଡିତ ଓ ଶ୍ରୀ ଜେନା ସେକେଣ୍ଡ ପଣ୍ଡିତ ଭାବରେ କାମ କଲୁ । କେନ୍ଦ୍ରାପଡ଼ା ନରସିଂହପୁରର ୭ ପଦ୍ମନାଭ କର, ବି. ଏ. ଫେଲ୍ ହୋଇ ଘରେ ବସିଥିଲେ । ସେ ଆମ୍ଭମାନଙ୍କ ଅନୁରୋଧରେ ହେଡ଼ମାଷ୍ଟର ହୋଇ ଆସିଲେ । ଦରମା ବାବଦରେ ସେ ମାସକୁ ଟ ୨୦-୦୦ ପାଇବେ ଓ ତାଙ୍କର ଖୋରାକ ସ୍କୁଲ ବହନ କରିବ, ଏଇ ସର୍ତ୍ତରେ ସେ ଆସିଥିଲେ । ଶ୍ରୀ କୃଷ୍ଣଚନ୍ଦ୍ର ଜେନା ଇସ୍ତଫା ଦେଇ ଚାଲିଯିବା ପରେ ଭଣଗାଁ ଗ୍ରାମର ଶ୍ରୀ ବାଞ୍ଛାନିଧି ରଥ ସେକେଣ୍ଡ ପଣ୍ଡିତ ଭାବରେ ଯୋଗ ଦେଇଥିଲେ । ଶ୍ରୀ ରଥ ଟ୍ରେନିଂ ସ୍କୁଲରେ ମୋର ସହପାଠୀ ଥିଲେ ।

ଦୋହଳରେ ସ୍କୁଲ ପ୍ରତିଷ୍ଠାର ସମସ୍ତ ଦାୟିତ୍ୱ ଗ୍ରହଣ ପରେ ମୋର ବହୁମୁଖୀ କର୍ତ୍ତବ୍ୟର ପରିସର ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା । ସ୍କୁଲ ଘରେ କବାଟ ଝରକା ଲାଗି ନାହିଁ । ଛାତ୍ରାବାସ ପାଇଁ ଓ ରୋଷାଇ ପାଇଁ ଘର ନାହିଁ । ସୁନ୍ଦର ବଗିଚାଟିଏ କରିବାକୁ ହେବ । ଏସବୁ ନ ହେଲେ ସ୍କୁଲ ସରକାରୀ ସ୍ୱୀକୃତି ପାଇବ କିପରି ? ଦଶଟାରୁ ଚାରିଟା

ପର୍ଯ୍ୟନ୍ତ ପାଠ ପଢ଼ାଇବାରେ ବ୍ୟସ୍ତ । ତେଣୁ ପ୍ରତ୍ୟୁଷରୁ ସ୍କୁଲକୁ ଯିବା ପର୍ଯ୍ୟନ୍ତ ଏବଂ ଗୃହଠାରୁ ରାତି ଦଶ, ଏଗାର, ବାରଟା ପର୍ଯ୍ୟନ୍ତ ମୋର ଆଦୌ ଅବସର ନଥାଏ । ଛାତ୍ରାବାସ ଓ ରୋଷାଇ ଘର ତିଆରି ହୋଇଗଲା । କେଉଁ ଅନାଦି କାଳରୁ ଶ୍ମଶାନ ରୂପେ ବ୍ୟବହୃତ ପ୍ରକାଣ୍ଡ ପଡ଼ିଆ ସ୍ଥାୟୀ ଅସ୍ଥାୟୀ ଫୁଲଗଛମାନଙ୍କରେ ଅପୂର୍ବ ଶ୍ରୀ ଧାରଣ କଲା ।

ଜାନୁଆରୀ, ଫେବୃଆରୀ ଏହି ଦୁଇଟି ମାସରେ ଅନେକ କାମ ହୋଇଗଲା । ମାର୍ଚ୍ଚ ମାସ ଆସିଲା । ଦୋଳ ଦଶମୀ ଦିନ ମୋର ସ୍ତ୍ରୀ କନ୍ୟାଟିଏ ଜନ୍ମ ହେଲା ପରେ ପରେ ଧନୁଷ୍ଟଙ୍କାର ରୋଗରେ ଆକ୍ରାନ୍ତ ହୋଇ ପଡ଼ିଲା । ମୁଁ ଆତଙ୍କିତ ହୋଇ ପଡ଼ିଲି ଏବଂ ସାମୁଦ୍ରିକଙ୍କର ଭବିଷ୍ୟତ ବାଣୀ ସତ ହେବ ବୋଲି ବିଶ୍ୱାସିଲି । ସମସ୍ତ ଡାକ୍ତରୀ ଚିକିତ୍ସା ବୃଥା ହେଲା । ଦୋଳ ପୂର୍ଣ୍ଣିମା ଦିନ ପ୍ରାୟ ଦୁଇଟା ବେଳକୁ ମୋର ସହ-ଧର୍ମିଣୀ ଲକ୍ଷ୍ମୀ ସାତ ଦିନର କନ୍ୟାଟିକୁ ନିର୍ମମଭାବରେ ପରିତ୍ୟାଗ କରି ପରଲୋକ ଗମନ କଲା । ମୋର ବୟସ ସେତେବେଳକୁ ୨୭ । ତାହାର ନିଶ୍ଚିତ ମୃତ୍ୟୁ କଥା କେତେ ମାସ ତଳେ ଆଶଙ୍କା କରିଥିଲି । ତାକୁ ସହିଯିବା ପାଇଁ ମାନସିକ ପ୍ରସ୍ତୁତିରେ ଲାଗି ପଡ଼ିଥିଲି । ବିଷୟ ବାର ପରିଗ୍ରହ ମୋ କଳ୍ପନାର ବାହାରେ ଥିଲା । ଏତେ ସତ୍ତ୍ୱେ ତାହାର ମୃତ୍ୟୁ କାଳୀନ ବଦନମଣ୍ଡଳ ଦର୍ଶନରେ ମୋର ଧୈର୍ଯ୍ୟ ଛୁଟିଗଲା । ମୁଁ ସମ୍ଭାଳି ନ ପାରି ଭୂଇଁରେ ଗଡ଼ି କାନ୍ଦିବାକୁ ଲାଗିଲି । ସାତ ଦିନର ଝିଅଟି ନିଦରେ ଶୋଇ ପଡ଼ିଥାଏ । ତାହାର ଦୁର୍ଭାଗ୍ୟ କଥା ଚିନ୍ତାକରି ହୃଦୟରେ ଯେଉଁ ବେଦନା ଅନୁଭବ କଲି, ତାହା ଭାଷାରେ ପ୍ରକାଶ କରି ହେବ ନାହିଁ ।

ସ୍ତ୍ରୀର ଅନ୍ତ୍ୟେଷ୍ଟି କ୍ରିୟା ଶେଷ ହେଲା । ମୁଁ ନିଜକୁ ନିଜେ ସାନ୍ତ୍ୱନା ଦେଇ କର୍ମ ପ୍ରବାହରେ ଭାସିଗଲି । ମୋର ବୁଢ଼ୀଆବୋଉ (ବିମାତା) ଓ ମା (ପିତାଙ୍କର ମାଉସୀ) କନ୍ୟାଟିକୁ ଲାଳନ ପାଳନ କଲେ । ସ୍କୁଲଠାରୁ ଘର ଅଧକ୍ରୋଶର ଦୂର ହେଲେହେଁ ଘରକୁ ଗଲି ନାହିଁ । ସ୍କୁଲରେ ଖାଏ, ରାତିରେ ସ୍କୁଲ ପିଣ୍ଡାରେ ଗଡ଼େ । କେବଳ ରବିବାର ଦିନ ଘର ଆଡ଼େ ବୁଲି ଆସେ । ଉଦ୍ଦେଶ୍ୟ, ଝିଅକୁ ଟିକେ ଦେଖି ନେବା ।

ପ୍ରାୟ ବର୍ଷକ ପରେ ମୋର ବନ୍ଧୁବାନ୍ଧବମାନେ ମୋର ପୁନଶ୍ଚ ବିବାହ ପାଇଁ ସ୍ୱର ଉତ୍ତୋଳନ କଲେ । ମୋର ବାଧା ସତ୍ତ୍ୱେ ସେମାନେ ଭିତରେ ଭିତରେ କନ୍ୟାର ସନ୍ଧାନ ନେଲେ । ଦିନେ ସ୍କୁଲର ପିଅନ ଭରତ ମହାନ୍ତି ମୋଠାରୁ ଟ ୨୦-୦୦ ନେଲା । ମୁଁ କୌଣସି ସୂତ୍ରରୁ ଜାଣି ପାରିଲି ଯେ, ସେହି ଟଙ୍କା ମୋର ନିର୍ବନ୍ଧ କାର୍ଯ୍ୟରେ ଖରଚ ହେବ । ମୁଁ ବହୁତ ପରେ ପଚାରି କରିବାରୁ ଭରତ ମାନିଗଲା ଯେ, ମୋର ଜ୍ୟେଷ୍ଠ ମାତୁଳ ଗୋବିନ୍ଦ ରଥ କନ୍ୟାଟିଏ ସ୍ଥିର କରିଛନ୍ତି । ଶ୍ରୀ ଶୁକ୍ଳେଶ୍ୱରଙ୍କ ମନ୍ଦିରରେ ନିର୍ବନ୍ଧ କାର୍ଯ୍ୟ ସମ୍ପନ୍ନ ହେବ । ମୁଁ ପଚାରିବାରୁ ଭରତ କନ୍ୟାଟି କାହାର ଓ କେଉଁ ଗ୍ରାମର ତାହା କହିଲା । ମୁଁ ହଠାତ୍ ହତବୁଦ୍ଧି ହୋଇଗଲି । ମାମୁଁ ମୋର ପରମ ପୂଜ୍ୟ । ତାଙ୍କ ଉପରେ ବିରକ୍ତ ହୋଇ, ତାଙ୍କ ମନରେ କଷ୍ଟ ଦେବା ମୋ ପକ୍ଷରେ ଉଚିତ ହେବ ନାହିଁ । କି କୌଶଳରେ ବିବାହ ପ୍ରସଙ୍ଗ ଭଙ୍ଗ ଦେବାକୁ ହେବ, ତାହା ଚିନ୍ତା କଲି । ଭଗବାନ ସଦୟ ହୋଇ ମୋତେ ବୁଦ୍ଧି ବତାଇ ଦେଲେ । ମୁଁ ସଙ୍ଗେ ସଙ୍ଗେ ମାମୁଁଙ୍କୁ ଯାଇଁ କହିଲି, "ମାମୁଁ, ମୁଁ ଶୁଣୁଛି, ସେ କନ୍ୟାଟିର କୋଷ୍ଠ ରୋଗ ଅଛି । ତୁମେ କେମିତି ରାଜି ହେଉଛ ?"

ମାମୁଁ ଚମକି ପଡ଼ିଲେ ଏବଂ ସଙ୍ଗେ ସଙ୍ଗେ କନ୍ୟା ପିତାଙ୍କ ପାଖକୁ ମଧ୍ୟସ୍ଥକୁ ପଠାଇ ମନା କରି ଦେଲେ ।

ମୁଁ ରକ୍ଷା ପାଇଲି ସିନା, ମାତ୍ର ଭବିଷ୍ୟତରେ କାଳେ ପୁଣି ବିକ୍ଷେପ ଘଟିବ ଏବଂ ମୁଁ ନିଜର ପ୍ରତିଜ୍ଞା ଭୁଲି ବିବାହରେ ମନ ଦେବି, ଏଥିପାଇଁ ପ୍ରତିକାର ଚିନ୍ତା କରିବାକୁ ପଡ଼ିଲା । ତିନି ଚାରି ଦିନ ପରେ ମୁଁ ଗ୍ରାମର ଇଷ୍ଟଦେବତା ଶ୍ରୀ ଶୁକ୍ଳେଶ୍ୱରଙ୍କ ମନ୍ଦିରରେ ପହଞ୍ଚିଲି ଏବଂ ଦେବମୂର୍ତ୍ତିଙ୍କ ଆଗରେ ପ୍ରତିଜ୍ଞା କଲି ଯେ, ମୁଁ କଦାପି ବିବାହ କରିବି ନାହିଁ । ନିଜର ପ୍ରତିଜ୍ଞାକୁ ଦୃଢ଼ କରିବା ଉଦ୍ଦେଶ୍ୟରେ ମୁଁ ମୋର କୌଳିକ ସଂଜ୍ଞା 'ପଣ୍ଡା' ବଦଳରେ ଏଣିକି 'ବ୍ରହ୍ମଚାରୀ' ଲେଖିଲି । ସେହିଦିନଠାରୁ ବନ୍ଧୁବାନ୍ଧବମାନେ ନୀରବ ରହିଲେ । ବିବାହ କଥା କେବେହେଲେ ମୋର ସ୍ମରଣକୁ ଆସିଲା ନାହିଁ ଓ ସେଥିପାଇଁ ମୁଁ ମଧ୍ୟ କେବେହେଲେ ଅନୁତାପ-ଅନଳରେ ଦଗ୍ଧୀଭୂତ ହୋଇ ନାହିଁ ।

ବ୍ରହ୍ମଚର୍ଯ୍ୟ ରକ୍ଷା ଦିଗରେ ଗୋଟିଏ ଉପାୟ ମହାତ୍ମାଜୀ କହିଛନ୍ତି । ସେ କହନ୍ତି, ଦିନ ସାରା ନିଜକୁ କାର୍ଯ୍ୟରେ ନିୟୋଜିତ କଲେ ରାତିରେ ଶୋଇ ସାରିଲା ପରେ କ୍ଳାନ୍ତିଦାୟିଣୀ ନିଦ୍ରାର ବଶୀଭୂତ ହେବ । ରାତି ପାହିଲେ ପୁଣି କର୍ମ ପ୍ରବାହର ଆରମ୍ଭ ହେବ । ତେଣୁ ଦୁଶ୍ଚିନ୍ତା କରିବାକୁ ବେଳ ନ ଥିବ । ଗାନ୍ଧିଜୀଙ୍କର ଏହି ବାଣୀ ମୁଁ ନିଷ୍ଠାପୂର୍ବକରେ ଅନୁସରଣ କରିବାକୁ ଲାଗିଲି ଏବଂ ତାହାଦ୍ୱାରା ଚମତ୍କାର ଫଳ ଲାଭ କଲି । ଆଗରୁ ମଧ୍ୟ ଅଥର୍ବ ବେଦର ଗୋଟିଏ ବାକ୍ୟାଂଶ 'କର୍ମ ଏବ ବ୍ରହ୍ମ' ଅର୍ଥାତ୍ ସତ୍‌କର୍ମ ସାହାଯ୍ୟରେ ଭଗବାନଙ୍କୁ ଲାଭ କରାଯାଏ, ମୋର ଦୃଷ୍ଟିକୁ ଆସିଲା । ତେଣୁ ସତ୍‌କର୍ମ ସାହାଯ୍ୟରେ ସବୁ ବିଷୟରେ ବିଜୟ ହାସଲ କରିବାକୁ ମୋର ପରମ ଓ ଚରମ କର୍ତ୍ତବ୍ୟ ବୋଲି ସ୍ଥିର କଲି ।

ସେତେବେଳେ ସପ୍ତମ ଶ୍ରେଣୀର ପରୀକ୍ଷା ନଭେମ୍ବର ମାସରେ ହେଉଥିଲା । ଅକ୍ଟୋବର ମାସ ସୁଦ୍ଧା ସ୍କୁଲକୁ ସରକାରୀ ସ୍ୱୀକୃତି ନ ମିଳିବାରୁ ମୁଁ ବଡ଼ ଅଶାନ୍ତି ଅନୁଭବ କଲି । ସପ୍ତମ ଶ୍ରେଣୀର ପରୀକ୍ଷାର୍ଥୀମାନେ ବିବ୍ରତ ହୋଇ ପଡ଼ିଲେ । ସେମାନଙ୍କର ବର୍ଷେ କାଳ ବୃଥା ନ ଯିବା ଲାଗି ମୁଁ କେନ୍ଦ୍ରାପଡ଼ା ହାଇସ୍କୁଲର ତତ୍‌କାଳୀନ ପ୍ରଧାନ ଶିକ୍ଷକ ଶ୍ରୀ ଫଜଲେ ରବିଙ୍କ ସହ ପରାମର୍ଶ କଲି । ତାଙ୍କ କଥାନୁସାରେ ସପ୍ତମ ଶ୍ରେଣୀର ଛାତ୍ରମାନେ ସରାସରି ଛାତ୍ରଭାବରେ କେନ୍ଦ୍ରାପଡ଼ା ହାଇସ୍କୁଲରେ ଭରତି ହୋଇଗଲେ । ମୋ ମୁଣ୍ଡରୁ ଗୋଟାଏ ବଡ଼ ବୋଝ ଖସି ପଡ଼ିଲା ।

୧୯୬୩ ମସିହାରେ ସ୍କୁଲର ଛାତ୍ର ସଂଖ୍ୟା ବହୁତ ବଢ଼ିଗଲା । ତେଣୁ ସ୍କୁଲ ଓ ଛାତ୍ରାବାସର ଗୋଟିଏ ଲେଖାଏଁ ବଖରା ବଢ଼ାଇବାକୁ ପଡ଼ିଲା । ଏ ବର୍ଷ ସରକାରୀ ସ୍ୱୀକୃତି ନିଶ୍ଚୟ ହାସଲ କରିବାକୁ ହେବ । ସେତେବେଳେ ସ୍ୱର୍ଗତ ମଧୁସୂଦନ ରାଓଙ୍କ ପୁତ୍ର ସୁକାନ୍ତ ରାଓ ଡି. ଆଇ. ଥିଲେ । ତାଙ୍କର ଶୁଭ ଦୃଷ୍ଟି ଆକର୍ଷଣ ପାଇଁ କଟକ ଗଲି । ସ୍ୱର୍ଗୀୟ ବିଶ୍ୱନାଥ କରଙ୍କ 'ଉତ୍କଳ ସାହିତ୍ୟ' ପ୍ରେସରେ ମୁଁ ଦୁଇ ବର୍ଷ ପ୍ରୁଫ ରିଡ଼ର କାମ କରିଥିବାରୁ ତାଙ୍କୁ ସଙ୍ଗରେ ନେଇ ସୁକାନ୍ତ ବାବୁଙ୍କୁ ଭେଟିଲି । ସେ ମଞ୍ଜୁରି ଦେବାକୁ ଆଶା ଦେଲେ ଏବଂ ବିଶ୍ୱନାଥ ବାବୁ

ବୁଲିଗଲା ପରେ ମୋତେ ଅଟକାଇ ପଚାରିଲେ—ଆପଣ ଏକା ଆସି ପାରିଥାନ୍ତେ । କିଏ ମହାଶୟଙ୍କୁ ସଙ୍ଗରେ ଆଣିଲେ କାହିଁକି ? ମୁଁ କହିଲି—"ଗତ ବର୍ଷ ମଞ୍ଜୁରି ନ ମିଳିବାରୁ ମୁଁ ବଡ଼ ବ୍ୟସ୍ତ ହୋଇ ପଡ଼ିଲି ଏବଂ କିଏ ମହାଶୟଙ୍କ ମାଧ୍ୟମରେ ନିଶ୍ଚୟ ସଫଳକାମ ହେବ ବୋଲି ବୁଝିଲି ।" ସୁକାନ୍ତ ବାବୁ କହିଲେ—"ମୋର କର୍ତ୍ତବ୍ୟପରାୟଣତା ଉପରେ ବୋଧ ହୁଏ ଆପଣଙ୍କର ବିଶ୍ୱାସ ନ ଥିଲା । ସ୍କୁଲ୍ ମଞ୍ଜୁରି କରିବା ମୋର କର୍ତ୍ତବ୍ୟ ଓ ଧର୍ମ । ତେଣୁ କାହାରି ମଧ୍ୟସ୍ଥତା ଦରକାର ନାହିଁ ।" ସେହିଦିନ ସେ ମୋ ସ୍କୁଲକୁ ଯିବାର ନିର୍ଦ୍ଦିଷ୍ଟ ତାରିଖ ଜଣାଇ ଦେଲେ ।

ନିର୍ଦ୍ଦିଷ୍ଟ ଦିନ ସେ ଗୃହୋଳଠାରେ ବସ୍‌ରୁ ଓହ୍ଲାଇଲେ । ଆମେ କେତେ ଜଣ ତାଙ୍କୁ ସ୍ୱାଗତ କଲୁ । ସ୍କୁଲଟି ଗୃହୋଳଠାରୁ ପ୍ରାୟ ଅଢ଼େଇ କିଲୋମିଟର ଦୂର । ବାଟରେ ସେ ସ୍କୁଲ ସମ୍ପର୍କରେ ନାନା କଥା ପଚାରୁଥାନ୍ତି । ଶହେ ଗଜ ଦୂରରୁ ସ୍କୁଲର ଅବସ୍ଥିତି, ଘରଦ୍ୱାର ଓ ସୁନ୍ଦର ବଗିଚା ଦେଖି କହି ପକାଇଲେ, "ମୁଁ ଆଜି ମଞ୍ଜୁରି ଦେଇ-ଯିବି ।"

ସ୍କୁଲର ଘରଦ୍ୱାର, ବାଗବଗିଚା, ପୁସ୍ତକାଳୟ ଓ ପ୍ରତି ଶ୍ରେଣୀକୁ ଯାଇ ଛାତ୍ର ଛାତ୍ରୀମାନଙ୍କୁ ଦେଖିଲା ପରେ କାର୍ଯ୍ୟାଳୟରେ ଲାଗିଲେ ଏବଂ ମୋତେ ଚାନ୍ଦା ଖାତା ମାଗି ତହିଁରେ ନିଜ ହାତରେ ଟ ୧୦.୦୦ ଚାନ୍ଦା ଲେଖି ମୋ ହାତକୁ ଟଙ୍କା ଦେଲେ । ପରିଦର୍ଶନ ମନ୍ତବ୍ୟ ବହିରେ ମଧ୍ୟ ସ୍କୁଲର ଓ ମୋର ଯଥେଷ୍ଟ ପ୍ରଶଂସା କରି ଲେଖିଲେ ।

ସରକାରୀ ସ୍ୱୀକୃତି ମିଳିଲା, ମାତ୍ର ତାହା ସଙ୍ଗେ ସଙ୍ଗେ ପରିଚାଳନା କମିଟିର ସଭ୍ୟମାନଙ୍କୁ ଅଙ୍ଗୀକାର ପତ୍ର ଲେଖିଦେବାକୁ ପଡ଼ିଲା ଯେ, ସେମାନେ ସରକାରୀ ଅନୁଦାନ ଦାବୀ କରି ପାରିବେ ନାହିଁ ।

୧୯୩୩ ମସିହା ବେଳକୁ କଟକ, କେନ୍ଦ୍ରାପଡ଼ା ଓ ଯାଜପୁରକୁ ନେଇ ଗଠିତ ଶିକ୍ଷା ଜିଲାରେ ୩୦ଟି ମଧ୍ୟ-ଇଂରାଜୀ ସ୍କୁଲ ଥିଲା ଏବଂ ଏତିକି ସଂଖ୍ୟକ ସ୍କୁଲ ଉକ୍ତ ଜିଲା ପାଇଁ ଆବଶ୍ୟକ ବୋଲି ଅଣ୍ଡରର କୌଣସି ଜିଲା କଲେକ୍ଟର ଧାର୍ଯ୍ୟ କରିଥିଲେ । ମୋର ସ୍କୁଲ୍ ଏକତିରିଂଶ ସ୍ଥାନରେ ରହିବାରୁ ଅନୁଦାନ ପାଇଁ ଦାବୀଦାର ହୋଇ ପାରିଲା ନାହିଁ ।

ସେତେବେଳେ ୭ମ ଶ୍ରେଣୀର ପରୀକ୍ଷାର୍ଥୀମାନେ ସେକେଣ୍ଡାରୀ ବୋର୍ଡ଼ ପରିଚାଳିତ ପରୀକ୍ଷା ଦେଉଥିଲେ ଏବଂ ଖବରକାଗଜରେ ପରୀକ୍ଷା-ଫଳ ଘୋଷିତ ହେଉଥିଲା । ମୋ ସ୍କୁଲର ଛାତ୍ରମାନେ ପ୍ରତିବର୍ଷ ବହୁ ସଂଖ୍ୟାରେ ଉତ୍ତୀର୍ଣ୍ଣ ହେଉଥିଲେ । ଉତ୍କୃଷ୍ଟ ପରୀକ୍ଷା ଫଳ, ସ୍କୁଲର ବାହ୍ୟ ଓ ଆଭ୍ୟନ୍ତରୀଣ ଉନ୍ନତି, ଅଧ୍ୟାପନାରେ ମୋର ଆନ୍ତରିକ ଓ ସଫଳ କୃତିତ୍ୱ ଏବଂ ତ୍ୟାଗମୟ ଆଦର୍ଶ ଜୀବନଯାପନ—ଏହି ସବୁ କାରଣରୁ ଦଶ, ପନ୍ଦର, ଏପରିକି ତିରିଶ ମାଇଲ ଦୂରରୁ ଛାତ୍ରମାନେ ମୋ ସ୍କୁଲରେ ପଢ଼ିବାକୁ ଆକୃଷ୍ଟ ହୋଇ ଆସିଲେ । ଅଧିକାଂଶ ବର୍ଷ ପ୍ରତ୍ୟେକ ଶ୍ରେଣୀରେ ସେକ୍‌ସନ ଲାଗି ରହିଲା । ମୋର ଯେତେଦୂର ମନେ ପଡ଼େ, ଗୋଟିଏ ଶ୍ରେଣୀରେ ସର୍ବାଧିକ ଅଢ଼େଇ ଶହ ଛାତ୍ର ଅଧ୍ୟୟନ କରୁଥିଲେ ଏବଂ ଛାତ୍ରାବାସରେ ୫୦।୬୦ ଜଣ ଛାତ୍ର ରହୁଥିଲେ ।

ସେତେବେଳେ କାହାରିକୁ ଚାନ୍ଦା ମାଗିଲେ ଚାରଣା, ଆଠଣା ବା ଖୁବ୍ ଜୋରରେ ଟଙ୍କାଟିଏ ମିଳୁଥିଲା । ସବୁବେଳେ ସ୍କୁଲର ଗଠନମୂଳକ କାମ ଚାଲୁଥିଲା । ସ୍କୁଲ ଓ ଛାତ୍ରାବାସ କଥା ବୁଝୁ ବୁଝୁ ଏବଂ ଗଠନମୂଳକ କାମରେ ସକ୍ରିୟ ଅଂଶ ଗ୍ରହଣ କରୁ କରୁ ସମୟ ଖତମ୍ । କାହାରିକୁ ପାଇଁ ଚାନ୍ଦା ଆଦାୟ କରିବାକୁ ବେଳ କାହିଁ ? ଖୁବ୍ ବେଶୀରେ ସ୍କୁଲ ପାଇଁ ପାଞ୍ଚଶ ଟଙ୍କାରୁ ବେଶୀ ଚାନ୍ଦା ମିଳି ନ ଥିବାର ମୋର ଭଲ ମନେ ଅଛି ।

ସମୃଦ୍ଧିହୀନ ଅଞ୍ଚଳ, ବଦାନ୍ୟ ବ୍ୟକ୍ତିଙ୍କର ଅଭାବ, ସହକର୍ମୀଶୂନ୍ୟ ପରିସ୍ଥିତି—ସେଥିରେ ପୁଣି ମୁଁ ବାମନ ହୋଇ ଚନ୍ଦ୍ର ଧରିବାକୁ ପ୍ରୟାସ କଲି । ଭଗବାନଙ୍କ ଆଶୀର୍ବାଦ ମିଳିଲେ ମୂକ ବାଚାଳ ହୁଏ ଓ ପଙ୍ଗୁ ପର୍ବତ ଲଙ୍ଘନ କରେ । ତେଣୁ ତାଙ୍କରି ଉପରେ ନିର୍ଭର ରଖି ସମସ୍ତ ପ୍ରକାର ପ୍ରତିକୂଳତା ବିରୁଦ୍ଧରେ ଘୋର ଅଭିଯାନ ସୁରୁ ହେଲା । ଅକ୍ଳାନ୍ତ ପରିଶ୍ରମ; ନିରଳସ ସାଧନା, ଅଟଳ ପ୍ରତିଜ୍ଞା ଏବଂ ସର୍ବୋପରି ଅଭ୍ୟସ୍ତ ଅର୍ଥଶୌଚ—ଏହି ଚତୁର୍ବିଧ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ମୁଁ ମୋର କର୍ତ୍ତବ୍ୟ କରିବାରେ ଲାଗିଲି । କେତେବେଳେ ସ୍କୁଲର ସମ୍ପାଦକ, କେତେବେଳେ ପ୍ରଧାନ ଶିକ୍ଷକ, କେତେବେଳେ ସ୍କୁଲରେ ପିଅନ କମ୍ବା ହଷ୍ଟେଲରେ ପାଚକ, ଅଥବା ମୂଲିଆ କମ୍ବା କୁଲି-ସର୍ଦ୍ଦାର, କେତେବେଳେ ପୁଣି ସହକାରୀ ଶିକ୍ଷକ—ଏହିପରି ବିଭିନ୍ନ ବେଶରେ ସ୍କୁଲ ରଙ୍ଗମଞ୍ଚରେ ମୋତେ ଅଭିନୟ କରିବାକୁ ପଡ଼ିଲା । ୧୯୩୨ ରୁ ୧୯୪୪ ପର୍ଯ୍ୟନ୍ତ

ବାରବର୍ଷ କାଳ ବାରମ୍ବାର ଆବେଦନ ସତ୍ତ୍ୱେ କଲେଜୋଡ଼ ଗ୍ରାଣ୍ଟ ମିଳିଲା ନାହିଁ । ହେଲେହେଁ, ସୁନ୍ଦର ସ୍କୁଲ ଗୃହ, ଉପଯୋଗୀ ଛାତ୍ରାବାସ, ପାଞ୍ଚ ଏକର ପର୍ଯ୍ୟନ୍ତ ଜମି, ପୂର୍ଣ୍ଣାଙ୍ଗ ଉପକରଣ ଓ ସୁଶୋଭନ ଉଦ୍ୟାନ ଏବଂ ପକ୍କା ପାବଚ୍ଛ ଯୁକ୍ତ ବୃହତ୍ ପୁଷ୍କରିଣୀ—ସ୍କୁଲର ଏହିସବୁ ବିଭବ ପ୍ରତିଦ୍ୱନ୍ଦୀ ସ୍କୁଲ ଗୁଡ଼ିକ ପକ୍ଷରେ ଈର୍ଷାର ବସ୍ତୁ ହୋଇଥିଲା । ଏ ପର୍ଯ୍ୟନ୍ତ ଲୋକମାନେ ସ୍କୁଲ ସମ୍ବନ୍ଧରେ ସେମାନଙ୍କ ମତ ସଂକ୍ଷେପରେ ଏହିପରି କହିଥାନ୍ତି—ଦୋହଲ ସ୍କୁଲ କହିଲେ ବନମାଳୀ ପଣ୍ଡିତେ ଏବଂ ବନମାଳୀ ପଣ୍ଡିତେ କହିଲେ ଦୋହଲ ସ୍କୁଲ ।

ସେତେବେଳେ ହେଡ୍ ମାଷ୍ଟର (ଆଇ. ଏ.), ସେକେଣ୍ଡ ମାଷ୍ଟର (ତାଲିମପ୍ରାପ୍ତ ମାଟ୍ରିକ), ହେଡ୍ ପଣ୍ଡିତ (ଭି. ଏମ୍.), ସେକେଣ୍ଡ ପଣ୍ଡିତ (ଭି. ଏମ୍.) ମାନଙ୍କର ଦରମାହାର ଯଥାକ୍ରମେ ଟ ୫୦, ଟ ୩୫, ଟ ୨୫, ଟ ୨୦ ଥିଲା । ବାର୍ଷିକ ବୃଦ୍ଧି ବେତନ ( increment) ର ବ୍ୟବସ୍ଥା ନ ଥିଲା । ସରକାର ନିର୍ଦ୍ଦିଷ୍ଟ ବ୍ୟୟ ପରିମାଣରୁ ଆଦାୟ ହେଉଥିବା ଛାତ୍ରଦତ୍ତ ବେତନ ବାଦ୍ ଦେଲେ ଯେତେ ହେଉଥିଲା, ସେତିକ ସରକାର ଅନୁଦାନ ମିଳୁଥିଲା । ଆମ୍ଭେମାନେ ଦୁଇ ବର୍ଷ ପର୍ଯ୍ୟନ୍ତ ଅତି କମ ଦରମାରେ କାର୍ଯ୍ୟ କରୁଥିଲୁ । ସରକାର ବାର ବର୍ଷ କାଳ ଗ୍ରାଣ୍ଟ ନ ଦେଲେହେଁ ଶିକ୍ଷକମାନଙ୍କୁ ଯୋଗ୍ୟତା ଅନୁସାରୀ ଦରମାହାର ଦେବା ମୋ ପକ୍ଷରେ ଅସମ୍ଭବ ନ ଥିଲା । ସେକେଣ୍ଡ ପଣ୍ଡିତ ମୋର ସହପାଠୀ ଥିବାରୁ ଏବଂ ତାଙ୍କର କାର୍ଯ୍ୟ କଳାପରେ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ଥିବାରୁ ମୁଁ ତାଙ୍କୁ ମାସିକ ଟ ୩୦ ଦରମା ଦେଇ ନିଜେ ଟ ୨୦-୦୦ କରି ନେଉଥିଲି ।

ଶ୍ରୀ ପଦ୍ମନାଭ କର ପ୍ରଥମ ପ୍ରଧାନ ଶିକ୍ଷକ ଥିଲେ । ତାଙ୍କ ପରେ ସର୍ବଶ୍ରୀ ଦିଗମ୍ବର ମିଶ୍ର (ବାଙ୍କୀବାଜାର), ନାରାୟଣ ପ୍ରସାଦ ରଥ (କେଶରପୁର), କ୍ଷେତ୍ରବାସୀ ସାମଲ (ପଞ୍ଚାମୁଣ୍ଡାଇ), ବର୍ଣ୍ଣ ମୋହନ ଦାସ, ଶାର କଶୋର ପଟ୍ଟନାୟକ (ଖୋର୍ଦ୍ଧା) ଓ ଜଗେଶ୍ୱର ସାମଲ ଯଥାକ୍ରମେ ପ୍ରଧାନ ଶିକ୍ଷକ ହୋଇଥିଲେ । ସମସ୍ତେ ସ୍କୁଲରେ ମୋ ନେତୃତ୍ୱକୁ ଅକୁଣ୍ଠିତ ଭାବରେ ସ୍ୱୀକାର କରୁଥିବାରୁ ମୁଁ ସେମାନଙ୍କ ପାଖରେ କୃତଜ୍ଞ ।

---

## ଦୋହଲା ମଡେଲ ହାଇସ୍କୁଲ ପ୍ରତିଷ୍ଠା

୧୯୪୪ ମସିହାରେ ମୋର କନ୍ୟା ସପ୍ତମ ଶ୍ରେଣୀରେ ପଢ଼ିଲା । ତାକୁ ମାଟ୍ରିକ୍ ପଢ଼ାଇବା ପାଇଁ କଟକ ଉପରେ ନିର୍ଭର ନ କରି ମୋର ସେହି ସ୍କୁଲଟିକୁ ହାଇସ୍କୁଲରେ ପରିଣତ କରିବା ପାଇଁ ପ୍ରବଳ ଇଚ୍ଛା ହେଲା । ସେଥିପାଇଁ ସମ୍ପୃକ୍ତ ଗ୍ରାମଗୁଡ଼ିକର ଅଧିବାସୀମାନଙ୍କୁ ଡକାଇ ଗୋଟିଏ ସଭାର ଆୟୋଜନ କଲି । ଲୋକମାନଙ୍କଠାରେ ପ୍ରବଳ ଉତ୍ସାହ ଲକ୍ଷ୍ୟ କଲି । ୧୯୪୫ ଜୁଲାଇ ମାସରୁ ୮ମ ଶ୍ରେଣୀ ଖୋଲାଯିବା ପାଇଁ ପ୍ରସ୍ତାବ ଗୃହୀତ ହେଲା ଏବଂ ମୋ ଉପରେ ସମସ୍ତ ଦାୟିତ୍ୱ ଅର୍ପଣ କରାଗଲା ।

ମୁଁ ଲାଗିପଡ଼ିଲି । ସାଙ୍ଗକୁ ହିତାକାଙ୍କ୍ଷୀ ବ୍ୟକ୍ତି କେହି ନାହାନ୍ତି ସକ୍ରିୟ ଭାବରେ ସାହାଯ୍ୟ କରିବାକୁ । ଚାନ୍ଦା ଆଦାୟ, ଇଟାଭାଟି ତିଆରି, କାଠ ବାଉଁଶ ସଂଗ୍ରହ, ମୂଲିଆଙ୍କ କାମର ତତ୍ତ୍ୱାବଧାନ, ସବୁ କ୍ଷେତ୍ରରେ ଏକା ମୁଁ । କପରି ଗଳଦ୍‌ଘର୍ମ ହୋଇ ଅକ୍ଳାନ୍ତ ଭାବରେ କାର୍ଯ୍ୟ କରୁଥିଲି, ତାହା ଏବେ ବି ମୋ ହୃଦୟରେ ବିସ୍ମୟ ଉତ୍ପାଦନ କରେ ।

ଜୁଲାଇ ବେଳକୁ ହାଇସ୍କୁଲ ପାଇଁ ନଅ ବଖରା ବିଶିଷ୍ଟ ପ୍ରକାଣ୍ଡ ଘର ତିଆରି ହୋଇଗଲା । ଇଟାକାନ୍ଥ, ଛଣ ଛପର । କାନ୍ଥ ପଲସ୍ତରା, ଚଟାଣ ପକ୍‌କା କରିବା, ଝରକା ଓ ଦୁଆର ଲାଗିବା—ଏ ସବୁ କାମ ପରେ ଧୀରେ ଧୀରେ ହେଲା । ମ. ଇ. ସ୍କୁଲର ସଞ୍ଚିତ ତିନି ହଜାର ଟଙ୍କାରୁ ପିଲାଙ୍କ ବସିବା ପାଇଁ ବେଞ୍ଚ, ଡେସ୍କ, ଶିକ୍ଷକମାନଙ୍କ ପାଇଁ ଚେୟାର, ଟେବୁଲ ଓ କେତୋଟି ଆଲମିରା କଣା ଯାଇଥିଲା ।

ଅଷ୍ଟମ ଶ୍ରେଣୀରେ ଷାଠିଏ ଜଣ ପିଲା ନାମ ଲେଖାଇଲେ । ଶ୍ରୀ ଅକ୍ଷୟ କୁମାର ଚକ୍ରବର୍ତ୍ତୀ ଓ ଶ୍ରୀ ଭବଗ୍ରାହୀ ମିଶ୍ର ଯଥାକ୍ରମେ ପ୍ରଧାନ ଶିକ୍ଷକ ଓ ସହକାରୀ ଶିକ୍ଷକ ଭାବରେ କାମ କଲେ । ଏହି ଶ୍ରେଣୀ ପାଇଁ ସରକାରୀ ମଞ୍ଜୁରି ପାଇବା ଲାଗି ଇନ୍‌ସପେକ୍ଟରଙ୍କୁ ଦରଖାସ୍ତ କରିବାରୁ

ଉତ୍ତର ମିଳିଲା 'Disband the class as Asureswar High School is at four miles only ସେତେବେଳକୁ ଅସୁରେଶ୍ୱର ହାଇସ୍କୁଲରେ ୯ମ ଶ୍ରେଣୀ ଖୋଲି ସାରିଥିଲା । ଇନ୍‌ସପେକ୍ଟରଙ୍କ ଏ ପ୍ରକାର ମନ୍ତବ୍ୟରେ ମୁଁ ହତୋତ୍ସାହ ହୋଇ ନ ଥିଲି । ସ୍କୁଲଟିକୁ ସୁନ୍ଦର କରି ଗଢ଼ିଲେ ଏବଂ ଛାତ୍ର ସଂଖ୍ୟାର ବୃଦ୍ଧି ଘଟାଇଲେ ମଞ୍ଜୁରୀ ନିଶ୍ଚୟ ମିଳିବ ବୋଲି ମୋର ଭରସା ଓ ବିଶ୍ୱାସ ଥାଏ । ତେଣୁ ମୁଁ ଦ୍ୱିଗୁଣ ପଡ଼ି ଅଧିକତର ଆନ୍ତରିକତା ସହିତ ମୋ କର୍ତ୍ତବ୍ୟ କରିବାରେ ଲାଗିଲି ।

ପରବର୍ଷ ଜୁଲାଇରେ ୯ମ ଶ୍ରେଣୀ ଖୋଲିଲି । ଶ୍ରୀ ଚକ୍ରବର୍ତ୍ତୀ ବି. ଏ. ପାସ୍ କରି ନ ଥିବାରୁ ମଞ୍ଜୁରି ପାଇବାରେ ବ୍ୟାଘାତ ଘଟିବ ଜାଣି ଶ୍ରୀ ଗୋବିନ୍ଦ ଚନ୍ଦ୍ର ସାମଲ, ବି. ଏ. ଙ୍କୁ ପ୍ରଧାନ ଶିକ୍ଷକ କରାଗଲା । ଶ୍ରୀ ଚକ୍ରବର୍ତ୍ତୀ ସ୍କୁଲର ସମ୍ପାଦକ ଥିଲେ ଏବଂ ସହକାରୀ ଶିକ୍ଷକ ଭାବରେ ସ୍ୱାକ୍ଷର କଲେ ତାଙ୍କର ମର୍ଯ୍ୟାଦା ହାନି ହେବ ବୋଲି ପାଠ ପଢ଼ାଉ-ଥିଲେ ହେଁ ଶିକ୍ଷକ ଉପସ୍ଥାନ ବହିରେ ଦସ୍ତଖତ କରୁ ନଥିଲେ । ଶ୍ରୀ ଚକ୍ରବର୍ତ୍ତୀଙ୍କ ସମ୍ପର୍କରେ ବିସ୍ତୃତ ବିବରଣୀ ସ୍ୱତନ୍ତ୍ର ଭାବରେ ଲେଖିବି ।

ଏକାଦଶ ଶ୍ରେଣୀ ଖୋଲିଲା ବେଳକୁ ପୁଣି ଥରେ ସରକାରୀ ମଞ୍ଜୁରି ପାଇଁ ଦରଖାସ୍ତ ପଠାଇଲି । ଏହା ପୂର୍ବରୁ ମୁଁ ଦରଖାସ୍ତ କରୁ ନ ଥିଲି । ଏତେବେଳକୁ ଶ୍ରୀ ମାୟାଧର ମାନସିଂହ ଇନ୍‌ସପେକ୍ଟର ଥାନ୍ତି । ସେ ସ୍କୁଲ ପରିଦର୍ଶନ କରିବାକୁ ଗଲେ ଏବଂ ପ୍ରତି ଶ୍ରେଣୀକୁ ଯାଇ ବିଭିନ୍ନ ବିଷୟରେ ପରୀକ୍ଷା କରିସାରି ଅଫିସରେ ପହଞ୍ଚିଲେ । ମୋତେ ପଚାରିଲେ—ପଣ୍ଡିତ ମହାଶୟ, ସ୍କୁଲ ଉଦ୍ଦେଶ୍ୟରେ କେତେ ଟଙ୍କା ଜମା କରିଛନ୍ତି ? ସେତେବେଳେ, ସ୍କୁଲ ଗ୍ରାଣ୍ଟ ନ ପାଇବା ପର୍ଯ୍ୟନ୍ତ ତାହାର ପରିଚାଳନା ଲାଗି କେତେ ହଜାର ଟଙ୍କା ପୋଷ୍ଟାଲ ପାସ୍‌ବୁକ୍‌ରେ ଜମା ଦେଖାଇବାର ନିୟମ ଥିଲା । ମୁଁ ଉତ୍ତର କଲି, "ମୁଁ ଶୂନ୍ୟ ହସ୍ତରେ ମ. ଇ. ସ୍କୁଲ ଆରମ୍ଭ କରିଥିଲି । ସେହି ସ୍କୁଲ ଏବେ ହାଇସ୍କୁଲ ହେଉଛି । ସରକାର ତ ଟଙ୍କା ଦେଉ ନାହାନ୍ତି । ମୁଁ ଶୂନ୍ୟ ହସ୍ତରେ ଚଳାଉଛି । ମୁଁ ବଡ଼ ଦୁଃସାହସୀ" । ମୋର ଏହି ଉତ୍ତରରେ ଶ୍ରୀ ମାନସିଂହ ଭାରି ଖୁସି ହେଲେ ଏବଂ ଆଜି ସ୍କୁଲକୁ ମଞ୍ଜୁରି ଦେଲି ବୋଲି କହିଲେ ।

ଯଥା ସମୟରେ ମଞ୍ଜୁର୍ ଫଣ୍ଡାର୍ ସରକାରୀ ପତ୍ର ମିଳିଲା । ସେହିଦିନ ଆମେ ଶିକ୍ଷକ ଓ ଛାତ୍ରମାନଙ୍କ ଆନନ୍ଦରେ ଅଭିଭୂତ ହୋଇ ଶୋଭାଯାତ୍ରା ଦ୍ୱାରା କେତେକ ଗ୍ରାମ ପ୍ରଦକ୍ଷିଣ କରିଥିଲୁ ।

ମ. ଇ. ସ୍କୁଲଟି ବାରବର୍ଷ କାଳ ଗ୍ରାଣ୍ଟ୍-ଇନ୍-ଏଡ୍ ପାଇ ନ ଥିବାରୁ ହାଇସ୍କୁଲ ପାଇଁ ଗ୍ରାଣ୍ଟ ଶୀଘ୍ର ମିଳିଗଲା ଓ ଉଭୟ ସ୍କୁଲକୁ ମିଶାଇ ଦିଆଗଲା । ଏହା ୧୯୪୯ ମସିହା କଥା ।

ଏକାଦଶ ଶ୍ରେଣୀ ଖୋଲିଲା ବେଳକୁ ସ୍କୁଲର ପ୍ରଧାନ ଶିକ୍ଷକ ନିଶ୍ଚୟ ତାଲିମପ୍ରାପ୍ତ ଗ୍ରାଜୁଏଟ୍ ହେବା ଆବଶ୍ୟକ । ସେତେବେଳେ ବି. ଏ. ପାସ୍ ଶିକ୍ଷକ ଜଣେ ପାଇବା ସୁଲଭ ନ ଥିଲା । ତାଲିମପ୍ରାପ୍ତ ବି. ଏ. ତ ଆହୁରି ଦୁର୍ଲଭ । ଯାହା ହେଉ ବହୁ ଚେଷ୍ଟା କରି ମୁଁ ଶ୍ରୀ ସୁରେନ୍ଦ୍ର ନାଥ ତ୍ରିପାଠୀ ବି. ଏ., ବି. ଇଡ୍. (ବର୍ତ୍ତମାନ ମ୍ୟାନମୋହନ ଏକାଡେମୀର ପ୍ରଧାନ ଶିକ୍ଷକ) ଙ୍କୁ ପ୍ରଧାନ ଶିକ୍ଷକ ଭାବରେ ପାଇଥିଲି । ସେ କାନପୁର ମଧ୍ୟ ଇଂରାଜୀ ସ୍କୁଲରେ ମୋର ଛାତ୍ର ଥିଲେ । ମୋର ଛାତ୍ର ଶ୍ରୀ ନବକିଶୋର ମହାନ୍ତି (ବର୍ତ୍ତମାନ ଅଧ୍ୟାପକ) ବି. ଏ. ଫେଲ୍ ହୋଇ ଅଧ୍ୟୟନ ଶେଷ କରୁଥିଲେ । ତାଙ୍କ ଉପରେ ପ୍ରଭାବ ପକାଇ ମୋ ସ୍କୁଲକୁ ଆଣିଲି । ବିଜ୍ଞାନ ଶିକ୍ଷକର ଅଭାବ ମୋତେ ବିବ୍ରତ କରିଦେଲା । ସ୍କୁଲର ଦୁଇଟି ଉଦୀୟମାନ ଛାତ୍ର, ଯେଉଁମାନେ କି ପ୍ରଥମ ଶ୍ରେଣୀରେ ମାଟ୍ରିକ ପାସ୍ କରିବାକୁ ଆଶା ରଖିଥିଲେ, ବିଜ୍ଞାନ-ଶିକ୍ଷକଙ୍କର ଅଭାବ ହେତୁ ସ୍କୁଲ ଛାଡ଼ି ଅନ୍ୟ ସ୍କୁଲକୁ ଚାଲିଗଲେ ଓ ସେଠାରେ ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ । ଆଇ. ଏସ୍. ସି. ଫେଲ ହୋଇଥିବା ଦୁଇ ତିନି ଜଣ ଯୁବକ ମୋତେ ଆଶା ଦେଇ ନିରାଶ କଲେ । ଶେଷରେ ମୁଁ ଶ୍ରୀ ଦାଶରଥି ନାୟକ ନାମରେ ଜଣେ ଆଇ. ଏସ୍. ସି. ଫେଲ୍ ହୋଇଥିବା ଯୁବକଙ୍କର ସନ୍ଧାନ ପାଇଲି ଓ ତାଙ୍କ ପାଖକୁ ନିଯୁକ୍ତି ପତ୍ର ପଠାଇଲି । ସେ ଦୁଇ ତିନି ଥର ଜବାବ ଦେଇ ନ ଆସିବାରୁ ମୁଁ ଯେ କେତେ ମନସ୍ତାପ ଭୋଗିଥିଲି, ତାହା ଭାଷାରେ ପ୍ରକାଶ କରିହେବ ନାହିଁ । ଦିନେ ମୁଁ ତାଙ୍କ ଘରକୁ ବାହାରିଲି । ମଣ୍ଡାମୁଣ୍ଡାଇରୁ ବାଲିପାଟଣାକୁ ଯିବାବେଳେ ପ୍ରବଳ ବର୍ଷା ହେଲା । ଘନଘନ ବଜ୍ରଲର ଚମକ ଓ ଘଡ଼ଘଡ଼ିର ଘୋର ଗର୍ଜନରେ ମୁଁ ଆତଙ୍କିତ ହୋଇ ପଡ଼ିଲି । ଶ୍ରୀ ନାୟକଙ୍କ ଘରେ ପହଞ୍ଚିବା ବେଳକୁ ମୁଁ

ପୂର୍ବପୂର୍ବ ଉଦା ହୋଇଯାଇଥିଲି । ତାଙ୍କୁ ଦେଖିବା ମାତ୍ରେ ମୁଁ କାନ୍ଦି ପକାଇଲି ଓ ବାଷ୍ପରୁଦ୍ଧ କଣ୍ଠରେ କହିଲି—"ତୁମେ ଜବାବ ଦେଇ କାହିଁକି ଯାଉ ନାହଁ ? ପିଲାଏ ଛତ୍ରଭଙ୍ଗ ଦେବାକୁ ଆରମ୍ଭ କଲେଣି । ତୁମେ ଆଜ ମୋ ସାଙ୍ଗରେ ଚାଲ ।" ସେ ମୋତେ ସାନ୍ତ୍ୱନା ଦେଲେ ଓ ଏକ ସପ୍ତାହ ମଧ୍ୟରେ ସ୍କୁଲରେ ପହଞ୍ଚିବେ ବୋଲି ଦୃଢ଼ ଭାବରେ କହିଲେ । ସେ ମୋତେ ସ୍ପୃହା ଜଳଖିଆରେ ଆପ୍ୟାୟିତ କଲେ ଏବଂ ମୁଁ ମଧ୍ୟ ପରିଶ୍ରମ ଓ କଷ୍ଟ ସ୍ୱୀକାର ସାର୍ଥକ ହେଲା ବଗୁରି ଗଭୀର ଜୟର ଆନନ୍ଦ ଅନୁଭବ କଲି । ସେ ନିର୍ଦ୍ଦିଷ୍ଟ ସମୟରେ ସ୍କୁଲରେ ଯୋଗ ଦେବାରୁ ମୋ ମୁଣ୍ଡରୁ ଗୋଟିଏ ବଡ଼ ବୋଝ ଖସିପଡ଼ିଲା । ସେତେବେଳେ ଶିକ୍ଷକତା କରିବାକୁ ଲୋକ ପାଇବା କାଠିକର ପାଠ ଥିଲା । ତତ୍ତ୍ୱନ୍ତ ଶିକ୍ଷକଙ୍କ ନିଯୁକ୍ତିରେ ମୁଁ କେତେ କ୍ଳେଶ ସ୍ୱୀକାର କରିଛି, ତାହା ବର୍ଣ୍ଣନା କଲେ ବହୁତ ହେବ ।

ହାଇସ୍କୁଲ ସହ ମ. ଇ. ସ୍କୁଲର ମିଶ୍ରଣ ପରେ କେତେକ ନୂତନ ସମସ୍ୟା ଦେଖାଦେଲା । ମୁଁ ମ. ଇ. ସ୍କୁଲର ହେଡ୍ ପଣ୍ଡିତ ଥିଲେ ହେଁ ଉଭୟ ସ୍କୁଲର ସର୍ବମୟ କର୍ତ୍ତା ଥିଲି । ମୁଁ ଏକାଧାରରେ ସ୍କୁଲର ସମ୍ପାଦକ, ପ୍ରଧାନ ଶିକ୍ଷକ, ପିଅନ ଓ ଚୁଖାର ମଧ୍ୟ ଥିଲି । ମୋର ଅଜ୍ଞାତରେ ସ୍କୁଲର କୌଣସି କାର୍ଯ୍ୟ ହେଉ ନ ଥିଲା । ସ୍କୁଲର ଆର୍ଥିକ ଦାୟିତ୍ୱ ପୂର୍ବପୂର୍ବ ମୋ ଉପରେ ଥିଲା ଏବଂ ପରିଚାଳନାଗତ ସମସ୍ୟାରେ ମୁଁ ନୀରବ ଦର୍ଶକ ନ ଥିଲି । ସ୍ଥୂଳତଃ ଅନ୍ୟମାନଙ୍କ ଭାଷାରେ ମୁଁ ସ୍କୁଲରେ ଏକାଧିପତ୍ୟ କରୁଥିଲି । ଏପରି କରିବାରେ ମୋର କ୍ଷମତାଲିପ୍ସୁ ମନୋବୃତ୍ତି ଥିଲା ବୋଲି ଯଦି କେହି କହେ, ମୁଁ ତାହାଙ୍କ ସହ ଏକମତ ହୋଇ ପାରିବ ନାହିଁ । ୧୯୩୨ ମସିହାରେ ମ: ଇ: ସ୍କୁଲର ପ୍ରତିଷ୍ଠା ବେଳରୁ ଏଯାବତ୍ ମୋର କାର୍ଯ୍ୟାବଳୀ ନିରପେକ୍ଷ ଭାବରେ ବିଚାର କଲେ, ମୋର ବିଶ୍ୱାସ, ମୋର ଶତ୍ରୁ ସୁଦ୍ଧା କହିବ ଯେ, ମୁଁ କାହାରି କ୍ଷମତା ଅପହରଣ କରିବାକୁ ଯାଇ ନାହିଁ, ବରଂ ଚୁମ୍ବକ ଲୌହକୁ ଆକର୍ଷଣ କଲା ଭଳି ମୋର ବ୍ୟକ୍ତିତ୍ୱ, ମୋର ଅଗାଧ ପରିଶ୍ରମ ଓ ମୋର ତ୍ୟାଗ ସ୍ୱୀକାର ଦ୍ୱାରା ବ୍ୟକ୍ତିଗତ କ୍ଷମତା ବା ଦାୟିତ୍ୱ ଆକୃଷ୍ଟ ହୋଇ ମୋଠାରେ ପୁଞ୍ଜ ହୋଇଥିଲା । ଏକାଧିପତ୍ୟ

ପାଇଁ ମୁଁ ଖୁସୀ ନ ଥିଲି, ତଥାପି ଏହାଠାରୁ ଦୂରେଇ ଯିବାକୁ ବାଟ ପାଉ ନ ଥିଲି । ମୁଁ ଯେ ଏକାଧିପତ୍ୟ କରୁଚି, ଏକଥା ମୁଁ ନିଜେ ଜାଣି ପାରୁ ନ ଥିଲି—ସ୍କୁଲ ସହ ସମ୍ପର୍କ ଥିବା ଶହ ଶହ ଲୋକଙ୍କ ଚିନ୍ତାରେ ମଧ୍ୟ ଏହାର ଅସ୍ତିତ୍ୱ ନ ଥିଲା । ପ୍ରଥମେ ଏହି ଏକାଧିପତ୍ୟ ବା high-handedness କଥା ଯିଏ ଉତ୍ଥାପନ କରିଥିଲେ, ସେ ହେଉଛନ୍ତି ଶ୍ରୀ ଅକ୍ଷୟ କୁମାର ଚକ୍ରବର୍ତ୍ତୀ । ଏଠାରେ ତାଙ୍କ ସହ ମୋ ସମ୍ପର୍କରେ କେତେକ ସଂକ୍ଷିପ୍ତ ବିବରଣୀ ଦେଲେ ଅପ୍ରାସଙ୍ଗିକ ହେବ ନାହିଁ ।

ଶ୍ରୀ ଅକ୍ଷୟ କୁମାର ଚକ୍ରବର୍ତ୍ତୀଙ୍କ ଘର ଗୁହୋଳ ଗ୍ରାମରେ । ସେ ମୋର ଜଣେ ପ୍ରତିବାସୀ ଥିଲେ ବୋଲି ଚଳେ । ସେ ବି. ଏ. ପର୍ଯ୍ୟନ୍ତ ପଢ଼ିଥିଲେ, ମାତ୍ର ପାସ୍ କରି ନ ଥିଲେ । ତାଙ୍କର ୨୮ ବର୍ଷ ବୟସରେ ସ୍ତ୍ରୀ ବିୟୋଗ ଘଟିଥିଲା ଏବଂ ଗୋଟିଏ ମାତ୍ର କନ୍ୟା ସନ୍ତାନ ସମ୍ପତ୍ତିର ଉତ୍ତରାଧିକାରିଣୀ । ତାଙ୍କ ପିତା ପ୍ରାୟ ପନ୍ଦର ଏକର ଜମିର ଅଧିକାରୀ ତଥା ଧନୀ ବ୍ୟକ୍ତି ଥିଲେ ।

ଅକ୍ଷୟ ବାବୁ କୋଠାର ଷ୍ଟେଟର ମେନେଜର, କଟକସ୍ଥ ମଧୁସୂଦନ ଗ୍ରାମୋଦ୍ୟୋଗ ମନ୍ଦିରର ପରିଚାଳକ, ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟଙ୍କ ଔଷଧ ଦୋକାନର କର୍ମଚାରୀ, କଟକ ଟ୍ରେଡ଼ିଂ କମ୍ପାନୀର କର୍ମଚାରୀ ଇତ୍ୟାଦି ବହୁ କ୍ଷେତ୍ରରେ କାମ କରି, ପ୍ରତି ଜାଗାରୁ ଅସନ୍ତୋଷଜନକ କାର୍ଯ୍ୟ ଲାଗି ବିଦାୟ ନେଇ ଶେଷରେ କାନପୁର ମେଟ୍‌କାଫ୍ ମ. ଇ. ସ୍କୁଲ (ସୁଙ୍ଗୁଡ଼ା) ର ପ୍ରଧାନ ଶିକ୍ଷକ ହୋଇଥିଲେ । ମୁଁ ସେତେବେଳେ ସେହି ସ୍କୁଲର ସେକେଣ୍ଡ୍ ପଣ୍ଡିତ ଥିଲି । ପ୍ରାୟ ୧୯୩୧ ମସିହାରେ ରାଜନୈତିକ କାରଣରୁ ସେ ଏହି ସ୍କୁଲରୁ ଇସ୍ତଫା ଦେଇ ଚାଲିଯିବାକୁ ବାଧ୍ୟ ହୋଇଥିଲେ । ଜ୍ୟୋତିଷ ଓ ସାମୁଦ୍ରିକ ବିଦ୍ୟାରେ ତାଙ୍କର ପାଣ୍ଡିତ୍ୟ ଥିଲା ଏବଂ ସେଥିଲାଗି ଲୋକସାଧାରଣ ତାଙ୍କ ପ୍ରତି ଆକୃଷ୍ଟ ହେଉଥିଲେ । ସେ ଖଦଡ଼ ପିନ୍ଧୁଥିଲେ ଏବଂ ନିଜକୁ ଜଣେ କଂଗ୍ରେସବାଲା ବୋଲି କହୁଥିଲେ । ମାତ୍ର ମୁଁ ଜଣେ ଖଦଡ଼ଧାରୀ ଓ ସଚ୍ଚା କଂଗ୍ରେସ କର୍ମୀ ଭାବରେ ଭଲରୂପେ ଜାଣେ ଯେ, ସେ ଦିନକ ପାଇଁ ହେଲେ, କଂଗ୍ରେସର କାମ କରୁ କରି ନାହାନ୍ତି । ତାଙ୍କ କଥା ଓ କାର୍ଯ୍ୟରେ ସାମଞ୍ଜସ୍ୟ ନ ଥିଲା । ସମସ୍ତେ ଜାଣନ୍ତି, ଦର୍ପ ଓ ଅମ୍ବୁଶ୍ଳାଘା ତାଙ୍କର ଅସ୍ଥିମଜ୍ଜାଗତ ଥିଲା ।

ଧର୍ମର ସନ୍ତାନ ଓ ବଂଶବୃଦ୍ଧିକ ଥିଲେହେଁ ଦେଶ ଓ ଜାତି ପାଇଁ କିଛି କରିବା ଦୂରେ ଥାଉ ସେ ନିଜ ଗ୍ରାମ ପାଇଁ ମଧ୍ୟ କିଛି କରି ନାହାନ୍ତି ।

ମଧ୍ୟ-ଇଂରେଜୀ ସ୍କୁଲର ପ୍ରତିଷ୍ଠାରେ ତାଙ୍କର ଅବଦାନ କିଛି ନ ଥିଲା । ଲୋକେ କହୁଥିଲେ, ଏପରି କି ତାଙ୍କ ବାପା ମଧ୍ୟ କହୁଥିଲେ ଯେ, ସେ ଯେଉଁ କାର୍ଯ୍ୟରେ ହାତ ଦେବେ, ସେ କାର୍ଯ୍ୟଟି ବ୍ୟର୍ଥ ହେବ । ତାଙ୍କଠାରେ ତ୍ୟାଗର ଅଭାବ, ଆଦର୍ଶବାଦର ଅଭାବ, ବରଂ ଗର୍ବ, ଦମ୍ଭ ଓ ଅଭିମାନର ପ୍ରାଚୁର୍ଯ୍ୟ ଦେଖି ମୁଁ ତାଙ୍କୁ ସ୍କୁଲର ପରିଚାଳନା କମିଟିରେ ସମ୍ପାଦକ ବା ସଭାପତି କରାଇ ଦେଇ ନ ଥିଲି । କେବଳ ସେ ଜଣେ ବୟସ୍କ ବ୍ୟକ୍ତି ଥିବାରୁ ତାଙ୍କୁ ଜଣେ ସଭ୍ୟଭାବରେ ନିଆଯାଇଥିଲା । ସେ ସେତେବେଳେ ବେକାର ଥିବାରୁ ସ୍କୁଲର ପ୍ରଧାନ ଶିକ୍ଷକ ହେବାପାଇଁ ମୋତେ ଥରେ କହିଥିଲେ, ମାତ୍ର ତାଙ୍କର ନାନା ପ୍ରକାର ଦୁର୍ଗୁଣ ହେତୁ ମୁଁ ରାଜି ନ ହୋଇ ତାଙ୍କର ଆଗ୍ରହ ଭାଙ୍ଗି ଯିବା ଭଳି କଥା କହି ରକ୍ଷା ପାଇଥିଲି ।

ପରିଚାଳନା କମିଟିର ସଭ୍ୟ ଭାବରେ ସେ ଅନେକ ସମୟରେ ମୂଲ୍ୟହୀନ କଥା କହୁଥିଲେ, ଉଦ୍‌ଭଟ କଳ୍ପନା ଶୁଣାଉଥିଲେ । ମାତ୍ର ମୁଁ ଉପଯୁକ୍ତ ଯୁକ୍ତି ଦର୍ଶାଇ ସେସବୁର ପ୍ରତିବାଦ କରୁଥିଲି । ସଭ୍ୟମାନେ ମୋ କଥା ଗ୍ରହଣ କରୁଥିଲେ । ତେଣୁ ସେ ବିରକ୍ତ ହୋଇ କେତେବେଳେ କଳହ ସୃଷ୍ଟି କରୁଥିଲେ, କେତେବେଳେ ସଭା ଛାଡ଼ି ଚାଲି ଯାଉଥିଲେ । ସ୍କୁଲ ଲାଗି ମୋର କଠୋର ପରିଶ୍ରମ ଏବଂ ସେଥିପାଇଁ ସ୍କୁଲର ଦ୍ରୁତ ଉନ୍ନତି ଯୋଗୁଁ ମୋର ଲୋକପ୍ରିୟତା ବୃଦ୍ଧି ପାଇବାରେ ଲାଗିଲା । ଅକ୍ଷୟ ବାବୁ ତାହା ଦେଖି ମନରେ ଭାରି ଈର୍ଷା ପୋଷଣ କଲେହେଁ ତାଙ୍କୁ ମୌନବ୍ରତ ଅବଲମ୍ବନ କରିବାକୁ ପଡ଼ିଲା । ମୋ ବିରୁଦ୍ଧରେ ପଦେ କଥା କହିବାକୁ ତାଙ୍କର ସାହସ ନ ଥିଲା ।

ହାଇସ୍କୁଲ ଆରମ୍ଭବେଳେ ଗ୍ରାମର ବର୍ଷୀୟାନ୍ ବ୍ୟକ୍ତିଭାବରେ ତାଙ୍କ ସହ ସମ୍ପର୍କ ରଖିବାକୁ ଭୁଲି ନାହିଁ, ଯଦିବା ମୁଁ ଭଲରୂପେ ଜାଣିଥିଲି ଯେ, ତାଙ୍କ ହାତରେ ଭାଗ ସିଦ୍ଧି ନାହିଁ । ସ୍କୁଲ ପ୍ରତିଷ୍ଠା ଉଦ୍ଦେଶ୍ୟରେ ଯେଉଁ ସଭାଟି ପହିଲୁ ହୋଇଥିଲା, ସେଥିପାଇଁ ମୁଁ ଆବାହକ ଭାବରେ ଲୋକ ସାଧାରଣଙ୍କୁ ଆମନ୍ତ୍ରଣ କରିଥିଲି । ସେ

ଆବାଦକ ହୋଇଥିଲେ ଲୋକେ ଜାଣିଥାନ୍ତେ, ଅକ୍ଷୟବାବୁ ହାଇସ୍କୁଲ ଆରମ୍ଭ କରୁଛନ୍ତି ବୋଲି—ତାଙ୍କର ଏହିପରି ଗୋଟାଏ ଅଭିସନ୍ଧି ଥିବାର ପରେ ଜଣାପଡ଼ିଲା, ଯାହା କି ମୋ ଚିନ୍ତାର ଅଜ୍ଞାତ ଥିଲା । ତେଣୁ ଏ ବିଷୟ ନେଇ ତାଙ୍କ ସହ ମୋର ଉଚ୍ଚବାଚ ହୋଇଥିଲା ।

ହାଇସ୍କୁଲ ଘର ତିଆରି ଆରମ୍ଭବେଳେ ସେ କଟକ ମଧୁସୂଦନ ଗ୍ରାମୋଦ୍ୟୋଗ ମନ୍ଦିରରେ ଥିଲେ । ମୁଁ ତାଙ୍କୁ ଡକାଇ ପଠାଇଲି ପରାମର୍ଶ ଦେବାକୁ । ସେ ଭୁଲିଗଲେ ନାହିଁ । ପନ୍ଦର ଦିନ ପରେ ଗଲାବେଳକୁ ଘର ତିଆରି କାମ ସୁରୁ ହୋଇଗଲାଣି । ଇଟାଖୁଣ୍ଟ ପକାଇ ଛ’ ବଖରା ଘର ତିଆରି କରିବ ଏବଂ ଇଟା ବଳିଲେ ଗୋଟିଏ ଦୁଇଟି ବଖରାରେ କାନ୍ଥ ଗଢ଼ିବାକୁ ହେବ—ମୁଁ ଏହାଉପରେ ଆପତ୍ତି କରିଥାଏ । ମାତ୍ର ସେ କହିଲେ, କେବଳ ଖୁଣ୍ଟ ନ ଗଢ଼ି ପୂରା କାନ୍ଥ ଗଢ଼ାଯାଉ । ମୁଁ କହିଲି-- ଇଟା ଅଣ୍ଟିବ ନାହିଁ । ଆଗାମୀ ବର୍ଷକୁ ଆଉ ଗୋଟାଏ ଭାଟି କଲେ ସବୁ କାନ୍ଥ ତିଆରି ହୋଇଯିବ । ସେ କହିଲେ—ମୁଁ କହୁଚି ଇଟା ଅଣ୍ଟିଯିବ । ମୁ କହିଲି—ହିସାବ କିତାବ କରି ଦେଖୁଛି ଇଟା ଅଣ୍ଟିବ ନାହିଁ । ତଥାପି ସେ ଜଣେ ରାଜମିସ୍ତ୍ରୀକୁ କହିଲେ—ତୁମେ ଯାଇଁ ଆଉ ଦୁଇ ତିନିଜଣ ମିସ୍ତ୍ରୀ ଡାକିଆଣ । କାନ୍ଥ ପୂରାପୂରି ଗଢ଼ା ହେବ । ଏହା କହି ସେ ଘରକୁ ଚାଲିଗଲେ । ରାଜମିସ୍ତ୍ରୀ ମୋଠାରୁ ନାସ୍ତିବାଣୀ ଶୁଣି ଆଉ ମିସ୍ତ୍ରୀ ଡାକିବାକୁ ଗଲା ନାହିଁ ।

ମ. ଇ. ସ୍କୁଲରେ ଜଣେ ପିଅନ ଥିଲା । ହାଇସ୍କୁଲ ପାଇଁ ପିଅନ ରଖାଯାଇ ନଥିଲା । ମୁଁ ପିଅନଟିକୁ ବିଭିନ୍ନ କାମରେ ଲଗାଉଥିଲି । ଘଣ୍ଟା ବଜାଇବା ଇତ୍ୟାଦି କାମ ପିଲାଙ୍କଦ୍ୱାରା ଚଳାଇ ନେଉଥିଲି । ଦିନେ ଅକ୍ଷୟ ବାବୁ ମ. ଇ. ସ୍କୁଲ ଅଫିସ ଭିତରକୁ ଆସି ମୋତେ କହିଲେ ଯେ, ଆଗାମୀ କାଲିଠାରୁ ପିଅନ ଘଣ୍ଟା ଦେବା କାମ କରୁ । ମୁଁ ତାଙ୍କୁ ବୁଝାଇ କହିଲି ଯେ, ସ୍କୁଲର ବଗିଚା କାମ ବଢ଼େଇ ଯାଉଛି, ସବୁ ଘର ଝାଡ଼ୁ ମାରିବାରେ ବହୁତ ସମୟ ଯାଉଛି । ପିଲାଙ୍କଦ୍ୱାରା ତ ଘଣ୍ଟା ବଜା କାମ ଚଳିଯାଉଛି । ହାଇସ୍କୁଲ ମଞ୍ଜୁରି ପାଇଲା ପରେ ଆଉ ଜଣେ ପିଅନ ରଖିବା ଯେ, ସେ କେବଳ ଘଣ୍ଟା ବଜା କାମରେ ନିୟୋଜିତ ହେବ । ବର୍ତ୍ତମାନ ଆଉ ଜଣେ ପିଅନ ରଖିବା ପାଇଁ ଅର୍ଥର ଅକୁଳାଣ

ଘଣ୍ଟୁଛି । ସେ ଏକା ଜିଦ୍ ଧରି କହିଲେ ଯେ, ପିଅନ ଘଣ୍ଟା ଦେବ । ମୁଁ ରାଜି ହେଲି ନାହିଁ । ତଥାପି ସେ ପିଅନକୁ ଡାକି, ଘଣ୍ଟା ଦେଖି ସମୟ ଜାଣିବାର ପ୍ରଣାଳୀ ବୁଝାଇ ଦେଇ ଆଗାମୀ କାଲିଠାରୁ ଘଣ୍ଟା ଦେବାକୁ ଆଦେଶ ଦେଇ ଚାଲିଗଲେ । ପିଅନ ମୋତେ ତାହାର କର୍ତ୍ତବ୍ୟ କଥା ପଚାରିବାରୁ ମୁଁ କହିଦେଲି—ତୁ ମ. ଇ. ସ୍କୁଲର ପିଅନ । ତାଙ୍କ କଥା ଶୁଣିବା ଦରକାର ନାହିଁ । ଅକ୍ଷୟ ବାବୁ ସବୁଦିନେ ଡେରି କରି ଆସନ୍ତି । ପରଦିନ ସେ ସହଜ ଆସିଥିଲେ ପିଅନ ଘଣ୍ଟା ଦେଉଛି କି ନାହିଁ ଜାଣିବା ପାଇଁ । ଜାଣିଲେ, ପିଅନ ତାଙ୍କ କଥା ମାନି ନାହିଁ । ହାଇସ୍କୁଲ ପାଇଁ ପିଅନ ରଖିବା ତାଙ୍କ ଶକ୍ତିର ବାହାରେ ଥିଲା । ତେଣୁ ସେ ଅପଦସ୍ଥ ହୋଇ ରହିଲେ ।

୧୯୪୭ ମସିହାରେ ବିଧାନ ସଭାର ସଭ୍ୟ ପଦ ପାଇଁ ପ୍ରାର୍ଥୀ ହେବା ସକାଶେ ଚେଷ୍ଟା କରିବାକୁ ସେ କଟକ ଆସିଲେ । ଅନେକ ଦିନ ଧରି କଟକରେ ରହିଲେ । କେବଳ ସଂସ୍କୃତ ଶିକ୍ଷକ ଛଡ଼ା ହାଇସ୍କୁଲରେ ଆଉ କେହି ଶିକ୍ଷକ ନାହାନ୍ତି । ଛାତ୍ରଛାତ୍ରୀମାନଙ୍କର ପାଠପଢ଼ା ପଛେଇଲା । ସେମାନେ ଧର୍ମଘଟ କରିବାକୁ ଚିନ୍ତା କଲେ । ଗୋଟିଏ ମାତ୍ର ୮ମ ଶ୍ରେଣୀ । ସେମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ମୁଁ ହାଇସ୍କୁଲକୁ ସକାଳୁଆ କରିଦେଲି । ମୋର ବ୍ୟବସ୍ଥା ଅନୁସାରେ ମ. ଇ. ସ୍କୁଲର ସହକାରୀ ଶିକ୍ଷକ ଶ୍ରୀ ରାଧାମୋହନ ଚକ୍ରବର୍ତ୍ତୀ ଇଂରାଜୀ ପଢ଼ାଇ ଦେଇ ଘରକୁ ଚାଲିଯାନ୍ତି । ମୁଁ ଗଣିତ, ବୀଜଗଣିତ, ସାହିତ୍ୟ, ଜ୍ୟାମିତି ପଢ଼ାଇବାର ଦାୟିତ୍ୱ ନେଇଥାଏ । ମୁଁ ପଢ଼ାଇସାରି ଖାଇସାରିଲା ବେଳକୁ ମ. ଇ. ସ୍କୁଲର ଘଣ୍ଟା ବାଜଯାଏ । ମୁଁ ତରବର ହୋଇ ଆସି ସ୍କୁଲରେ ଯୋଗ ଦିଏ । ଏହିପରି ଭାବରେ କଷ୍ଟସ୍ୱୀକାର କରି ମାସେ ଖଣ୍ଡେ ଚଳାଇବା ପରେ ପରୀକ୍ଷା ବେଳ ପହଞ୍ଚିଗଲା । ଦୁଇ ତିନି ଦିନ ପରୀକ୍ଷା ହେବା ପରେ ଅକ୍ଷୟ ବାବୁ କଟକରୁ ଫେରିଲେ । ସେ ସବୁ କଥା ଶୁଣି ରାଧାମୋହନ ବାବୁଙ୍କ ପାଖକୁ ଖଣ୍ଡେ ଚିଠି ପଠାଇଲେ । ସେଥିରେ ଲେଖାଥିଲା—ରାଧାମୋହନ, ଅଫିସ ଚାବି ତ ମୋ ପାଖରେ । ତୁମେ ଆଲମାରି ଫିଟାଇ ହାଜରି ବହି ବାହାର କରି ପିଲାଙ୍କ ହାଜରି ପକାଇଲ କାହିଁକି ? ପୁଣି ମୋ ଅନୁପସ୍ଥିତିରେ ମୋ ଅଜ୍ଞାତରେ ପିଲାଙ୍କୁ ପରୀକ୍ଷା

କଲ କାହିଁକ ? I cannot tolerate others interference. ଇତ୍ୟାଦ । ଅକ୍ଷୟ ବାବୁ ଜାଣନ୍ତି ସବୁ ବ୍ୟବସ୍ଥା ମୁ କରିଛୁ । ତଥାପି ସେ ମୋତେ ପ୍ରତ୍ୟକ୍ଷ ଭାବରେ ପତ୍ର ଲେଖିବାକୁ ସାହସ ନ କରି, ମୋ ଉଦ୍ଦେଶ୍ୟରେ ରାଧାମୋହନଙ୍କୁ ଜଣାଇଥିଲେ । ମୁଁ ସେଦିନ ସନ୍ଧ୍ୟାବେଳକୁ ତାଙ୍କୁ ଭେଟିଲି ଏବଂ ମୁଁ ଏପରି ବ୍ୟବସ୍ଥା କରି ନଥିଲେ ଛାତ୍ରମାନେ ଧର୍ମଘଟ କରିଥାନ୍ତେ କହି ତାଙ୍କ ଲେଖାର ଘୋର ପ୍ରତିବାଦ କଲି । ସେ ମୋତେ ଯୁକ୍ତିରେ ପାରିବେ ନାହିଁ ଜାଣି ନମ୍ର ଭାବରେ ଅନ୍ୟ କଥା କହି ଖସି ଗଲେ ଏବଂ ମୁଁ ମଧ୍ୟ ଥଣ୍ଡା ପଡ଼ିଗଲି ।

ମ. ଇ. ସ୍କୁଲ ଓ ହାଇସ୍କୁଲର ମିଳିତ ପୁରସ୍କାର ବିତରଣ ଉତ୍ସବ ପାଇଁ ମୁଁ ପ୍ରସ୍ତୁତ ହେବାକୁ ଲାଗିଲି । ଅକ୍ଷୟ ବାବୁଙ୍କ ଉପରେ ସେଥିପାଇଁ ଜଣେ ସଭାପତି ମନୋନୟନର ଦାୟିତ୍ୱ ଦେଲି । ସେ ଦାୟିତ୍ୱ ଗ୍ରହଣ କଲେ । ମାତ୍ର ସେହିଦିନ ରାଧାମୋହନଙ୍କୁ ତାଙ୍କ ଘରେ କହିଲେ ଯେ, ସେ ସଭାପତି ଠିକ୍ କରି ଦେବେ, ମାତ୍ର ସଭାରେ ଯୋଗ ଦେବେ ନାହିଁ । ଏଥିରୁ ମୁଁ ତାଙ୍କ ମନୋମାଳିନ୍ୟର ସୂଚନା ପାଇ ତାଙ୍କ ପାଖକୁ ଗଲି ଏବଂ ସଭାକୁ ନ ଆସିବାର କାରଣ ପଚାରିଲି ।

ସେ କହିଲେ—ତୁମେ ତ ପ୍ରଭୁତ୍ୱ କରିବ । ମୁଁ କାହିଁକି ଆସିବି ?

ମୁଁ କହିଲି—ମୋ ପାଖରେ ପ୍ରଭୁତ୍ୱର ପ୍ରଶ୍ନ ନାହିଁ । ତଥାପି ଯଦି ଆପଣ ମୋ ପ୍ରଭୁତ୍ୱକୁ ସହିପାରୁ ନାହାନ୍ତି, ମୁଁ କାହିଁକି ଆପଣଙ୍କ ପ୍ରଭୁତ୍ୱକୁ ମାନିନେବି ? ପରିଚାଳନା ସମିତିରେ କଥାଟା ପଡ଼ୁ । ଆପଣ ନିଜ ପ୍ରସ୍ତାବ ଦେବେ, ମୁଁ ମୋ ପ୍ରସ୍ତାବ ଦେବି । ସମସ୍ତେ ଯେଉଁଟା ଗ୍ରହଣ କରିବେ, ତାହାହିଁ କାର୍ଯ୍ୟକାରୀ ହେବ ।

ସେ ଜାଣନ୍ତି, ପରିଚାଳନା ସମିତି ମୋ ପ୍ରସ୍ତାବକୁ ଅଧିକତର ମୂଲ୍ୟବାନ୍ ମନେ କରିବ ଏବଂ ତାଙ୍କ ପ୍ରସ୍ତାବ ବାଏଁ ବାଏଁ ଉଡ଼ିଯିବ । ତେଣୁ ସେ ନୀରବ ରହିଲେ । ତା ପରେ ମୁଁ ଧୀର ନମ୍ର ସ୍ୱରରେ କହିଲି—ଆପଣ ଜଣେ ବୟୋବୃଦ୍ଧ ବ୍ୟକ୍ତି । ସ୍କୁଲଟିର ଆରମ୍ଭ ହେଉ ହେଉ ଆପଣ କଳହ ସୃଷ୍ଟି କରିବାକୁ ବସିଛନ୍ତି । ଏହା ବଡ଼ ଲଜ୍ଜାର କଥା । ଆପଣଙ୍କର ଏ ପ୍ରକାର ମତିଗତିରୁ ଲୋକେ କଣ ମନେ କରିବେ ? କାମ

କଲବେଳେ ମତଭେଦ ଘଟେ । ତାଙ୍କୁ ଗଣି କର କାମରୁ ନବୃତ୍ତ ହେବା କଣ ସୁନ୍ଦର ? ସବୁ ଭୁଲଯାନ୍ତୁ । ସଭାପତିଙ୍କୁ ସଙ୍ଗରେ ଧର ନଷ୍ଟସ୍ଥ ଆସିବେ । ତାଙ୍କର ମନୋଭାବ ବଦଳଗଲା ଏବଂ ସେ ପୁରସ୍କାର ବତରଣ ଉତ୍ସବରେ ଆନନ୍ଦରେ ଯୋଗ ଦେଲେ ।

ନବମ ଶ୍ରେଣୀ ଖୋଲଲା ବେଳକୁ ଜଣେ ବ. ଏ. ଉପାଧିଧାରୀ ପ୍ରଧାନ ଶିକ୍ଷକଙ୍କର ନଯୁକ୍ତ ଆବଶ୍ୟକ ହେଲା । ଅକ୍ଷୟ ବାବୁ ସ୍କୁଲର ସମ୍ପାଦକ ତଥା ପ୍ରଧାନ ଶିକ୍ଷକ ଉଭୟ ଦାୟିତ୍ୱ ତୁଲାଉଥିଲେ । ଆଉ ଜଣେ ବ.ଏ ଆସି ପ୍ରଧାନ ଶିକ୍ଷକ ହେବେ, ଏ କଥା ସେ ଗ୍ରହଣ ନଥିଲେ । ତାହା ହେଲେ ତାଙ୍କୁ ସହକାରୀ ଶିକ୍ଷକ ହେବାକୁ ପଡ଼ିବ, ଯାହାକ ତାଙ୍କ ପକ୍ଷରେ ମର୍ଯ୍ୟାଦା ହାନକର । ତାଙ୍କର ଟଙ୍କା ଦରକାର ଥିବାରୁ ଶିକ୍ଷକତା ଛାଡ଼ ପାରୁ ନ ଥିଲେ, ମାତ୍ର ମଝେ ମଝେ ମୋତେ କହୁଥିଲେ ଯେ, "ମୁଁ ବୁଢ଼ା ବୟସରେ ଖଟିପାରୁ ନାହିଁ । ଆଉ ଜଣେ ପ୍ରଧାନ ଶିକ୍ଷକ ଦେଖ ।" ଯାହା ହେଉ, ସ୍କୁଲର ସ୍ୱାର୍ଥ ଦୃଷ୍ଟିରୁ ଜଣେ ବ. ଏ. ପାସ୍ ପ୍ରଧାନ ଶିକ୍ଷକ ଖୋଜବାକୁ ଲାଗିଲି । କଲକତା ବଶ୍ୱବଦ୍ୟାଳୟରୁ ବ. ଏ. ପାସ୍ କରଥିବା ଶ୍ରୀ ଗୋବନ୍ଦଚନ୍ଦ୍ର ସାମଲ ମାସିକ ଶହେ ଟଙ୍କା ଦରମାରେ ପ୍ରଧାନ ଶିକ୍ଷକ ହେବାକୁ ସମ୍ମତ ଜଣାଇଲେ । ମୁଁ ତାଙ୍କୁ ଅଫିସ୍‌କୁ ଡକାଇ କଥାବାର୍ତ୍ତା ପକ୍‌କା କରନେବା ପରେ ସେ ହାଇସ୍କୁଲକୁ ଯାଇଁ ଅକ୍ଷୟ ବାବୁଙ୍କୁ ଭେଟିଲେ । ଅକ୍ଷୟ ବାବୁ ତାଙ୍କଠାରୁ ଶୁଣିଲେ ଯେ, ସେ ପ୍ରଧାନ ଶିକ୍ଷକ ହେବେ ବୋଲ ମୁଁ ଜବାବ ଦେଇଛି । ତେଣୁ ସେ ଗୋବନ୍ଦ ବାବୁଙ୍କୁ ସହକାରୀ ଶିକ୍ଷକ ହେବା ପାଇଁ ଅନୁରୋଧ କଲେ । ଏଥିରେ ଗୋବନ୍ଦ ବାବୁଙ୍କ ମନରେ ବଡ଼ କଷ୍ଟ ହେଲା ଓ ମୁଁ କଲକତାରୁ ତାଙ୍କୁ କାହିଁକ ଡକାଇଲି ବୋଲ ସେ ମୋତେ ଦୋଷ ଦେଲେ । ମୁଁ ତାଙ୍କୁ ଦୃଢ଼ତାର ସହିତ କହିଲି ଯେ, "ଆପଣଙ୍କୁ ନଶ୍ଚୟ ପ୍ରଧାନ ଶିକ୍ଷକ କରାଯିବ । ଅକ୍ଷୟ ବାବୁଙ୍କୁ ବଦାୟ ଦଆଯିବ । ସାତ ଦନ ଭିତରେ ନଯୁକ୍ତ-ପତ୍ର ପଠାଇ ଦେବ ।"

ତହିଁଆର ଦନ ମୁଁ ଅକ୍ଷୟ ବାବୁଙ୍କ ଘରକୁ ଯାଇଁ କହିଲି— ଗୋବନ୍ଦ ବାବୁ ପ୍ରଧାନ ଶିକ୍ଷକ ହେବେ । ମ. ଇ. ସ୍କୁଲ ପ୍ରଧାନ ଶିକ୍ଷକ ଶ୍ରୀ ଖଗେଶ୍ୱର ସାମଲ ହାଇସ୍କୁଲର ସହକାରୀ ଶିକ୍ଷକ ହେବେ । ଆପଣ

ମୋହନ ଚକ୍ରବର୍ତ୍ତୀଙ୍କୁ ମ. ଇ. ସ୍କୁଲର ପ୍ରଧାନ ଶିକ୍ଷକ ଦାୟିତ୍ୱ ଦିଆଯିବ । ଆଉ ଜଣେ ନୂତନ ଶିକ୍ଷକଙ୍କୁ ମ. ଇ. ସ୍କୁଲ ପାଇଁ ଅଣାଯିବ । ମୁଁ ଏହିପରି ସିଦ୍ଧାନ୍ତ କଲି ।

ଏହା ଶୁଣି ସେ ନିଜର ନାମ ବାଦ୍ ଯାଇଛି ଦେଖି ଉତ୍ତେଜିତ ସ୍ୱରରେ କହିଲେ--"ଏଇ ଦୁଇ ସାମଲ (ଗୋବିନ୍ଦ ଓ ଖଗେଶ୍ୱର) କଣ ସ୍କୁଲ ଗଢ଼ି ଦେବେ ?"

ମୁଁ କହିଲି—"ଆପଣ ପରା ସବୋପରି ସମ୍ପାଦକ ହୋଇ ରହିଲେ ।"

ତଥାପି ସେ କହିଲେ, "ମୁଁ ସ୍କୁଲ ଭାଙ୍ଗି ଦେବି—ରଖି ଦେବି ନାହିଁ ।"

ମୁଁ ତାଙ୍କର ଏ ଉକ୍ତି ସହିବାର ଲୋକ ନୁହେଁ । ୧୯୩୨ ମସିହାରେ ମ. ଇ. ସ୍କୁଲର ପ୍ରତିଷ୍ଠା ବେଳରୁ ଏଯାବତ୍ ସେ ସ୍କୁଲପାଇଁ ପଇସାଟିଏ ଦାନ କରି ନାହାନ୍ତି କି ବନ୍ଧୁଏ ଝାଳ ବୁହାଇ ନାହାନ୍ତି, ବରଂ ଅକାରଣ ବିଭ୍ରାନ୍ତି ସୃଷ୍ଟି ଲାଗି ଚେଷ୍ଟା କରି ଆସିଛନ୍ତି । ତାଙ୍କର ଉପରୋକ୍ତ ଧମକର କଡ଼ାକରି ମୂଲ୍ୟ ନଥିଲା । ତେଣୁ ମୁଁ ଗର୍ଜିଉଠି କହିଲି, "ଆପଣ ଏତେ ସ୍ୱାର୍ଥପର । ଆପଣ ସ୍କୁଲ ଗଢ଼ି ନାହାନ୍ତି । ଭାଙ୍ଗିଦେବାକୁ କହିବା ଆପଣଙ୍କର ଧୃଷ୍ଟତାର ପରିଚୟକ ।" ଏହା କହି ମୁଁ ଚାଲି ଆସିଲି ।

ତିନି ଚାରିଦିନ ପର୍ଯ୍ୟନ୍ତ ସେ ଆଉ ସ୍କୁଲକୁ ଆସିଲେ ନାହିଁ । ମ. ଇ. ସ୍କୁଲ ଶିକ୍ଷକ ଶ୍ରୀ ରାଧାମୋହନ ଚକ୍ରବର୍ତ୍ତୀ ମୋତେ କହିଲେ ଯେ, ଅକ୍ଷୟ ବାବୁଙ୍କ ମନରେ ଭାରି କଷ୍ଟ । ତାଙ୍କୁ ଏଇ ବର୍ଷଟା ସ୍କୁଲରେ ରଖ ।।

ଅକ୍ଷୟ ବାବୁ ମୋର ପିତୃ ସ୍ଥାନୀୟ ଲୋକ । ଅଭାବରେ ପଡ଼ି ସେ ଚାକିରି କରିବାକୁ ଚାହାନ୍ତି । ମୁଁ ତାଙ୍କୁ ଅଗତ୍ୟା କଡ଼ା କଡ଼ା କଥା କହିଥିବାରୁ ମନରେ ଅଶାନ୍ତି ଅନୁଭବ କରୁଥାଏ । ସେ ମୋ ବିରୁଦ୍ଧରେ ଯେତେ ମୁଖର ହେଲେହେଁ ତାଙ୍କ ପ୍ରତି ନିର୍ଦ୍ଦୟ ହେବାକୁ ମନ ବଳିଲା ନାହିଁ । ଦିନେ ତାଙ୍କ ଘରକୁ ଗଲି । ହସି ହସି କେତେ କଥାବାର୍ତ୍ତା କଲି

ଓ ସଙ୍ଗରେ ଡ଼ାକ ଆଣିଲ । ଉଭୟ ସ୍କୁଲର ପରିଚାଳନା ପାଇଁ ପୂର୍ବରୁ ଯାହା ଠିକ୍ କରିଥିଲ, ତାହା ବଦଳାଇବାକୁ ପଡ଼ିଲ । ଶ୍ରୀ ଗୋବିନ୍ଦ ଚନ୍ଦ୍ର ସାମଲ ପ୍ରଧାନ ଶିକ୍ଷକ ଭାବରେ ଓ ଶ୍ରୀ ଚକ୍ରବର୍ତ୍ତୀ ସନ୍ତକଶୂନ୍ୟ ଦରମାପ୍ରାପ୍ତ ସହକାରୀ ଶିକ୍ଷକ ଭାବରେ କାମ କଲେ ।

୧୯୪୯ ମସିହା ନଭେମ୍ବର କି ଡିସେମ୍ବର ମାସ କଥା । ମୋର କନ୍ୟା କମଳାକୁମାରୀ ଶୈଳବାଳା ମହିଳା କଲେଜରେ ୨ୟ ବାର୍ଷିକ କଳା ଶ୍ରେଣୀରେ ପଢୁଥାଏ । ହାଇସ୍କୁଲ ଓ ମଧ୍ୟ ଇଂରାଜୀ ସ୍କୁଲର ମିଶ୍ରଣ ହୋଇ ସାରିଥାଏ । ଅକ୍ଷୟ ବାବୁ ସ୍କୁଲର ସମ୍ପାଦକ, ଅଡ଼ିଟରି ଶ୍ରୀ ହୃଦାନନ୍ଦ ନାୟକ ସଭାପତି । ମୋର ଦୁଇଜଣ ଛାତ୍ର ଶ୍ରୀ ବଳରାମ ପଣ୍ଡା (ଦାନପୁର) ଓ ଶ୍ରୀ ମାନମଣି ନାୟକ (ଖମୋଳ) ପରିଚାଳନା ସମିତିରେ ସଭ୍ୟ ଥାନ୍ତି । ଅନ୍ୟ ସଭ୍ୟମାନଙ୍କ ନାଁ ମନେ ନାହିଁ । ପ୍ରଧାନ ଶିକ୍ଷକ ଶ୍ରୀ ସୁରେନ୍ଦ୍ର ଚନ୍ଦ୍ର ତ୍ରିପାଠୀ ମଧ୍ୟ ମୋର ଛାତ୍ର ଥିଲେ ।

ଅକ୍ଷୟ ବାବୁ ଜଣେ ଅସାଧାରଣ ପରଶ୍ରୀକାତର ଲୋକ । ତାଙ୍କ ସହ ମୋର ମନୋମାଳିନ୍ୟର କେତୋଟି କାରଣ ପୂର୍ବରୁ ଲେଖିଛି । ମୁଁ ସ୍କୁଲରେ ଏକାଧିପତ୍ୟ କରୁଛି ବୋଲି ଆଗେ ଅକ୍ଷୟ ବାବୁ ଗୋଟିଏ ଆବାଜ ଉଠାଇଲେ । ସ୍କୁଲରେ ପ୍ରଧାନ ଶିକ୍ଷକ ଓ ଅନ୍ୟ ଦୁଇ ଜଣ ବିଶିଷ୍ଟ ସଭ୍ୟ ମଧ୍ୟ ତାହାଙ୍କ ପଦାଙ୍କ ଅନୁସରଣ କରିବାର ଦେଖାଗଲା । ମୁଁ ପ୍ରଧାନ ଶିକ୍ଷକଙ୍କୁ ଦୁଇଥର କହିବା ପରି ମନେ ପଡ଼ୁଛି—"ସୁର, ମୁଁ ସତର ବର୍ଷ ହେଲା ସ୍କୁଲ ଗଢ଼ି ଆସୁଛି । ସ୍କୁଲର ସମ୍ପାଦକଠାରୁ ପିଅନ ପର୍ଯ୍ୟନ୍ତ ସମସ୍ତଙ୍କ କାମ ମୋତେ ବାଧ୍ୟ ହୋଇ କରିବାକୁ ପଡ଼ୁଛି । ପ୍ରତ୍ୟେକେ ନିଜ ନିଜ କର୍ତ୍ତବ୍ୟ କରନ୍ତୁ, ମୋର ଏ ଇଚ୍ଛା ଶତ ଚେଷ୍ଟା ସତ୍ତ୍ୱେ ଫଳବତୀ ହୋଇ ପାରିନାହିଁ । ମୁଁ କ୍ଷମତାଲୋଲୁପ ନୁହେଁ । ମୁଁ ଯଦି କେତେବେଳେ ଅଧିକାର-ବହିର୍ଭୂତ କାର୍ଯ୍ୟ କରୁଛି—ତୁମ କ୍ଷମତାକୁ ଅପହରଣ କରୁଛି, ତେବେ ତାହା ମୋର ଇଚ୍ଛାକୃତ ନୁହେଁ । ବହୁ ଦିନର ଅଭ୍ୟାସ ସହଜେ ପରିତ୍ୟାଗ କରି ହୁଏନା । ତୁମେ ମୋତେ ଚେତାଇ ଦିଅ ଯେ; ମୋର ଅମୁକ କାମରେ ହସ୍ତକ୍ଷେପ ଠିକ୍ ହେଉନାହିଁ । ତାହା ହେଲେ ମୁଁ ସାବଧାନ ହୋଇଯିବି ଓ ମୋର ଅଭ୍ୟାସ ବଦଳି ଯିବ । ଗୁରୁ ଛାତ୍ର ମଧ୍ୟରେ ଅସଦ୍ଭାବର ସୃଷ୍ଟି ନହେଉ ।" ସୁରର କି ସ୍ୱାର୍ଥ

ଥିଲି କେଜାଣି ମୋର ସରଳ ହୃଦୟର ସ୍ପଷ୍ଟୀକରଣକୁ ସେ ସ୍ୱାଗତ କରି ନଥିଲ ।

ସ୍କୁଲ ଦୁଇଟିର ମିଶ୍ରଣ ପରେ ମୁଁ କେତେ କଥା ଚିନ୍ତା କରୁଥିଲି । ମୋର ତଥାକଥିତ ଏକାଧିପତ୍ୟ ଯୋଗୁଁ ଯେ ଦୋହଲା ଭଳି ସମୃଦ୍ଧିହୀନ ଅଞ୍ଚଳରେ, ସରକାରଙ୍କ ବିନା ସାହାଯ୍ୟରେ, ସର୍ବସାଧାରଣଙ୍କ ସ୍ୱଳ୍ପ ସହଯୋଗରେ ହାଇସ୍କୁଲଟି ପ୍ରତିଷ୍ଠିତ ହୋଇ ପାରିଲା, ଏଥିରେ ସନ୍ଦେହ ନାହିଁ । ସ୍କୁଲର ପରିଚାଳନା କମିଟି ଏଯାବତ୍ ମୁଁ ଏକାଧିପତ୍ୟ କରୁଚି ବୋଲି ବିଗୁରୁ ନଥିଲେ । 'କାଳସ୍ୟ କୁଟିଳା ଗତି' ଯୋଗୁଁ ସବୁ ସମ୍ଭବ ହେଲା । ଶତାବ୍ଦୀରେ ଗୋଟିଏ ପାଦର ଦୁଇ-ତୃତୀୟାଂଶରୁ ଅଧିକ କାଳ ମୁଁ କାର୍ଯ୍ୟ କରି ଆସିଲି । ହସ୍ତ ପଦ, ଗକ୍ଷୁ କର୍ଣ୍ଣ, ବିଦ୍ୟା ବୁଦ୍ଧି ଓ ପ୍ରତିଭା ସ୍ଥୂଳତଃ ଶରୀର ଓ ମନ ଗୋଟାଏ ଲକ୍ଷ୍ୟରେ ଅବିଚଳିତ ଓ ଅକ୍ଳାନ୍ତ ଭାବରେ ନିୟୋଜିତ । ଅସ୍ତ୍ର-ପରୀକ୍ଷା ବେଳେ ଅର୍ଜୁନ ଗୋଟିଏ ପକ୍ଷୀର କେବଳ ବାମ ଚକ୍ଷୁ ଦେଖୁଛନ୍ତି ବୋଲି ଗୁରୁ ଦ୍ରୋଣଙ୍କୁ କହିବା ପରି ମୋର ଏକମାତ୍ର ଲକ୍ଷ୍ୟ ଥିଲା ସ୍କୁଲ—ଯାହାକୁ ମୁଁ ଇହ ଓ ପରକାଳର ପାଥେୟ ବୋଲି ମନେ କରୁଥିଲି । ସ୍ତ୍ରୀର ଅକାଳ ବିୟୋଗ, ବର୍ତ୍ତମାନ ଓ ଭବିଷ୍ୟତ୍ ପାଇଁ ଧନାର୍ଜନ, ସମାଜରେ ପ୍ରତିଷ୍ଠା ଲାଭ, ସର୍ବସାଧାରଣରେ ପ୍ରଶଂସା ଗାନ—ଏସବୁ ମୋର ଚିନ୍ତାର ଅଗୋଚର ଥିଲା । ମୁଁ ଥିଲି ନିଜ ପାଇଁ ଅନ୍ଧ ଓ ପର ପାଇଁ ଚକ୍ଷୁଷ୍ମାନ । ଏଣୁ ମୁଁ ସ୍କୁଲ ଗଢ଼ିବାକୁ ଯିବା ପୂର୍ବରୁ ମୁଁ ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଉଛି ବୋଲି ଯେଉଁମାନେ ଉପହାସ କରୁଥିଲେ, ସର୍ବାଙ୍ଗସୁନ୍ଦର ସ୍କୁଲଟିଏ ମସ୍ତକ ଉତ୍ତୋଳନ ପରେ ସେମାନେ ବିପୁଳ ବିସ୍ମୟର ଅଧିକାରୀ ହୋଇ ଥିଲେ ।

ମୁଁ ମନେ ମନେ ସ୍ଥିର କରି ନେଲି, ମୋର କାମ ସରିଗଲା । ଭଗବାନଙ୍କର ଆଶୀର୍ବାଦ ଥିଲେ ଅନ୍ୟ କୌଣସି ମହତ୍ତର କାର୍ଯ୍ୟରେ ଆତ୍ମନିୟୋଗ କରିବାକୁ ହେବ । ଅଷ୍ଟାଦଶ ବର୍ଷର ପରମ୍ପରା ଓ ମୋର ଏକାଧିପତ୍ୟର ଅବସାନ ଘଟିବା ଉଚିତ । ଜଣେ ଅଧେ ଲୋକର ସମାଲୋଚନା ହେତୁ ପଛକେ ତତ୍ପ୍ରତି ବଧିରତା ପ୍ରକାଶ କରିବା ମୋ ପକ୍ଷରେ ସ୍ପୃହଣୀୟ ହେବ ନାହିଁ । ତେଣୁ ମୁଁ ଗ୍ରକିରୀରୁ ଇସ୍ତଫା ଦେଇ ସ୍କୁଲ ପରିଚାଳନା କରିବାକୁ ସମର୍ଥ ଥିବା ବ୍ୟକ୍ତିବର୍ଗଙ୍କ ହାତରେ ତାକୁ ସମର୍ପଣ କରିଦେବାକୁ ପ୍ରତିଜ୍ଞା କଲି ।

ପରେଚାଳନା କମିଟିର ଗୋଟିଏ ସଭା ଆହୂତ ହେଲା । ତହିଁରେ ମୁଁ ସ୍ଥିର ବୁଦ୍ଧିରେ, ଆନନ୍ଦ ମନରେ ଯେଉଁ ଇସ୍ତଫା ପତ୍ରଟି ଲେଖିଥିଲି, ତାହା ଦାଖଲ କଲି । ଇସ୍ତଫା ପତ୍ରର ଅବିକଳ ନକଲ ଏହିପରି—

ଶ୍ରୀଯୁକ୍ତ ହୃଦାନନ୍ଦ ନାୟକ,

ଦୋହଳ ମଡ଼େଲ ହାଇସ୍କୁଲ ସଭାପତି

ମହାଶୟ,

ସାଢ଼େ ସତର ବର୍ଷ ହେଲା ନିଜକୁ ସମ୍ପୂର୍ଣ୍ଣ ରୂପେ ଭୁଲି ପାଗଳ ପରି ଯାହା ପାଇଁ ଲଗିଥିଲି, ତାହା ଆଜି ଭଗବାନଙ୍କ ଆଶୀର୍ବାଦରୁ ସଫଳ ହୋଇଥିବାରୁ ମୁଁ ନିଜକୁ ବଡ଼ କୃତାର୍ଥ ମନେ କରୁଛି ।

କିପରି ଭାବରେ ଏ ସ୍କୁଲ ଏତେ ଆଗେଇଲା, ତାହା କହି ବସିଲେ ଗୋଟିଏ ପୋଥି ହେବ । ସେ ସବୁ ବର୍ଣ୍ଣନା କରିବା ହାରି ଅନିଚ୍ଛା ସତ୍ତ୍ୱେ ନିଜ ମୁହଁରେ ନିଜ ବାହାଦୁରି କହିବାକୁ ପଡ଼ିବ । ଏଣୁ ସେଥିରୁ ବିରତ ହେଲି ।

ନିନ୍ଦା ପ୍ରଶଂସାର ସହଚର । ଲାଞ୍ଛନା, ଅପମାନ, ଅପବାଦ ଓ ସମାଲୋଚନାକୁ ବରଣ କରି କାର୍ଯ୍ୟକ୍ଷେତ୍ରରେ ଅଗ୍ରସର ହେବା କର୍ମୀର ଧର୍ମ । ସୁତରାଂ କାହାରି ସମାଲୋଚନା ପ୍ରତି ମୋର ବିଦ୍ବେଷ ନାହିଁ କି ଭ୍ରୂକ୍ଷେପ ନାହିଁ ।

ଆଜି ମୋର ସହକର୍ମୀ ଶିକ୍ଷକ ବା ସର୍ବସାଧାରଣ ବା ସ୍କୁଲର ସଭ୍ୟବୃନ୍ଦ ବା ସମ୍ପାଦକ ମୋ ବିରୁଦ୍ଧରେ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ ଯାହା କହନ୍ତୁ ପଛକେ, ସେ ସବୁର ପ୍ରତିବାଦ ବା ଖଣ୍ଡନ କରିବାକୁ ମୋ ପାଖରେ ଯଥେଷ୍ଟ ଉପାଦାନ ଥିଲେ ହେଁ ମୁଁ ଗୋଟାଏ ବିଷାକ୍ତ ବାୟୁମଣ୍ଡଳ ବା ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିବାକୁ ଆଦୌ ପସନ୍ଦ କରୁନାହିଁ । କାରଣ ମୁଁ ସ୍ୱାର୍ଥାନ୍ଧ ନୁହେଁ — ମୁଁ ସ୍କୁଲ ପାଇଁ ଅନ୍ଧ । ଯେଉଁ ସ୍କୁଲ ପାଇଁ ମୁଁ ମୋର ଭରା ଯୌବନ ୨୬ ବର୍ଷ ବୟସରୁ ୪୩ ବର୍ଷ ପର୍ଯ୍ୟନ୍ତ ସୁଦୀର୍ଘ କାଳ ଉତ୍ସର୍ଗ କରିଛି, ତାହାର କଲ୍ୟାଣ କାମନା କରିବା ଓ ଉତ୍ତରୋତ୍ତର ଉନ୍ନତି ଦେଖିବା ଛଡ଼ା ମୋର ଆଉ କିଛି କାମ୍ୟ ନାହିଁ ।

କର୍ମିସୁଲଭ ସହନଶୀଳତା ଓ ଧୈର୍ଯ୍ୟ ଯଥେଷ୍ଟ ଅଛି ବୋଲି ମୋର ଗୋଟିଏ ଗର୍ବ ଥିଲା । କାଳର ଗତିରେ ତାହା ଆଜ ଖର୍ବ ହୋଇଛି । ଗତ କେତେଦିନ ହେଲା ସ୍କୁଲର ସମ୍ପାଦକ ମୋ ବିରୁଦ୍ଧରେ ଯେଉଁସବୁ ବିଷୟର ଅବତାରଣା ଓ ପ୍ରଚାର କରିଛନ୍ତି, ତାହା ପଢ଼ି ଓ ଶୁଣି ମୁଁ ଟିକେ ଅତିମାତ୍ରାରେ ବିଚଳିତ ହୋଇ ପଡ଼ିଛି । ସେ ମହାଶୟଙ୍କ ଠାରେ ମୋର ଯେଉଁ ମହାମାନ୍ୟ ପବିତ୍ର ଧାରଣା ଏବଂ ଉଚ୍ଚାଶା ଥିଲା, ତାହା ମୋର ଦୁର୍ଭାଗ୍ୟବଶତଃ ଚୂନା ହୋଇଯାଇଛି । ସମ୍ପାଦକ ମହାଶୟ ମୋର ତଥାକଥିତ ଏକାଧିପତ୍ୟ ( highhandedness) ଯୋଗୁଁ ବିବ୍ରତ ହୋଇ ପଡ଼ିଛନ୍ତି । ମୁଁ ମଧ୍ୟ ମୋର ସେହି ଦୁର୍ଗୁଣ ଲାଗି ବଡ଼ ଅସ୍ୱସ୍ତି ବୋଧ କରୁଛି । ଏପରି ଅବସ୍ଥାରେ ସ୍କୁଲକୁ ସନ୍ତୋଷଜନକ ଭାବରେ ଚଳାଇବାକୁ ପ୍ରସ୍ତୁତ ଓ କ୍ଷମ ଥିବା ବ୍ୟକ୍ତିବର୍ଗଙ୍କ ହାତରେ ତାକୁ ସମ୍ପୂର୍ଣ୍ଣରୂପେ ଛାଡ଼ିଦେଇ ମୁଁ ସ୍କୁଲରୁ ବିଦାୟ ନେଲେ ସ୍କୁଲ ଗୋଟାଏ ବହୁଦିନର ପରମ୍ପରା ଛାଡ଼ି ନୂତନ ମାର୍ଗରେ ଗ୍ଲଲି ଉନ୍ନତି କରିବ, ଏହି ଧାରଣାର ବଶବର୍ତ୍ତୀ ହୋଇ ଆଜ ଆପଣଙ୍କୁ ଅନୁରୋଧ କରୁଛି ଯେ ମୋତେ ଏହି ସ୍କୁଲରୁ ବିଦାୟ ଦିଆଯାଉ ।

ଦୀର୍ଘ କାଳ ଧରି ସ୍କୁଲ ପାଇଁ ତ୍ୟାଗ କରି ଆସୁଛି ନାନା ଦିଗରେ । ଦୁନିଆ ସେ ତ୍ୟାଗରୁ ଅର୍ଥ ଯେପରି ଭାବରେ କରୁ, ମୋର ଆପତ୍ତି ନାହିଁ । ସ୍କୁଲର ସର୍ବଶ୍ରେଷ୍ଠ ହିତ ଲାଗି ଆଜ ମୁଁ ସରଳ ମନରେ, ସୁସ୍ଥ ମସ୍ତିଷ୍କରେ ଓ ଆନନ୍ଦିତ ହୃଦୟରେ ମୋ ପକ୍ଷରେ ସର୍ବାଧିକ ତ୍ୟାଗ କରି ସ୍କୁଲରୁ ବିଦାୟ ନେଉଛି । ମୋର ଇସ୍ତଫା ମଞ୍ଜୁର କଲେ ବାଧିତ ହେବି । ମୋର ଶେଷ କଥା—ମୁଁ ସ୍କୁଲର ଶତ୍ରୁ ନୁହେଁ, କି ହେବି ନାହିଁ । ମୁଁ ଯେଉଁଠି ରହେ ନା କାହିଁକି, ବାକ୍ୟରେ, ମନରେ ଓ କର୍ମରେ ମୁଁ ଯେଉଁ ସ୍କୁଲ ସହିତ ଓତପ୍ରୋତ ଭାବରେ ଜଡ଼ିତ, ତାହାର ଇଷ୍ଟ ଛଡ଼ା ଅନିଷ୍ଟ କରିବି ନାହିଁ । ମୋର ଶେଷ ନିଃଶ୍ୱାସ ପ୍ରବାହିତ ହେଉଥିବା ପର୍ଯ୍ୟନ୍ତ ମୁଁ ସ୍କୁଲକୁ ଭୁଲିବି ନାହିଁ—ଭୁଲିବି ନାହିଁ ।

ବିନୀତ

ବନମାଳୀ ବ୍ରହ୍ମଚାରୀ

ମୁଁ ଇସ୍ତଫା ପତ୍ର ଦେବା ଯୋଗୁଁ ପରିଚାଳନା କମିଟିର ସଭାପତି ଶ୍ରୀ ହୃଦାନନ୍ଦ ନାୟକ ବିଶେଷ କ୍ଷୋଭ ପ୍ରକାଶ କରି ମୋତେ କହିଥିଲେ —"ତୁ ଇସ୍ତଫା ଦେଲେ ସ୍କୁଲଟା ଭାଙ୍ଗିଯିବ । ମୋ ଅନୁରୋଧ ରଖି ଇସ୍ତଫା ଫେରାଇ ନେ ।" ମୁଁ କହିଲି, "ସ୍କୁଲ ଭାଙ୍ଗି ପଡ଼ିବାର କାରଣ ନାହିଁ । ମୋତେ ବାଧ କର ନା ।"

ଏହି ହୃଦାନନ୍ଦ ଦୋହଲ ଉ· ପ୍ରା· ସ୍କୁଲରେ ୪ର୍ଥ ଶ୍ରେଣୀରେ ପଢ଼ିବାବେଳେ ମୁଁ ଓମରେ ପଢ଼ୁଥିଲି । ସେ ଅଙ୍କରେ ଦୁର୍ବଳ ଥିବାରୁ ମୁଁ ତାକୁ କେତେ ଥର ଅଙ୍କ କଷିବାରେ ସାହାଯ୍ୟ କରିଛି । ଅଥଚ ସେ ଆଜି ଉଚ୍ଚ କୋଟିର ଅଡ଼ିଟର ହୋଇ ଜଣେ ରାଜ୍ୟପାଳଙ୍କଠାରୁ ବେଶୀ ଆୟ କରୁଛି । ତାହାର ଦାନଶୀଳତା ପାଇଁ ମୁଁ ତାକୁ ଭାରି ଭଲ ପାଏ । ମୁଁ ଇସ୍ତଫା ଦେବା ସମୟରେ ସେ ଅକୃତ୍ରିମ ଭାବରେ ଦୁଃଖ ପ୍ରକାଶ କରିଥିଲି ଏବଂ "ଭାଇ, ତୋର ହାତଗୋଡ଼ ଧରୁଛି । ତୁ ଇସ୍ତଫା ଦେ ନା" ବୋଲି କହିଥିଲି । ମାତ୍ର ପରେ କଣ ହେଲା କେଜାଣି, କେତେ ମାସ ପରେ ଜଣେ କେହି ମୋର ପୁନର୍ନିଯୁକ୍ତି ପାଇଁ ତାକୁ କହିବାରୁ ସେ ତ ଅନୁକୂଳ ମତ ଦେଲା ନାହିଁ, ତାହା ଛଡ଼ା ଏପରି କେତେକ ମନ୍ତବ୍ୟ କଲା, ଯାହାକି ତା ପକ୍ଷରେ ସମୀଚୀନ ହେଲାନାହିଁ ।

ସ୍କୁଲ ସମ୍ପାଦକ ଶ୍ରୀ ବଳରାମ ପଣ୍ଡା ମୋର ଛାତ୍ର ଥିଲା । ଅକ୍ଷୟ ବାବୁ ସମ୍ପାଦକ ଦାୟିତ୍ୱରୁ ବିଦାୟ ନେବା ପରେ ମୁଁ ସମ୍ପାଦକ ହେବାକୁ ପ୍ରସ୍ତାବ ଆସିଲେ ହେଁ ମୁଁ ମୋର ଅନିଚ୍ଛା ଜଣାଇ ବଳରାମକୁ ସମ୍ପାଦକ କରାଇଥିଲି । ଏହି ବଳରାମ ବିଭିନ୍ନ ଘଟଣାରେ ମୋ ସହ ଯେପରି ପ୍ରତାରଣା ଓ ବିଶ୍ୱାସଘାତକତା କରିଛି, ତାହା କହିବାକୁ ଲାଜ ମାଡ଼ୁଛି । ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ତାଙ୍କର ଜଣେ ପ୍ରଶ୍ନକର୍ତ୍ତାଙ୍କୁ ଉତ୍ତର ଦେଇଥିଲେ—ମୁଁ ତ ସେ ଲୋକର କିଛି ଉପକାର କରି ନାହିଁ । ସେ ମୋର ନିନ୍ଦାଗାନ କରୁଛି କାହିଁକି ? ବିଦ୍ୟାସାଗର ମହାଶୟଙ୍କର ଏହି ଉକ୍ତି ମନେ ପକାଇ ମୁଁ ଅନେକ କ୍ଷେତ୍ରରେ ମାନସିକ ଅଶାନ୍ତି ଦୂର କରେ ।

ଯେଉଁ ହୃଦାନନ୍ଦ ହାଇସ୍କୁଲ ପ୍ରତିଷ୍ଠାବେଳେ ଅକୁଣ୍ଠିତ ସାହାଯ୍ୟ କରିଛି, ମୋତେ ନାନା ପ୍ରକାରରେ ଉତ୍ସାହିତ କରିଛି, ମୋର କର୍ମନିଷ୍ଠା,

ସାଧୁତା ଓ ଚରିତ୍ରବଳର ପ୍ରଶଂସା ତାହାର ବନ୍ଧୁମାନଙ୍କ ଆଗରେ ଗାନ କରନ୍ତି, ସେ ମୋ ପ୍ରତି ବୀତଶ୍ରଦ୍ଧ ହୋଇ ପଡ଼ିବା ଯେତିକ ଦୁଃଖ ଓ ବିସ୍ମୟର ବିଷୟ, ସେତିକ ଦୁର୍ଭାଗ୍ୟଜନକ ମଧ୍ୟ ।

ଏ କଥା ନିଶ୍ଚିତ ସତ୍ୟ ଯେ, ବଳରାମ ସମ୍ପୂର୍ଣ୍ଣଭାବରେ ଓ ଅକ୍ଷୟ-ବାବୁ ଆଂଶିକ ଭାବରେ ମୋ ବିରୁଦ୍ଧରେ ଅଳୀକ ଓ ଭିତ୍ତିହୀନ କଥା ହୃଦାନନ୍ଦଙ୍କୁ ଶୁଣାଇ ତାହାର ମନକୁ ବିଷାକ୍ତ କରିଛନ୍ତି ଏବଂ ହୃଦାନନ୍ଦ ନିଜର କାର୍ଯ୍ୟବ୍ୟସ୍ତତା ଯୋଗୁଁ ହେଉ ବା ଅନ୍ୟ କୌଣସି କାରଣରୁ ହେଉ ବାଲ୍ୟବନ୍ଧୁ ହିସାବରେ ମୋଠାରୁ ସ୍ପଷ୍ଟୀକରଣ ମାଗିବା ପାଇଁ ଚେଷ୍ଟା କରି ନାହାଁନ୍ତି । ଅକ୍ଷୟ ବାବୁ ମୋର କୃତିତ୍ୱ ଲାଗି ସର୍ବଦା ଅସୂୟାପରାୟଣ ଏବଂ ବଳରାମ ନିଜର ନୀଚ ସ୍ୱାର୍ଥ ପୂରଣ ଦିଗରେ ମୋତେ ସର୍ବଦା ଅନ୍ତରାୟ ମନେ କରୁଥିଲା ।

ଯାହାହେଉ, ଭବିଷ୍ୟତରେ ହୃଦାନନ୍ଦ ନିଜର ଭୁଲ୍ ବୁଝି ପାରିଥିବାର ମନେହୁଏ । ନିମ୍ନଲିଖିତ ଦୁଇଟି ଘଟଣା ତାହାର ପ୍ରମାଣ ।

ଦୋହଳ ହାଇସ୍କୁଲର ଦୁଇଜଣ ଶିକ୍ଷକ ଥରେ ହୃଦାନନ୍ଦଙ୍କୁ ଅନୁରୋଧ କଲେ ଯେ, ସେ ତାଙ୍କ ବାପାଙ୍କ ନାମରେ ସ୍କୁଲକୁ ଗୋଟିଏ Volley Ball ପ୍ରତିଯୋଗିତା ପାଇଁ Shield ଦିଅନ୍ତୁ । ସେ ସଙ୍ଗେ ସଙ୍ଗେ ଉତ୍ତର ଦେଲେ—ମୋ ବାପା ସ୍କୁଲ ପାଇଁ କିଛି କରି ନାହାନ୍ତି । ତେଣୁ ତାଙ୍କ ନାମରେ କିଛି କରାଯିବାରେ ମୁଁ ଏକମତ ନୁହେଁ । ଯଦି ବନମାଳୀ ନାଁରେ ସେହି ଶିଲ୍ଡଟା କରିବ, ତେବେ ଦୁଇଶହ ଟଙ୍କା ଦେବି ।" ତାଙ୍କ କଥା ରହିଲା—Banamali Brahmachari Volley Ball Tournament Shield ତିଆରି ହେଲା ।

ମୁଁ ଖଣ୍ଡିଏ ବହି ଛାପିବା ବେଳେ ଟଙ୍କାର ଅଭାବ ପଡ଼ିବାରୁ ହୃଦାନନ୍ଦଙ୍କୁ ଦୁଇଶହ ଟଙ୍କା ଧାର ମାଗିଲି । ସେ ସଙ୍ଗେ ସଙ୍ଗେ ଦେଲେ, ମାତ୍ର ମୁଁ ଫେରାଇବା ବେଳେ ସେ ଗ୍ରହଣ କରିବାକୁ ମନା କଲେ ।

ସରଳ ଅନ୍ତଃକରଣରେ ଇସ୍ତଫା ପତ୍ର ଦେବା ପରେ ମୁଁ ଯେ ମାନସିକ ବେଦନାରୁ ରକ୍ଷା ପାଇଲି, ତାହା କହିଲେ ସତ୍ୟର ଅପଳାପ ହେବ । ବରଂ ମାସକ ପର୍ଯ୍ୟନ୍ତ ମୁଁ ଘୋର ଯନ୍ତ୍ରଣା ଅନୁଭବ କଲି ।

ସ୍କୁଲର ନାନା କଥା ମନେ ପଡ଼ିବାକୁ ଲାଗିଲା ଏବଂ ମୁଁ ସେଥିପାଇଁ ଏକ ପ୍ରକାର ଝୁରି ହେଲି ।

ସ୍ତ୍ରୀ ପରେ କଅଣ କରିବି, ସେ ସମ୍ପର୍କରେ ବହୁତ ଚିନ୍ତା କରିବାକୁ ଲାଗିଲି । ଏତେ ବର୍ଷର ଶିକ୍ଷକତାରେ ସଞ୍ଚୟ କିଛି ମାତ୍ର ନଥିଲା । ଝିଅଟି କଟକରେ ଆଇ. ଏ. ପଢୁଥାଏ । ତା ପାଇଁ ପ୍ରତି ମାସରେ ଅନ୍ତତଃ ପଚିଶ ଟଙ୍କା ଦରକାର । ଅମାରରେ ଧାନ ଥିଲା ସିନା, ପ୍ରାତ୍ୟହିକ ବ୍ୟୟ ନିର୍ବାହ କରିବା, ଖଜଣା ଜଳକର ଦେବା, ବନ୍ଧୁ ବାନ୍ଧବଙ୍କ ପ୍ରତି ସାମାଜିକ କର୍ତ୍ତବ୍ୟ ତୁଲାଇବା ଏ ସବୁ ପାଇଁ ତ ଧନ ଦରକାର । କନ୍ୟାର ବିବାହ ପାଇଁ ଚିନ୍ତା ନଥିଲା । କାରଣ ସେଥିଲାଗି କିଛି ଭୂସମ୍ପତ୍ତି ବିକି କରି ଦେବାକୁ ନିଷ୍ପତ୍ତି ନେଇଥିଲି ।

ମୁଁ ଶିକ୍ଷକ ଥିବା ବେଳେ ଛାତ୍ରାବାସରେ ଭୋଜନ କରୁଥିଲି । ବର୍ତ୍ତମାନ ଏହି ଭୋଜନ ସମସ୍ୟା ମୋ ପକ୍ଷରେ ଗୋଟାଏ ବୋଝ ହେଲା । ମୋର ସାବତ ମା'ର ଗୋଟିଏ ଝିଅ ଅତି ଦରିଦ୍ର ଘରେ ବିବାହ କରିଥିଲି । ବାତ୍ୟାରେ ତାହାର ଘର ଖଣ୍ଡିକ ସମ୍ପୂର୍ଣ୍ଣରୂପେ ଧ୍ୱଂସ ପାଇଯିବାରୁ ଏବଂ ନୂଆ ଘରଟିଏ ତିଆରି କରିବା ତାହାର ଶକ୍ତିର ଅତୀତ ଥିବାରୁ 'ଘାଇ ଥିଲେ ଘାଗ ନେଇଥାନ୍ତା' ବିଚାରି ତାକୁ ମୋର ପୈତୃକ ବାସଭବନ ଓ ତତ୍‌ସଂଲଗ୍ନ ଅର୍ଦ୍ଧ ଏକର ପରିମିତ ଜମି ଦାନ କରି ଦେଇଥିଲି । ମୋର ସାବତ ମା' ତାହାର ସେହି ଝିଅ ପାଖରେ ରହୁଥିଲେ । ମୁଁ ସ୍କୁଲ ପାଖରେ ଖଣ୍ଡିଏ ଘର ତିଆରି କରି ଏକା ରହୁଥିଲି ।

ସାବତ ମା'ଙ୍କ ସହିତ ମୋର ଭଲ ପଟୁ ନ ଥିଲା । ସେ ଝିଅ ପାଖରେ ରହିବାକୁ ଆଗ୍ରହ ପ୍ରକାଶ କରିବାରୁ ମୁଁ ତାଙ୍କର ଇଚ୍ଛାରେ ବାଧା ଦେଇ ନ ଥିଲି ଏବଂ ତାଙ୍କର ଚଳିବା ପାଇଁ ଧାନ ଓ ନଗଦ ଟଙ୍କା ବୁଝାଇ ଦେଉଥିଲି । ବର୍ତ୍ତମାନ ମୋର ଅସୁବିଧା ଦୃଷ୍ଟିରୁ ସେ ମୋ ପାଖକୁ ଫେରି ଆସିବାକୁ ମନ କଲେ ନାହିଁ । ମୁଁ ମଧ୍ୟ ତାଙ୍କୁ ବାଧ୍ୟ କରିପାରିଲି ନାହିଁ । ତେଣୁ ହାତରେ ବେଷେଇ କରି ଖାଇବା ଛଡ଼ା ମୋର ଅନ୍ୟ ଉପାୟ ନଥିଲା ।

ମୁଁ ବହୁ ଦିନରୁ ଖେଚଡ଼ି ଖାଇବାରେ ଅଭ୍ୟସ୍ତ । ସକାଳ ବେଳା ଖେଚୁଡ଼ି ତିଆରି କରିଦିଏ । ତାହା ସାଙ୍ଗରେ ଯେଉଁ ପୁଞ୍ଜିଏ ଆଳୁ ପକାଇ ଥାଏ, ତାହାକୁ ଭରତା କରେ । ରାତିବେଳା ବେଷାଇ କରିପାରେ ନାହିଁ । ଚୂଡ଼ା ଗୁଡ଼ରେ କ୍ଷୁଧା ନିବାରଣ କରେ । ଅନେକ ସମୟରେ ରାତିରେ ପାଣି ପିଇ ରହିଯାଏ । କାରଣ ଅମାରରେ ଧାନ ଥିଲେ ହେଁ ତାକୁ କେଉଟ ଘରକୁ ପଠାଇ ଚୂଡ଼ା କରି ଆଣିବା କଥା ଭୁଲିଯାଏ । କାର୍ଯ୍ୟହିଁ ମୋର ଜୀବନ । ଶିକ୍ଷକତା ଛାଡ଼ିଲେ ସୁଦ୍ଧା ନାନାପ୍ରକାର କାର୍ଯ୍ୟରେ ମୋର ସମୟ କଟିଯାଏ । ଅବଶ୍ୟ ସେ କାର୍ଯ୍ୟ ସବୁ ମୋର ବ୍ୟକ୍ତିଗତ ନୁହେଁ—ଲୋକସେବାମୂଳକ ।

ତେବେ ଏତେବେଳେ ମୋର ଯେଉଁ ବ୍ୟକ୍ତିଗତ କାମଟି ଥିଲା, ତାହା ହେଉଛି କନ୍ୟା ପାଇଁ ଗୋଟିଏ ଉପଯୁକ୍ତ ବରପାତ୍ର ସନ୍ଧାନ । ଥରେ ମୁଁ ଏହି ଉଦ୍ଦେଶ୍ୟରେ ଅନୁଗୋଳ ଯାଇଥିଲି । ଷ୍ଟାମ୍ପ ପୋଷ୍ଟ ମାଷ୍ଟର ବେଣୁଧର ମହାପାତ୍ର ଆମ ଗ୍ରାମର ଲୋକ ଥିବାରୁ ମୁଁ ତାଙ୍କର ବସାରେ ବସିଥାଏ । ସମ୍ବଲପୁର କଲେଜର ତତ୍କାଳୀନ ଅଧ୍ୟକ୍ଷ ଶ୍ରୀ ମାୟାଧର ମାନସିଂହ ପାଣି ପିଇବା ପାଇଁ ସେଠାରେ ପହଞ୍ଚିଗଲେ । ସେ ମୋତେ ଦେଖିଲା ମାତ୍ରକେ କହିଲେ—"ପଣ୍ଡିତ ମହାଶୟ, ଆପଣ ଏଠି ?" ମୁଁ କହିଲି, "କନ୍ୟାଟି ପାଇଁ ଗୋଟିଏ ବରପାତ୍ର ସନ୍ଧାନରେ ଆସିଛି ।" ତହୁଁ ସେ କହିଲେ—"କନ୍ୟାଟିକୁ ବି. ଏ. ପଢ଼ାଉ ନାହାନ୍ତି କାହିଁକି ?" ମୁଁ ଉତ୍ତର ଦେବା ପରେ ସେ କାର୍‌ରେ ବସିବାକୁ ଗଲାବେଳେ କହିଲେ—"ମୁଁ ଯେଉଁଦିନ ଜାଣିଲି ଆପଣ ଇସ୍ତଫା ଦେଇଛନ୍ତି, ସେଦିନ ମନେ କଲି ଆପଣ ସର୍ବାଧିକ ତ୍ୟାଗ କଲେ ।"

ସେ ଚାଲିଯିବା ପରେ ମୁଁ ତାଙ୍କର ଉକ୍ତ କଥା ଚିନ୍ତା କରିବାକୁ ଲାଗିଲି ଏବଂ ସେ ମୋ ସମ୍ବନ୍ଧରେ ଏତେ କଥା କେମିତି ଜାଣିଲେ ବୋଲି ବିସ୍ମିତ ହେଲି ।

ସେ ଇନ୍‌ସପେକ୍ଟର ଥିବା ବେଳେ ଦୋହଲା ମଡ଼େଲ ହାଇସ୍କୁଲ ଦେଖିବାକୁ ଥରେ ମାତ୍ର ଯାଇଥିଲେ ଏବଂ ସ୍କୁଲର ଇତିହାସରେ ମୋର ଭୂମିକା ସମ୍ପର୍କରେ ବୋଧହୁଏ ଅବହିତ ହୋଇ ଆସିଥିଲେ । ପରବର୍ତ୍ତୀ କାଳରେ ସେ ମୋତେ ଯେଉଁ ପ୍ରଶଂସା-ପତ୍ର ଖଣ୍ଡିଏ ଦେଇଥିଲେ, ତହିଁରୁ

ତାଙ୍କ ଗୁଣଗ୍ରାହିତାର ଯଥେଷ୍ଟ ପରିଚୟ ମିଳେ । ସେହି ପ୍ରଶଂସା-ପତ୍ର ଖଣ୍ଡିକ ଏହି ବହିର ଶେଷରେ ପ୍ରକାଶିତ ହୋଇଛି ।

ଏହି କଥା ଲେଖୁ ଲେଖୁ ଆଜି ଗୋଟିଏ କଥା ମନେ ପଡ଼ୁଛି । ହାଇସ୍କୁଲରେ ଅଷ୍ଟମ ଶ୍ରେଣୀ ଖୋଲିଯିବା ପରେ ତତ୍କାଳୀନ ଶିକ୍ଷାମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ର ସ୍କୁଲ ପରିଦର୍ଶନ କରିବାକୁ ଯାଇଥିଲେ । ଶ୍ରୀ ଅକ୍ଷୟ କୁମାର ଚକ୍ରବର୍ତ୍ତୀ ମନ୍ତ୍ରୀଙ୍କର ସହପାଠୀ ଥିବାରୁ ତାଙ୍କ ପାଇଁ ନିଜ ଘରେ ଖାଦ୍ୟପେୟର ବ୍ୟବସ୍ଥା କରିଥିଲେ । ମନ୍ତ୍ରୀ ମହାଶୟ ପରିଦର୍ଶନ ମନ୍ତବ୍ୟ ବହିରେ ଲେଖି ଦେଇ ଆସିଲେ—Tha school owes its existence to Akshoy Babu, who is the secretary of the school. ସେହି ମନ୍ତବ୍ୟ ଯେତେବେଳେ ପଢ଼ା ହେଲା, ଶ୍ରୋତାମାନେ ଠୋ ଠୋ ହସିବାକୁ ଲାଗିଲେ । ସେମାନେ କହିଲେ—ଯେଉଁ ଲୋକ ସ୍କୁଲରେ ଗୃହକର କରି ଦରମା ନେବା ଛଡ଼ା ଆଉ କିଛି ଜାଣନ୍ତି ନାହିଁ, ତାଙ୍କ ସମ୍ପର୍କରେ ମନ୍ତ୍ରୀ ଏପରି ଲେଖି ପ୍ରତିଭା ଦେଖାଇ ନାହାନ୍ତି, ବରଂ ବୋକାମିର ପରିଚୟ ଦେଇଛନ୍ତି ।

ଶିକ୍ଷାମନ୍ତ୍ରୀଙ୍କ ଏ ପ୍ରକାର ମନ୍ତବ୍ୟରେ ମୁଁ କ୍ଷୁବ୍ଧ ହୋଇ ନଥିଲି । କିଛି ଜାଣିବାକୁ ଚେଷ୍ଟା ନକରି, ଗଣ୍ଡିଏ ଦ୍ରବ୍ୟ ଭୋଜନ ପାଇଲେ ବୋଲି ଅକ୍ଷୟ ବାବୁଙ୍କୁ ଯିଏ ବୃଥା ପ୍ରଶଂସା ଦେଇ ଆସିଲେ, ପ୍ରଶାସନିକ କ୍ଷେତ୍ରରେ ସେ କିପରି ନିରପେକ୍ଷ ହୋଇ ପାରିବେ ବୋଲି ମନରେ ଚିନ୍ତା କରୁଥିଲି । ଘଟଣାଟି ଛୋଟ ହେଲେ ସୁଦ୍ଧା ଶିକ୍ଷାମନ୍ତ୍ରୀ ହିମାଳୟ ପରି ବଡ଼ ଭୁଲ୍‌ଟାଏ କରି ପକାଇବା ତାଙ୍କର ପ୍ରତିଭା ଓ ସଚ୍ଚୋଟ ହୃଦୟର ପରିଚାୟକ ନୁହେଁ ।

୧୯୩୨ ମସିହାରେ ମଧ୍ୟ-ଇଂରାଜୀ ସ୍କୁଲ ପ୍ରତିଷ୍ଠିତ ହେବା ସମୟରେ ତତ୍କାଳୀନ ମୁଖ୍ୟ ମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାଶ ସ୍କୁଲ ଦେଖିବାକୁ ଯାଇଥିଲେ । ସେ ଗୃହୋଳରେ ସବୁ କାମ ସାରି ସ୍କୁଲରେ ପ୍ରାୟ ରାତି ୭ ଘଣ୍ଟାରେ ପହଞ୍ଚିଲେ । ମୁଁ ସ୍କୁଲ ବାରଣ୍ଡାରେ ଠିଆ ହୋଇଥାଏ । ମୋର ନାମ ଜାଣିବା ପରେ ସେ ମୋତେ କୁଣ୍ଢାଇ ପକାଇ କହିଲେ —"ଆପଣଙ୍କୁ ଦେଖିବାଲାଗି ଆସିଲି । ଆଜି ବାଟରେ ପ୍ରାଣ ଚାଲିଯାଇ-ଥାନ୍ତା ।" ଗୃହୋଳରୁ ସ୍କୁଲ ପର୍ଯ୍ୟନ୍ତ ଯେଉଁ ସଡ଼କଟି ପଡ଼ିଛି, ତାହା ମୋ ଚେଷ୍ଟାର ଫଳ । ସେଥିରେ ମନ୍ତ୍ରୀଙ୍କ କାର୍‌ଟି ଏକ୍‌ସିଡେଣ୍ଟ୍‌ର ସମ୍ମୁଖୀନ

ହୋଇଥିଲି, ମାତ୍ର ରକ୍ଷା ପାଇଗଲି । ବିଶ୍ୱନାଥ ବାବୁ ମୋ ସମ୍ପର୍କରେ କେମିତି ଜାଣିଲେ କେଜାଣି ।

କଟକ ଜିଲ୍ଲା ସ୍କୁଲ ସମୂହର ତତ୍‌କାଳୀନ ଇନ୍‌ସପେକ୍ଟର ଶ୍ରୀ ସୁକାନ୍ତ ରାଓ, M. Sc., Dip-in-Ed (Bristol) ୨୬ । ୩ । ୩୪ ତାରିଖରେ ପରିଦର୍ଶନ ମନ୍ତବ୍ୟ ବହିରେ ଲେଖିଛନ୍ତି—

It must be a pleasant surprise to those who would be visiting the locality after 1931, how a cremation ground and a huge mound has now been converted into an M. E. School and a smiling garden The main inspiration of the school is the head Pandit Babu Banamali Panda, who has been ably supported by the staff.

୧୯୫୦ મସିହା ମଇ ମାସରେ କନ୍ୟାଟିର ବିବାହ ହୋଇଗଲା । ଏଥିପାଇଁ ପ୍ରାୟ ଦଶ ହଜାର ଟଙ୍କା ଖରଚ ହୋଇଥିଲା ଏବଂ ତାହା ଜମି ବନ୍ଧକ କରି ପାଇଥିଲି ।

ଏହାପରେ ଖଣ୍ଡିଏ ଗ୍ରନ୍ଥ ପାଇବା ପାଇଁ ମୁଁ ଅତି ବ୍ୟସ୍ତ ହୋଇ ପଡ଼ିଲି । ହାତକୁ କିଛି ଟଙ୍କା ଆସିବ ଏବଂ ହାତ ଶୋଷାଇରୁ ରକ୍ଷା ପାଇବି, ଏହାହିଁ ମୋର କାମ୍ୟ ହେଲା । ମୁଁ କଟକରେ ଥିବା ମୋର ଜଣେ ସହପାଠୀଙ୍କୁ ଗ୍ରନ୍ଥ ଯୋଗାଡ଼ କରିବା ପାଇଁ ଅନୁରୋଧ କଲି ଏବଂ ଓଡ଼ିଶାର ଯେ କୌଣସି ଅଞ୍ଚଳକୁ ଯିବା ପାଇଁ ମୁଁ ପ୍ରସ୍ତୁତ ବୋଲି ଜଣାଇ ଦେଇଥିଲି ।

ପ୍ରାୟ ୧୯୫୨ ମସିହାରେ ଦୋହଲ ହାଇସ୍କୁଲର ମୋ ତିଆରି ପ୍ରକାଣ୍ଡ ଘରଟି ଭସ୍ମସାତ୍ ହେଲା । ମୁଁ କଟକରେ ଥାଇ ସେହି ଶୋଚନୀୟ ସମ୍ବାଦ ପାଇଲି । କେତେ ଦିନ ପର୍ଯ୍ୟନ୍ତ ସେଥିଲାଗି ଏକାନ୍ତରେ କାନ୍ଦି କାନ୍ଦି ହୋଇ କାନ୍ଦିଛି । ସେତେବେଳକୁ ଶ୍ରୀ ମୁରଲୀଧର ଆଚାର୍ଯ୍ୟ ପ୍ରଧାନ ଶିକ୍ଷକ ଥିଲେ । ତାଙ୍କ ଅନୁରୋଧ ଅନୁସାରେ ଅଗ୍ନିଦଗ୍ଧ ଗୃହରେ ଅଗ୍ନି-ନିରୋଧ ଛାତ ପାଇଁ ନଗଦ ତିନି ହଜାର ଟଙ୍କା ବିନା ସୁଧରେ ଦେଲି । ଏହି ଟଙ୍କା ମୁଁ ପ୍ରାୟ ଦୁଇ ବର୍ଷ ପରେ ଫେରି ପାଇଥିଲି । କେତେ ଖଣ୍ଡ ପାଠ୍ୟ ପୁସ୍ତକ ଲେଖି ଏହି ଟଙ୍କା ପାଇଥିଲି । ମୁରଲୀ ବାବୁଙ୍କ ଅନୁରୋଧ ଏଡ଼ି ନ ପାରି ମୁଁ ୩।୪ ବର୍ଷ ପର୍ଯ୍ୟନ୍ତ ପରିଚାଳନା କମିଟିର ସଭାପତି ହୋଇଥିଲି ।

---

# କଟକ ଟ୍ରେଡ଼ିଂ କମ୍ପାନୀ ଓ ସଂସାର ପ୍ରେସ

ବୁକକିପ ଅପେକ୍ଷାରେ ଥିବା ସମୟରେ ମୋର ଜଣେ ସହପାଠୀ ତଥା କଟକ ଟ୍ରେଡ଼ିଂ କମ୍ପାନୀର କର୍ମୀ ୰ ଉଦୟନାଥ ରଥ ତାଙ୍କର ବହି ଦୋକାନରେ ମୋ ପାଇଁ ଖଣ୍ଡେ ବୁକକିପ ଠିକ୍ କରିଦେଲେ । ମାସିକ ଦରମା ଅଶି ଟଙ୍କା । ଏହା ୧୯୪୯ ମସିହା କଥା ।

ଏହି ଦୋକାନରେ କାମ କରୁଥିବା ବେଳେ ମୁଁ ଅବଶ୍ୟ ମାନସିକ ଶାନ୍ତି ପାଉନଥିଲି । ତାହାର କାରଣ, ଦୋହଲରେ ମ. ଇ. ସ୍କୁଲ ଓ ହାଇସ୍କୁଲ ପ୍ରତିଷ୍ଠା କରି ଏବଂ ଲୋକହିତକର ବହୁମୁଖୀ କ୍ରିୟାକଳାପରେ ଆତ୍ମ ବିସର୍ଜନ କରି ମୁଁ ଯେଉଁ ସୁଖ୍ୟାତି ଅର୍ଜନ କରିଥିଲି, ତାହା ତୁଳନାରେ ବହି ଦୋକାନରେ ବୁକକିପ କରିବା ମୋ ପକ୍ଷରେ ହୀନତା ବ୍ୟଞ୍ଜକ ବୋଧ ହେଉଥିଲା । ତଥାପି କନ୍ୟାଟିର କଟକରେ ପାଠପଢ଼ା ଖରଚ ଯୋଗାଇବା ପାଇଁ ମୋ ପକ୍ଷରେ ଗତ୍ୟନ୍ତର ନଥିଲା ।

ମୁଁ ମୋର କର୍ତ୍ତବ୍ୟରେ ତିଳେ ମାତ୍ର ହେଳା କରିବାର ଲୋକ ନୁହେଁ । ଏହି ସମୟରେ ମୁଁ ଚତୁର୍ଥ ଶ୍ରେଣୀର ଖଣ୍ଡିଏ ସାହିତ୍ୟ ପାଠ୍ୟ ପୁସ୍ତକ ଲେଖିଲି ଏବଂ ତାହାକୁ ପ୍ରକାଶ କରିବା ପାଇଁ Book Emporium ର ସ୍ୱତ୍ୱାଧିକାରୀଙ୍କୁ ଦେଲି । ଟ୍ରେଡ଼ିଂ କମ୍ପାନୀ ଆଉ ଜଣେ ଲେଖକଙ୍କୁ ଉକ୍ତ ବହି ଲେଖିବା ପାଇଁ ଦେଇଥିବାରୁ ମୁଁ ଅନ୍ୟ ପ୍ରକାଶକଙ୍କୁ ଅନୁରୋଧ କରିବା ସ୍ୱାଭାବିକ । ପଣ୍ଡିତ ଆକୁଳ ମିଶ୍ର ଏକଥା ଜାଣିପାରି ମୋର ବୁକକିପ ଖଣ୍ଡିକ ଛଡ଼ାଇ ନେଲେ । ଏହି ଘଟଣାରେ ମୁଁ ଏତେଦୂର ମର୍ମାହତ ହେଲି ଯେ, ମୋର ବହି ଲେଖା ସମ୍ପୂର୍ଣ୍ଣ କରି ନପାରି ଘରକୁ ଲେଉଟି ଆସିଲି । ଅଳ୍ପଦିନରେ ମୋର ଭଳି କେତେକ କର୍ମୀ ଠିକ୍ ଏହି କାରଣରୁ ସେଠାରୁ କାର୍ଯ୍ୟଚ୍ୟୁତ ହୋଇଥିବାର ଶୁଣିବାକୁ ପାଇଥିଲି ।

କେତେ ମାସ ପରେ 'ସମାଜ' ପ୍ରେସରେ ନିର୍ଦ୍ଦିଷ୍ଟ ସମୟ ପାଇଁ ଗୃହକର୍ମ ଖଣ୍ଡିଏ ମିଳିଲା । ପ୍ରେସର ମାଲିକ ଶ୍ରୀ ରାମକୃଷ୍ଣ ନନ୍ଦ ଜଣେ ସୁନ୍ଦର ଭଦ୍ର ବ୍ୟକ୍ତି । ସେ ମୋର ଅତୀତ ପ୍ରତିଷ୍ଠାକୁ ସମ୍ମାନ କରି ମୋ ପ୍ରତି ବ୍ୟବହାର କଲେ । ତାଙ୍କର ସ୍ନେହ ସହାନୁଭୂତି ଭୁଲି ହେବାର ନୁହେ । ମୁଁ ଯେତେ ଦିନ କାର୍ଯ୍ୟ କଲି, ସେ ମୋର କାର୍ଯ୍ୟଦକ୍ଷତା, କର୍ତ୍ତବ୍ୟପରାୟଣତା ଓ ସାହିତ୍ୟ ଜ୍ଞାନର ପ୍ରଶଂସା କରୁଥିଲେ । ମୁଁ ଯେଉଁଦିନ ତାଙ୍କଠାରୁ ବିଦାୟ ଆଣିଲି, ସେଦିନ ସେ ଏଇଥିପାଇଁ ଦୁଃଖ ପ୍ରକାଶ କରିଥିଲେ ଯେ, ସେ ମୋତେ ଅଧିକ କାଳ ରଖି ପାରୁନାହାନ୍ତି । ନନ୍ଦ ମହାଶୟ ଅତୀତରେ ଜଣେ ଶିକ୍ଷକ ଥିଲେ । ସାହିତ୍ୟିକ ହିସାବରେ ସେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ତାଙ୍କର ଗୁଣଗ୍ରାହିତା ସର୍ବତ୍ର ସୁଲଭ ନୁହେଁ ।

---

# କୋଠପଦାରେ ପାଞ୍ଚ ବର୍ଷ

ସ୍ୱକଷ୍ଟ ପାଇଁ ସ୍ୱତନ୍ତ୍ର ପତ୍ର ସ୍ୱର୍ଣ୍ଣ ରଖୁଥିବା ବେଳେ ଦିନେ ଖଣ୍ଡିଏ ମନ ପାଇଲି । ଲେଖିଥିଲେ କୋଠପଦା ମ. ଇ. ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ଦୁର୍ଗାଚରଣ ମହାନ୍ତି—"ପ୍ରାୟ ୧୦୦ ବର୍ଷର ସ୍କୁଲ, ବରୂପା କୂଳେ, ଉନ୍ମୁକ୍ତ ପ୍ରାନ୍ତରରେ ସ୍କୁଲଟି । ଜଳବାୟୁ ସୁନ୍ଦର । ଶୁଣିଲି ଆପଣ ଆଉ ଦୋହଲା ସ୍କୁଲରେ ନାହାନ୍ତି । ଅନୁଗ୍ରହ କରି ଆମ ସ୍କୁଲରେ ରହିଲେ ସୁଖୀ ହେବି ।"

ପତ୍ରଟି ପାଇ ତହିଁ ଆରଦିନ ସାଇକେଲରେ ଯାଇଁ କୋଠପଦାରେ ପହଞ୍ଚିଲି । ଦୁର୍ଗାଚରଣ ବାବୁ ଦେଖାହେଲେ ଓ ମୋତେ ନେଇ ସ୍କୁଲ ସମ୍ପାଦକ ମହନ୍ତ ତପୋନିଧି ଗୋଲକନାଥ ପୁରୀଙ୍କ ପାଖକୁ ଗଲେ । କେତେକ କଥାବାର୍ତ୍ତା ପରେ ମୁଁ ଆସିଲେ ସେ ସୁଖୀ ହେବେ ବୋଲି କହିଲେ ଏବଂ ପରିଚାଳନା କମିଟିର ସଭାପତି ଶ୍ରୀ ଜଗନ୍ନାଥ ଚୌଧୁରୀଙ୍କୁ ଭେଟିବା ପାଇଁ ପରାମର୍ଶ ଦେଲେ ।

ସେ ଦିନ ରାତିରେ କୁଶପୁର ନନ୍ଦକିଶୋର ବିଦ୍ୟାମନ୍ଦିରର ପ୍ରଧାନ ଶିକ୍ଷକ ଶ୍ରୀ ଗୋବିନ୍ଦ ଚନ୍ଦ୍ର ସାମଲଙ୍କର ଅତିଥି ହେଲି । ତାଙ୍କଠାରୁ ଶୁଣିଲି ଯେ, ସେ ତାଙ୍କ ସ୍କୁଲରେ ଟ୍ରେଣ୍ଡ୍ ମାଟ୍ରିକ୍ ପରିବର୍ତ୍ତେ ଜଣେ ଭି ଏମ୍. ପାସ ଶିକ୍ଷକଙ୍କୁ ନିଯୁକ୍ତ ଦେବା ଲାଗି ପ୍ରସ୍ତାବ ଗ୍ରହଣ କରାଇ ନେଇଥିଲେ । ଏହି ଗୋବିନ୍ଦ ବାବୁଙ୍କୁ ମୁଁ ଦୋହଲା ମଣ୍ଡଳ ହାଇସ୍କୁଲର ପ୍ରଧାନ ଶିକ୍ଷକ କରାଇଥିଲି । ମୁଁ ବେକାର ବସିଥିବାରୁ ସେ ମୋତେ ଆଖି ଆଗରେ ରଖି ତାଙ୍କ କମିଟିରେ ପ୍ରସ୍ତାବ ନେଇଥିଲେ । ମାତ୍ର ଫଳ ହେଲା ଓଲଟା । କୋଠପଦା ମି. ଇ. ସ୍କୁଲର ହେଡ୍‌ପଣ୍ଡିତ ଶ୍ରୀ ବାଞ୍ଛାନିଧି ପଣ୍ଡା ତାଙ୍କ ଘରପାଖ କୁଶପୁର ହାଇସ୍କୁଲରେ ରହିବା ପାଇଁ ଚେଷ୍ଟା କରି ସଫଳ ହେବାରୁ କୋଠପଦା ସ୍କୁଲରେ ହେଡ୍‌ପଣ୍ଡିତ କାର୍ଯ୍ୟଟି ଖାଲି ପଡ଼ିଲା ।

ଯାହାହେଉ, ମୁଁ ନିଯୁକ୍ତି ପାଇ କୋଠପଦାରେ ଯୋଗ ଦେଲି । ହଷ୍ଟେଲରେ ତିନିଜଣ ମାତ୍ର ପିଲା । ହିନ୍ଦୀ ଶିକ୍ଷକ ଶ୍ରୀ ବୈଷ୍ଣବ ଚରଣ ପରିଡ଼ା ହଷ୍ଟେଲରେ ରହନ୍ତି । ନିଧି ମାଣି ନାମକ ୭୦ ବର୍ଷର ଜଣେ ବୃଦ୍ଧ ପାଚକ ସେଷାଇ କରି ଜଣ ପିଛା ଏକ ଟଙ୍କା ହିସାବରେ ମାସକୁ ତିନିଟଙ୍କା ଦରମା ପାଆନ୍ତି । ମୋତେ ମିଶାଇ ଛାତ୍ରାବାସରେ ପାଞ୍ଚଜଣ ହେଲେ ।

ମୋତେ ପ୍ରଥମେ ପ୍ରଥମେ ଭାରି ଅଡୁଆ ଲାଗିଲା । ଦୋହଲା ଛାତ୍ରାବାସରେ ଷାଠିଏ ଜଣ ଅନ୍ତେବାସୀ ରହୁଥିଲେ । ସେମାନଙ୍କ ସହ ଆନନ୍ଦରେ ସମୟ କଟୁଥିଲା । ତେଣୁ ସ୍ୱଳ୍ପ ସଂଖ୍ୟକ ଛାତ୍ରଙ୍କ ସହ ରହିବା ଆନନ୍ଦ ଦାୟକ ହେଲା ନାହିଁ । ଯାଲେପୁର—କୁଆଁପାଳ ସଡ଼କ ସେତେବେଳକୁ ପକ୍‌କା ହୋଇ ନ ଥିଲା । ବର୍ଷା ଦିନେ ସାଇକେଲ୍‌ରେ ଗଲା ବେଳେ ଏତେ କଷ୍ଟ ସ୍ୱୀକାର କରିବାକୁ ପଡ଼ୁଥିଲା ଯେ, ଚାକିରି ଛାଡ଼ି ଦେବାକୁ ମନ ହେଉଥିଲା । କାଦୁଅରେ ସାଇକେଲ ଘୋଷାରିଲା ବେଳେ ମୋତେ କାନ୍ଦ ମାଡ଼ୁଥିଲା ଏବଂ ମୁଁ ଭଗବାନଙ୍କୁ ଦୋଷ ଦେଇ ଗାଳିଦେଇ ବକୁଥିଲି । କିନ୍ତୁ ପରମୂହୂର୍ତ୍ତରେ ମୁଁ ପ୍ରକୃତିସ୍ଥ ହୋଇ ନିଜକୁ ନିଜେ କହୁଥିଲି ଯେ, ଚାକିରି ଛାଡ଼ିଦେଲେ ଏଥିଠାରୁ ବଳି ଦୁର୍ଦ୍ଦଶା ଭୋଗିବାକୁ ହେବ ।

କୋଠପଦାରେ କେହି ମୋର ପରିଚିତ ନ ଥିଲେ, ମାତ୍ର ସେଠାରେ ରହିବା ପରେ ଜାଣିବାକୁ ପାଇଲି ଯେ, ଅନେକେ ମୋର ନାମ ଶୁଣିଛନ୍ତି । ଦୋହଲା ସ୍କୁଲରେ ମୋର କାର୍ଯ୍ୟକଳାପ ବହୁଦୂର ବିସ୍ତୃତ ହୋଇଥିଲା ଏବଂ ମୁଁ ମଧ୍ୟ ଉପଲବ୍‌ଧି କରିଛି ଯେ, ରେଳ ମଟରରେ ଗଲା ବେଳେ ଦୋହଲାଠାରୁ ବହୁ ଦୂରବର୍ତ୍ତୀ ଗ୍ରାମର ଲୋକେ କଥାବାର୍ତ୍ତା ବେଳେ ମୋ ନାଁ ଆଗରୁ ଜାଣିଥିଲେ, ଆଜି ଆଖିରେ ଦେଖିଲେ ବୋଲି ସ୍ୱୀକାର କରନ୍ତି । ଯାହା ହେଉ, କୋଠପଦାରେ କିଛି ଦିନ କାମ କରିବା ପରେ ମୋର ଅଧ୍ୟାପନା କୌଶଳ, ସୌଜନ୍ୟ ଓ ଛାତ୍ର ସ୍ନେହର ପ୍ରଶଂସା ଶୁଣିବାକୁ ମିଳିଲା ଏବଂ ମାସକ ମଧ୍ୟରେ ଛାତ୍ରାବାସରେ ଛାତ୍ର ସଂଖ୍ୟା ତିନିରୁ ତିରିଶକୁ ବୃଦ୍ଧି ପାଇଲା । ମୁଁ ଛାତ୍ରାବାସର ପରିଚାଳକ ହେଲି । ବୃଦ୍ଧ ପାଚକ ନିଧି ପାଣି ବିଚରା ମାସକୁ ପଚିଶ ଟଙ୍କା ଦରମା ପାଇ କୃତକୃତ୍ୟ ହୋଇଗଲା ।

ପ୍ରଧାନ ଶିକ୍ଷକ ଦୁର୍ଗାଚରଣ ବାବୁଙ୍କର ବୟସ ସେତେବେଳକୁ ପ୍ରାୟ ସତୁରି । ସେ ନିଶ୍ଚୟ ଜଣେ ବହୁଦର୍ଶୀ ଶିକ୍ଷକ, ମାତ୍ର ବୟସର ଆଧିକ୍ୟ ବଶତଃ ହେଉ ବା ଅଜ୍ଞାନତା ପ୍ରଯୁକ୍ତ ହେଉ, ତାଙ୍କର ଅଧ୍ୟାପନା ପ୍ରଣାଳୀ ଏତେ ଦୋଷଯୁକ୍ତ ଥିଲା ଯେ, ମୁଁ ତାଙ୍କର ବହୁଦର୍ଶିତାକୁ ସ୍ୱୀକାର କରିବାକୁ ରାଜି ନ ଥିଲି । ସେ ସପ୍ତମ ଶ୍ରେଣୀରେ ଇଂରାଜୀ ପଢ଼ାଉଥିଲେ । ପ୍ରତି ବର୍ଷ ବେଶୀ ସଂଖ୍ୟକ ପିଲା ୭ମ ଶ୍ରେଣୀର ବୋର୍ଡ଼ ପରୀକ୍ଷାରେ ଇଂରାଜୀରେ ଫେଲ୍ ହୋଇ ଭର୍ଣ୍ଣାକୁଲର ପାସ୍ କରୁଥିଲେ । ସେତେବେଳେ ନିୟମ ଥିଲା ଯେ, କେହି ଇଂରାଜୀରେ ଫେଲ୍ ହେଲେ ତାକୁ ଭର୍ଣ୍ଣାକୁଲର ପାସ୍ ବୋଲି ଘୋଷଣା କରାଯିବ ଏବଂ ତାକୁ ଆଉ ଥରେ କେବଳ ଇଂରାଜୀରେ ପରୀକ୍ଷା ଦେବାକୁ ହେବ ।

ପିଲାମାନଙ୍କର ଇଂରାଜୀରେ ଦୁର୍ବଳତା ଦେଖି ମୁଁ ସୁଯୋଗ ପାଇଲେ ସପ୍ତମ ଶ୍ରେଣୀରେ ଇଂରାଜୀ ପଢ଼ାଉଥିଲି । ପିଲାମାନେ ମୋ ପଢ଼ାରେ ଏତେ ସନ୍ତୁଷ୍ଟ ହେଉଥିଲେ ଯେ, ଥରେ ସେମାନେ ଦୁର୍ଗାଚରଣ ବାବୁଙ୍କୁ କହି ପକାଇଲେ – "ହେଡ୍ ପଣ୍ଡିତେ ଭଲ ଇଂରାଜୀ ପଢ଼ାଉଛନ୍ତି । ତାଙ୍କୁ ପଢ଼ାଇବାକୁ ଦିଆଯାଉ । ଆପଣ ଅନ୍ୟ ବିଷୟ ପଢ଼ାନ୍ତୁ ।" ମୁଁ ଏ କଥା ଦୁର୍ଗାଚରଣ ବାବୁଙ୍କ ମୁହଁରୁ ଶୁଣିବାକୁ ପାଇଲି । ଦେଖିଲି, ପିଲାମାନଙ୍କ ମନ୍ତବ୍ୟରେ ସେ କ୍ଷୁବ୍ଧ ହୋଇ ନାହାନ୍ତି; ବରଂ ମୁଁ ତାଙ୍କ ବିଷୟ ପଢ଼ାଇ ତାଙ୍କ ଦାୟିତ୍ୱକୁ ହାଲୁକା କରି ଦେଉଥିବାରୁ ସେ ଖୁବ୍ ସନ୍ତୁଷ୍ଟ ।

ଦୁର୍ଗାଚରଣ ବାବୁଙ୍କ ଅଧ୍ୟାପନାରେ କପରି ତ୍ରୁଟି ରହିଥିଲା, ସେ ସମ୍ପର୍କରେ କେବଳ ଗୋଟିଏ କଥା ଏଠାରେ ଲେଖୁଛି । ସ୍କୁଲ୍ ଅଫିସ ଘରକୁ ଲାଗିଥିବା ବଖରାଟିରେ ଷଷ୍ଠ ଶ୍ରେଣୀର ଛାତ୍ରଛାତ୍ରୀମାନେ ଅଧ୍ୟୟନ କରୁଥିଲେ । ମୁଁ ଅଫିସ ଘରେ ବସି ଶୁଣିଲି, ଦୁର୍ଗାଚରଣ ବାବୁ ଛାତ୍ର-ମାନଙ୍କୁ Cat ସମ୍ବନ୍ଧରେ ଗୋଟିଏ Essay ଲେଖି ଆଣିବାକୁ କହିଲେ । ସେତେବେଳକୁ ଅଗଷ୍ଟ ମାସର ଦ୍ୱିତୀୟ ସପ୍ତାହ ଚାଲିଥିଲା । ୫ମ ଶ୍ରେଣୀରେ ଇଂରାଜୀ ଶିକ୍ଷା ବାଧ୍ୟତାମୂଳକ ନୁହେଁ । ପିଲାଏ ଇଂରାଜୀ ଭାଷାର ମାତ୍ର ୨୬ଟା ଅକ୍ଷର ଶିଖିଥାନ୍ତି ଓ ସେହି ଅକ୍ଷର ଲେଖିବାରେ କିଞ୍ଚିତ୍ ପଟୁତା ଲାଭ କରିଥାନ୍ତି । ୬ଷ୍ଠ ଶ୍ରେଣୀକୁ ଆସି ମାସ ଦେଢ଼ଟାରେ କପରି

ବର୍ତ୍ତ ଧର୍ମକରେ ଇଂରାଜୀରେ ପ୍ରବନ୍ଧ ଲେଖି ପାରିବେ ? ହେଡ୍‌ମାଷ୍ଟର ବାବୁ ଅଫିସକୁ ଆସିବା ପରେ ତାଙ୍କୁ ପଚାରିଲି—ପିଲାମାନେ ପଞ୍ଚମ ଶ୍ରେଣୀରେ ଇଂରାଜୀରେ ଯେଉଁ ଜ୍ଞାନ ଲାଭ କରିଛନ୍ତି, ତାହା ତ କିଛି ନୁହେଁ । ଏପରି ଅବସ୍ଥାରେ ସେମାନେ Essay କେମିତି ଲେଖିବେ ?

ସେ ଉତ୍ତର ଦେଲେ—ତାଙ୍କର ଇଂରାଜୀ ରଚନା (Composition) ପିରିଅଡ୍ ଥିଲା । ସେ ଆଜି କ'ଣ କରନ୍ତେ ?

ମୁଁ କହିଲି, ଯାହା ସେମାନଙ୍କ ଶକ୍ତିର ଅତୀତ, ସେପରି ବିଷୟ ଲେଖି ଆଣିବାକୁ କହିଲେ ସେମାନେ ବାଧ୍ୟ ହୋଇ ବଜାରରେ ମିଳୁଥିବା English Essay Book ରୁ ଉତାରି ଆଣିବେ ସିନା । ତଦ୍ୱାରା ଲାଭ କଅଣ ହେବ ? Composition କହିଲେ କଣ ଇଂରାଜୀରେ ପ୍ରବନ୍ଧ ଲେଖିବା ?

ସେ କହିଲେ—ତେବେ ମୁଁ କଅଣ ଆଲୋଚନା କରିଥାନ୍ତି ?

ମୁଁ ଉତ୍ତର ଦେଲି—ଧରନ୍ତୁ, ଆପଣ କଳା ପଟାରେ ଲେଖି ଦେଇଥାନ୍ତେ B—d ଓ ପିଲାମାନଙ୍କୁ ଶୂନ୍ୟସ୍ଥାନ ପୂରଣ କରିବାକୁ କହିଥାନ୍ତେ । ତାହା ହେଲେ କିଏ ଲେଖିଆନ୍ତା Bed, ଅନ୍ୟ କେହି Bad, Bud. ସେହିପରି I—to school, Ram – there, Sita is a—ଇତ୍ୟାଦି ଲେଖି ଶୂନ୍ୟସ୍ଥାନ ପୂରଣ କରିବା ପାଇଁ କୁହା ଯାଇଥାନ୍ତା ।

ଦୁର୍ଗାଚରଣ ବାବୁ ହସି ଦେଇ ମୋତେ ଭାରି ପ୍ରଶଂସା କଲେ ।

ବହୁ କାଳ କାର୍ଯ୍ୟ କରିଥିବା ଓ ତାଲିମ୍ ପାଇଥିବା ଅନେକ ଶିକ୍ଷକଙ୍କର ଅଧ୍ୟାପନା ପଦ୍ଧତି ଦେଖିବା ପରେ ମୁଁ ଏହାହିଁ ଉପଲବ୍ଧି କରିଛି ଯେ, କେବଳ ଏଇ ଦୁଇଟି ଯୋଗ୍ୟତା ଯୋଗୁଁ କେହି ଦକ୍ଷ ଶିକ୍ଷକ ବୋଲି ପରିଗଣିତ ହୋଇ ପାରିବେ ନାହିଁ । ଯେ କୌଣସି କାର୍ଯ୍ୟରେ ସଫଳତା ଲାଭ ପାଇଁ ପରିଶ୍ରମରେ ଆଦର ଓ ଆଳସ୍ୟରେ ଅନାଦର ଅନିବାର୍ଯ୍ୟ ଭାବରେ ଲୋଡ଼ା । ତୃତୀୟ ଶ୍ରେଣୀରେ ପାସ୍ କରିଥିବା ଜଣେ ପରିଶ୍ରମୀ ଶିକ୍ଷକ ପ୍ରଥମ ଶ୍ରେଣୀରେ ପାସ୍ କରିଥିବା ଆଳସ୍ୟପରାୟଣ ଶିକ୍ଷକଙ୍କଠାରୁ ଅଧିକତର ଶ୍ରେୟସ୍କର—ଏହାର ଭୂରି ଭୂରି ପ୍ରମାଣ ମୁଁ

ଦେଇ ପାରିବ । ନିଜର ଅଧ୍ୟାପନା କିପରି ନିର୍ଦ୍ଦୋଷ ହେବ ଏବଂ ଛାତ୍ରଛାତ୍ରୀମାନଙ୍କର ହୃଦୟଗ୍ରାହୀ ହେବ, ତାହା ଶିକ୍ଷକ ଚିନ୍ତା କରିବା ଦରକାର ଏବଂ ଏହି ଚିନ୍ତା ଓ ତଜ୍ଜନିତ ଚେଷ୍ଟା ନିଶ୍ଚୟ ଶ୍ରମ-ସାପେକ୍ଷ ।

ବୋହଲରେ ନାନା ପ୍ରକାର କାର୍ଯ୍ୟରେ ବ୍ୟସ୍ତ ରହୁଥିଲି ଏବଂ ପ୍ରାତଃକାଳରୁ ମଧ୍ୟରାତ୍ର ପର୍ଯ୍ୟନ୍ତ ମୋର ସମସ୍ତ ଆନନ୍ଦରେ କଟି ଯାଉଥିଲା । ଏଠାରେ ଦଶଟାରୁ ଚାରିଟା ପର୍ଯ୍ୟନ୍ତ ପଢ଼ାଇ ଦେବା ଛଡ଼ା ଅନ୍ୟ କାମ ନ ଥିଲା । ପିଲାଙ୍କ ଖାତା ଦେଖା ଓ ଛାତ୍ରାବାସ ପରିଚାଳନା କାମ ବା କେତେ ? ତେଣୁ ମୋତେ ଭାରି ବିରକ୍ତ ଲାଗୁଥିଲା ଏବଂ ମୁଁ ନୂଆ କାମ କଥା ଚିନ୍ତା କରୁଥିଲି ।

ଛାତ୍ରାବାସରେ ୩୦ ଜଣ ପିଲା ଥିଲେ । ସେମାନଙ୍କ ମଧ୍ୟରେ କେତେ ଜଣ ହରିଜନ ଶ୍ରେଣୀସ୍ଥ । ଯେଉଁମାନେ ପଢ଼ାରେ ଦୁର୍ବଳ ଥିଲେ, ସେମାନଙ୍କୁ ଶ୍ରେଣୀ-ଓଆରି (class wise) ଏକଜ କରି ମାଗଣା ପଢ଼ାଇ-ବାକୁ ଲାଗିଲି । ୭ମ ଶ୍ରେଣୀର ଅକ୍ଷୟ ଚୌଧୁରୀ, ଅଜିତ କୁମାର ଗାଙ୍ଗୁଲି ଓ ଶୈଳେନ୍ଦ୍ର ନାରାୟଣ ମିଶ୍ର ବୃତ୍ତି ପରୀକ୍ଷା ପାଇଁ ମନୋନୀତ ହୋଇ ଥିବାରୁ ସେମାନଙ୍କୁ ପ୍ରତିଦିନ ଘଣ୍ଟାଏ ଲେଖାଏ ପଢ଼ାଉଥିଲି ଓ ପ୍ରତ୍ୟେକେ ମୋତେ ପାଞ୍ଚଟଙ୍କା କରି ଦେଉଥିଲେ । ମୋର ପ୍ରାୟ ୩୦ ବର୍ଷର ଶିକ୍ଷକତା ମଧ୍ୟରେ ଏହି ତିନୋଟି ପିଲାଙ୍କ ଛଡ଼ା ମୁଁ ଆଉ କେବେ କାହାରିକୁ ଟିଉସନ କରି ନାହିଁ । ମୋ ମତରେ ଟିଉସନ ଗୋଟାଏ ଓଲୁକର । ଆଜିକାଲି ଶିକ୍ଷକମାନେ ଯେପରି ବଡ଼ ଶ୍ରେଣୀର ପିଲାଙ୍କୁ ଏକଜ ବସାଇ ପରୀକ୍ଷା ବେଳରେ ଦୁଇ ତିନ ମାସ ପାଇଁ ଟିଉସନ କରି ଟଙ୍କା ଗୁଣୁଛନ୍ତି, ତାହା ଭାରି ଆପତ୍ତିଜନକ ଓ ଚକ୍ଷୁଶୂଳ ଘଟଣା । ପିଲାଏ ଯେ ଜ୍ଞାନାର୍ଜନ ପାଇଁ ଏ ଟଙ୍କା ଗଣନ୍ତି, ତାହା ନୁହେଁ, ବରଂ ସେମାନେ ପରୋକ୍ଷ ଭାବରେ ଜଣାଇ ଦିଅନ୍ତି ଯେ, 'ମହାଶୟ, ଟଙ୍କା ନିଅନ୍ତୁ ଓ ପରୀକ୍ଷାରେ ପାସ୍ କରାଇ ଦିଅନ୍ତୁ ।' ଶିକ୍ଷକ ମଧ୍ୟ ଏହି ଅଭିସନ୍ଧି ରଖି କାମ କରନ୍ତି ।

ଆଜିକାଲିର ଟିଉସନ ପ୍ରଥା ବଡ଼ ନିନ୍ଦନୀୟ । ଏହାର ଯୋଗୁ ଶିକ୍ଷକମାନେ ଶ୍ରେଣୀରେ ମନ ଦେଇ ପାଠ ପଢ଼ାଉ ନାହାନ୍ତି । ଯଥା

ସମସ୍ୟରେ ପଠିତବ୍ୟ ବିଷୟ ଶିକ୍ଷା ଦେଉ ନାହାନ୍ତି । ଛାତ୍ରମାନେ ଶିକ୍ଷକମାନଙ୍କୁ ଟିଉସନ ଫି ଅର୍ଥାତ୍ ଲାଞ୍ଚ ଦେଇ ପରିଶ୍ରମକାତର ହେଉଛନ୍ତି । ସ୍କୁଲ ଭିତରେ ଶିକ୍ଷକମାନଙ୍କ ମଧ୍ୟରେ ଟିଉସନ ଲାଗି ପ୍ରତିଦ୍ୱନ୍ଦ୍ୱିତା ସୃଷ୍ଟି ହେଉଛି । ତନ୍ମଧ୍ୟରୁ ମତାନ୍ତର, ମନୋମାଳିନ୍ୟ ଘଟି ସ୍କୁଲର ଶାନ୍ତିମୟ ବାତାବରଣକୁ ବ୍ୟାହତ କରୁଛି । ଜଣେ ଶିକ୍ଷକ ଯଦି ବର୍ଷେ କାଳ ଗୋଟିଏ ବା ଦୁଇଟି ପିଲାଙ୍କୁ ଟିଉସନ କରନ୍ତେ, ତାହାହେଲେ ପିଲାର ଅର୍ଥବ୍ୟୟ ସାର୍ଥକ ହୁଅନ୍ତା । ମୁଁ ଯେଉଁ ତିନୋଟି ପିଲାଙ୍କୁ ଟିଉସନ କରୁଥିଲି, ସେମାନେ ଇଂରାଜୀରେ ବର୍ତ୍ତମାନର ଏକାଦଶ ଶ୍ରେଣୀର ପିଲାଙ୍କଠାରୁ ବେଶୀ ଜ୍ଞାନ ଲାଭ କରିଥିଲେ, ଏ କଥା ମୁଁ ଗର୍ବର ସହିତ କହିବି । ଅକ୍ଷୟ ଓ ଅବିକୁମାର ମ· ଇ· ବୃତ୍ତି ଲାଭ କରିଥିଲେ ।

ଅବସର ମିଳିବାରୁ ମୁଁ ପାଠ୍ୟ ପୁସ୍ତକ ଲେଖିବା ଆରମ୍ଭ କଲି । ଚତୁର୍ଥ ଶ୍ରେଣୀଠାରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଅନ୍ତତଃ ସାହିତ୍ୟ, ଓଡ଼ିଆ ବ୍ୟାକରଣ ଏହି ସମୟରେ ଲେଖିଥିଲି ଓ ତାହା ପାଠ୍ୟ ପୁସ୍ତକ କମିଟି ଦ୍ୱାରା ମଞ୍ଜୁରି ପ୍ରାପ୍ତ ହୋଇଥିଲା । ଉକ୍ତ ଶ୍ରେଣୀମାନଙ୍କ ଉଦ୍ଦେଶ୍ୟରେ ଓଡ଼ିଆ ପ୍ରବନ୍ଧ ବହି ମଧ୍ୟ ଛାତ୍ର ସମାଜରେ ଆଦୃତ ହୋଇଥିଲା ।

୧୯୫୫ ମସିହାରେ ପ୍ରବଳ ବନ୍ୟାରେ ସ୍କୁଲ ଗୃହପାଖ ଜଳାର୍ଣ୍ଣବ ହୋଇଗଲା । ମୋ ଜୀବନରେ ବଡ଼ି ହେର ଭିତରେ ଚବିବାର ଅଭିଜ୍ଞତା ଏଇଠି ହେଲା । ଆଖି ଆଗରେ ଲୋକମାନଙ୍କର ଦୁର୍ଦ୍ଦଶା ଦେଖି ମୁଁ ନୀରବ ନିଷ୍କ୍ରିୟ ହୋଇ ରହି ପାରିଲି ନାହିଁ । ଗୋଟିଏ କବିତା ରଚନା କଲି ଏବଂ ଦଶ ପନ୍ଦର ଜଣ ପିଲାଙ୍କ ସହ ରକ୍ଷିତ ଅଞ୍ଚଳର ଗ୍ରାମେ ଗ୍ରାମେ ବୁଲି ସେହି ଗୀତ ଗାନ କରାଇ ଚନ୍ଦା ଆଦାୟରେ ଲାଗିଗଲି । ଯେତେଦୂର ମନେ ପଡ଼ୁଛି, ଚାଉଳ ଓ ନଗଦ ପଇସା ଆକାରରେ ପ୍ରାୟ ଦୁଇଶହ ଟଙ୍କା ମିଳିଥିଲା । ବନ୍ୟା ଘୁଞ୍ଚିଗଲା ପରେ ସ୍କୁଲକୁ କେନ୍ଦ୍ର କରି ପ୍ରତି ଗ୍ରାମରେ ଶିଶୁ ଓ ବାଳକମାନଙ୍କ ପାଇଁ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ସରକାରଙ୍କ ଆଜ୍ଞା ହୋଇଥିଲା । ସେହି ସ୍କୁଲରେ ଖୋଲାଥିବା କେନ୍ଦ୍ରର ପରିଚାଳନା ଭାର ମୋତେ ଦିଆଯାଇଥିଲା ଓ ମୁଁ ସନ୍ତୋଷ ଭାବରେ ତାହା ଚଳାଇଥିଲି ।

ଦାନକର କଥା । ସ୍କୁଲକୁ ଜଣେ ମୁଷଲମାନ ଡ଼. ଆଇ. ପରଦେର୍ଶନ କରିବାକୁ ଆସିଲେ । ତାଙ୍କ ପାଇଁ ହଷ୍ଟେଲରେ ଖୋଷାଇ ବ୍ୟବସ୍ଥା ହେଲା । ସ୍କୁଲ ପାଖରେ ଥିବା ଡାକବଙ୍ଗଳାରେ ତାଙ୍କୁ ଖୋଇବାକୁ ମୁଁ କହିଲି । ମାତ୍ର ପ୍ରଧାନ ଶିକ୍ଷକ ଅଫିସ ଭିତରେ ତାଙ୍କୁ ଖାଇବାକୁ ଦେଲେ । ଡ଼. ଆଇ. ଖାଇସାରିବା ପରେ ତାଙ୍କ ଅଇଣ୍ଠା ପତ୍ର ଉଠାଇବାକୁ ପ୍ରଧାନ ଶିକ୍ଷକ ଗଦାଧର ନାମକ ଜଣେ ହରିଜନ ପିଲାକୁ ଡାକିଲେ । ମୁଁ ଏ କଥା ଆଗରୁ ଅନୁମାନ କରି ହରିଜନ ପିଲାମାନଙ୍କୁ ତାଗିଦ୍ କରି କହିଥିଲି ଯେ, ସେମାନେ କେହି ଅଇଣ୍ଠାପତ୍ର ଉଠାଇବେ ନାହିଁ । ତେଣୁ ଗଦାଧର ରାଜି ହେଲା ନାହିଁ । ପ୍ରଧାନ ଶିକ୍ଷକ ପତ୍ର ଉଠାଇବା ପାଇଁ ଅନ୍ୟ ବ୍ୟବସ୍ଥା କିଛି ନ କରିବାରୁ ମୁଁ ସେହି ଅଇଣ୍ଠା ପତ୍ର ଉଠାଇନେଲି ଏବଂ ପ୍ରଧାନ ଶିକ୍ଷକଙ୍କୁ କହିଲି ଯେ, ଗଦାଧର ରାଜି ନ ହେବା ପରେ ଆପଣ ପତ୍ର ଉଠାଇବାକୁ ତତ୍ପର ହେବାର ଥିଲା ।

ମୁଁ ଏହି ସ୍କୁଲରେ ମାତ୍ର ଗୋଟିଏ ବର୍ଷ ଶିକ୍ଷକତା କରିବା ଲାଗି ଜବାବ ଦେଇଥିଲି । ମାତ୍ର ସର୍ବସାଧାରଣ ମୋତେ ଛାଡ଼ି ଦେବାକୁ ରାଜି ହେଲେ ନାହିଁ ।

୧୯୫୭ ମସିହାରେ ନିମ୍ନ ମାଧ୍ୟମିକ ସଂଘ ଗଠିତ ହେଲା । ସେହି ବର୍ଷଟି ସ୍କୁଲରେ ରହି ସଂଘ କାର୍ଯ୍ୟ ପରିଚାଳନା କଲି । ମାତ୍ର ଏକାବେଳକେ ଦୁଇଟି କାର୍ଯ୍ୟ କରିବା ଅସମ୍ଭବ ହେବାରୁ ବର୍ଷ ଶେଷରେ କୋଠଦାରୁ ବିଦାୟ ନେଇ ଆସିଲି ।

---

# ସରପଞ୍ଚ ଦାୟିତ୍ୱ

ଦାନପୁର ଗ୍ରାମପଞ୍ଚାୟତର ପ୍ରଥମ ନିର୍ବାଚିତ ସରପଞ୍ଚଙ୍କ କାର୍ଯ୍ୟ ସର୍ବସାଧାରଣଙ୍କୁ ସନ୍ତୁଷ୍ଟ କରି ପାରିଲା ନାହିଁ । ତେଣୁ ଦ୍ୱିତୀୟ ଥର ନିର୍ବାଚନ ବେଳେ ପଞ୍ଚାୟତର ମୁଖ୍ୟ ଭଦ୍ରବ୍ୟକ୍ତି କେତେ ଜଣ ମୋତେ ସରପଞ୍ଚ ହେବାକୁ ଅନୁରୋଧ କଲେ । ଶିକ୍ଷକ ସଙ୍ଘର କାର୍ଯ୍ୟ ସଙ୍ଗେ ସଙ୍ଗେ ସେ ଦାୟିତ୍ୱ ତୁଲାଇବାକୁ ମୋତେ ସମୟ ମିଳିବ କି ନାହିଁ ବୋଲି ଦ୍ୱିଧାରେ ପଡ଼ିଲି । ଦ୍ୱିତୀୟତଃ ଦୀର୍ଘ ଅଠର ବର୍ଷ କାଳ କର୍ମୀ ଭାବରେ ଜୀବନ କଟାଇ କ୍ଲାନ୍ତ ହୋଇ ପଡ଼ିଥିବାରୁ ଏବଂ କିଛି ତିକ୍ତ ଅଭିଜ୍ଞତା ଅର୍ଜି ଥିବାରୁ ସରପଞ୍ଚ ହେବାକୁ ମନ ସହଜରେ ଗଲା ନାହିଁ । ତଥାପି ଶୁଭେଚ୍ଛୁ ବନ୍ଧୁମାନଙ୍କର ସନିର୍ବନ୍ଧ ଅନୁରୋଧ ଏଡ଼ାଇ ଦେବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ ।

ପୂର୍ବରୁ ଯାହା ଯେମିତି ହୋଇ ଆସୁଛି, ତାହାକୁ ଅନ୍ଧ ଭାବରେ ଅନୁସରଣ କରିବାର ପକ୍ଷପାତୀ ମୁଁ ନୁହେଁ । ତାହା ଛଡ଼ା କ୍ଷମତା ଲୋଭରେ ମୁଁ ସରପଞ୍ଚ ହୋଇ ନାହିଁ । ଲୋକ ସାଧାରଣଙ୍କର ଉପକାର କରି ଆନନ୍ଦ ଲାଭ କରିବା ମୋ ପକ୍ଷରେ ଲୋଭନୀୟ ଥିଲା । ସେଥିପାଇଁ ଟଙ୍କା ଦରକାର । ସରକାରଙ୍କ ଠାରୁ ଯେଉଁ ଅର୍ଥ ସାହାଯ୍ୟ ମିଳୁଥିଲା, ତାହା ଯଥେଷ୍ଟ ନ ଥିଲା । ପୁଣି ଲୋକମାନଙ୍କ ଠାରୁ ପଞ୍ଚାୟତ ଟାକ୍ସ ଆକାରରେ ଯାହା ଆଦାୟ ହେଉଥିଲା, ତାହାର ପରିମାଣ ଅଳ୍ପ ଥିଲା । ମୋ ପୂର୍ବରୁ ପଞ୍ଚାୟତ ସଭ୍ୟମାନେ ଯେପରି ଭାବରେ ଟାକ୍ସ ଧାର୍ଯ୍ୟ କରିଥିଲେ, ତାହା ନାନା କାରଣରୁ ଦୋଷଯୁକ୍ତ ଥିଲା । ପ୍ରତ୍ୟେକ ଲୋକର ଆୟ ବ୍ୟୟ ବିଚାର କରା ନ ଯାଇ ମନ ଇଚ୍ଛା ଟ୍ୟାକ୍ସ ବସାଯାଇ ଥିଲା । ସରପଞ୍ଚ ଓ ସଭ୍ୟମାନଙ୍କ ବନ୍ଧୁବାନ୍ଧବ ଓ ଆତ୍ମୀୟମାନେ କମ୍ ଟ୍ୟାକ୍ସ ଦେଉଥିଲେ । ଅବସ୍ଥାପନ୍ନ ଲୋକମାନେ ଦରିଦ୍ର ଲୋକମାନଙ୍କ ଅପେକ୍ଷା ବେଶୀ ଟ୍ୟାକ୍ସ ଦେଉ ନ ଥିଲେ । ଯାହା ହେଉ ଟ୍ୟାକ୍ସ ଧାର୍ଯ୍ୟ କରିବାରେ ନିରପେକ୍ଷତା, ସମାନ ନୀତି ଓ ଶୃଙ୍ଖଳା ରକ୍ଷା କରାଯାଇ ନ ଥିବାର ମୋ ଦୃଷ୍ଟିକୁ ଆସିଲା ।

ମୁଁ ଠିକ୍ କଲି, ଟ୍ୟାକ୍ସ ଦାତାମାନଙ୍କର ଆୟ ପରିମାଣ ଅନୁଁଲ ଭାବରେ ନିରୂପଣ କରି ଏପରି ଭାବରେ ଟ୍ୟାକ୍ସ ବସାଇବାକୁ ହେବ, ଯେପରି କି କାହାର ଆଉ ଆପତ୍ତି ଉଠିବ ନାହିଁ। ୩୦ ଟା ଗ୍ରାମରେ ପ୍ରାୟ ୧୫୦୦ ଟ୍ୟାକ୍ସ ଦାତାଙ୍କ ଆର୍ଥିକ ଅବସ୍ଥାର ପରିମାପ କରିବା ସହଜ କଥା ନୁହେଁ। ବିଭିନ୍ନ ଓ୍ୟାର୍ଡ଼ ମେମ୍ବରଙ୍କ ସାହାଯ୍ୟରେ ଏହି କାର୍ଯ୍ୟ ସମ୍ପନ୍ନ କରିବାକୁ ମୋତେ ବହୁ ସମୟ ବ୍ୟୟ କରିବାକୁ ପଡ଼ୁଥିଲା। ଏହି ସମୟରେ ସରକାରଙ୍କ ପ୍ରଦତ୍ତ ଟ୍ୟାକ୍ସ ଧାର୍ଯ୍ୟ କରିବାର ନିୟମାବଳି ମୋ ପକ୍ଷରେ ସହାୟକ ହୋଇଥିଲା। ମୋ ପୂର୍ବରୁ ଯେତିକି ଟ୍ୟାକ୍ସ ଆଦାୟ ହେଉଥିଲା, ମୁଁ ତାହାର ପ୍ରାୟ ଦୁଇଗୁଣ ଟ୍ୟାକ୍ସ ଆଦାୟର ବ୍ୟବସ୍ଥା କରିଥିଲି।

ଅନ୍ୟାନ୍ୟ ପଞ୍ଚାୟତରେ ସଭ୍ୟମାନେ ଲୋକମତକୁ ଡରି ଟ୍ୟାକ୍ସ ପରିମାଣ ବୃଦ୍ଧି କରି ପାରି ନ ଥିଲେ। ମୁଁ କିନ୍ତୁ ତୁଳନାମୂଳକ ଭାବରେ ଟ୍ୟାକ୍ସ ବସାଇବାରୁ କାହାର ଅପ୍ରିୟ ହୋଇ ନ ଥିଲି। ମୁଁ ଭାବୁଥିଲି— ମୁଁ ପଛକେ ଭବିଷ୍ୟତରେ ଭୋଟ୍ ନ ପାଇବି, କିନ୍ତୁ ଯାହା ମୋର ବିବେକ-ସମ୍ମତ, ତହିଁରୁ ଓହରି ଯିବି ନାହିଁ।

ମୁଁ ରାସ୍ତାଘାଟର ପ୍ରିୟ। ବିଭିନ୍ନ ଗ୍ରାମରେ ଯେଉଁଠି ରାସ୍ତାର ସୁବିଧା ନାହିଁ, ବର୍ଷା ଦିନରେ ପୋଲ ଅଭାବରୁ ଗ୍ରାମ ବିଚ୍ଛିନ୍ନ ହୋଇ ପଡ଼େ, ପୟଃପ୍ରଣାଳୀ ଅଭାବରୁ ଗୋଟାଏ ଗୋଟାଏ ଜାଗାରେ ପାଣି ଜମା ହୋଇ ଅସୁବିଧା ସୃଷ୍ଟି କରେ, ତାହା ସବୁ ଓ୍ୟାର୍ଡ଼ ମେମ୍ବରଙ୍କ ସାହାଯ୍ୟରେ ଏବଂ ନିଜେ ସାଇକେଲରେ ବୁଲି ଲିପିବଦ୍ଧ କରି ରଖିଲି ଏବଂ ଅର୍ଥ ସଂସ୍ଥାକୁ ଦୃଷ୍ଟିରେ ରଖି କାହାକୁ ଆଗେ କାହାକୁ ପଛେ କରାଇବାକୁ ଲାଗିଲି। ମୋର କାର୍ଯ୍ୟକାଳ ଭିତରେ ଅନେକ ଗାଉଁଲି ରାସ୍ତା ହୋଇଛି ଏବଂ ପକ୍କା ପୋଲ, କାଠ ପୋଲ ଏବଂ ହ୍ୟୁମ ପାଇପ ପୋଲ ତିଆରି କରାଯାଇଛି।

ପଞ୍ଚାୟତରେ ନିମ୍ନ ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ମିଶି ଡେରଟି ସ୍କୁଲ ଥିଲା। ମୁଁ ଜଣେ ଶିକ୍ଷକ ଥିବାରୁ ସ୍କୁଲ ଗୁଡ଼ିକ ଉପରେ ବେଶୀ ଦୃଷ୍ଟି ଦେଇଥିଲି। ଭଙ୍ଗା ସ୍କୁଲର ଅଧାରଣ ଧାର୍ଯ୍ୟ ଆବଶ୍ୟକତା ଜାଣି ମୁଁ

ପ୍ରତି ସ୍କୁଲକୁ ଘଣ୍ଟା ଯୋଗାଇ ଦେଇଥିଲି । ଗ୍ରାମ ସଂଖ୍ୟାକୁ ଗ୍ଲୋବ୍, ଲେଡ଼େସ୍କ, ର୍ୟାକ୍, କଳାପଟା ମଧ୍ୟ ଦିଆଯାଇଥିଲା ।

ଥରେ ସାଧାରଣତନ୍ତ୍ର ଦିବସରେ ମୁଁ ସବୁ ସ୍କୁଲର ପିଲାଙ୍କୁ ଏକତ୍ର କରି ଗୋଟିଏ ସଭାର ଆୟୋଜନ କରିଥିଲି । ତାହାର ନାମ 'ଆନନ୍ଦ ମେଳା' ଦେଇଥିଲି ଏବଂ ତାହା ଅନେକ ଦିନ ପର୍ଯ୍ୟନ୍ତ ସ୍ଥାୟୀ କରିବାର କଳ୍ପନା କରିଥିଲି । ଲୋକ ସଭା ସଦସ୍ୟ ତଥା ମୋର ଗୁରୁ ଶ୍ରୀ ସୁରେନ୍ଦ୍ର ମହାନ୍ତି ଉକ୍ତ ସଭାରେ ପୌରୋହିତ୍ୟ କରିଥିଲେ । ଛାତ୍ରଛାତ୍ରୀମାନଙ୍କୁ ଅଧ୍ୟୟନରେ ଉତ୍କର୍ଷ ଏବଂ ଅଭିନୟ ଓ ସଙ୍ଗୀତରେ ପାରଦର୍ଶିତା ଲାଗି ପୁରସ୍କାର ଦିଆଯାଇଥିଲା । ଏଥିପାଇଁ ଜନସାଧାରଣଙ୍କଠାରୁ ପ୍ରାପ୍ତ ଚାନ୍ଦା ବାଦେ ପଞ୍ଚାୟତ ଫଣ୍ଡରୁ ଦେଢ଼ଶହ ଟଙ୍କା ଖରଚ ହୋଇ ଥିବାରୁ ଅଡିଟରେ ଉକ୍ତ ଟଙ୍କା ମୋଠାରୁ ଆଦାୟ କରାଯିବ ବୋଲି ମତ ଦେଇ ଥିଲେ । ମାତ୍ର କେନ୍ଦ୍ରାପଡ଼ା ସବଡ଼ିଭିଜନାଲ ଅଫିସର ଶ୍ରୀ ପ୍ରାଣକୃଷ୍ଣ ମିଶ୍ର ମନ୍ତବ୍ୟ କରିଥିଲେ ଯେ, ଗୋଟାଏ ପବିତ୍ର ଦିବସରେ ଛାତ୍ରଛାତ୍ରୀଙ୍କ ଉଦ୍ଦେଶ୍ୟରେ ବ୍ୟୟ କରାଯାଇଥିବା ଟଙ୍କା ସରପଞ୍ଚଙ୍କଠାରୁ ଆଦାୟ ହେବା ଅତି ଅସୁନ୍ଦର । ତାଙ୍କ ଲେଖା ଅନୁସାରେ ମୁଁ ଅର୍ଥ ଦଣ୍ଡରୁ ରକ୍ଷା ପାଇଥିଲି । ପଞ୍ଚାୟତର ବଜେଟ୍‌ରେ ଗରିବ ଛାତ୍ରଙ୍କୁ ବହି କିଣିବା ପାଇଁ ସାହାଯ୍ୟ କରିବା ସକାଶେ ଅର୍ଥର ବ୍ୟବସ୍ଥା କରୁଥିଲି ।

ଚୀନ୍ ଦେଶ ସହ ଯୁଦ୍ଧ ଲାଗିବାବେଳେ ଧାନ ଚାଉଳ ଦୁର୍ଲଭ ହେବାରୁ ପଞ୍ଚାୟତ ଫଣ୍ଡ୍‌ରୁ ପ୍ରାପ୍ୟ ଦୁଇ ହଜାର ଟଙ୍କା ନେଇ କଣ୍ଟ୍ରୋଲ ଚାଉଳ ଓ ଅଟାର ବ୍ୟବସାୟ କରିଥିଲି ଏବଂ ଲବ୍‌ଧ ଧନ ପ୍ରାପ୍ୟ ପାଞ୍ଚଶତ ଟଙ୍କା ପଞ୍ଚାୟତ ଫଣ୍ଡ୍‌ରେ ଜମା ଦେଇଥିଲି । ତଥାପି ମୋର ଏପରି କାର୍ଯ୍ୟ ବେଆଇନ ହୋଇଛି ବୋଲି ମୋତେ ଜଣାଇ ଦିଆଯାଇଥିଲା । ମୁଁ ପଞ୍ଚାୟତ ଡିରେକ୍ଟରଙ୍କୁ ଉତ୍ତର ଦେଇଥିଲି—ଶହ ଶହ ଲୋକ ଭୋକ ଉପାସରେ ସଢ଼ୁଥିଲା ବେଳେ ମୁଁ ଆପଣଙ୍କର ଶୁଷ୍କ ଆଇନ୍ ମାନିବାକୁ ପ୍ରସ୍ତୁତ ନୁହେଁ ।

ଚୀନ୍-ଭାରତ ଯୁଦ୍ଧ ବେଳେ ମୁ ଗ୍ରାମେ ଗ୍ରାମେ ବୁଲି ଲୋକ-ମାନଙ୍କଠାରୁ ପ୍ରାପ୍ୟ ଦେଢ଼ ହଜାର ଟଙ୍କା ଚାନ୍ଦା ଆଦାୟ କରି ଯୁଦ୍ଧ ଫଣ୍ଡ୍‌କୁ ପଠାଇଥିଲି ଏବଂ ନିଜେ ବ୍ୟକ୍ତିଗତ ଭାବରେ ଯୁଦ୍ଧ ପାଇଁ ପାଞ୍ଚଶତ ଟଙ୍କା ଦାନ କରିଥିଲି ।

ପଞ୍ଚାୟତ ସମିତି ଅନ୍ତର୍ଗତ ୧୦ ଗୋଟି ପଞ୍ଚାୟତ ମଧ୍ୟରେ ଦାନପୁର ପଞ୍ଚାୟତ ଆଦର୍ଶ ସ୍ଥାନୀୟ ଥିଲା । ତେଣୁ କେନ୍ଦ୍ରାପଡ଼ା ସବ୍‌ଡ଼ି-ଭିଜନାଲ ପଞ୍ଚାୟତ ଅଫିସର କେତେ ଜଣ କର୍ମୀଙ୍କୁ ଧରି ମୋ ପଞ୍ଚାୟତ କାର୍ଯ୍ୟାଳୟରେ ତାଲିମ କେନ୍ଦ୍ର ସ୍ଥାପନ କରିଥିଲେ । ସେହି ସମୟରେ ସେମାନଙ୍କ ଖରଚ ବାବଦକୁ ମୋ ପଞ୍ଚାୟତ ସମ୍ପାଦକ ଟ ୪୫-୦୦ ଦେଇଥିଲେ । ସେହି ଅଫିସର ଉକ୍ତ ଟଙ୍କା ଆଦାୟ ନ ଦେଇ ଚାଲିଗଲେ ଏବଂ ଭାବିଥିଲେ ମୁଁ କୌଣସି ପ୍ରକାରେ ଚଳାଇ ନେବି, ତାଙ୍କୁ ଦେବାକୁ ପଡ଼ିବ ନାହିଁ । ମୁଁ କଟକରୁ ଯାଇଁ ସମ୍ପାଦକଠାରୁ ସେହି ଟଙ୍କା କଥା ଶୁଣିଲି ଏବଂ ଅଫିସରଙ୍କୁ ତୁରନ୍ତ ଟଙ୍କା ପଠାଇ ଦେବା ପାଇଁ ଲେଖିଲି । ସେ ବିନା ବିଳମ୍ବରେ ଟଙ୍କା ଦେବା ସଙ୍ଗେ ସଙ୍ଗେ ମୁଁ ପଞ୍ଚାୟତ ଫଣ୍ଡ୍‌ରୁ କେତେ ହଜାର ଟଙ୍କା ଆତ୍ମସାତ୍ କରିଛି ବୋଲି ସବ୍‌ଡ଼ିଭିଜନାଲ ଅଫିସରଙ୍କୁ ଜଣାଇଲେ । ମୁଁ ତାହା ଶୁଣି ଏସ୍. ଡ଼ି. ଓ. ଙ୍କୁ ସାକ୍ଷାତ କଲି । ସେ ପଞ୍ଚାୟତ ଅଫିସରଙ୍କୁ ଡକାଇଲେ । ଆଲୋଚନାରୁ ଜଣାଗଲା, ପଞ୍ଚାୟତ ଅଫିସରଙ୍କ ଅଭିଯୋଗ ଈର୍ଷାମୂଳକ, ଅବାସ୍ତବ, ତେଣୁ ଗ୍ରହଣୀୟ ନୁହେଁ ।

ସରପଞ୍ଚ ଥିବା ବେଳେ ମୋ ନିଜ ପଞ୍ଚାୟତରେ ଘଟୁଥିବା ବାଦ ବିସମ୍ବାଦ ତଦନ୍ତ କରି ଉଭୟ ପକ୍ଷଙ୍କୁ ମିଳାଇ ଦେଉଥିଲି । ତାହା କରି ନ ଥିଲେ ଅନେକ କୋର୍ଟର ଆଶ୍ରୟ ନେବାକୁ ବାଧ୍ୟ ହୋଇଥାନ୍ତେ । ମୋର ବିଚାରରେ ନିରପେକ୍ଷତା ଲାଗି ଅନେକ ଦୂରବର୍ତ୍ତୀ ଗ୍ରାମର ଲୋକେ ମକଦ୍ଦମା ଦାଏର କରିବା ପାଇଁ ଡାକୁ ଥିଲେ ଏବଂ ସବ୍‌ଡ଼ିଭିଜନାଲ ଅଫିସରଙ୍କ ପାଖରେ ମକଦ୍ଦମା ତଦନ୍ତ ଦାୟିତ୍ୱ ମୋତେ ଦିଆଯାଉ ବୋଲି ପ୍ରାର୍ଥନା କରୁଥିଲେ ।

ବହୁ ସରପଞ୍ଚ ହଜାର ହଜାର ଟଙ୍କା ଆତ୍ମସାତ୍ କରୁଥିବାର ଶୁଣୁଥିଲି । ମାତ୍ର ମୁଁ ନିୟମ ବହିର୍ଭୂତ କେତୋଟି କାମ କରି ସେ ବାବଦରେ ଖରଚ କରିଥିବା ଟଙ୍କା ପଞ୍ଚାୟତ ଫଣ୍ଡ୍‌କୁ ଫେରାଇଥିଲି । ଅବଶ୍ୟ ଏହାର ପରିମାଣ ଖୁବ୍ କମ୍ ।

ସମିତି ଓ ପଞ୍ଚାୟତ, ଉଭୟର କାମ ବୃଦ୍ଧି ପ୍ରାପ୍ତ ହେବାରୁ ମୁଁ ସରପଞ୍ଚ ପଦରୁ ଇସ୍ତଫା ଦେଇଥିଲି ।

---

# ମୋର ବହୁମୁଖୀ କର୍ତ୍ତବ୍ୟ

## ଧନ୍ଦା ମାଧ୍ୟମରେ ଶିକ୍ଷା

ଦୋହଲ ସହଯୋଗ ସ୍କୁଲରେ ଛାତ୍ରମାନଙ୍କୁ ହସ୍ତଶିଳ୍ପ ପ୍ରତି ଆକୃଷ୍ଟ କରାଇବା ପାଇଁ ତନ୍ତ ପକାଇ ଓ ଜଣେ ଶିକ୍ଷକଙ୍କୁ ନିଯୁକ୍ତ ଦେଇ ଲୁଗା ବୁଣା ଆରମ୍ଭ କରାଇଥିଲି । ମାତ୍ର ଜିଲ୍ଲାବୋର୍ଡ଼ରୁ ସେଥିପାଇଁ କିଛି ସାହାଯ୍ୟ ନ ମିଳିବାରୁ ଏବଂ ସ୍କୁଲର ଆର୍ଥିକ ବ୍ୟବସ୍ଥା ଅନୁକୂଳ ନ ହେବାରୁ ତାହା ବନ୍ଦ କରି ଦେବାକୁ ବାଧ୍ୟ ହୋଇଥିଲି ।

## ମତ୍ସ୍ୟଚାଷ

ଉକ୍ତ ସ୍କୁଲ ହତାରେ ଗୋଟିଏ ଗଭୀର ପୁଷ୍କରିଣୀ ଖୋଳାଇ ତହିଁରେ ମତ୍ସ୍ୟଚାଷର ବ୍ୟବସ୍ଥା କରିଥିଲି । ପ୍ରତିବର୍ଷ ଗ୍ରୀଷ୍ମ ଛୁଟି ସମୟରେ ମାଛ ବିକ୍ରୀ ହେଉଥିଲା । ପିଲାମାନେ ପ୍ରତିଦିନ ଭୁକ୍ତାବଶିଷ୍ଟ ଅନ୍ନ, ସାମୟିକ ଜଉ ଓ ଟାକୁ ଏବଂ ମୁଢ଼ି ଓ ଖଇ ଇତ୍ୟାଦି ଗଡ଼ଆରେ ପକାଇ ବାକୁ ଯେପରି ଅଭ୍ୟସ୍ତ ହୁଅନ୍ତି, ସେଥିପ୍ରତି ମୋର ସୂକ୍ଷ୍ମ ଦୃଷ୍ଟି ଥିଲା ।

## ଛାତ୍ରମାନଙ୍କର ଆଙ୍ଗିକ ଉତ୍କର୍ଷ ପାଇଁ ଦୃଷ୍ଟି

ମୁଁ ଶ୍ରେଣୀରେ ଉପସ୍ଥିତ ହେବା ମାତ୍ରକେ ପିଲାମାନଙ୍କର ଅପରିଷ୍କୃତ ଲୁଗା ଓ ବିନ୍ୟାସ-ବିହୀନ କେଶରାଶି ଉପରେ ରୋଷକଷାୟିତ ଦୃଷ୍ଟି ନିକ୍ଷେପ କରେ । ଅଧିକାଂଶ ସମୟରେ ସେମାନଙ୍କ ନଖ, ଦାନ୍ତ ଓ କେଶ ପରୀକ୍ଷା କରିବାରେ ସମୟ ଦେଇଥାଏ ।

ଥରେ ଗୋଟିଏ ମଜ୍ଜା ଘଟଣା ଘଟିଲା । ମୁଁ ସ୍କୁଲର ନୋଟିସ ବହିରେ ପ୍ରତିଦିନ ଶିକ୍ଷକମାନେ ନିଜ ନିଜ ଶ୍ରେଣୀର ପିଲାମାନଙ୍କର ନଖ, ଦାନ୍ତ ଓ କେଶ ପରୀକ୍ଷା କରିବାକୁ ଅବଶ୍ୟ କର୍ତ୍ତବ୍ୟ ମନେକରିବା ଉଚିତ ବୋଲି ଜଣାଇ ଦେଲି । ମୁଁ ହେଡ଼୍ ପଣ୍ଡିତ ହେଲେହେଁ ଏପରି ନୋଟିସ ଦେବା ଓ ବହିରେ ପ୍ରଧାନ ଶିକ୍ଷକଙ୍କୁ ଦସ୍ତଖତ କରାଇ

ନେବା ମୋ ପକ୍ଷରେ ଅବୈଧ ନ ଥିଲା । ମୋର ଏହି ଷଞ୍ଚପ୍ତି ଶିକ୍ଷକ-ମାନେ ଭଲ ଦୃଷ୍ଟିରେ ଗ୍ରହଣ କଲେ ନାହିଁ ବୋଲି ଅନୁଭବ କଲି । ବରଂ, ପିଲମାନଙ୍କର ଏତେ ଛୋଟ ଛୋଟ ଦୋଷ ଉପରେ ଦୃଷ୍ଟି ଦେବାକୁ ସେମାନଙ୍କର ବେଳ ନାହିଁ ବୋଲି ମତ ଦେଇ ସେମାନେ ମୋତେ ଉପହାସ କରିବାକୁ ଲଗିଲେ । ମୁଁ କିନ୍ତୁ ମୋ ନିଜ ଶ୍ରେଣୀରେ ପୂର୍ଣ୍ଣରୂପେ ଏବଂ ଅନ୍ୟ ଶ୍ରେଣୀମାନଙ୍କରେ ସୁଯୋଗ ଉଣ୍ଡି ଆଂଶିକ ଭାବରେ ପିଲ-ମାନଙ୍କର ଉପରୋକ୍ତ ପରୀକ୍ଷା ଦ୍ୱାରା ଆତ୍ମତୃପ୍ତି ଲଭ କରିବାକୁ ଲଗିଲି ।

ଏହି ଘଟଣାର ପ୍ରାୟ ପନ୍ଦର ଦିନ ପରେ ତତ୍‌କାଳୀନ ଜିଲ୍ଲ ଇନ୍‌ସପେକ୍ଟର ଶ୍ରୀ ପଦ୍ମଚରଣ ପଟ୍ଟନାୟକ ଯେ କି ଜଣେ ବହୁଦର୍ଶୀ ଓ ଆଦର୍ଶ ଶିକ୍ଷକ ଭାବରେ ସାରା ଓଡ଼ିଶାରେ ସୁପରିଚିତ—ଖଣ୍ଡିଏ ସର୍କୁଲର ପଠାଇଲେ । ସେଥିରେ ଲେଖାଥିଲା, ପ୍ରତି ଶନିବାର ଦିନ Health Parade କରିବାକୁ ଛାତ୍ରଛାତ୍ରୀମାନଙ୍କର ନଖ, ଦାନ୍ତ ଓ କେଶ ପରୀକ୍ଷା କରାଯିବ । ମୁଁ ସେତେବେଳେ ମୋର ସହକର୍ମୀମାନଙ୍କୁ ବିନୀତ ଭାବରେ ବୁଝାଇ ଦେଇଥିଲି ଯେ, ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ଚିନ୍ତାଧାରା ସମାନ ।

## ଲୁପ୍ତଧନ ଉଦ୍ଧାର

ରାୟ ବାହାଦୁର ଭିକାରୀ ଚରଣ ପଟ୍ଟନାୟକଙ୍କ ଘର ସ୍କୁଲଠାରୁ ଅଳ୍ପ ଦୂରରେ । ୧୯୧୨ ମସିହାରେ ସେ ବୋହନିରେ ମ. ଇ. ସ୍କୁଲ ପ୍ରତିଷ୍ଠା ପାଇଁ ଚେଷ୍ଟା କରିଥିଲେ, ମାତ୍ର ଉପଯୁକ୍ତ କର୍ମୀ ଅଭାବରୁ ସେ ସଫଳ ହୋଇ ପାରିଲେ ନାହିଁ । ସେ ଥରେ ଆମ ଗ୍ରାମର ସମବାୟ ସମିତିର ବାର୍ଷିକ ଉତ୍ସବରେ କହିଥିଲେ ଯେ, ତାଙ୍କ ପାଖରେ ମ. ଇ. ସ୍କୁଲ ବାବଦରେ କିଛି ଟଙ୍କା ରକ୍ଷିତ ଅଛି । ପୁନଶ୍ଚ ମ. ଇ. ସ୍କୁଲ ପ୍ରତିଷ୍ଠା ପାଇଁ ଚେଷ୍ଟା କରାଗଲେ ସେ ସେହି ଟଙ୍କା ଦେଇଦେବେ ।

ମୁଁ ମ. ଇ. ସ୍କୁଲ ଆରମ୍ଭ କରିବା ପରେ ତାଙ୍କଠାରୁ ସେହି ଟଙ୍କା ମିଳିବା ପାଇଁ ପରିଚାଳନା କମିଟିରେ ପ୍ରସ୍ତାବ ଗ୍ରହଣ କରାଇ ତାଙ୍କୁ ଜଣାଇ ଦେଲି । ଉପର୍ଯ୍ୟୁପରି ତିନିଥର ତାଙ୍କ ପାଖକୁ ପରିଚାଳନା ସମିତିରେ ଗୃହୀତ ପ୍ରସ୍ତାବ ପଠାଇଲେ ହେଁ ସେ ନୀରବ ରହିଲେ । ତେଣୁ ମୁଁ ତାଙ୍କୁ ପତ୍ର ଲେଖି ଜଣାଇ ଦେଲି ଯେ, ସେ ଟଙ୍କା ନ ଦେଲେ ମୁଁ

ଖବର କାଗଜରେ ତାହା ପ୍ରକାଶ କରିଦେବ । ଏହି ଘଟଣାରେ ସେ ଜାତକ୍ରୋଧ ହୋଇ ପଡ଼ିଲେ ଏବଂ ବିଶ୍ୱାସଯୋଗ୍ୟ ପ୍ରମାଣ ନ ଥାଇ ତାଙ୍କ ଉପରେ ଟଙ୍କା ଦାବୀ କରିବା ମୋ ପକ୍ଷରେ ଏକ ଅପରାଧ ବୋଲି ଜିଲ୍ଲା ଇନ୍‌ସପେକ୍ଟରଙ୍କ ପାଖରେ ମୋ ବିରୁଦ୍ଧରେ ଅଭିଯୋଗ ଦାଢ଼ିଲେ ଏବଂ ମୋ ନାଁରେ ମାନହାନି ମକଦ୍ଦମା କରିବା ପାଇଁ ଧମକ୍ ଦେଲେ । ଘଟଣାର ସତ୍ୟତା ସମ୍ବନ୍ଧରେ ମୋ ପାଖରେ ଯଥେଷ୍ଟ ପ୍ରମାଣ ଥିଲା । ତେଣୁ ମୁଁ ଟିକିଏ ମାତ୍ର ଅପ୍ରତିଭ ହୋଇ ନ ଥିଲି । ମାତ୍ର ତତ୍‌କାଳୀନ ଡି. ଆଇ. ଶ୍ରୀ ସୁକାନ୍ତ ରାଓ ମୋର ଗୁଣମୁଗ୍ଧ ଓ ମୋ ସ୍କୁଲ ପ୍ରତି ଯଥେଷ୍ଟ ଶୁଭାକାଂକ୍ଷୀ ଥିବାରୁ ଏବଂ ଅନ୍ୟ ପକ୍ଷରେ ରାୟବାହାଦୁରଙ୍କ ସହିତ ତାଙ୍କର ପରମ ବନ୍ଧୁତା ଥିବାରୁ ସେ ଆମ ଦୁହିଁଙ୍କୁ ମିଳାଇ ଦେଲେ । ବିବାଦ ଆଉ ଅଗ୍ରସର ହେଲା ନାହିଁ । ସୁକାନ୍ତ ବାବୁ ପ୍ରାୟ ପନ୍ଦର ଦିନ ପରେ ତାଙ୍କଠାରୁ ଚାନ୍ଦା ଭାବରେ ଟ ୧୨୦-୦୦ ଆଣି ମୋତେ ଦେଇଥିଲେ । ଏହା ଛଡ଼ା ସେ ମୋତେ ସଙ୍ଗରେ ନେଇ ଡକ୍ଟର ପ୍ରାଣକୃଷ୍ଣ ପରିଜା ଓ କନିକା ଟିକାଏତ ଶ୍ରୀ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ପ୍ରମୁଖ କେତେଜଣ ବଦାନ୍ୟ ବ୍ୟକ୍ତିଙ୍କଠାରୁ ପ୍ରାୟ ତିନିଶହ ଟଙ୍କା ଚାନ୍ଦା ଆଦାୟ କରି ଦେଇଥିଲେ ।

**ନିରପେକ୍ଷ ବିଚାର**

ମୋର ଭଗିନୀପତିଙ୍କ ଜ୍ୟେଷ୍ଠଭ୍ରାତା ଶ୍ରୀ ନାରାୟଣ ପ୍ରସାଦ ରଥ ସ୍କୁଲକୁ ଶହେ ଟଙ୍କା ଚାନ୍ଦା ଦେଇଥିଲେ । ସେଥିରୁ ପଚିଶ ଟଙ୍କା ମୁଁ ମଣିଅର୍ଡ଼ର ଦ୍ୱାରା ପାଇଥିଲି । ପରବର୍ତ୍ତୀ କାଳରେ ସେ ସ୍କୁଲର ପ୍ରଧାନ ଶିକ୍ଷକ ହୋଇଥିଲେ । ମାତ୍ର ତାଙ୍କର କାର୍ଯ୍ୟ ସନ୍ତୋଷଜନକ ନ ହେବାରୁ ପ୍ରାୟ ବର୍ଷକ ପରେ ତାଙ୍କୁ ବିଦାୟ ହେବାକୁ ବାଧ୍ୟ ହେଲା । ସେ ମୋର ଘନିଷ୍ଠ ସମ୍ପର୍କୀୟ ହେଲେହେଁ ସ୍କୁଲର ମଙ୍ଗଳ ଲାଗି ତାହା କରିବାକୁ ପଡ଼ିଲା । ସେ ଏଥିପାଇଁ ରାଗାନ୍ୱିତ ହୋଇ ମୋଠାରୁ ପଚିଶ ଟଙ୍କା ଆଦାୟ କରିବା ପାଇଁ ମୋ ବିରୁଦ୍ଧରେ ମୋକଦ୍ଦମା କଲେ । ତାଙ୍କର ଅଭିଯୋଗର ବିଷୟ ଥିଲା—ମୁଁ ତାଙ୍କର ବନ୍ଧୁ । ତାଙ୍କ ଘରେ ଦେବା ପାଇଁ ସେ ଯେଉଁ ପଚିଶ ଟଙ୍କା ମୋ ପାଖକୁ ପଠାଇଥିଲେ, ମୁଁ ତାହା ନ ଦେଇ ଆତ୍ମସାତ୍ କରିଛି । [illegible] [illegible] ମୋକଦ୍ଦମାରେ ଡ଼ିଗ୍ରୀ ହୋଇଥିଲା ।

## ପ୍ରଚଳିତ ପୂଜାବିଧିରେ ସଂସ୍କାର

ସ୍କୁଲରେ ବସନ୍ତ ପଞ୍ଚମୀ ଓ ଗଣେଶ ଚତୁର୍ଥୀ ସମାରୋହରେ ଅନୁଷ୍ଠିତ ହୁଏ । ଯେଉଁ ଚାନ୍ଦା ଆଦାୟ ହୁଏ, ତାହାର ଗୋଟାଏ ନିର୍ଦ୍ଦିଷ୍ଟ ଅଂଶ ମୁଁ ବୁଝି ନେଇ ସାମୟିକ ବନ୍ୟା, ଦୁର୍ଭିକ୍ଷ ଓ ଭୂମିକମ୍ପ ଇତ୍ୟାଦି ପାଇଁ ଗଠିତ ସାହାଯ୍ୟ-ସମିତିକୁ ପଠାଇବା ମୋର ଅଭ୍ୟାସ-ଗତ ଥିଲା । ପୂଜା ସଂକ୍ରାନ୍ତ ସମସ୍ତ କାର୍ଯ୍ୟ ଅନ୍ୟ ଶିକ୍ଷକ ଓ ଛାତ୍ରମାନେ ସମାଧାନ କରୁଥିଲେ ହେଁ ମୌଳିକ ନୀତି ନିୟନ୍ତ୍ରଣରେ ସ୍ୱାଧୀନତା ମୋ ହାତରେ ଥାଏ । ପୂଜାକୁ କୌଣସି ତଥାକଥିତ ଭଦ୍ରଲୋକ ନିମନ୍ତ୍ରିତ ହେବେ ନାହିଁ ଏବଂ ବିନା ନିମନ୍ତ୍ରଣରେ ସମାଗତ ସବର୍ଣ୍ଣ ଓ ହରିଜନମାନଙ୍କୁ ଯଥେଷ୍ଟ ସ୍ନେହାଦର ସହିତ ଭୂରି ଭୋଜନ ଦେବାକୁ ହେବ, ଏଥିପ୍ରତି ମୋର ତୀବ୍ର ଦୃଷ୍ଟି ଥିଲା । ନିର୍ଦ୍ଧନ ଓ ଅକ୍ଷମ ଛାତ୍ରଙ୍କ ପକ୍ଷରେ ଚାନ୍ଦା ଦେବା ଇଚ୍ଛାଧୀନ ଥିଲା । ଜୋର୍ ଜବରଦସ୍ତ କରି ଆଡ଼ମ୍ବରିକ ପୂଜା ଚାଲୁ ରଖିବାର ପୂର୍ଣ୍ଣ ବିରୋଧୀ ଥିଲି ମୁଁ ।

ସ୍କୁଲ ଆରମ୍ଭରୁ ତିନି ଚାରି ବର୍ଷ ପର୍ଯ୍ୟନ୍ତ ଭଦ୍ରଲୋକମାନଙ୍କୁ ନିମନ୍ତ୍ରଣ କରିବା ପ୍ରଥା ଚାଲି ଆସୁଥିଲା । ମାତ୍ର ଥରେ ଜଣେ ଧନିକ ଭଦ୍ରଲୋକ ଖାଇବା ବେଳେ ବୃଥା ଜାତ୍ୟଭିମାନ ପ୍ରକାଶ କରିବାରୁ ମୁଁ ମୋର ଭୁଲ୍ ବୁଝିପାରିଲି । ପଦାରେ ହାତ ପତାଇ ଠିଆ ହୋଇଥିବା ବୁଭୁକ୍ଷୁ ଦରିଦ୍ର ନର-ନାରୀମାନଙ୍କୁ ସେବା ନ କରି ଏହି ପ୍ରାଚୁର୍ଯ୍ୟ-ଗର୍ବିତ ମୂଢ଼ଙ୍କୁ ସମାଦର କରିବା ଏକ ଅକ୍ଷମଣୀୟ ଅପରାଧ ବୋଲି ସେହିଦିନ ମୋ ହୃଦୟରେ ଦୃଢ଼ରୂପେ ଲିପିବଦ୍ଧ ହେଲା । ମୁଁ ଆଉ ଭ୍ରଷ୍ଟ ପରମ୍ପରାର ଅନ୍ଧାନୁସରଣରେ ମନ ଦେଲି ନାହିଁ । ଦେଶରେ ଖାଦ୍ୟ ସମସ୍ୟା ଉତ୍କଟ ହୋଇଥିବା ବେଳେ କିମ୍ବା ବନ୍ୟା, ଦୁର୍ଭିକ୍ଷ ଇତ୍ୟାଦି ଜାତୀୟ ସଙ୍କଟର ଆବିର୍ଭାବ ସମୟରେ ମୁଁ ଭୋଜି ପ୍ରଥା ଉଠାଇଦେଇ ଅତି ସରଳ ଓ ନିରାଡ଼ମ୍ବର ଭାବରେ ପୂଜା କାର୍ଯ୍ୟ ସମାଧାନ କରିଦେବାକୁ ପରାମର୍ଶ ଦେଉଥିଲି ।

'କର୍ମ ଏବ ବ୍ରହ୍ମ' ଅର୍ଥାତ୍ ସତ୍‌କାର୍ଯ୍ୟ ଦ୍ୱାରା ଭଗବାନଙ୍କୁ ଲାଭ କରାଯାଏ, ଏହାହିଁ ମୋର ମୂଳ ମନ୍ତ୍ର । ମୁଁ ଛାତ୍ରମାନଙ୍କୁ ଏହି ଭାବରେ ଅନୁପ୍ରାଣିତ କରେ ଏବଂ ଅଖଣ୍ଡ କଠିନ ପରିଶ୍ରମ ସହ କେବଳ ସତ୍‌କାର୍ଯ୍ୟ

ସାଧନ ଦ୍ୱାରା ଦେବସୁଲଭ ବିବିଧ ସଦ୍‌ଗୁଣ ଅର୍ଜନ କରାଯାଇପାରେ, ତାହା ନାନା ଦୃଷ୍ଟାନ୍ତ ଦ୍ୱାରା ସେମାନଙ୍କୁ ବୁଝାଇ ଦିଏ ।

## ଛାତ୍ର-କଲ୍ୟାଣ-ଚିନ୍ତା

ଛାତ୍ରମାନଙ୍କର ପ୍ରତ୍ୟେକ କାର୍ଯ୍ୟ, ପ୍ରତ୍ୟେକ ଆଚରଣ ଓ ପ୍ରତ୍ୟେକ ଉତ୍ତର ମୁଁ ଗଭୀର ମନୋଯୋଗ ସହକାରେ ଅଧ୍ୟୟନ କରେ ଏବଂ ସେଥିରୁ ସୂଚିତ ତ୍ରୁଟି ସେମାନଙ୍କୁ ବୁଝାଇ ଦେଇ ସାବଧାନ ହେବାକୁ ପରାମର୍ଶ ଦେଇଥାଏ ।

ସ୍କୁଲର କେବଳ ସ୍ୱାର୍ଥ ପାଇଁ ନୁହେଁ, ପରନ୍ତୁ ଛାତ୍ରମାନଙ୍କୁ ଭବିଷ୍ୟତ୍ ଜୀବନରେ କଷ୍ଟସହିଷ୍ଣୁ ଓ ନିରଳସ ନାଗରିକ କରି ଗଢ଼ିବା ଦିଗରେ ମୁଁ ସର୍ବଦା ଅବହିତ ଥାଏ । କୌଣସି ଶିକ୍ଷକ ଅନୁପସ୍ଥିତ ରହିଲେ ମୁଁ ସେଦିନ ପିଲାମାନଙ୍କୁ ଗୋଳମାଳ କରିବାର ସୁଯୋଗ ନ ଦେଇ କାର୍ଯ୍ୟରତ କରାଉଥିଲି । ଏଥିପାଇଁ ପ୍ରତ୍ୟୁତ୍ପନ୍ନମତି ଲଗାଇ ଆକସ୍ମିକ ବ୍ୟବସ୍ଥା କରିବାକୁ ପଡୁଥିଲା । ତଦ୍‌ବ୍ୟତୀତ ସ୍କୁଲ୍ ଛୁଟି ପରେ ଛାତ୍ରାବାସର ପିଲାମାନେ ଟିକିଏ ଖେଳି ସାରିବା ପରେ ସେମାନଙ୍କୁ ଦୈହିକ ଶ୍ରମସାଧ୍ୟ କାର୍ଯ୍ୟରେ ପ୍ରବୃତ୍ତ କରାଉଥିଲି । କାଠଗଛ ହଣା ହୋଇ ପଡ଼ିଥିଲେ ସେଠାରୁ ଝିଟା ଓ ଶିରିକାଠ ବୋହି ଆଣିବା, ଘର ଛଆଣି ବା ଛପର ଉଦ୍ଦେଶ୍ୟରେ ଦୂରରୁ ବାଉଁଶ ଓ ଛଣ ଆଣିବା, ଇଟା ବୋହିବା, ଟେଣ୍ଡାରେ ପାଣି ଉଠାଇବା, ବାଡ଼ ତିଆରି ପାଇଁ କଣ୍ଟାଝିଙ୍କ ଆଣିବା ଇତ୍ୟାଦି ଯେତେ କାର୍ଯ୍ୟ ସେମାନଙ୍କ ଦ୍ୱାରା କରାଇଛି, ତାହାର ମୂଲ୍ୟ ଶହ ଶହ ଟଙ୍କା ହେବ ।

ଦରିଦ୍ର ଓ ପିତୃ ମାତୃହୀନ ଛାତ୍ରଙ୍କ ପ୍ରତି ମୋର ସ୍ନେହ-ଦୟା-ପୂର୍ଣ୍ଣ ତୀକ୍ଷ୍ଣ ଦୃଷ୍ଟି ଥାଏ । ଏହି ଶ୍ରେଣୀର ମନୋଯୋଗୀ, କର୍ତ୍ତବ୍ୟପରାୟଣ ଓ ବୁଦ୍ଧିମାନ୍ ଛାତ୍ରମାନଙ୍କୁ ମୁଁ ଅନେକ ସମୟରେ ଉତ୍ସାହ ଦେଇଥାଏ ଓ ନାନା ଭାବରେ ସାହାଯ୍ୟ କରିଥାଏ । ଅବସ୍ଥାପନ୍ନ ପିଲାଙ୍କ ଠାରୁ ପୁରୁଣା ବହି ସଂଗ୍ରହ କରି ସେମାନଙ୍କୁ ଯୋଗାଇବା, ଅଫିସରେ ଜମା ହୋଇଥିବା ପରୀକ୍ଷା ଖାତାରୁ ଅଲେଖା କାଗଜ ବାହାର କରି ସେମାନଙ୍କ କାଗଜ ଅଭାବ ଦୂର କରିବା ଏବଂ ବେଳେ ବେଳେ ନିଜ ହାତରୁ ବହିପତ୍ର କିଣି

ବାଣ୍ଟିବା ମୋର ପ୍ରକୃତିଗତ ହୋଇ ପଡ଼ିଥିଲା । ମଧ୍ୟ-ଇଂରାଜୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ କେତେ ଜଣ ଦରିଦ୍ର ଓ ମେଧାବୀ ଛାତ୍ରଙ୍କର ଉଚ୍ଚ ଶିକ୍ଷା ସକାଶେ ମୁଁ ଆର୍ଥିକ ସାହାଯ୍ୟ କରିଛି ଓ ସେମାନଙ୍କ ପାଇଁ ମଧ୍ୟ ବଦାନ୍ୟ ବ୍ୟକ୍ତିଙ୍କ ପାଖରେ ହାତ ପତାଇଛି ।

ପ୍ରାୟ ୧୯୩୭ ମସିହାର କଥା । ଖୋର୍ଦ୍ଧା ପରିଚ୍ଛଳ ଗ୍ରାମର ଶ୍ରୀ ଗିରକିଶୋର ପଟ୍ଟନାୟକ ପ୍ରଧାନ ଶିକ୍ଷକ ଥାନ୍ତି । ସେତେବେଳେ ସପ୍ତମ ଶ୍ରେଣୀର ପିଲାମାନେ ପରୀକ୍ଷା ଦେବା ପାଇଁ ସ୍ରୀତ ସବ୍‌ଡିଭିଜନରେ କେନ୍ଦ୍ର ଥିଲା । ଦୋହଲ ସ୍କୁଲ ଛାତ୍ରମାନେ ପରୀକ୍ଷା ଦେବା ପାଇଁ କେନ୍ଦ୍ରାପଡ଼ା ଯାଉଥାନ୍ତି । ମୁଁ ପରୀକ୍ଷାର୍ଥୀଙ୍କ ସହ ପ୍ରତିବର୍ଷ ପରୀକ୍ଷାକୁ ଯାଏ । ସେ ବର୍ଷ ଅଧିକ ସଂଖ୍ୟକ ପିଲା ଥିବାରୁ ସ୍କୁଲର ପ୍ରଧାନ ଶିକ୍ଷକ ମୋ ସହିତ ଗଲେ । ମୁସଲମାନ ପର୍ବ ଥିବାରୁ ଆଠ ଦିନ ଯାଏ ପରୀକ୍ଷା ହୋଇଥିଲା । କଣ ଗୋଟାଏ ଗୁରୁତର କାମ ଥିବାରୁ ମୁଁ ଘରକୁ ଆସିଥିଲି । ସନ୍ଧ୍ୟାବେଳେ ପହଞ୍ଚି ଦେଖିଲି ଯେ, ପିଲାମାନେ ସମସ୍ତେ ଇତିହାସ ପଢ଼ି-ବାରେ ଲାଗିଛନ୍ତି । ପରଦିନ ସକାଳୁ ଅଙ୍କ ପରୀକ୍ଷା ହେବ, ଅଥଚ ପିଲା-ମାନେ ଅଙ୍କ ଆଲୋଚନା କରିପାରୁ ନଥାନ୍ତି । କାରଣ ପ୍ରଧାନ ଶିକ୍ଷକ ଇତିହାସ ଶିକ୍ଷକ ଥିବାରୁ ସେମାନଙ୍କୁ ଇତିହାସ ପଢ଼ିବାକୁ ବାଧ କରୁ-ଥିଲେ । ଏହା ଶୁଣି ମୁଁ ବିବ୍ରତ ହୋଇ ପଡ଼ିଲି ଏବଂ ପ୍ରଧାନ ଶିକ୍ଷକଙ୍କୁ କହିଲି—“ଆପଣ ଅଙ୍କ ଜାଣନ୍ତି ନାହିଁ ବୋଲି ଗଣିତ ବିଷୟକୁ ସରଳ ମନେ ନକରି କଠିନ ବିଚାରିବା ଉଚିତ ଥିଲା । ପିଲାମାନେ ସବୁ ବିଷୟରେ ଭଲ ନମ୍ବର ରଖିଲେ ପାସ୍ କରିବେ ନା କେବଳ ଇତିହାସରେ ଭଲ କଲେ ପାସ୍ କରିବେ ? ସମସ୍ତେ ପାସ୍ କରନ୍ତୁ ଏପରି ଆକାଂକ୍ଷା ନ କରି କେବଳ ଆପଣଙ୍କ ଅଧ୍ୟାପିତ ବିଷୟରେ ପାସ୍ କଲେ ଆପଣଙ୍କ ଚାକିରି ନିରାପଦ ଓ ନିର୍ଦ୍ଦୋଷ ହେବ ବୋଲି ବିଚାରି ଆପଣ ଯେଉଁ ସଙ୍କୀର୍ଣ୍ଣ ମନୋଭାବ ଓ ବିବେକହୀନତାର ପରିଚୟ ଦେଲେ, ତାହା ସୁନ୍ଦର ହେଲା ନାହିଁ । ଗୋଟାଏ ଅନୁଷ୍ଠାନର ମୁଖ୍ୟ ହୋଇ ଦାୟିତ୍ୱ ନ ବୁଝିବା ଦୁଃଖର କଥା ।”

ଖାଇବା ବେଳ ହେଲା । ପ୍ରଧାନ ଶିକ୍ଷକ ଆଉ ଖାଇବାକୁ ନ ଯାନ୍ତି । ପିଲାମାନେ, ପୂଝାରୀ, ଚାକର ଆଦି ସମସ୍ତେ ଅନୁରୋଧ କଲେ । ମାତ୍ର

ତାଙ୍କର ଏକାକଥା—ସେ ଖାଇବେ ନାହିଁ । ଶେଷକୁ ମୁଁ ମଧ୍ୟ ଯଥେଷ୍ଟ ଅନୁରୋଧ କରି ନିଷ୍ଫଳ ହେବାରୁ ଅଗତ୍ୟା ତାଙ୍କ ପାଦତଳେ ପଡ଼ି କ୍ଷମା ପ୍ରାର୍ଥନା କଲି । ତେବେ ଯାଇଁ ସେ ଖାଇବାକୁ ବସିଲେ ।

ସ୍କୁଲ ଛାତ୍ରମାନେ ସେମାନଙ୍କ ପ୍ରୟୋଜନୀୟ ବହି ଓ କାଗଜ ଇତ୍ୟାଦି ସୁଲଭ ମୂଲ୍ୟରେ ଓ ସୁବିଧାରେ ପାଇବା ଲାଗି ମୁଁ ସ୍କୁଲରେ ଗୋଟିଏ 'ସହଯୋଗ ଭଣ୍ଡାର' ଗଢ଼ିଥିଲି ଏବଂ ଏଥିରୁ ଯାହା ଲାଭ ହେଉଥିଲା, ତାହା ସ୍କୁଲର ହିତରେ ବ୍ୟୟିତ ହେଉଥିଲା ।

ଛାତ୍ରମାନଙ୍କର ପ୍ରତିଦିନ ଆଖିରେ ପଡ଼ିବା ଲାଗି ଏବଂ ତଦ୍ଦ୍ୱାରା ସେମାନେ ଅଭ୍ୟସ୍ତ ହେବାକୁ ଶିକ୍ଷା ପାଇବା ଉଦ୍ଦେଶ୍ୟରେ ମୁଁ ବାରଗୋଟି ସୂଚୀତ ସେମାନଙ୍କ ନିତ୍ୟ ବ୍ୟବହାର୍ଯ୍ୟ ଏକ୍‌ସରସାଇଜ ଖାତାର ପ୍ରଚ୍ଛଦ ପଟରେ ଛପାଇ ଦେଇଥିଲି । ସେ ଗୁଡ଼ିକ ଏହି ପ୍ରକାର—

୧—କର୍ମ ଏବ ବ୍ରହ୍ମ—କେବଳ ସତ୍କାର୍ଯ୍ୟ ଦ୍ୱାରା ଭଗବାନଙ୍କୁ ଲାଭ କରାଯାଏ ।

୨—ବିନା କାରଣରେ ସ୍କୁଲର ଅଫିସ ଘରକୁ ଯିବା ଏବଂ ସେଠାରୁ ନିଜର ବ୍ୟବହାର ଲାଗି କିଛି ଜିନିଷ ଆଣିବା ଅନୁଚିତ ।

୩—ସଙ୍ଗୀ ପିଲାଙ୍କର ବହି ଇତ୍ୟାଦି ଚୋରି କରିବା କିମ୍ବା ବିନାନୁମତିରେ ବ୍ୟବହାର କରିବା ଜଣା ପଡ଼ିଲେ କଠିନ ଦଣ୍ଡ ଦିଆଯିବ ।

୪—ପ୍ରତ୍ୟେକ ସ୍କୁଲର ସହଯୋଗ ଭଣ୍ଡାରରୁ ନିଜର ଆବଶ୍ୟକ ବହି ଇତ୍ୟାଦି କିଣିବାକୁ ବାଧ୍ୟ । କାରଣ ଲାଭାଂଶ ସ୍କୁଲକୁ ଦିଆଯିବ ।

୫—ବଗିଚା କାର୍ଯ୍ୟକୁ ବାଧ୍ୟବାଧକତା ମନେ ନକରି ପ୍ରଫୁଲ୍ଲ ମନରେ କରିବା ଉଚିତ ।

୬—ଭଲ କାଗଜ, ଭଲ ସ୍ୟାହି, ଭଲ କଲମ ନ ହେଲେ ଲେଖିବାକୁ ଆରମ୍ଭ କରିବ ନାହିଁ ।

୭—ଦରମା ଦେବା ପୂର୍ବରୁ ଲଜ୍ଜା ସଙ୍କୋଚ ଛାଡ଼ି ନିଜର ଦ୍ୱିଧାବ ଭଲରୂପେ ବୁଝି ନେବା ଏବଂ ସଙ୍ଗେ ସଙ୍ଗେ ରସିଦ ମାଗିବା ଭଲ ପିଲାର ଲକ୍ଷଣ ।

୮—ଭଲପିଲା ପିଲାଦିନରୁ ପାନବଡ଼ ଅଭ୍ୟାସ କରି ଦାନ୍ତ ଖରାପ କରେ ନାହିଁ କମ୍ବା ତଦ୍ଦ୍ୱାରା ନଜର ଭଲ ଗୁଣ ହରାଏ ନାହିଁ ।

୯—ମୋଟା ଓ ସଫା କେବଳ ଲୁଗା ପିନ୍ଧିବାରେ ସନ୍ତୁଷ୍ଟ ନଥିବା ଯେଉଁ ପିଲା ପିତା ମାତାଙ୍କ ପାଖରେ ଜୋତା ଛତା ଓ କୋଟ, କାମିଜ ପାଇଁ ଅଳିକରେ ଏବଂ ଚୂଡ଼ାଗୁଡ଼ୁକୁ ଘଣା କରି ପାଟି-ସୁଆଦିଆ ବଜାରି ଜିନିଷ ପାଇଁ ପିତା ମାତାଙ୍କୁ ଅଯଥା ଖର୍ଚ୍ଚାନ୍ତ କରେ, ତାହାର ଭଲ ପାଠ ହୁଏ ନାହିଁ ।

୧୦—ପିତା ମାତାଙ୍କୁ ଗୃହ କାର୍ଯ୍ୟରେ ଯଥାଶକ୍ତି ସାହାଯ୍ୟ କରିବା ଉଚିତ ।

୧୧—ନିୟମିତ ଭାବରେ କ୍ରୀଡ଼ା କରିବା ହିଁ ସମସ୍ତ ପ୍ରକାର ରୋଗର ଏକମାତ୍ର ଔଷଧ ।

୧୨—ସମୟ ଓ ଧନର ସଦ୍‌ବ୍ୟବହାର କରିବାକୁ ଏବଂ ବିନୟ, ଗୁରୁଭକ୍ତି ଆଦି ସଦ୍‌ଗୁଣଦ୍ୱାରା ସମସ୍ତଙ୍କର ପ୍ରିୟ ହେବାକୁ ଶିକ୍ଷା କରିବା ଜୀବନର ପରମ କର୍ତ୍ତବ୍ୟ ।

ଯେ ସମୟରେ ପିଲାମାନଙ୍କର ଯେଉଁ ସାଧାରଣ ଦୋଷମାନ ମୋର ଦୃଷ୍ଟିଗୋଚର ହେଉଥିଲା ଏବଂ ଅଭିଭାବକମାନେ ସେମାନଙ୍କ ବିରୁଦ୍ଧରେ ମୋ ଆଗରେ ଯେଉଁସବୁ ଅଭିଯୋଗ ଉପସ୍ଥାପିତ କରୁଥିଲେ, ତାହାକୁ ଦୃଷ୍ଟିରେ ରଖି ଏହି ନୀତିମାନ ରଚିତ ହୋଇଥିଲା ।

## ଶିକ୍ଷକର ସଂକୀର୍ଣ୍ଣତା

ହୋହଳ ମ. ଇ. ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ନୀରଦକିଶୋର ପଟ୍ଟନାୟକ ଛାତ୍ରାବାସରେ ରହୁଥିଲେ । ଥରେ ଜ୍ୱରାକ୍ରାନ୍ତ ଥିବାବେଳେ ଗୋଟିଏ ପିଲାର ଗିନାରେ ଓ କାନ୍ଥରେ ଛେପ ପକାଉଥିଲେ । ସେହି ପିଲାଟି ମୋତେ ଏ କଥା କହି ବିରକ୍ତି ପ୍ରକାଶ କଲା । ମୁଁ ତଦନ୍ତ କରି ଜାଣିଲି, ପିଲାଟିର ଅଭିଯୋଗ ଯଥାର୍ଥ । ତାପରେ ତାକୁ କହିଲି—"ପ୍ରଧାନ ଶିକ୍ଷକ ଦୁର୍ବଳତା ବଶତଃ ବାହାରକୁ ଯାଇ ନପାରି ସେପରି କରିବାକୁ ବାଧ୍ୟ ହୋଇଛନ୍ତି । ତୁ ତାଙ୍କର ଛାତ୍ର ହୋଇ ସେ ଗିନାଟି ନିଜେ ପରିଷ୍କାର

କରି ନଦେଇ ଗୁରୁଙ୍କ ପ୍ରତି ଅଭକ୍ତି ପ୍ରକାଶ କରିବା ଅସୁନ୍ଦର କଥା ।"
ଏକଥା କହି ମୁଁ ତାହାର ଆଗରେ ଗିନାଟି ନଜେ ପରେଷ୍କାର କରିଦେଲି । ପ୍ରଧାନ ଶିକ୍ଷକ ସୁସ୍ଥ ହୋଇଯିବା ପରେ ତାଙ୍କୁ ଏକାନ୍ତରେ କହିଲି ଯେ, ସେ ଯେପରି କାର୍ଯ୍ୟ କରିଛନ୍ତି, ତଦ୍ୱାରା ପିଲାଙ୍କ ଆଗରେ ମର୍ଯ୍ୟାଦା ନଷ୍ଟ ହେବାର କଥା । ସେ ଇଚ୍ଛା କରିଥିଲେ ତାହାର ହାତ ଗିନା ଓ କାନ୍ଥ ସଫା କରାଇ ଦେଇ ପାରିଥାନ୍ତେ ।

ଏହି ଘଟଣାର ତିନି ଚାରି ଦିନ ପରେ ମୁଁ ପଢ଼ାଇଲାବେଳେ କଥା ପ୍ରସଙ୍ଗରେ ଉକ୍ତ ପିଲାର ଅସୁନ୍ଦର ବ୍ୟବହାର ସମ୍ବନ୍ଧରେ କହି ଛାତ୍ରମାନଙ୍କୁ ମାନ୍ତଶିକ୍ଷା ଦେଉଥିଲି । ହେଡ୍‌ମାଷ୍ଟର ବାବୁ ଅନ୍ତରାଳରେ ରହି ମୋ କଥା ଶୁଣୁଥିଲେ । ସ୍କୁଲ ଛୁଟିହେବା ପରେ ସେ ମୋତେ କହିଲେ ଯେ, ନେପ ପକାଇବା ସମ୍ବନ୍ଧରେ ମୋର ତାଙ୍କ ପ୍ରତି ମନ୍ତବ୍ୟରେ ସେ କ୍ଷୁବ୍ଧ ହୋଇଥିଲେ ହେଁ ମୁଁ ପିଲାଟିକୁ ଉଚିତ ଭର୍ତ୍ସନା କରି ତାଙ୍କର ଦୋଷ ଘୋଡ଼ାଇ ଥିବାରୁ, ସେ ମନେ ମନେ ମୋ ପ୍ରତି ଖରାପ ଧାରଣା ପୋଷଣ କରିଥିବା ଯୋଗୁଁ ଦୁଃଖିତ ଓ ଅନୁତପ୍ତ । ଏହା କହି ସେ କ୍ଷମା ପ୍ରାର୍ଥନା ମଧ୍ୟ କଲେ ।

ତଥାପି ହେଡ୍‌ମାଷ୍ଟରଙ୍କ ମନରେ ସେହି ଅଭିଯୋଗକାରୀ ପିଲା ପ୍ରତି ସୁଯୋଗ ଦେଖି ଦାଉ ସାଧିବାର ଇଚ୍ଛା ଜାଗ୍ରତ ହୋଇ ରହିଥିଲା । ସପ୍ତମ ଶ୍ରେଣୀର ଛାତ୍ରମାନେ କେନ୍ଦ୍ର ପରୀକ୍ଷାକୁ ଯିବା ଲାଗି ଟେଷ୍ଟ ପରୀକ୍ଷା ଦେଉଥିଲେ । ହେଡ୍‌ମାଷ୍ଟର ପୂର୍ବ ରାଗ ବଶତଃ ସେହି ପିଲାଟିକୁ ପରୀକ୍ଷା ପାଇଁ ମନୋନୀତ କଲେ ନାହିଁ । ମୁଁ ନିଜେ ହେଡ୍‌ମାଷ୍ଟରଙ୍କୁ ବହୁତ ଅନୁରୋଧ କଲି ଓ ଅନ୍ୟ ଶିକ୍ଷକମାନଙ୍କ ଜରିଆରେ ଜଣାଇଲି । ତଥାପି ସେ ଅଟଳ । ପିଲାଟିର ବୃଥା କ୍ଷତି କରିବାକୁ ମୋର ମନ ହେଲା ନାହିଁ । ମୁଁ ଉତ୍ତେଜିତ ସ୍ୱରରେ ତାଙ୍କୁ ଜଣାଇ ଦେଲି ଯେ, ସେ ପିଲାଟିକୁ ମନୋନୀତ ନକଲେ ତାଙ୍କୁ ଇସ୍ତଫା ଦେବାକୁ ପଡ଼ିବ । ସେ ଭୟଭୀତ ହୋଇ ରାଜି ହୋଇଗଲେ । ପିଲାଟି କେନ୍ଦ୍ର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲା ।

ପିଲାଙ୍କର ଅସଦାଚରଣରେ ମୁଁ କେବେହେଲେ ଅଧୀର ହୋଇ କ୍ଷତି କରିବା ଇଚ୍ଛା ପୋଷଣ କରିନାହିଁ । ସେମାନେ ଶିକ୍ଷକଙ୍କ ପାଖରେ

ଅସଂଖ୍ୟ ଭୁଲ୍ କରିବା ସ୍ୱାଭାବିକ । ମାତ୍ର ଶିକ୍ଷକ ଉଦାର ହୃଦୟରେ ବାତ୍ସଲ୍ୟ ସହିତ ସେହି ଭୁଲ୍ ପାଇଁ କ୍ଷମା ଦେଇ ଉପଦେଶ ପ୍ରଦାନ କରିବା ବିଧେୟ ।

## ଛାତ୍ରାବାସ ଦାୟିତ୍ୱ

ହଷ୍ଟେଲ ଓ ମେସ୍ ପରିଚାଳନାରେ ମୁଁ ପିଲମାନଙ୍କୁ ବେଶୀ ସ୍ୱାଧୀନତା ଦେଇଥିଲି । ସେମାନେ ବଜାର ସଉଦା କରନ୍ତି, ହିସାବ ରଖନ୍ତି । ମୁଁ ସେମାନଙ୍କୁ ପାଖରେ ବସାଇ ମାସ ଶେଷ ହିସାବଟା କରିଦିଏ । ସମସ୍ତଙ୍କ ଜମା ଟଙ୍କା ମୋ ପାଖରେ ରହେ ଏବଂ ଟଙ୍କାର ଅଭାବ ପଡ଼ିଲେ ମୁଁ ଚଳାଇ ଦିଏ । ପ୍ରତ୍ୟେକ ମାସ ପାଇଁ ମେନେଜର ଇତ୍ୟାଦି ନିର୍ବାଚିତ ହୁଅନ୍ତି । ଗୃହଦୋଳ ହାଟରୁ ଗୃହଜଳ ପରିବା ଇତ୍ୟାଦି କିଣାହେଲେ କେତେକ ଦାୟିତ୍ୱହୀନ ପିଲଙ୍କ ଅନୁପସ୍ଥିତି ଯୋଗୁଁ ମୁଁ ସମୟ ସମୟରେ ପୂଝାରୀ ଓ ପିଲଙ୍କ ସହିତ ଗୃହଜଳ ଇତ୍ୟାଦି ମୁଣ୍ଡେଇ ଆଣିବାକୁ ଦ୍ୱିଧାବୋଧ କରେ ନାହିଁ । ଶ୍ରମିକ ମିଳୁଥିଲେ ହେଁ ମୁଁ ନିଜକୁ ତାହାର ସାହାଯ୍ୟରୁ ବଞ୍ଚିତ କରିଦିଏ । ପୂଝାରୀ ଅନୁପସ୍ଥିତ ବା ରୋଗାକ୍ରାନ୍ତ ହେଲେ ମୁଁ ରୋଷାଇରେ ସକ୍ରିୟ ଭାଗ ନିଏ । ହଷ୍ଟେଲରେ କାହାରିକୁ ଜ୍ୱର ହେଲେ ମୁଁ ନିଜେ ତାକୁ ଔଷଧ ଓ ପଥ୍ୟ ଖୁଆଏ ଏବଂ ତାହାର ଅଇଣ୍ଠା ଥାଳୀ ମଧ୍ୟ ଧୋଇ ଦିଏ । ଅନ୍ୟ ପିଲମାନଙ୍କୁ ପାଳି ଅନୁସାରେ ତାହାର ସେବା ଶୁଶ୍ରୂଷା ପାଇଁ ନିଯୁକ୍ତ କରାଏ । ପିଲମାନେ ପ୍ରତିଦିନ ପାଳିକରି ଘର ସଫା କରନ୍ତି । ମାତ୍ର ରବିବାର ଦିନ ଏବଂ ପର୍ବପର୍ବାଣି ଓ ଶୁଭଦିନ-ମାନଙ୍କରେ ମୁଁ ନିଜେ ଝାଡ଼ୁ ଧରି ଗୁଡ଼ାଏ ସଫା ନକଲେ ମୋର ମନ ବୋଧ ହୁଏ ନାହିଁ । ପ୍ରତିଦିନ ନିର୍ଦ୍ଦିଷ୍ଟ ନିୟମ ଅନୁସାରେ ପ୍ରାର୍ଥନା, ନିତ୍ୟକର୍ମ ଓ ଅଧ୍ୟୟନ ଇତ୍ୟାଦି ଯାବତୀୟ କାର୍ଯ୍ୟ କରିବା ଉପରେ ମୁଁ ବିଶେଷ ଦୃଷ୍ଟି ଦେଇଥାଏ ।

ଅଧିକାଂଶ ପିଲ ସଞ୍ଜତ ହୋଇ ନପାରି ମିଷ୍ଟାନ୍ନ ଦୋକାନରେ ବାକି କରି ଖାଇଥାନ୍ତି । ମୁଁ ସେଥିପାଇଁ ମାସ ଶେଷରେ ପ୍ରତ୍ୟେକଙ୍କର ହିସାବ ଖାତା ଦେଖି ଦୋକାନୀ ଓ ପିଲଙ୍କୁ ତାକିଦ୍ କରିଦିଏ । ମଝିରେ ମଝିରେ ପିଲମାନଙ୍କର ଟ୍ରଙ୍କ ପେଟରା ଖାନତଲାସ କରି ବିଡ଼ି, ତାସ ଇତ୍ୟାଦି ବାହାର କରି ନଷ୍ଟ କରିଦିଏ । କୌଣସି ପ୍ରକାର ଚୋରି ହୋଇଥିବାର

ସମ୍ବାଦ ମୋ କାନକୁ ଆସିଲେ ମୁଁ ମୋର ସବୁ କାର୍ଯ୍ୟ ପଛକୁ ରଖି ଆଗେ ସେ କଥା ବୁଝେଁ ଏବଂ ମୁଁ ଗର୍ବର ସହିତ କହିବି ଯେ ମୋର ପ୍ରବଳ ଇଚ୍ଛା-ଶକ୍ତି (will-power) ଯୋଗୁଁ ଅଧିକାଂଶ ଚୌର୍ଯ୍ୟ ଧରା ପଡ଼ିଯାଏ ।

ମୁଁ ସବୁବେଳେ ବହୁମୁଖୀ କାର୍ଯ୍ୟ ସମୂହରେ ବ୍ୟସ୍ତ । ସକାଳ ପାଞ୍ଚଟା ପରେ ରାତି ବାରଟା ପୂର୍ବରୁ ମୁଁ ଶୋଇପାରେ ନାହିଁ । ଗାଈ ପଡ଼ିଆରେ ଚରୁଥିବା ବେଳେ ତାହାର ଦୃଷ୍ଟି ଯେପରି ସର୍ବଦା ନବଜାତ ଶାବକ ଉପରେ ଥାଏ, ସେହିପରି ପିଲାମାନଙ୍କର ଯେ କୌଣସି ପ୍ରକାର ଦୁଷ୍ଟାମି, ନିୟମ ଭଙ୍ଗ, ଚରିତ୍ର ସ୍ଖଳନ ଓ ପଢ଼ାରେ ଅମନୋଯୋଗିତା ଇତ୍ୟାଦି ମୋର ଶ୍ୟେନ ଦୃଷ୍ଟିକୁ ଅତିକ୍ରମ କରିପାରେ ନାହିଁ ।

ପିଲାଙ୍କର ସରଳ ଜୀବନ ଯାପନ ଓ ଉଚ୍ଚ ଚିନ୍ତା (plain living and high thinking) ପ୍ରତି ମୁଁ ସମଧିକ ଦୃଷ୍ଟି ଦେଉଥିଲି । ହଷ୍ଟେଲରେ ଥିବା ଦରିଦ୍ର ଓ ମେଧାବୀ ଛାତ୍ରମାନଙ୍କୁ ମୁଁ କୌଣସି ପ୍ରକାରେ ଅବହେଳା କରୁ ନଥିଲି । ଅନ୍ତେବାସୀଙ୍କ ସଂଖ୍ୟା ବେଶୀ ଥିବାରୁ ଏଭଳି ପିଲାଙ୍କୁ ମେସ୍ ଖରଚରୁ ରିହାତି ଦେବା ପାଇଁ ଅସୁବିଧା ଘଟୁ ନଥିଲା । ହରିଜନ ପିଲାମାନେ ସବର୍ଣ୍ଣଙ୍କ ସହ ସମାନ ଅଧିକାର ପ୍ରାପ୍ତ ହୋଇ ଅବାରିତ ଭାବରେ ହଷ୍ଟେଲରେ ରହୁଥିଲେ, ଯେତେବେଳେ କି ମହାତ୍ମା ଗାନ୍ଧୀଙ୍କ ଅସ୍ପୃଶ୍ୟତା ବିରୁଦ୍ଧରେ ଅଭିଯାନ ଆରମ୍ଭ ହୋଇ ନଥିଲା ।

# ମୋର ଅଧ୍ୟାପନା ପ୍ରଣାଳୀ

ସାହିତ୍ୟ, ବ୍ୟାକରଣ, ରଚନା, ଗଣିତ, ମାନସାଙ୍କ, ଜ୍ୟାମିତି ଓ ବଗିଚ୍ଚ କାର୍ଯ୍ୟ, ଏଗୁଡ଼ିକ ମୋର ପ୍ରିୟ ବିଷୟ ଥିଲା । ମଝିରେ ମଝିରେ ଅନୁପସ୍ଥିତ ଶିକ୍ଷକଙ୍କ ପିରିଅଡ୍‌ରେ ପଢ଼ାଇ ଇତିହାସ, ଭୂଗୋଳ, ସ୍ୱାସ୍ଥ୍ୟ-ରକ୍ଷା ଓ ଇଂରେଜୀ ପଢ଼ାଇ ପିଲାମାନଙ୍କୁ ସନ୍ତୁଷ୍ଟ କରି ପାରିଛି ଓ ନିଜେ ମଧ୍ୟ ଆପ୍ୟାୟିତ ହୋଇଛି ।

ଛାତ୍ରମାନଙ୍କ ପଠନ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ବିଷୟରେ ମୋର ଯଥେଷ୍ଟ ଜ୍ଞାନ ଅଛି, ଏହିପରି ଭାବ ଯେଉଁ ଶିକ୍ଷକମାନେ ଅବସର ସମୟରେ ଅଧ୍ୟାପନା ସମ୍ବନ୍ଧରେ ଟିକେ ହେଲେ ଚିନ୍ତା କରନ୍ତି ନାହିଁ, ସେମାନେ କ୍ଷମାର ପାତ୍ର । ଶିକ୍ଷକ ଶ୍ରେଣୀରେ ପଢ଼ାଇ ଗୁଡ଼ାଏ ଗପିଗଲେ, କାର୍ଯ୍ୟସାରି ଚାଲି ଆସିଲେ, କିନ୍ତୁ ଟିକେ ହେଲେ ଭାବିଲେ ନାହିଁ ଯେ, ସେ ଯେଉଁ ବିଷୟ ପଢ଼ାଇଲେ ତାହା କେତେ ଜଣ ବୁଝି ପାରିଲେ ଏବଂ କେତେ ଜଣଙ୍କ ପକ୍ଷରେ ଦୁର୍ବୋଧ ହେଲା । ଅଙ୍କ ପାଞ୍ଚଖଣ୍ଡ କଷି ଆଣିବା ପାଇଁ ଦିଆଯାଇଥିଲା । କିଏ ଖାତା ଦେଲା, କିଏ ନଦେଲା, ସେ କଥା ଅନୁସନ୍ଧାନ ନକରି ଶିକ୍ଷକ କେବଳ ଖାତାରେ ଦସ୍ତଖତ ମାରି ଖାତା ଫେରାଇ ଦେଲେ । ପିଲା ନିଜ ବୁଦ୍ଧିରୁ ଅଙ୍କ କଷିଲା, କି କପି କଲା, ଖାତା ନ ଦେଇଥିବା ପିଲା କେତେ ଦିନ ହେଲା ଖାତା ଦେଇ ନାହିଁ, ଏସବୁ କଥା ବୁଝିବାକୁ ଅନେକ ଶିକ୍ଷକ କର୍ତ୍ତବ୍ୟ ବୋଲି ବିଚାରନ୍ତି ନାହିଁ । ଏହିପରି ଅନେକ କଥା କୁହାଯାଇ ପାରେ । ପିଲାମାନଙ୍କର ଦୁର୍ବଳତାର କାରଣ କଅଣ ଏବଂ କି ଉପାୟରେ ତାହା ଦୂରୀଭୂତ ହୋଇ ପାରେ, କିପରି ପଢ଼ାଇଲେ ଅଳ୍ପଧୀ ପିଲାମାନେ ଉପକୃତ ହେବେ—ଏହିସବୁ ବିଷୟରେ ମୁଁ ଅବକାଶ ସମୟରେ ବିଶେଷ ଚିନ୍ତା କରିବାରେ ଅଭ୍ୟସ୍ତ । ଦାନ୍ତ ଘଷିବା, ବହିର୍ଭୂମି ଯିବା, ଖାଇ ବସିବା ଓ ସାଇକେଲରେ ବସି କେଉଁଠାକୁ ଯିବା ସମୟରେ ମଧ୍ୟ ଅଧ୍ୟାପନାଗତ ଚିନ୍ତା କରିବାରେ ପ୍ରବୃତ୍ତ ଥାଏ । ଏଣୁ

ସବୁଦିନେ ମୋର ଅଧ୍ୟାପନା ପ୍ରଣାଳୀ ଗୋଟାଏ ପ୍ରକାର ହୁଏ ନାହିଁ । ଛାତ୍ରର ପଢ଼ିବା, କହିବା ଓ ଲେଖିବାରେ କୌଣସି ପ୍ରକାର ଦୋଷ ମୋର ଶ୍ୟେନ ଦୃଷ୍ଟି ଅତିକ୍ରମ କରିପାରେ ନାହିଁ । ତେଣୁ ମୋର ଅଧ୍ୟାପନା ଜୀବନ୍ତ, ସରସ, କୌତୁକପୂର୍ଣ୍ଣ, ଶିକ୍ଷାପ୍ରଦ, ବୈଚିତ୍ର୍ୟ ବିଶିଷ୍ଟ ଓ ବିବିଧ ଦୃଷ୍ଟାନ୍ତପୂର୍ଣ୍ଣ ହୋଇ ଛାତ୍ରମାନଙ୍କର ମନୋଯୋଗ ଆକର୍ଷଣ କରେ । ପଢ଼ାଇବା ସମୟରେ ପାଠ୍ୟ-ବିଷୟକ ପ୍ରଶ୍ନର ଉତ୍ତର ଦେଇ ନ ପାରିଲେ ମୁଁ ପିଲଙ୍କୁ କ୍ୱଚିତ୍ ଦଣ୍ଡ ଦେଇଥାଏ, ମାତ୍ର ସେମାନେ ଚରିତ୍ର ଓ ବ୍ୟବହାରରେ ଦୋଷ ଦେଖାଇଲେ ଏବଂ ନିୟମ ଓ ଶୃଙ୍ଖଳା ଭାଙ୍ଗି ଅପରାଧ କଲେ ମୁଁ ଅଗ୍ନିଶର୍ମା ହୋଇ ଉଠେ ।

ମୋର ଦୀର୍ଘକାଳର ଅନୁଭୂତିରୁ ମୁଁ କହିବି ଯେ, ଛାତ୍ରମାନେ ଶିକ୍ଷକଙ୍କୁ ପ୍ରତି ମୁହୂର୍ତ୍ତରେ ଠକିବାକୁ ଚେଷ୍ଟା କରନ୍ତି । ଯଦି ସେହି ଠକାମି ଧରିବାରେ ଶକ୍ତି ନ ଥାଏ, ଅଥବା ଶକ୍ତି ଥିଲେ ସୁଦ୍ଧା ସେ ଆଳସ୍ୟବଶତଃ ସେଥିପାଇଁ ସଚେଷ୍ଟ ନ ହୁଅନ୍ତି; ତାହା ହେଲେ ଛାତ୍ରମାନେ ଯେ ଦୁର୍ବଳ ହେବେ, ଏଥିରେ ସନ୍ଦେହ ନାହିଁ । କୌଣସି ପିଲା କୌଣସି କ୍ଷେତ୍ରରେ ମୋତେ ଠକିବାକୁ ଚେଷ୍ଟା କରନ୍ତି ନାହିଁ । କାରଣ ସେମାନେ ଜାଣନ୍ତି ଯେ, ସେମାନଙ୍କ ଠକାମି ଧରିବା ପାଇଁ ମୁଁ ସତତ ଉନ୍ମୁଖ ଏବଂ ମୋର ଗୃଢୁଭୂଷା, ପ୍ରତ୍ୟୁତ୍ପନ୍ନମତି ଓ ଆଳସ୍ୟହୀନତା ଆଗରେ ତାହା ଠିକ ପାରିବ ନାହିଁ ।

ଥରେ ଗୋଟିଏ ପିଲା ରଚନା ଖାତା ଦେଇ ନ ଥିଲା ଏବଂ ତାହାର ସ୍ୟାହି ନ ଥିବାରୁ ସେ ଲେଖି ନାହିଁ ବୋଲି କହିଲା । ମୁଁ ସଙ୍ଗେ ସଙ୍ଗେ ତାକୁ ଘରକୁ ଯାଇଁ ଦୁଆତ ଆଣି ଦେଖାଇବାକୁ କହିଲାରୁ ସେ ଉତ୍ସାହିତ ହୋଇ କେତେ ପାଦ ଚାଲିଗଲା । ମୁଁ ତାହାକୁ ଅଟକାଇ ଆଉ ଗୋଟିଏ ପିଲାକୁ ପାଖକୁ ଡ଼ାକିଲି ଏବଂ ତାକୁ ଗାନ୍ଧିଜୀଙ୍କ ଫଟୋ ଛୁଆଇଁ ତାଠାରୁ ପ୍ରତିଜ୍ଞା କରାଇ ନେଲି ଯେ, ସେ ପିଲାଟି ସାଙ୍ଗରେ ତାହା ଘରକୁ ଯିବ ଓ ଯାହା ଦେଖିବ ତାହା ମୋତେ କହିବ । ପ୍ରଥମ ପିଲାଟି ମନେ ମନେ ଭାବିଥିଲା ଯେ, ସେ ଦୁଆତରୁ ସ୍ୟାହି ଢାଳି ନେଇ ମୋତେ ଦେଖାଇବ । ମାତ୍ର ତାହାର କଳ୍ପନା ବ୍ୟର୍ଥ ହେବାରୁ ସେ ମୋ ଆଗରେ ସତ କହିଲା ଯେ, ସେ ରଚନା ଲେଖିଥାଇ ନାହିଁ ।

ପିଲାମାନେ ପାଠ୍ୟ ପୁସ୍ତକର ଟୀକା ବହି କିଣି ପାରିବେ ନାହିଁ ବୋଲି ମୋର କଡ଼ାକଡ଼ି ଆଦେଶ ଥାଏ । ମୁଁ ନିଜେ ଶବ୍ଦାର୍ଥ ଓ କଠିନ-ତମ ଅଂଶର ସରଳାର୍ଥ ପିଲାମାନଙ୍କ ସାହାଯ୍ୟରେ ସରଳ ଭାଷାରେ ଡ଼ାକିଦିଏ । ସୁନ୍ଦର ଅକ୍ଷରରେ ଓ ପରିଷ୍କାର ପରିଚ୍ଛନ୍ନତା ସହ ଯେପରି ରଚନା ଖାତା ଲେଖାଯିବ, ସେଥିପ୍ରତି ମୋର ବିଶେଷ ଦୃଷ୍ଟି ଥାଏ । କେଉଁ ସ୍ୟାହି, କେଉଁ ନିବ୍ ଓ କେଉଁ ପେନ୍‌ସିଲ ବ୍ୟବହାର କରାଯିବ, ତାହା ମଧ୍ୟ ମୁଁ ନିର୍ଦ୍ଦିଷ୍ଟ କରିଦେଇଥାଏ ଲେଖାର ସୌନ୍ଦର୍ଯ୍ୟ ଓ ଉତ୍କର୍ଷ ଲାଗି । ଘରୁ କଷି ଆଣିବା ପାଇଁ ଯେଉଁ ଗଣିତ ଓ ପ୍ରଶ୍ନ ଦେଇଥାଏ, ତାହାର ଉତ୍ତର ଧାରା ସହ ମୁଁ ପିଲାଙ୍କଠାରୁ ମୌଖିକ ଆଦାୟ କରେ । ତେଣୁ ସେମାନେ ବରଂ ନ କଷିବେ; କିନ୍ତୁ କପି କରିବାକୁ ସାହସ କରନ୍ତି ନାହିଁ । ଜ୍ୟାମିତି ବହି ମୁଁ କିଣାଇ ଦିଏ ନାହିଁ । ଯାହା ପଢ଼ାଏ, ସାଙ୍ଗେ ସାଙ୍ଗେ ଖାତାରେ କରାଏ । ଅନୁପସ୍ଥିତ ପିଲା ଅତିରିକ୍ତ ସମୟରେ ଅଧ୍ୟାପିତ ବିଷୟ ଅନ୍ୟ ପିଲାର ଖାତାରୁ ଲେଖି ନେବାକୁ ଆଦିଷ୍ଟ ହୁଏ ।

ଦୋହଲ ସ୍କୁଲରେ ମୁଁ ନିଜ କର୍ତ୍ତବ୍ୟ ସୁଷ୍ଠୁ ଭାବରେ ଚଳାଇ ଅନ୍ୟ ଶିକ୍ଷକମାନଙ୍କର କାର୍ଯ୍ୟ ମଧ୍ୟ ତଦାରଖ କରୁଥିଲି । ସେମାନେ ମୋ ପ୍ରଦର୍ଶିତ ତ୍ରୁଟି ଅକୁଣ୍ଠିତ ଭାବରେ ସ୍ୱୀକାର କରୁଥିଲେ ଏବଂ ସ୍କୁଲର ହିତ ଦୃଷ୍ଟିରୁ ମୋର ପରାମର୍ଶ ଆନନ୍ଦ ମନରେ ଗ୍ରହଣ କରୁଥିଲେ ।

ଦିନେ ମୁଁ ପ୍ରଥମ ପିରିଅଡ଼୍‌ରେ ମୋ ଶ୍ରେଣୀର ହାଜିରା ପକାଇ ଓ କିଛି ଲେଖିବାକୁ ଦେଇ ସ୍କୁଲ ବାହାରକୁ ଚାଲିଗଲି । ଗୋଟିଏ ବରଗଛ ମୂଳରେ ଚାରି ପାଞ୍ଚ ଜଣ ପିଲା ବସିଥିଲେ । ସେମାନଙ୍କୁ ଅଭୟ ଦେଇ ପଚାରିବାରୁ ସେମାନେ ଇଂରାଜୀ ଉପରେ ଦୁର୍ବଳ ଶ୍ରେଣୀରୁ ପଳାଇ ଆସନ୍ତି ବୋଲି ମାନିଗଲେ । ମୁଁ ସମ୍ପୃକ୍ତ ଶିକ୍ଷକଙ୍କୁ ଏହି କଥା କହିବାରୁ ସେ ଉତ୍ତର ଦେଲେ ଯେ, ପିଲାମାନେ ପ୍ରସ୍ରାବ କରିବା ବାହାନାରେ କିଏ କେତେବେଳେ ଯାଉଛନ୍ତି ତାହା ସେ ଜାଣିପାରୁ ନାହାନ୍ତି । ଶିକ୍ଷକ ଜଣକ ପୁଣି ତାଲିମ୍ ପ୍ରାପ୍ତ । ତେଣୁ ମୁଁ ଘରୁ କାଠ ପଟାରେ ଶ୍ରେଣୀନାମ ଲିଖିତ 'Pass' ପ୍ରତ୍ୟେକ ଶ୍ରେଣୀକୁ ଯୋଗାଇ ଦେଲି ଯେ, ପାସ୍ ଖଣ୍ଡିକ ଟେବୁଲ ଉପରେ ରହିବ ଏବଂ କେହି ବିନା ପାସ୍‌ରେ ପଦାକୁ ଯାଇ ପାରିବେ

ନାହିଁ । ଅଣ ଜରେଗ କାରଣ ଛଡ଼ା କେହ୍ବ ପ୍ରଥମ, ଚତୁର୍ଥ ଓ ସପ୍ତମ ପିରିଅର୍ଡ଼ରେ ପଦାକୁ ଯାଇ ପାରିବ ନାହିଁ ବୋଲି ମଧ୍ୟ ନୋଟିସ୍ ଆକାରରେ ଜଣାଇ ଦେଇଥିଲି ।

ମୁଁ କେବେ ଟିଉସନ ଦ୍ୱାରା ଧନାର୍ଜନ ଚିନ୍ତା କରିନାହିଁ । ମୋର କାର୍ଯ୍ୟ ବହୁଳ ଜୀବନ ମଧ୍ୟରେ ସେଥିପାଇଁ ସମୟ ମଧ୍ୟ ପାଇନାହିଁ । ଅନେକ ଗୃହ-ଶିକ୍ଷକଙ୍କର କାର୍ଯ୍ୟ ଦେଖି ମୁଁ ଏହି ଧାରଣାରେ ଉପନୀତ ହୋଇଅଛି ଯେ, ସେମାନେ ଆଖି ବୁଜି 'ଓଲୁକର' ଆଦାୟ କରିବାରେ ବେଶ୍ ଧୁରନ୍ଧର । ନିସ୍ପୃହ ଓ ହିତାକାଂକ୍ଷୀ ଗୃହ ଶିକ୍ଷକତା ସୁଲଭ ନୁହେଁ । ଟିଉସନ ପ୍ରଥା ଯୋଗୁଁ ଛାତ୍ର ସମାଜରେ ଜ୍ଞାନଗ ନ୍ୟୂନତା ଘଟୁଛି ଏବଂ ଶିକ୍ଷକ ତଥା ଛାତ୍ର ଉଭୟଙ୍କର ନୈତିକତା ବ୍ୟାହତ ହେଉଛି ।

ବଗିଚାରେ କାମ କରିବା ମୋର ଏକତମ ପ୍ରିୟ କାର୍ଯ୍ୟ । ସ୍କୁଲର କାର୍ଯ୍ୟ ନିର୍ଘଣ୍ଟରେ ଗ୍ରେରେନିଯାର ଶ୍ରେଣୀ ପାଇଁ ଏଥି ସକାଶେ ପିରିଅଡ୍ ରଖାଯାଇଥିଲି । ପ୍ରତି ଶ୍ରେଣୀରେ ୩୦।୪୦ ଜଣ ପିଲା ଥିଲେ । ଏତେ ଗୁଡ଼ିଏ ପିଲାଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଶୃଙ୍ଖଳାର ସହିତ କାର୍ଯ୍ୟ କରାଇ ଫାଇଦା ଉଠାଇବା ଉଦ୍ଦେଶ୍ୟରେ ମୋତେ କମ୍ ଚିନ୍ତା କରିବାକୁ ପଡୁ ନଥିଲା । ସେଥିପାଇଁ ଆବଶ୍ୟକ ପରିମାଣରେ କୋଡ଼ି କୋଦାଳ ଇତ୍ୟାଦି ରଖିଥିଲି । ଅନ୍ୟ ଶିକ୍ଷକମାନେ ଅଫିସ ଘରେ ବସି ପିଲାମାନଙ୍କୁ କାମ କରିବାକୁ ପଠାଇ ଦିଅନ୍ତି । ମାତ୍ର ମୁଁ ନିଜେ ପିଲାଙ୍କ ସାଙ୍ଗରେ ବାଇଗଣ କଆଁରୁ ପୋକ ମାରିବା, ଟେଣ୍ଡାରେ ପାଣି ଉଠାଇବା ଇତ୍ୟାଦି କାର୍ଯ୍ୟ କରିବାରେ ଆନନ୍ଦ ଲାଭ କରେ ।

ପିଲାମାନେ ସାଧାରଣତଃ ନୀରବ ଭାବରେ ପଢ଼ିବାରେ ଅଭ୍ୟସ୍ତ । ମୋର ଅଭିଜ୍ଞତାରୁ ମୁଁ ଜାଣେ ଯେ, ତଦ୍ୱାରା—

୧ । ପଢୁ ପଢୁ ଆକସ୍ମିକ ଭାବରେ ନିଦ୍ରା ଆକ୍ରମଣ କରେ ।

୨ । ସହଜରେ ଅମନୋଯୋଗିତା ଆସେ ।

୩ । ପ୍ରତ୍ୟେକ ଶବ୍ଦ ସହିତ ପୂର୍ଣ୍ଣ ପରିଚୟ ଘଟିବାରେ ବାଧା ଜାତ ହୁଏ । ତେଣୁ ପିଲା 'ସାହାଯ୍ୟ' ନ ଲେଖି 'ସାହାର୍ଯ୍ୟ', 'ସୌନ୍ଦର୍ଯ୍ୟ' ନ ଲେଖି 'ସୌନ୍ଦର୍ଯ୍ୟ', 'ପ୍ରଭୃତି' ସ୍ଥଳରେ 'ପ୍ରଭୁତି' ଓ 'କୃଷ୍ଣ' ସ୍ଥାନରେ 'କ୍ରୁଷ୍ଣ' ଲେଖିଥାନ୍ତି ।

୪ । ବିଷୟଟି ମନେ ରଖିବା ପାଇଁ ବହୁତ ସମୟ ଲାଗେ ।

୫ । ଘରେ ଥିବା ଅଭିଭାବକ ପିଲା ପଢ଼ୁଛି କି ଶୋଇଛି, ତାହା ଜାଣି ପାରନ୍ତି ନାହିଁ । ତେଣୁ ଶାସନ କରି ପାରନ୍ତି ନାହିଁ ।

ଏଥିଯୋଗୁଁ ମୁଁ ପିଲାମାନଙ୍କୁ ଘରେ ଉଚ୍ଚ ସ୍ୱରରେ ପଢ଼ିବା ପାଇଁ ପରାମର୍ଶ ଦିଏ ।

ପିଲାମାନେ ସ୍କୁଲକୁ ଆସିବା ବେଳେ ଓ ଘରକୁ ଫେରିବା ବେଳେ ପରସ୍ପର ମଧ୍ୟରେ ଅଯଥା କଳହ ଲଗାଇବା, ଅଶ୍ଳୀଳ ଶବ୍ଦ ଉଚ୍ଚାରଣ କରିବା ଓ କାନ୍ଥ ବାଡ଼ରେ ସେଗୁଡ଼ିକ ଲେଖିବା, ଦଳବଦ୍ଧ ହୋଇ ବାଟରେ ଚାଷୀର ଫସଲ ଲୁଟ୍ କରିବା ଇତ୍ୟାଦି ନାନାବିଧ ଅଭିଯୋଗ-ଯୋଗ୍ୟ ଘଟଣାରେ ପ୍ରବୃତ୍ତ ହେବାର ଦେଖାଯାଏ । ଏହି ଦୋଷ ନିରାକରଣ ପାଇଁ ଉପରୋକ୍ତ ଅବସର ସମୟରେ ମୁଁ ସେମାନଙ୍କୁ ଓଡ଼ିଆ ଓ ଇଂରାଜୀ ବ୍ୟାକରଣର କଠିନ ସୂତ୍ରମାନ ନିଜ ନିଜ ମଧ୍ୟରେ ଆଲୋଚନା କରି ଆୟତ୍ତ କରିବାକୁ ଏବଂ ସାହିତ୍ୟ ପୁସ୍ତକର ଗଦ୍ୟାଂଶ ଓ ପଦ୍ୟ ଇଂରାଜୀ ବହିର ଶ୍ରେଷ୍ଠ ଶ୍ରେଷ୍ଠ କବିତା ମୁଖସ୍ଥ କରିବାକୁ ଆଦେଶ ଦେଇଥାଏ । ସେମାନେ ପ୍ରକୃତରେ ଆଦେଶ ପାଳନ କରୁଛନ୍ତି କି ନାହିଁ ଜାଣିବା ପାଇଁ ମୁଁ ଦିନେ ଦିନେ ହଠାତ୍ ସେମାନଙ୍କୁ ପୃଥକ ଭାବରେ ବସାଇ ସେମାନେ ସେ ଦିନ କଅଣ ଆଲୋଚନା କରିଥିଲେ ତାହା ଲେଖିଦେବା ପାଇଁ କହେଁ । ଏହି ଉପାୟରେ ସତ୍ୟାସତ୍ୟ ଧରା ପଡ଼ିଯାଏ । ମୁଁ ଅବଶ୍ୟ ସପ୍ତମ ଶ୍ରେଣୀର ପିଲାମାନଙ୍କ ପ୍ରତି ଏ ବିଷୟରେ ବେଶୀ ଜୋର ଦେଉଥିଲି । ଯେହେତୁ ସେମାନଙ୍କ ପକ୍ଷରେ କେନ୍ଦ୍ର-ପରୀକ୍ଷା ବେଶୀ ଗୁରୁତ୍ୱପୂର୍ଣ୍ଣ ଥିଲା । ସେମାନଙ୍କ ପ୍ରତ୍ୟେକ ମୁହୂର୍ତ୍ତକୁ ମୁଁ କାର୍ଯ୍ୟରେ ଲଗାଇବା ପାଇଁ ବ୍ୟାକୁଳ ହେଉଥିଲି ।

ମୁଁ ଛାତ୍ରମାନଙ୍କୁ ସାହିତ୍ୟ ପୁସ୍ତକର ଦୈନିକ ପାଠ୍ୟ ଅନ୍ତତଃ ପାଞ୍ଚଥର ଉଚ୍ଚ ସ୍ୱରରେ ପଢ଼ିବାକୁ କହେ । ଏପରି ପଢ଼ିଲେ ସେମାନେ ସ୍ୱତଃ ଦୁର୍ବୋଧ୍ୟ ଶବ୍ଦ ଓ ବାକ୍ୟାଂଶ ବୁଝି ପାରିବେ ଏବଂ ସେଗୁଡ଼ିକ ଏପରି ମନେ ରହିଯିବ ଯେ, ସେମାନେ ପ୍ରବନ୍ଧ ଲେଖିବା ବେଳେ ସେଗୁଡ଼ିକ ବ୍ୟବହାର କରି ଲେଖାକୁ ସୁନ୍ଦର ଓ ବଳିଷ୍ଠ କରି ପାରିବେ । ପ୍ରତ୍ୟେକ ପିଲା ଅନ୍ତତଃ ପାଞ୍ଚଥର ପଢ଼ିଛି କି ନାହିଁ ଜାଣିବା ପାଇଁ ମୁଁ

ନାନା କୌଶଳ ଉଦ୍‌ଭାବନ କରେ ଏବଂ ମୋର ଶିକ୍ଷଣ ଦଶାରେ ଗ୍ରନ୍ଥର ପ୍ରଚାରଣା ପ୍ରତିହତ ହୁଏ । ଉଦାହରଣ ସ୍ୱରୂପ—ଅନ୍ଧକାରମୟ କାଠଶୀତାଷ୍ଟ ଗୃହରେ ଶ୍ରମାପନୋଦକାରିଣୀ ନିଦ୍ରା ହୁଏ । ମୁଁ ପିଲାକୁ ପଚାରେ, ଅନ୍ଧକାରମୟ—ଗୃହରେ—ନିଦ୍ରା ହୁଏ । ପିଲା ଭଲ ପଢ଼ିଥିଲେ ଶୂନ୍ୟସ୍ଥାନ ପୂରଣ କରିଦିଏ, ଅଥଚ ସେ ଶବ୍ଦର ଅର୍ଥ ଜାଣି ନ ଥାଏ । ସାହିତ୍ୟ ଜ୍ଞାନର ଉତ୍କର୍ଷ ପାଇଁ ମୁଁ ଅନେକ ସମୟରେ ପାଠ୍ୟ ପୁସ୍ତକର ଅନ୍ତର୍ଗତ ସୁନ୍ଦର ଭାବ ଓ ଶବ୍ଦ ସମ୍ବଳିତ ବାକ୍ୟ ପରମ୍ପରା ପିଲାମାନଙ୍କୁ ମୁଖସ୍ଥ କରିବାକୁ ବାଧ୍ୟ କରିଥାଏ ।

## ରଚନା ଖାତା ସଂଶୋଧନ

(ଶିକ୍ଷକ ଦର୍ପଣ ୨ୟ ବର୍ଷ ୧ମ ସଂଖ୍ୟାରେ ପ୍ରକାଶିତ)

ପାଠ୍ୟ ବିଷୟର ଆଲୋଚନା ଓ ଅଧ୍ୟାପନା କୌଶଳ ସଂକ୍ରାନ୍ତ ଲେଖା ପ୍ରକାଶ ପାଉ ବୋଲି ଅନେକ ଶିକ୍ଷକ ମତ ପ୍ରକାଶ କରୁଛନ୍ତି । ସେହି ଦୃଷ୍ଟିରୁ ପିଲାଙ୍କ ରଚନା ଖାତା ସଂଶୋଧନ ସମ୍ବନ୍ଧରେ ମୁଁ କିଛି ତଥ୍ୟ ପରିବେଷଣ କରିବାକୁ ଯାଉଛି । ଶିକ୍ଷକ ଜୀବନରେ ଶହ ଶହ ରଚନା ଖାତା ଦେଖିବାକୁ ପଡ଼ୁଛି । ପିଲାମାନେ ନାନା ପ୍ରକାର ଭୁଲ୍ କରିଥାନ୍ତି । ଯେଉଁ ଭୁଲଗୁଡ଼ିକ ଅତି ସାଧାରଣ, ସେହିପରି କେତୋଟି ମାତ୍ର ଏଠାରେ ଲେଖି ତାହାର ସଂଶୋଧନ ଦେଖାଇ ଦେଉଛି ।

ଅଶୁଦ୍ଧ—୧ । ବିଲରେ ଥିବା ନଳିତା ଗଛ ତାହା ପାଣିରେ ବୁଡ଼ିଯାଏ ।

ଶୁଦ୍ଧ—ବିଲରେ ଥିବା ନଳିତା ଗଛ ପାଣିରେ ବୁଡ଼ିଯାଏ ।

( ଗୋଟିଏ ବାକ୍ୟରେ ଦୁଇଟା କର୍ତ୍ତା ରହିବ ନାହିଁ । ପୂର୍ଣ୍ଣଚ୍ଛେଦ ପାଇଁ ଗୋଟିଏ ଗାର ଦିଆଯାଏ । )

ଅଶୁଦ୍ଧ—୨ । ବର୍ଷା ଆରମ୍ଭ ହେଲେ ଧାନ ବୁଣନ୍ତି ।।

ଶୁଦ୍ଧ—ବର୍ଷା ଆରମ୍ଭ ହେଲେ ଧାନ ବୁଣାଯାଏ ବା ଲୋକେ ଧାନ ବୁଣନ୍ତି ।

( "ବୁଣନ୍ତି" କ୍ରିୟାର କର୍ତ୍ତା ଦେବାକୁ ହେବ କିମ୍ବା ବୁଣାଯାଏ କ୍ରିୟା ବସିବ ! ସମାପିକା କ୍ରିୟା ପରେ ପୂର୍ଣ୍ଣଚ୍ଛେଦ ବ୍ୟବହାର କରାଯିବ । )

ଅଶୁଦ୍ଧ—୩ । ଜଣେ ଖେଳାଳି ଖେଳ ଦେଖି ୨ ଚଢ଼ିଗିବାରୁ ସେ ପିଲାଟି ମରିଗଲା ।

ଶୁଦ୍ଧ—ଜଣେ ଖେଳାଳି ଖେଳ ଦେଖି ଦେଖି ପଡ଼ିଯିବାରୁ ମରିଗଲା ।

(ଯୁଗ୍ମ ଶବ୍ଦ ପାଇଁ ୨ ଲେଖା ହେବା ଅସୁନ୍ଦର ! ମରିଗଲା କ୍ରିୟାର କର୍ତ୍ତା ଥାଉଁ ଥାଉଁ "ସେ ପିଲାଟି" ଲେଖିବା ଅନାବଶ୍ୟକ ! )

ଅଶୁଦ୍ଧ—୪ । ହାଟରେ ଅନେକ ଜିନିଷ ବିକ୍ରି ହୁଏ, ଯଥା—ଚାଉଳ ମୁଗ ଲୁଗା ପ୍ରଭୃତି ବିକାଯାଏ ।

ଶୁଦ୍ଧ—ହାଟରେ ଅନେକ ଜିନିଷ ବିକ୍ରି ହୁଏ; ଯଥା—ଚାଉଳ, ମୁଗ ଓ ଲୁଗା ପ୍ରଭୃତି ।

ଅଥବା

ହାଟରେ ଚାଉଳ, ମୁଗ ଓ ଲୁଗା ପ୍ରଭୃତି ଅନେକ ଜିନିଷ ବିକ୍ରି ହୁଏ ।

('ଯଥା' ପୂର୍ବରୁ ସେମିକୋଲନ ଓ ପରେ ଡ୍ୟାଶ ଚିହ୍ନ ଦିଆଯାଏ । ଏକାଧିକ ଜିନିଷ ବା ନାମ ଲେଖାଗଲେ ପ୍ରତ୍ୟେକ ନାମ ପରେ କମା ଓ ସର୍ବଶେଷ ନାମ ପୂର୍ବରୁ "ଓ", "କିମ୍ବା", "ଏବଂ" ବ୍ୟବହାର କରାଯାଏ । )

ଅଶୁଦ୍ଧ—୫ । ନଈ ବଢ଼ିଲେ ଘର ଭାଙ୍ଗିଯାଏ ଆଉ ତ ମଧ୍ୟ ମଣିଷ ଗୋରୁ ଛେଳି ପ୍ରଭୃତିଙ୍କୁ ଭସାଇ ନିଏ !

ଶୁଦ୍ଧ—ନଈ ବଢ଼ିଲେ ଘର ଭାଙ୍ଗିଯାଏ, ଆଉ ମଧ୍ୟ ମଣିଷ ଓ ଗୋରୁଛେଳି ପ୍ରଭୃତି ଭାସିଯାନ୍ତି !

( 'ତ' ଓ 'ଆଉମଧ୍ୟ' ଏକାର୍ଥ ବାଚକ । "ଭାଙ୍ଗିଯାଏ" ଧାଙ୍କୁ "ଭାସିଯାନ୍ତି" ହେବ । 'ଭସାଇ ନିଏ' ଲେଖିଲେ 'ଭାଙ୍ଗିଦିଏ' ଲେଖିବାକୁ ହେବ ! )

ଅଶୁଦ୍ଧ—୬ । ପର୍ବତମାନଙ୍କରେ ବହୁତ ବର୍ଷା ହେଲେ ସେ ପାଣି ସବୁ ଆସି ନଈରେ ପଡ଼େ । ନଈରେ ପଡ଼ିବାରୁ ନଈର ପାଣି ବହୁତ ହୋଇଯାଏ ! ନଈ ପାଣି ବହୁତ ହୋଇଗଲେ ନଈ ବଢ଼େ ।

ଶୁଦ୍ଧ—ପର୍ବତରେ ବହୁତ ବର୍ଷା ହେଲେ ସେହି ପାଣି ବହି ଆସି ନଈରେ ପଡ଼େ । ତେଣୁ ସେଥିରେ ବେଶୀ ପାଣି ହୋଇଯାଏ ଓ ଫଳରେ ନଈ ବଢ଼ି ହୁଏ ।

('ପର୍ବତମାନଙ୍କରେ' ନ ଲେଖି 'ପର୍ବତରେ' ଲେଖିଲେ ସୁନ୍ଦର ହେବ । 'ପାଣି' ବସ୍ତୁବାଚକ ବିଶେଷ୍ୟ ହୋଇଥିବାରୁ ତାହାର ବହୁବଚନ ହେବ ନାହିଁ । "ପଡ଼େ" ସମାପିକା କ୍ରିୟା ହେତୁ ତାପରେ ପୂର୍ଣ୍ଣଚ୍ଛେଦ ରହିବ । "ନଈରେ ପଡ଼େ" ଓ "ନଈରେ ପଡ଼ିବାରୁ" ଏବଂ "ନଈର ପାଣି ବହୁତ ହୋଇଯାଏ" ଓ "ନଈ ପାଣି ବହୁତ ହୋଇଗଲେ" ଏକ ପ୍ରକାର ଶବ୍ଦ ବାରମ୍ବାର ବ୍ୟବହୃତ ହୋଇଥିବାରୁ ଶ୍ରୁତିକଟୁ ଦୋଷ ଘଟୁଛି । ଏହି କାରଣରୁ 'ତେଣୁ' 'ଫଳରେ' ଓ 'ସେଥିରେ' (ସର୍ବନାମ) ବ୍ୟବହାର କରାଗଲା । ଦରକାର ପଡ଼ିଲେ ଗୋଟାଏ ପ୍ରକାର ଶବ୍ଦ ବାରମ୍ବାର ପ୍ରୟୋଗ ନ କରି ଏକାର୍ଥବୋଧକ ଭିନ୍ନ ଭିନ୍ନ ଶବ୍ଦ ବସାଇବା ଉଚିତ । ବାରମ୍ବାର 'ବହୁତ' ନ ଲେଖି କେଉଁଠି 'ଅଧିକ', କେଉଁଠି 'ବେଶୀ' କେଉଁଠି ବା 'ପ୍ରଚୁର' ବ୍ୟବହାର କରାଯିବ । )

ଅଶୁଦ୍ଧ—୬ । ଆଜକୁ ୩ ବର୍ଷ ହେଲା ଯେଉଁ ନଈବଢ଼ି ହୋଇଥିଲା ସେଥିରେ ଅନେକ ମଣିଷ ଗୋରୁ ଓ ଘରଦ୍ୱାର ସବୁ ଭସାଇ ନେଇଥିଲା ।

ଶୁଦ୍ଧ—ଆଜକୁ ତିନି ବର୍ଷ ହେଲା ଯେଉଁ ନଈ ବଢ଼ି ହୋଇଥିଲା, ସେଥିରେ ଅନେକ ମଣିଷ, ଗୋରୁ ଗାଈ ଓ ଘରଦ୍ୱାର ଭାସି ଯାଇଥିଲା (ଯାଇଥିଲେ) ।

କମା

ଆଜକୁ........ହୋଇଥିଲା, ତାହା ଅନେକ.........ଭସାଇ ନେଇଥିଲା ।

("ଅଙ୍କ" ବଦଳରେ "ଅକ୍ଷର" ବ୍ୟବହାର କରିବା ଉଚିତ । ସମାପିକା କ୍ରିୟା ଅସମାପିକା ରୂପ ଧରିଥିଲେ ତାହା ପରେ "କମା" ଚିହ୍ନ ଦିଆଯିବ । 'ଭସାଇ ନେଇଥିଲା' ଏହି କ୍ରିୟାର କର୍ତ୍ତା ନଥିବାରୁ "ତାହା" ଲେଖାଗଲା । ଯଦି "ସେଥିରେ" ଶବ୍ଦ ବ୍ୟବହାର କରାଯିବ, ଏଥିପାଇଁ କ୍ରିୟା ବଦଳାଯିବ । 'ଅନେକ' ଏହି ବହୁବଚନ ଶବ୍ଦ ଥିବାରୁ ପୁଣି ଆଉ

ଗୋଟାଏ ବହୁବଚନ ଶବ୍ଦ 'ସବୁ' ଦରକାର ନାହିଁ ! ଗୋରୁ, ଗାଈ କମ୍ବା ଗଛ, ଲତା ଅଥବା ଫଳ, ମୂଳ—ଏପରି ନ ଲେଖି ଗୋରୁଗାଈ, ଗଛଲତା କମ୍ବା ଫଳମୂଳ ଲେଖିବା ସୁନ୍ଦର । )

ଅଶୁଦ୍ଧ—୮ । ସିଂହ ମୂଷିକକୁ କହିଲା ତୁ କାହିଁକି ମୋ ଉପରେ ଚଢ଼ିଲୁ ।

ଶୁଦ୍ଧ—ସିଂହ ମୂଷିକକୁ କହିଲା, "ତୁ କାହିଁକି ମୋ ଉପରେ ଚଢ଼ିଲୁ ?"

("କହିଲା" ପାଖରେ "କମା" ଦିଆ ଯିବାର କାରଣ ଉପରେ ବୁଝାଇ ଦିଆଯାଇଛି ଦେଖ ! ସିଂହ ପଚାରି ଥିବାରୁ ବାକ୍ୟ ଶେଷରେ ପ୍ରଶ୍ନ ଚିହ୍ନ ଦିଆଯିବ ! ସିଂହ ଯାହା କହିଥିଲା, ଠିକ୍ ସେହି କଥା ଲେଖା ଯିବାରୁ ଉଦ୍ଧୃତ ("    ") ଚିହ୍ନ ବ୍ୟବହାର କରାଯିବ । )

ଅଶୁଦ୍ଧ—୯ । ବର୍ତ୍ତମାନ ଗ୍ରାମର ଅବସ୍ଥା ଅତି ଶୋଚନୀୟ-ହୋଇ ପଡ଼ୁଛି ! ଗ୍ରାମବାସୀମାନେ ସ୍ୱାସ୍ଥ୍ୟରକ୍ଷାର ନିୟମ ଜାଣନ୍ତି ନାହିଁ ।

ଶୁଦ୍ଧ—ବର୍ତ୍ତମାନ ଗ୍ରାମର ଅବସ୍ଥା ଅତି ଶୋଚନୀୟ ହୋଇ ପଡ଼ୁଛି । ଗ୍ରାମବାସୀମାନେ ସ୍ୱାସ୍ଥ୍ୟରକ୍ଷାର ନିୟମ ଜାଣନ୍ତି ନାହିଁ ।

(ପୂରା ଶବ୍ଦଟି ଲେଖିବାକୁ ଜାଗା ନ ହେଲେ ଶବ୍ଦଟିକୁ ଦୁଇଭାଗ କରି ହାଇଫେନ୍ (-) ଚିହ୍ନ ବ୍ୟବହାର କରାଯିବ ! ସେହି ଭାଗ କରିବାରେ ମଧ୍ୟ ସାବଧାନତା ଦରକାର । ନିମ୍ନଲିଖିତ ଶବ୍ଦ ଗୁଡ଼ିକ ହାଇଫେନ୍ ଦ୍ୱାରା କପରି ବିଭକ୍ତ ହୋଇଛି, ଲକ୍ଷ୍ୟ କରାଯାଉ । ଯଥା—ସର୍ବ-ସାଧାରଣ (ସର୍ବସା-ଧାରଣ ନୁହେ), ଗ୍ରାମବାସୀ-ମାନେ, କେତେ-ବେଳେ, ଶୀତ-ପ୍ରଧାନ (ଶୀତପ୍ର-ଧାନ ନୁହେଁ) ! ତିନୋଟି ଅକ୍ଷର ବିଶିଷ୍ଟ ଶବ୍ଦକୁ ଭାଗ କରାଯିବ ନାହିଁ । )

ଅଶୁଦ୍ଧ—୧୦ । ଆମ୍ଭେମାନେ ଖବର ପାଉ ଯେ ଗ୍ରାମରେ ୧୫୦୦ ଶହ ଲୋକ ବାସ କରନ୍ତି ।

ଶୁଦ୍ଧ - ଆମ୍ଭେମାନେ ଖବର ପାଉଁ ଯେ ଗ୍ରାମରେ ୧୫ ଶହ (୧୫୦୦) ଲୋକ ବାସ କରନ୍ତି ।

(ତୁ ପାଉ, ତୁ ଲେଖୁ, ମାତ୍ର ଆମ୍ଭେମାନେ ପାଉଁ, ଲେଖୁଁ, ଯାଉଁ ଇତ୍ୟାଦି ହେବ ।

ଅଶୁଦ୍ଧ—୧୧ । ଗ୍ରାମ, ମନୁଷ୍ୟ, ପଶୁ, ପକ୍ଷୀ ପ୍ରଭୃତି ଅନେକ ଜୀବଜନ୍ତୁ ଭସାଇ ନଏ ।

ଶୁଦ୍ଧ—ଗ୍ରାମ ଏବଂ ମନୁଷ୍ୟ, ପଶୁପକ୍ଷୀ ପ୍ରଭୃତି ଅନେକ ଜୀବଜନ୍ତୁ ଭସିଯାନ୍ତି ।

କିମ୍ବା

ନଈବଢ଼ି ଗ୍ରାମ ଏବଂ ମନୁଷ୍ୟ, ପଶୁପକ୍ଷୀ ପ୍ରଭୃତି ଅନେକ ଜୀବଜନ୍ତୁ ଭସାଇ ନଏ ।

(କର୍ତ୍ତା ନ ଥିବାରୁ 'ଭସାଇ ନଏ' କ୍ରିୟା ବସିବ ନାହିଁ । 'ଗ୍ରାମ' ଜୀବଜନ୍ତୁ ଶ୍ରେଣୀର ନୁହେଁ । ତେଣୁ ଗ୍ରାମ ପରେ 'ଏବଂ' ବ୍ୟବହାର କରାଯିବ । )

ଅଶୁଦ୍ଧ—୧୨ । ନଈବଢ଼ି ଦ୍ୱାରା ଜମିମାନଙ୍କରେ ପଟୁ ପକାଏ ।

ଶୁଦ୍ଧ—ନଈବଢ଼ି ଦ୍ୱାରା ଜମିମାନଙ୍କରେ ପଟୁ ପଡ଼େ, କିମ୍ବା ନଈବଢ଼ି ଜମିମାନଙ୍କରେ ପଟୁ ପକାଏ ।

ଅଶୁଦ୍ଧ—୧୩ । ଏହାର ଦୁଇ ପାର୍ଶ୍ୱରେ ଅନେକ ବୃକ୍ଷଲତା ଓ ପାହାଡ଼ ରହିଥିବାରୁ ଏହାର ସୌନ୍ଦର୍ଯ୍ୟ ବଢ଼ାଉଅଛି ।

ଶୁଦ୍ଧ—ଏହାର ଦୁଇ ପାର୍ଶ୍ୱରେ ଅନେକ ବୃକ୍ଷଲତା ଓ ପାହାଡ଼ ରହିଥିବାରୁ ଏହାର ସୌନ୍ଦର୍ଯ୍ୟ ବଢ଼ୁଅଛି ।

କିମ୍ବା

ଏହାର ଦୁଇ ପାର୍ଶ୍ୱରେ ଅନେକ ବୃକ୍ଷଲତା ଓ ପାହାଡ଼ ରହି ସୌନ୍ଦର୍ଯ୍ୟ ବଢ଼ାଉଅଛି ।

( 'ଏହାର' ଥରେ ବ୍ୟବହାର କଲେ ସୁନ୍ଦର ହେବ । )

ଅଶୁଦ୍ଧ—୧୪ । ମୁଁ ବଡ଼ ହୋଇ ଯିବାରୁ ମୋତେ ବନ୍ଦି କରି ଟଙ୍କା ଆଣନ୍ତି ।

ଶୁଦ୍ଧ—ମୁଁ ବଡ଼ ହୋଇଗଲେ ଲୋକେ ମୋତେ ବନ୍ଦି କରି ଟଙ୍କା ଆଣନ୍ତି ।

( 'ଆଣନ୍ତି' କ୍ରିୟାର କର୍ତ୍ତା ବାଛିବାକୁ ହେବ

ଅଶୁଦ୍ଧ—୧୫ । ଯେତେବେଳେ ମୁଁ ମୋଟା ହୋଇଯିବ, ସେତେବେଳେ ମୋତେ ହାଣି ମାଂସ ଖାଆନ୍ତୁ ।

ଶୁଦ୍ଧ—ଯେତେବେଳେ ମୁ ମୋଟା ହୋଇଯିବ, ସେତେବେଳେ ଲୋକେ ମୋତେ ହାଣି ମାଂସ ଖାଇବେ ।

କମ୍ବା

.........ହୋଇଯାଏ,.........ଖାଆନ୍ତୁ ।

('ଆଣନ୍ତୁ' କ୍ରିୟାର କର୍ତ୍ତା ବସିବ । ଗୋଟାଏ ବାକ୍ୟରେ ଦୁଇଟା କାଳର କ୍ରିୟା ବସିବ ନାହିଁ । )

ଅଶୁଦ୍ଧ—୧୬ । ବର୍ଷା ଦିନେ ପୋଖରୀ କୂଅ ଇତ୍ୟାଦିରେ ପାଣି ଥିବାରୁ ଲୋକମାନେ ନଈକୁ ନ ଆସି ଗଡ଼ିଆ କୂପ ଇତ୍ୟାଦିରେ ଗାଧୁଅନ୍ତି ।

ଶୁଦ୍ଧ—ବର୍ଷାଦିନେ .....ଲୋକମାନେ ନଈକୁ ନ ଆସି ତହିଁରେ ଗାଧୁଅନ୍ତି ।

(ସର୍ବନାମ ବସାଇଲେ ଶ୍ରୁତିକଟୁ ଦୋଷ କଟିଯାଏ । ଗୋଟାଏ ଜାଗାରେ ପୋଖରୀ କୂଅ ଓ ଅନ୍ୟ ଜାଗାରେ ଗଡ଼ିଆ କୂଅ ଲେଖିବା ସୁନ୍ଦର ନୁହେଁ । 'ପୋଖରୀ କୂଅ' ନ ଲେଖି 'କୂଅ ପୋଖରୀ' ଲେଖାଯାଏ । ଯେମିତି ହର ପାର୍ବତୀ, ରାଧା ମାଧବ, ଧର୍ମ ଦଣ୍ଡ । )

ଅଶୁଦ୍ଧ—୧୭ । ଅନେକ ଲୋକ ଗାଧୋଇବାକୁ ଆସନ୍ତି । ୨।୩ ମାଇଲ ଦୂରର ଲୋକ ଗାଧୋଇବାକୁ ଆସନ୍ତି ।

ଶୁଦ୍ଧ—ଅନେକ ଲୋକ ଗାଧୋଇବାକୁ ଆସନ୍ତି । ଦୁଇ ତିନ ମାଇଲ ଦୂରର ଲୋକେ ବ ଆସିବାକୁ ପଛାନ୍ତି ନାହିଁ ।

(ଦୁଇଟାଯାକ ବାକ୍ୟରେ ସମାନ କ୍ରିୟା ହେଉ ଶ୍ରୁତିକଟୁ ଦୋଷ ଘଟୁଛି । ପ୍ରବନ୍ଧ ଲେଖାରେ ଅଙ୍କ ବ୍ୟବହାର ଭଲ ନୁହେଁ । )

ଅଶୁଦ୍ଧ—୧୮ । କଏ ବନସି ପକାଇ ମାଛ ଧରେ, କଏ ଜାଲ ପକାଇ ମାଛ ଧରେ । ଏହିପରି ନାନା ଉପାୟରେ ମାଛ ଧରନ୍ତି ।

ଶୁଦ୍ଧ—କଏ ବନସି ପକାଇ, କଏ ବା ଜାଲ ସାହାଯ୍ୟରେ ମାଛ ଧରେ । ଏହିପରି ନାନା ଉପାୟରେ ମାଛ ଧରାଯାଏ ।

କମ୍ବା

କଏ ବନସି, କଏ ବା ଜାଲ ପକାଇ ମାଛ ଧରେ । ଏହିପରି ନାନା ଉପାୟରେ ମାଛ ଧରାଯାଏ ।

( 'ପକାଇ ମାଛ ଧରେ' ଦୁଇଥର ବ୍ୟବହାର କରଯିବା ଅସୁନ୍ଦର । 'ଧରନ୍ତି' ଏ ସ୍ଥାର କର୍ତ୍ତା ନ ଥିବାରୁ 'ଧରାଯାଏ' ଲେଖାଯିବ । )

ଅଶୁଦ୍ଧ—୧୯ । ତଳ ପାଟିରେ ଦାନ୍ତ ଅଛୁ । ଉପର ପାଟିରେ ଦାନ୍ତ ନ ଥାଏ ।

ଶୁଦ୍ଧ—ତଳ ପାଟିରେ ଦାନ୍ତ ଅଛୁ, ଉପର ପାଟିରେ ଦାନ୍ତ ନାହିଁ ।

କମ୍ବା

ତଳ ପାଟିରେ ଦାନ୍ତ ଥାଏ । ଉପର ପାଟିରେ ଦାନ୍ତ ନ ଥାଏ ।

କମ୍ବା

ତଳ ପାଟିରେ ଦାନ୍ତ ଅଛୁ, ମାତ୍ର ଉପର ପାଟିରେ ନାହିଁ ।

('ଅଛୁ' ସାଙ୍ଗକୁ 'ନାହିଁ' ଏବଂ 'ନ ଥାଏ' ସାଙ୍ଗକୁ 'ଥାଏ' ଲେଖାଯିବା ଉଚିତ । 'ଉପର ପାଟିରେ' ପରେ 'ଦାନ୍ତ' ନ ଲେଖିଲେ ସୁନ୍ଦର । )

---

# ଶିକ୍ଷକ ସଂଘ ପ୍ରତିଷ୍ଠା

## ଅଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ

ଦୋହଲା ସହଯୋଗ ମ. ଇ. ସ୍କୁଲ ଏବଂ ଦୋହଲା ମଡ଼େଲ ହାଇସ୍କୁଲରେ ମୁଁ ଦୀର୍ଘ ୧୮ ବର୍ଷ ପର୍ଯ୍ୟନ୍ତ କାମ କରିଥିଲି । ମ: ଇ: ସ୍କୁଲ ବାର ବର୍ଷ କାଳ ସରକାରୀ ଅନୁଦାନ ପାଇବାରୁ ବଞ୍ଚିତ ହୋଇ ଥିଲା ଏବଂ ହାଇସ୍କୁଲ ତାହା ପାଇବା ପରେ ପରେ ମୁଁ ସ୍କୁଲ ଛାଡ଼ିଥିଲି । ଉଭୟ ସ୍କୁଲରେ ବିଧିବଦ୍ଧ ପରିଚାଳନା ସମିତି ଥିଲେହେଁ ସବୁ ଦାୟିତ୍ୱ ମୋ ଉପରେ ନ୍ୟସ୍ତ ଥିଲା, ଯେହେତୁ ସମିତିର କୌଣସି ସଭ୍ୟ ସକ୍ରିୟ ଭାବରେ କିଛି କରିପାରୁ ନ ଥିଲେ; ଅଧିକନ୍ତୁ ମୋର ଅକ୍ଳାନ୍ତ ପରିଶ୍ରମ; ବହୁମୁଖୀ ଚିନ୍ତା ଓ ସମ୍ପୂର୍ଣ୍ଣ ସ୍ୱାର୍ଥତ୍ୟାଗ ଅନ୍ୟମାନଙ୍କୁ ଶକ୍ତି ଖଟେଇବାକୁ ସୁଯୋଗ ଦେଉ ନ ଥିଲା । ଏ କଥା ସତ ଯେ, ମୁଁ ନିୟମିତ ଭାବରେ ସମିତିର ସଭା କରିଉଥିଲି ଓ ମୋର ପ୍ରସ୍ତାବ ସେମାନଙ୍କ ଦ୍ୱାରା ଗୃହୀତ କରାଇ ନେଉଥିଲି । ମୋର ମନରେ ଥିଲା, କୌଣସି ସଭ୍ୟ ନ କହନ୍ତୁ ଯେ, ମୁଁ ମୋ ମନକୁ ମନ କାମ କରିଯାଉଛି, କାହାରିକୁ ପଚାରୁ ନାହିଁ । ପ୍ରତିଦିନ ସ୍କୁଲର ଅଗ୍ରଗତି ଘଟୁଥିବା ସେମାନେ ଲକ୍ଷ୍ୟ କରୁଥିଲେ । ସ୍କୁଲ ପାଇଁ କେବେହେଁ ସେମାନଙ୍କ ପାଖରେ ଅର୍ଥ ସାହାଯ୍ୟ ଲୋଡ଼ି ନାହିଁ ଏବଂ ସେମାନଙ୍କୁ ବେଖାତିର କରି ନାହିଁ । ଏହିସବୁ କାରଣରୁ ସମସ୍ତେ ମୋ ଉପରେ ଅତୀବ ସନ୍ତୁଷ୍ଟ ଥିଲେ ।

ଏହି ପରିଚାଳନା ସମିତି ଏକ ପ୍ରକାର ପରାମର୍ଶଦାତା ସମିତି ଭଳି ଥିଲା । ସମିତିର କୌଣସି ସଭ୍ୟ କେବେହେଲେ ମୋର କାର୍ଯ୍ୟରେ ହସ୍ତକ୍ଷେପ କରି ନାହାନ୍ତି ବା ସ୍କୁଲର କୌଣସି ଶିକ୍ଷକ ସମ୍ପାଦକ ବା ସଭ୍ୟଙ୍କର ବିଷ ଦୃଷ୍ଟିରେ ପଡ଼ିବାର କାରଣ ଘଟି ନାହିଁ । ସରକାରୀ ଅନୁଦାନ ତ ମିଳୁ ନ ଥିଲା । ଛାତ୍ରଦତ୍ତ ବେତନ ହିଁ ଆୟର ପ୍ରଧାନ ପନ୍ଥା ଥିଲା । ଶିକ୍ଷକମାନଙ୍କୁ ଦରମା ଦେବା ପାଇଁ ଟଙ୍କାର ଅଭାବ ଘଟିଲେ

ମୁଁ ଧାର କରି ବା ହେଣ୍ଡନୋଟ୍ ଦେଇ ଋଣ ଆଣି କାମ ଚଳାଉଥିଲି । ଏକଥା ପରିଚାଳନା ସମିତିର କେହି ଜାଣୁ ନ ଥିଲେ ବା ଜାଣିବାର ଆବଶ୍ୟକତା ପଡ଼ୁ ନ ଥିଲା । ସ୍କୁଳତଃ ଆମେ ଶିକ୍ଷକମାନେ ବେଶ୍ ଆରାମରେ ଥିଲୁ । ପରିଚାଳନା ସମିତିର ଅତ୍ୟାଚାର ସମ୍ପର୍କରେ ଆମ୍ଭ-ମାନଙ୍କର ଲେଶମାତ୍ର ଧାରଣା ନ ଥିଲା ।

କୋଠପଦାରେ ମୁଁ ଯୋଗ ଦେବା ବେଳେ ପ୍ରଧାନ ଶିକ୍ଷକ ମୋତେ ପୂରା ଦରମା ଦିଆଯିବ ବୋଲି କହିଥିଲେ । ସେତେବେଳେ ମୁଁ ସେ କଥା ବୁଝିପାରି ନ ଥିଲି । ଯେତେବେଳେ ଦେଖିଲି, ଶିକ୍ଷକମାନେ ବେଶୀ ଟଙ୍କାର ଦସ୍ତଖତ କରି ଅଳ୍ପ ଟଙ୍କା ନିଅନ୍ତି, ସେତେବେଳେ ମୁଁ କହିଲି, "ମୋର ପୂରା ଦରମା ଦରକାର ନାହିଁ । ସମସ୍ତେ ଯେପରି ନେଉଛନ୍ତି, ମୁଁ ସେହିପରି ନେବି । ମୋ ଲାଗି ଅନ୍ୟ ଗୁରି ଜଣ ଶିକ୍ଷକଙ୍କ ଦରମାରୁ କଟାଯିବ, ଏହା ମୁଁ ସହି ପାରିବି ନାହିଁ ।"

ସ୍କୁଲରେ ଜଣେ ବୁଢ଼ା ପିଅନ ଥାଏ । ତାହାର ଦରମା ମାସିକ ପାଞ୍ଚଟଙ୍କା । ବର୍ଷ ଶେଷରେ ତାହା ନାଁରେ ଭତ୍ତା ବାବଦରେ ଯେତେ ଟଙ୍କା ଆସେ, ତାହା ତାକୁ ମିଳେନା । ସେ ଟଙ୍କା ସମ୍ପାଦକ ନିଜ ଖରଚ ପାଇଁ ନିଅନ୍ତି ବୋଲି ପ୍ରଧାନ ଶିକ୍ଷକଙ୍କଠାରୁ ଶୁଣିଲି । ମୁଁ ଘୋର ପ୍ରତିବାଦ କଲି ଏବଂ ସମ୍ପାଦକ ତାହା ଫେରାଇ ନ ଦେଲେ ମୁଁ ସ୍କୁଲରେ ରହିବି ନାହିଁ ବୋଲି ଜଣାଇ ଦେଲି । ଫଳରେ ସ୍କୁଲରେ ବହୁ ଦିନରୁ ଚଳି ଆସୁଥିବା ଅନ୍ୟାୟ ପରମ୍ପରାଟି ଲୋପ ପାଇଲା ।

ବ୍ରହ୍ମଦେଶର ପ୍ରଧାନ ମନ୍ତ୍ରୀ ଶ୍ରୀ ଉ-ନୁ ରତ୍ନଗିରି ପାହାଡ଼ରେ ବୌଦ୍ଧ କୀର୍ତ୍ତି ଦେଖିବା ପାଇଁ ଆସିଲେ । ବିରୂପା ନଦୀ କୂଳେ କୂଳେ ଯାଇଥିବା ପଟ୍ଟାମୁଣ୍ଡାଇ କେନାଲ ବନ୍ଧରେ ସେ ଯାତ୍ରା କରିବାର କଥା । ସ୍କୁଲର ସଭାପତି ଶ୍ରୀ ଜଗନ୍ନାଥ ଚୌଧୁରୀ ଶିକ୍ଷକ ଶ୍ରୀ ଅମୂଲ୍ୟ କୁମାର ଷଡ଼ଙ୍ଗୀଙ୍କୁ ନିର୍ଦ୍ଦେଶ ଦେଲେ ଯେ, ସେ ଶ୍ରୀ ଉ-ନୁଙ୍କୁ ସ୍ୱାଗତ ଜଣାଇବା ପାଇଁ ନିଜ ଘର ପାଖରେ ଗୋଟିଏ ତୋରଣ ନିର୍ମାଣ କରାଇ ଥିବାରୁ ଶ୍ରୀ ଷଡ଼ଙ୍ଗୀ ସବୁ ଛାତ୍ରଛାତ୍ରୀଙ୍କୁ ଧରି ସେଠାରେ ଉପସ୍ଥିତ ହେବେ । କେନାଲ କୂଳରେ ଥିବା ପ୍ରାୟ ପ୍ରତ୍ୟେକ ଗ୍ରାମରେ ତୋରଣ ତିଆରି ହୋଇଥିଲା ଏବଂ ପିଲା-

ମାନେ ନିଜ ଗାଁ ତୋରଣ ପାଖରେ ଉପସ୍ଥିତ ରହିଲେ । ତେଣୁ ସଭାପତିଙ୍କ ଆଶା ନୈରାଶ୍ୟରେ ପରିଣତ ହେଲା । ସେ ଦିନେ ସ୍କୁଲ ପରିଚାଳନା ସମିତିର ସଭାରେ ଶ୍ରୀ ଷଡ଼ଙ୍ଗୀଙ୍କୁ ତାଙ୍କର ଆଦେଶ-ଅମାନ୍ୟ ଦୋଷ ପାଇଁ କଡ଼ା ଭାଷାରେ ଦୁଇ ପଦ ଶୁଣାଇ ଦେଲେ । ମୁଁ ନୀରବ ରହି ପାରିଲି ନାହିଁ—ସଙ୍ଗେ ସଙ୍ଗେ ତାଙ୍କର ଅନ୍ୟାୟ ନିର୍ଦ୍ଦେଶର ସମାଲୋଚନା କରିବାରୁ ସେ ଚୁପ୍ ରହିଲେ ଏବଂ ଶିକ୍ଷକଙ୍କୁ ବିଦାୟ ଦେବା ପାଇଁ ଯାହା ସେ ଭାବି ଥିଲେ, ତାହା ଫସରଫାଟି ଗଲା ।

ଅମୂଲ୍ୟ ବାବୁଙ୍କର ସ୍ତ୍ରୀ କଠିନ ରୋଗାକ୍ରାନ୍ତ ହେବାରୁ ତାଙ୍କୁ କଟକ ମେଡ଼ିକାଲକୁ ନଆସିବା ଦରକାର ପଡ଼ିଲା । ସେ ସେଥିପାଇଁ ସମ୍ପାଦକଙ୍କୁ ଦୁଇଶହ ଟଙ୍କା ଅଗ୍ରୀମ ମାଗିଲେ । ସେତେବେଳେ ସରକାର ସ୍କୁଲ-ଗୁଡ଼ିକୁ ବର୍ଷକେ ଥରେ ଅନୁଦାନ ଦେଉଥିଲେ । ଅନୁଦାନ ମିଳିଲା ପରେ ଅମୂଲ୍ୟ ବାବୁ ଦରମାରେ ମଜୁରି କରି ଦେଇଥାନ୍ତେ । ପୋଷ୍ଟାଲ୍ ପାସ୍ ବୁକ୍‌ରେ ସ୍କୁଲର ପ୍ରାୟ ତିନିହଜାର ଟଙ୍କା ଜମା ଥିଲା । ତଥାପି ସମ୍ପାଦକ ବା ସଭାପତି ବା ପରିଚାଳନା ସମିତିର ସଭ୍ୟମାନେ ଅଗ୍ରୀମ ଦେବା ପାଇଁ ରାଜି ହେଲେ ନାହିଁ । ମୁଁ ଅମୂଲ୍ୟ ବାବୁଙ୍କର ଦୁଃଖ ଉପଲବ୍ଧି କଲି ଏବଂ ଘରକୁ ଯାଇ ଜଣେ ମହାଜନଙ୍କଠାରୁ ହେଣ୍ଡନୋଟ୍‌ରେ ଦୁଇଶହ ଟଙ୍କା ଆଣି ତାଙ୍କର ଗରଜ ମେଣ୍ଟାଇଲି ।

ଉପର୍ଯ୍ୟୁପରି ଏହି ତିନୋଟି ଘଟଣା ମୋ ହୃଦୟରେ ଗଭୀର ରେଖାପାତ କଲା । ଏ ସମ୍ପର୍କରେ ମୁଁ ବିଶେଷ ଭାବରେ ଚିନ୍ତା କରୁଥିବା ସମୟରେ ବେସରକାରୀ ମଧ୍ୟ-ଇଂରାଜୀ ସ୍କୁଲ ଶିକ୍ଷକମାନଙ୍କର ନାନା ପ୍ରକାର ଦୁଃଖ ଦୁର୍ଦ୍ଦଶାର କରୁଣ କାହାଣୀ ସମ୍ବଳିତ ପତ୍ରମାନ ମୋ ପାଖକୁ ଆସିବାକୁ ଲାଗିଲା । ଆଜି ବି ମୋ ମନରେ ପ୍ରଶ୍ନ ଉଠୁଛି—ଯେଉଁମାନେ ପତ୍ର ପଠାଇଲେ, ସେମାନେ ମୋ ପାଖକୁ କାହିଁକି ପଠାଇଲେ ଏବଂ ମୁଁ ଦୁର୍ଦ୍ଦଶା ଦୂରୀକରଣ ଦିଗରେ କିଛି କରି ପାରିବି ବୋଲି ସେମାନେ କାହିଁ ଜାଣିଲେ ?

ପ୍ରଶାନ୍ତ ଜଳାଶୟର ଉପରେ ଟେକାଟିଏ ଫିଙ୍ଗାଇଲେ ତାହା ଯେପରି ଅସଂଖ୍ୟ ତରଙ୍ଗ ସୃଷ୍ଟି କରେ, ଶିକ୍ଷକମାନଙ୍କ ପତ୍ର ବର୍ଣ୍ଣିତ

ଘଟଣାଗୁଡ଼ିକର ସ୍ମୃତି ମୋ ହୃଦୟରେ ଗୋଟିକ ପରେ ଗୋଟିଏ ସଞ୍ଚିତ ହୋଇ ବସ୍ତୁବର ବହ୍ନି ସୃଷ୍ଟି କଲେ । ଯେ କୌଣସି ଘଟଣା ଆଖି ଆଗକୁ ଆସିଲେ ବା କାନରେ ପଡ଼ିଲେ ମୁଁ ତାହା ସମ୍ପର୍କରେ କିଛି ଚିନ୍ତା ନ କରି ରହିପାରେ ନାହିଁ—ଏଇଟା ମୋର ପ୍ରକୃତି । ତେଣୁ ଅନ୍ୟାୟ ଅତ୍ୟାଚାରର କାହାଣୀ ଶୁଣିଲେ ଧୈର୍ଯ୍ୟ ଧରି ରହି ପାରିବି କିପରି ? ସବୁବେଳେ ଶିକ୍ଷକ-ମାନଙ୍କ ଦୁର୍ଦ୍ଦଶା ମୋ ହୃଦୟକୁ ଆନ୍ଦୋଳିତ କଲା ଏବଂ ତାହାର ପ୍ରତିକାର ଚିନ୍ତାରେ ମୁଁ ନିମଗ୍ନ ରହିଲି ।

ମୁଁ ପ୍ରଥମେ ଶିକ୍ଷକମାନଙ୍କର ଅଭାବ ଅସୁବିଧା ବର୍ଣ୍ଣନ କରି ଶିକ୍ଷା ବିଭାଗର ଡିରେକ୍ଟରଙ୍କ ଉଦ୍ଦେଶ୍ୟରେ ଖଣ୍ଡିଏ ପତ୍ର ଲେଖିଲି । ବିଭିନ୍ନ ସ୍କୁଲର ଶିକ୍ଷକମାନେ ତହିଁରେ ସ୍ୱାକ୍ଷର ଦେଇ ଡିରେକ୍ଟରଙ୍କ ପାଖକୁ ପଠାଇବେ, ଏହା ହିଁ ମୁଁ ସ୍ଥିର କରିଥିଲି । ମୁଁ ଗୋଟିଏ ସ୍କୁଲକୁ ଖଣ୍ଡିଏ ଚିଠି ପଠାଇ ନିର୍ଦ୍ଦେଶ ଦେଲି ଯେ, ସେ ତାହା ନିକଟବର୍ତ୍ତୀ ସ୍କୁଲକୁ ପଠାଇ ଦେବେ । ଦ୍ୱିତୀୟ ସ୍କୁଲ ତୃତୀୟ ସ୍କୁଲକୁ ପଠାଇବ । ଏହିପରି ଭାବରେ ଖଣ୍ଡିଏ ପତ୍ରରେ ଅନ୍ତତଃ ୧୦ଟି ସ୍କୁଲର ୩୦।୪୦ ଜଣ ଶିକ୍ଷକଙ୍କ ସ୍ୱାକ୍ଷର ରହିବ । କଟକ, ପୁରୀ, ବାଲେଶ୍ୱର ଏହି ତିନୋଟି ଜିଲ୍ଲାରେ ଉପରୋକ୍ତ ପ୍ରଣାଳୀ ଅବଲମ୍ବନ କରିଥିଲି ।

ମୋର ଏହି ଉଦ୍ୟମ ପରେ ପରେ ସାଲେପୁର-ଖାରସଡ଼ା ମ. ଇ. ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ସୁରେନ୍ଦ୍ର ପ୍ରସାଦ ରାୟ ଗୋଟିଏ ସଂଘ ଗଢ଼ିବା ଉଦ୍ଦେଶ୍ୟରେ ଖବର କାଗଜରେ ଏକ ବିବୃତ୍ତି ଦେଇଥିବାର ପଢ଼ିବାକୁ ପାଇଲି । ଏହା ମୋ ମନରେ ଖୁବ୍ ଆନନ୍ଦ ଦେଲା । ଏକ ସମୟରେ ଆମ ଦୁଇ ଜଣଙ୍କ ହୃଦୟରେ ଶିକ୍ଷକ-ସମାଜର ଦୁଃଖ ପ୍ରତିବିମ୍ବିତ ହେବା ଅସ୍ୱାଭାବିକ ନୁହେଁ । ଯୁବକ ସୁରେନ୍ଦ୍ର ଓ ପ୍ରୌଢ଼ ମୁଁ ୧୯୫୬ ମସିହା ଡିସେମ୍ବର ୩୧ ତାରିଖରେ ବରବାଟି ମ. ଇ. ସ୍କୁଲରେ ଭେଟ ହେଲୁ । ଆମ୍ଭମାନଙ୍କ ଆହ୍ୱାନ କ୍ରମେ ପ୍ରାୟ ଦୁଇଶହ ଶିକ୍ଷକ ସଭାରେ ଯୋଗ ଦେଇଥିଲେ । ତତ୍କାଳୀନ ଇନସ୍‌ପେକ୍ଟର ଶ୍ରୀ ରାମସ୍ୱାମୀ ସେନାପତିଙ୍କ ପୌରୋହିତ୍ୟରେ ସଭାଟି ସାଫଲ୍ୟମଣ୍ଡିତ ହେଲା । କାର୍ଯ୍ୟକାରୀ କମିଟି ଗଠିତ ହେଲା । ଶ୍ରୀ ସୁରେନ୍ଦ୍ର ପ୍ରସାଦ ରାୟ ସାଧାରଣ ସମ୍ପାଦକ ଓ ମୁଁ ସଙ୍ଗଠନ ସମ୍ପାଦକ ଭାବରେ ନିର୍ବାଚିତ ହେଲୁ । ଏହି ସୁରେନ୍ଦ୍ରବାବୁ

ପରେ ଶିକ୍ଷକତା ଛାଡ଼ ଦେଲେ ଏବଂ ସେ ବର୍ତ୍ତମାନ Assistant District Welfare Officer ଭାବରେ କାର୍ଯ୍ୟ କରୁଛନ୍ତି ।

ଏହି ସଭାର କିଛି ଦିନ ପୂର୍ବରୁ ମ. ଇ. ସ୍କୁଲମାନଙ୍କରେ ତାଲିମ-ପ୍ରାପ୍ତ ମଧ୍ୟଇଂରାଜୀ (M. V. T.) ଶିକ୍ଷକମାନେ ଆଉ ରହି ପାରିବେ ନାହିଁ ବୋଲି ଡିରେକ୍ଟର ନିର୍ଦ୍ଦେଶ ଦେଇଥିବାର ସେହି ସଭାରେ ଶୁଣିବାକୁ ମିଳିଲା । ଏହି ଶ୍ରେଣୀର ଦଶ ବାର ଜଣ ଶିକ୍ଷକ ସଭାକୁ ଆସିଥିଲେ ଓ ସେମାନଙ୍କ ପ୍ରତି ହୋଇଥିବା ଅବିଚାରର ବିଚାର ପାଇଁ ଦାବୀ କରିଥିଲେ । ସଂଘ ପକ୍ଷରୁ ଆମେ କେତେଜଣ ୧୯୫୭ ଜାନୁଆରୀ ମାସରେ ତତ୍କାଳୀନ ଡିରେକ୍ଟର ଶ୍ରୀ ବି. ପ୍ରସାଦଙ୍କୁ ଭେଟି ଆଲୋଚନା ଚଳାଇଥିଲୁ । ସେ କହିଲେ ମାଟ୍ରିକ ପାସ୍ କରି ନ ଥିବା ଶିକ୍ଷକମାନେ ଆଉ ମଧ୍ୟ-ଇଂରାଜୀ ସ୍କୁଲରେ ରହିପାରିବେ ନାହିଁ ବୋଲି ମୁଁ ନିର୍ଦ୍ଦେଶ ଦେଇଥିଲି । ଡି. ଆଇ. ମାନେ ଏମ୍. ଭି. ଟି. ଶିକ୍ଷକମାନଙ୍କୁ ମଧ୍ୟ ସେହି ପର୍ଯ୍ୟାୟରେ ରଖି ଭୁଲ୍ ବିଚାର କରିଛନ୍ତି । ସେମାନଙ୍କୁ ବହିଷ୍କାର କରାଯିବାର ପ୍ରଶ୍ନ ଉଠୁ ନାହିଁ ।

ଆମେ ତା ପରେ ନନ୍‌ମାଟ୍ରିକ୍ ଶିକ୍ଷକମାନଙ୍କ ସମ୍ପର୍କରେ ପୁନ-ର୍ବିଚାର ଦାବୀ କଲୁଁ । ଏହିପରି ନିଷ୍ପତ୍ତି ନିଆଗଲା ଯେ, ୫ ବର୍ଷରୁ କମ୍ କାର୍ଯ୍ୟ କରିଥିବା ଶିକ୍ଷକମାନଙ୍କୁ ବହିଷ୍କୃତ କରାଯିବ । ୧୦ ବର୍ଷର ଶିକ୍ଷକଙ୍କୁ ମାଟ୍ରିକ ପାସ୍ ପାଇଁ ଦୁଇବର୍ଷ ସମୟ ଦିଆଯିବ । ତଦୁର୍ଦ୍ଧ୍ୱ କାଳର ଶିକ୍ଷକମାନେ ଶାରୀରିକ ସୁସ୍ଥ ଥିବା ପର୍ଯ୍ୟନ୍ତ କାର୍ଯ୍ୟ କରିବେ (They will serve till they retire.)

ବିଚାର ବହିଷ୍କୃତ ଶିକ୍ଷକମାନେ ପୁନର୍ଜୀବନ ଲାଭ କରି ସଂଘର ଜୟ ଜୟକାର କଲେ । ଅନ୍ୟମାନେ ମଧ୍ୟ ଉପକୃତ ହେଲେ ।

୧୯୫୭ ମସିହାଠି ମୁଁ କୋଠପଦାରେ ଶିକ୍ଷକତା କରି ସଂଘ କାର୍ଯ୍ୟ ପରିଚାଳନା କଲି । କିନ୍ତୁ ଆଉ ପାରି ହେଲା ନାହିଁ, ଶିକ୍ଷକତା ମଧ୍ୟ ଭଲ ଲାଗିଲା ନାହିଁ । ତେଣୁ ମୁଁ ଇସ୍ତଫା ଦେଇ ଚାଲିଗଲି ।

କୋଠପଦାରେ ପାଞ୍ଚବର୍ଷ ଚାକିରୀରେ ଯାହା ପାଇଲି, ତାହା ଖରଚ ହୋଇଗଲା । ଚାକିରୀ ଛାଡ଼ିଲେ ଅର୍ଥାଭାବ ମୋତେ ଘାରିବ, ଏହା

ମୋତେ ଭଲ ଜଣାଥିଲା । ତଥାପି ଶିକ୍ଷକ ସମାଜ ପ୍ରତି ମୋର ଶୁଭେଚ୍ଛା, ମୋର ସହାନୁଭୂତି, ମୋର ହିତୈଷଣା ଦିନକୁ ଦିନ ଏତେ ବେଶୀ ବୃଦ୍ଧି ପାଇଲା ଯେ, ମୁଁ ଅର୍ଥୋପାର୍ଜନ କଥା ଏକଦମ୍ ଭୁଲିଗଲି । ତେବେ ଏଇ ସାହସ ଥିଲା ଯେ, ଜମିରୁ ଧାନ ପାଇବି । ଲେଖିଥିବା ପାଠ୍ୟପୁସ୍ତକ ମଞ୍ଜୁର ହୋଇଗଲେ କିଛି ଧନ ମିଳିବ । ମୁଁ ଓ ମୋର ସାବତ ମା, ଏଇ ଦୁଇଜଣ ନିର୍ବିଘ୍ନରେ ଚଳି ଯାଇ ପାରିବୁଁ ।

୧୯୧୮ ମସିହାଠାରୁ ସଂଘରେ ରହି ସଂଘ କାର୍ଯ୍ୟ କଲି । କାମଟା ଯେତେ ସହଜ ଭାବିଥିଲି, କାର୍ଯ୍ୟକ୍ଷେତ୍ରରେ ତାହାଠାରୁ ଅଧିକତର କଷ୍ଟପ୍ରଦ ବୋଲି ଉପଲବ୍ଧି କଲି । ଶିକ୍ଷକମାନେ କେଉଁ କାଳରୁ ସୁପ୍ତ ଅବସ୍ଥାରେ ଥିଲେ । ସେମାନଙ୍କଠାରେ ଚେତନା ଭରିବା, ମୃତକୁ ଜୀବନ୍ୟାସ ଦେବା ଭଳି ଅସମ୍ଭବ ହେଲା । ସଭାଟିଏ ଡାକିଲେ ଶହେ ଜାଗାରେ ଦଶ ଜଣ ଆସିଲେ । ଯାହା ବା ଶୁଣିଲେ "ଯଦ୍ଧ ପଠିତଂ ତଦ୍ଧ ଗୁରବେ ନିବେଦିତଂ" ଅବସ୍ଥା ହେଲା । ସଭାରେ ଯୋଗ ଦେବା, ସଂଘର ନିର୍ଦ୍ଦେଶ ପାଳନ କରିବା, ନୂତନ ଚିନ୍ତାଧାରାରେ ଜୀବନକୁ ଉପାଣିତ କରିବା, ଶିକ୍ଷକମାନଙ୍କଠାରେ ଆଶାନୁରୂପ ଭାବରେ ଦେଖାଗଲା ନାହିଁ । ଅବଶ୍ୟ ଏଥିପାଇଁ କେବଳ ସେମାନଙ୍କୁ ଦୋଷ ଦେଇ ହେବ ନାହିଁ । ୧୯୨୧ ମସିହାରେ ମହାତ୍ମା ଗାନ୍ଧୀ ଅସହଯୋଗ ଆନ୍ଦୋଳନ ସୁରୁ କଲାବେଳେ ଲୋକମାନେ ସଭାକୁ ଆସିବାକୁ ଡରୁଥିଲେ, ଚାନ୍ଦା ଦେବାକୁ ପଛଉଥିଲେ, ଏପରି କି କଂଗ୍ରେସ କର୍ମୀମାନଙ୍କୁ ନିଜ ଘରର ପିଣ୍ଡାରେ ବସାଇ ଦେଉ ନ ଥିଲେ । ତାହାର କାରଣ, କାଳେ ସରକାରଙ୍କ ଆଡ଼ୁ ଅତ୍ୟାଚାର ହେବ । ମୁଁ ପିଲାବେଳେ ଦେଖିଛି, ଆମ ଗ୍ରାମର ଜଣେ ଲୋକର ଚୋତା ଉପରେ କଂଗ୍ରେସ ସଭା ହେଲା ବୋଲି ଦୁଇଜଣ କନେଷ୍ଟବଳ ଆସି ତାଙ୍କୁ ବାନ୍ଧିନେଇ ହାଜତରେ ପୂରାଇ ଦେଇଥିଲେ । ଶିକ୍ଷକମାନେ ସଂଘକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ ନ କରିବା ମୂଳରେ ସେମାନଙ୍କର ସେହିପରି ଭୟ ଥିଲା । କାଳେ ସମ୍ପାଦକ ସ୍କୁଲରୁ ବହିଷ୍କାର କରିଦେବେ, କାଳେ ଦରମା ଦେବେ ନାହିଁ—ସେମାନଙ୍କର ଏ ପ୍ରକାର ଭୟ ଯଥାର୍ଥ ଥିଲା ।

ସଂଘର ପରିଚାଳନା ଲାଗି ଅର୍ଥର ଏକାନ୍ତ ଆବଶ୍ୟକ । ଅର୍ଥ କପରି ମିଳିବ, ତାହା ମୋ ଚିନ୍ତା-ରାଜ୍ୟର ଅର୍ଦ୍ଧାଂଶ ଅଧିକାର କଲା ।

'ଦେବାକୁ କେହି ଭଲ ପାଏ ନାହିଁ'—ଏ ପ୍ରବାଦଟି ଶତକଡା ନବେ ସତ । ସମଗ୍ର ଓଡ଼ିଶା ପାଇଁ ସଂଘ ଗଠିତ ହୋଇଛି । ସେତେବେଳେ ରାଜ୍ୟରେ ପ୍ରାୟ ଦୁଇ ହଜାର ମଧ୍ୟ-ଇଂରାଜୀ ସ୍କୁଲ୍ ଥିଲା । ଖଣ୍ଡିଏ ଚିଠି ସବୁ ସ୍କୁଲ୍‌କୁ ପଠାଇବା ପାଇଁ ପ୍ରାୟ ପାଞ୍ଚଶ ଟଙ୍କାର ଟିକଟ ଦରକାର । ବିପନ୍ନ ଶିକ୍ଷକଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ସମ୍ପୃକ୍ତ ସ୍କୁଲକୁ ଯିବା ମଧ୍ୟ ଅର୍ଥସାପେକ୍ଷ । ଏପରି ଅବସ୍ଥାରେ କ'ଣ କରାଯିବ ବୋଲି ମୋର ଭାବନା ପଡ଼ିଗଲା ।

ଅଭାବରେ ନ ପଡ଼ିଲେ ବିଦ୍ୟାବୁଦ୍ଧିର ସ୍ଫୁରଣ ହୁଏ ନାହିଁ । ଦିନେ ମୋର ମନେ ପଡ଼ିଲା, ଶିକ୍ଷକମାନଙ୍କଠାରୁ ସଭ୍ୟ ଚାନ୍ଦା ଆଦାୟ ସହଜ ନୁହେଁ । ଯାହା ବା ଆଦାୟ ହେବ, ସେଥିରେ ଆବଶ୍ୟକତା ମେଣ୍ଟିବ ନାହିଁ । ସୁତରାଂ ପ୍ରଶ୍ନ ବ୍ୟବସାୟ ନ ଧରିଲେ ସଂଘକୁ ବଞ୍ଚାଇବା ମୁସ୍କିଲ ହେବ । ୧୯୫୮ ମସିହା ବାର୍ଷିକ ପରୀକ୍ଷା ବେଳକୁ ସଂଘ ପକ୍ଷରୁ ପ୍ରଶ୍ନ ଯୋଗାଇ ଦିଆଯିବା କଥା ଜଣାଇଦେଲି । ସେଥର ମାତ୍ର ୭୫ଟି ସ୍କୁଲ୍ ପ୍ରଶ୍ନର ଗ୍ରାହକ ହେଲେ । ୧୬ ବର୍ଷ ମଧ୍ୟରେ ଏହି ସଂଖ୍ୟା ୨୬୦୦କୁ ବୃଦ୍ଧି ପାଇଛି ।

ଘରେ ରହି ସଂଘ ଚଳାଇବା ସମ୍ଭବ ହେଲା ନାହିଁ । ତେଣୁ ୧୯୫୯ ମସିହାରୁ ରାଜାବଗିଚା ବଡ଼େଇସାହିରେ ଓ ପରେ ଝାଞ୍ଜିରୀ-ମଙ୍ଗଳାରେ ଭଡ଼ା ଘରେ କାର୍ଯ୍ୟାଳୟ ସ୍ଥାପିତ ହେଲା । ଏଥିମଧ୍ୟରେ ପ୍ରଶ୍ନର ଗ୍ରାହକ ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ଲଭ୍ୟାଂଶର ମଧ୍ୟ ବୃଦ୍ଧି ଘଟିଲା । ମୁଁ ବହୁ ଚେଷ୍ଟାକରି ସଂଘ ପାଇଁ ଖଣ୍ଡିଏ ଜମି କିଣି ସେଥିରେ 'ନିମ୍ନ ମାଧ୍ୟମିକ ଶିକ୍ଷକ ସଦନ୍' ତିଆରି କରାଇଲି । ବରିଷ୍ଠ ଶିକ୍ଷାବିତ୍ ଓ ମାନ୍ୟବର ଶ୍ରୀ ଶତ୍ରୁଘ୍ନ ନାଥ ୧୫।୬।୭୮ ତାରିଖରେ ନୂତନ ଗୃହର ଉଦ୍‌ଘାଟନ କଲେ ଏବଂ ସେହି ଦିନରୁ ସଂଘର କାର୍ଯ୍ୟାଳୟ ତାହାର ନିଜସ୍ୱ ଘରେ ଅବସ୍ଥାପିତ ଅଛି । ଜମି ଖରିଦ ଓ ଘର ତିଆରିରେ ଏପର୍ଯ୍ୟନ୍ତ ପ୍ରାୟ ନବେ ହଜାର ଟଙ୍କା ବ୍ୟୟିତ ହୋଇଛି ।

୧୯୭୩ ବେଳକୁ ସଂଘର ଯଥେଷ୍ଟ ପ୍ରସାର ଘଟିଛି । କ୍ରମଶଃ ବହୁ ସ୍କୁଲ୍ ସଂଘ ପ୍ରତି ଅନୁରକ୍ତି ଓ ଆନୁଗତ୍ୟ ପ୍ରକାଶ କରୁଛନ୍ତି । ମାତ୍ର ମୋତେ ଦୁଃଖର ସହିତ କହିବାକୁ ପଡ଼ୁଛି, ଶିକ୍ଷକମାନଙ୍କର ମାନସିକ

ଦାରିଦ୍ର୍ୟର ଅବସାନ ଆଶାନୁରୂପ ଭାବରେ ହେଉ ନାହିଁ । ଜୀବନ ପାଇଁ ସଂଗ୍ରାମ ଅପରିହାର୍ଯ୍ୟ ଏବଂ ସେହି ସଂଗ୍ରାମ ପାଇଁ ଏକତା, ସାହସ, ନିର୍ଭୀକତା, ତ୍ୟାଗ ଓ ଦୃଢ଼ ସଙ୍କଳ୍ପ ଏକାନ୍ତ ଲୋଡ଼ା—ଏକଥା ସବୁ ଶିକ୍ଷକ ବୁଝୁ ନାହାନ୍ତି । ଅନେକେ ଭାବୁଛନ୍ତି, ସଂଘର ଶୀର୍ଷସ୍ଥାନୀୟ ନେତୃବୃନ୍ଦ ନିଜର ପ୍ରତିଭା ବଳରେ, ପ୍ରଭାବ ବଳରେ ଓ ଐନ୍ଦ୍ରଜାଲିକ ଶକ୍ତି ବଳରେ ଶିକ୍ଷକ ସମାଜ ପାଇଁ ସୌଭାଗ୍ୟର ପିରାମିଡ୍ ନିର୍ମାଣ କରିଦେବେ । କିନ୍ତୁ ଏକଥା ମନେ ରଖିବା ଉଚିତ ଯେ, ହଜାର ହଜାର ଶିକ୍ଷକ ନିଜର ବହୁବିଧ ସମସ୍ୟା ପ୍ରତି ସଚେତନ ନ ରହିଲେ, ସେମାନଙ୍କ ହୃଦୟରେ ବିପ୍ଳବ-ବହ୍ନି ଦପ୍ ଦପ୍ ହୋଇ ନ ଜଳିଲେ, ସଂଘର ନେତୃବୃନ୍ଦଙ୍କଠାରେ ଦୁର୍ଜୟ ଶକ୍ତିର ସଞ୍ଚାର ଘଟିବ ନାହିଁ ।

୧୯୫୭ ମସିହାରୁ ୧୯୬୩ ମସିହା ପର୍ଯ୍ୟନ୍ତ ଶିକ୍ଷକମାନଙ୍କ ପାଇଁ ମୁଁ କ'ଣ କ'ଣ କରିଛି, ତାହା ଲେଖିଲେ ଖଣ୍ଡିଏ ସ୍ୱତନ୍ତ୍ର ବହି ହେବ । ବିଭିନ୍ନ ସ୍କୁଲରେ ଅବୈଧଭାବରେ ବିତାଡ଼ିତ ଶିକ୍ଷକମାନଙ୍କ ପୁନଃନିଯୁକ୍ତି ପାଇଁ ପରିଚାଳନା ସମିତିର ସଭ୍ୟମାନଙ୍କ ସହ ଆଲୋଚନା ଚଳାଇ ଉପଯୁକ୍ତ ହେବା, ସେମାନେ ଅନୁରୋଧ ନ ରଖିଲେ ସର୍ବସାଧାରଣଙ୍କୁ ନେଇ ସଭା କରି ଆନ୍ଦୋଳନ ଜରିଆରେ ଶିକ୍ଷକଙ୍କୁ ପୁନଃନିଯୁକ୍ତ କରାଇବା, ବିଭାଗୀୟ କର୍ତ୍ତୃପକ୍ଷଙ୍କ ଉପରେ ପ୍ରଭାବ ପକାଇ ଶିକ୍ଷକମାନଙ୍କ ବାକି ଦରମା ଆଦାୟ କରାଇ ଦେବା, ଦୁର୍ନୀତିପରାୟଣ ପରିଚାଳନା କମିଟିକୁ ଭାଙ୍ଗି ଦେବା ପାଇଁ ସଚେଷ୍ଟ ହେବା, ଅସାଧୁ ଜିଲ୍ଲା ଇନ୍‌ସପେକ୍ଟର ଓ ସର୍କଲ ଇନ୍‌ସପେକ୍ଟର ଇତ୍ୟାଦିଙ୍କ ବିରୁଦ୍ଧରେ ଲେଖାଲେଖି କରି ସେମାନଙ୍କ ସ୍ୱରୂପ ପଦାରେ ପକାଇଦେବା, ଶିକ୍ଷକମାନଙ୍କ ଅଭିଯୋଗ ପାଇବା ପରେ ସ୍କୁଲ୍ ସମ୍ପାଦକ ଓ ସମ୍ପୃକ୍ତ ବିଭାଗୀୟ ହାକିମମାନଙ୍କୁ ପ୍ରତିକାର ପାଇଁ ଅନୁରୋଧ ଜଣାଇବା, ବିଭିନ୍ନ ଜିଲ୍ଲା ଓ ମଣ୍ଡଳ ସ୍ତରୀୟ ସଭାସମିତିରେ ଯୋଗ ଦେଇ ଶିକ୍ଷକମାନଙ୍କ ହୃଦୟରେ ସଂଘ ପ୍ରତି ଅନୁରକ୍ତି ଓ ଆନୁଗତ୍ୟ ଜନ୍ମାଇବା, ରାଜ୍ୟବ୍ୟାପୀ ଶିକ୍ଷକ ଆନ୍ଦୋଳନ ସମୟରେ ଗଳଦ୍‌ଘର୍ମ ହୋଇ ଚୋପାମା ଗସ୍ତ କରିବା, ଆନ୍ଦୋଳନ-ସଂକ୍ରାନ୍ତ ବ୍ୟୟ ନିର୍ବାହ ପାଇଁ ଆୟର ବ୍ୟବସ୍ଥା କରିବା, ଶିକ୍ଷକ ଦର୍ପଣର ସମ୍ପାଦନ ଏବଂ ବର୍ଷରେ ତିନିଥର ପରୀକ୍ଷା କାର୍ଯ୍ୟ ପରିଚାଳନା ପାଇଁ ସମୟ ଦେବା—ଏହିପରି ବହୁବିଧ କାର୍ଯ୍ୟରେ ନିଜକୁ ନିୟୋଜିତ କରି

ମୁଁ କ୍ଲାନ୍ତ ଅନୁଭବ କରେ ନାହିଁ, ବରଂ ଅତ୍ୟଧିକ ଆନନ୍ଦ ପାଏ । ମୋର ଗୋଟିଏ ମିନଟ୍ ସମୟ ଯେପରେ ବୃଥା ନ ଯାଏ, ତତ୍ପ୍ରତି ସବିଶେଷ ଦୃଷ୍ଟି ଥାଏ । ନିଜର ଘର, ଜମିବାଡ଼ି, ନାତିନାତୁଣୀଙ୍କ ସମ୍ପର୍କରେ ମୁଁ ଖୁବ କମ୍ ଚିନ୍ତା କରିଥାଏ । ମୁଁ ସକାଳ ସାତ ଘଣ୍ଟାରୁ ରାତ୍ର ବାର ଘଣ୍ଟା ପର୍ଯ୍ୟନ୍ତ ଅବିଶ୍ରାନ୍ତଭାବରେ କାର୍ଯ୍ୟ କରି ପାରୁଥିବାର ଅଭ୍ୟାସ ବହୁ ଶିକ୍ଷକ ବନ୍ଧୁ ଦେଖି ବିସ୍ମିତ ହୁଅନ୍ତି । ପ୍ରଶ୍ନ ବ୍ୟବସାୟ ଚାଲୁଥିବା ସମୟରେ ଦୁଇ ତିନିଦିନ ପର୍ଯ୍ୟନ୍ତ ଏକାଦିକ୍ରମେ ରାତିସାରା ଜଗାରହି ରହି କାମ କରିବାର ଶକ୍ତି ଭଗବାନ୍ ମୋତେ ୭୦ ବର୍ଷ ବୟସରେ ମଧ୍ୟ ଦେଇଥିବାରୁ ମୁଁ ତାଙ୍କ ପାଖରେ କୃତଜ୍ଞ ।

## ନିଖିଳ ଉତ୍କଳ ଶିକ୍ଷକ ମହାସଂଘ

ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ୧୯୩୭ ମସିହାରୁ, ଓଡ଼ିଶା ମାଧ୍ୟମିକ ଶିକ୍ଷକ ସଂଘ ୧୯୪୩ରୁ ଓ ବେସରକାରୀ କଲେଜ ଶିକ୍ଷକ ସଂଘ ୧୯୬୧ରୁ ପ୍ରତିଷ୍ଠିତ ହୋଇ ସ୍ୱତନ୍ତ୍ରଭାବରେ ନିଜ ନିଜ ଶିକ୍ଷକ ସମ୍ପ୍ରଦାୟର ଦାବୀପୂରଣ ପାଇଁ ଚେଷ୍ଟା କରି ଆସୁଛନ୍ତି । ପ୍ରତ୍ୟେକ ସଂଘ ରାଜ୍ୟର ମୁଖ୍ୟ ମନ୍ତ୍ରୀ, ଶିକ୍ଷା ମନ୍ତ୍ରୀ ତଥା ଶିକ୍ଷା-ସଚିବଙ୍କଠାରୁ ଆରମ୍ଭ କରି ଜିଲ୍ଲା ଶିକ୍ଷାଧିକାରୀ ପର୍ଯ୍ୟନ୍ତ ସବୁ ସ୍ତରର ହାକିମଙ୍କୁ ଭେଟି ଗୁହାରି ଜଣାଇ-ବାରେ ତ୍ରୁଟି କରି ନାହାନ୍ତି । ସେମାନେ ଭେଟିବାକୁ ସମୟ ସୁଯୋଗ ଦେଇ କେବଳ ସୌଜନ୍ୟ ରକ୍ଷା କରିଛନ୍ତି । କେତେକ ପ୍ରତିଶ୍ରୁତି ମଧ୍ୟ ଦେଇଛନ୍ତି । ମାତ୍ର ଫଳତଃ କିଛି ହୋଇ ନାହିଁ । ଆବେଦନ ନିବେଦନ, ହାତ ଗୁହାରି, ଦାବୀ ହାସଲ ପାଇଁ ଯଥେଷ୍ଟ ନୁହେଁ, ଏହା ଜାଣି ସୁଦ୍ଧା କୌଣସି ସଂଘ ବୈପ୍ଳବିକ ପନ୍ଥା ଅନୁସରଣ କରିବାକୁ ସାହସ କରି ପାରିଲେ ନାହିଁ । କାରଣ ସେଥିପାଇଁ ବ୍ୟାପକ ସଂଗଠନ ଶକ୍ତି ଓ ପ୍ରଚୁର ଅର୍ଥ ଆବଶ୍ୟକ । ଆମ୍ଭେମାନେ ଯେଉଁ ଶିକ୍ଷକମାନଙ୍କ ଦୁର୍ଦ୍ଦଶା ଦୂରୀକରଣ ପାଇଁ ମନ ପ୍ରାଣ ଢାଳି କାମ କରୁଥିଲୁଁ, ସେମାନେ ନିଜର କର୍ତ୍ତବ୍ୟ ବୁଝୁ ନଥିଲେ, ତ୍ୟାଗର ମହିମା ବୁଝୁ ନଥିଲେ, କେବଳ ଚିନ୍ତା କରୁଥିଲେ ଯେ, ଆମେ କର୍ମକର୍ତ୍ତାମାନେ ନିଜର ଐନ୍ଦ୍ରଜାଲିକ ଶକ୍ତି ବଳରେ ସେମାନଙ୍କ ଭାଗ୍ୟୋଦୟ ଘଟାଇ ଦେବୁ ।

ଏଥିପୂର୍ବରୁ ଅଧ୍ୟାପକ ଶ୍ରୀ କ୍ଷେତ୍ରମୋହନ ଶତପଥୀ ନିଖିଳ ଉତ୍କଳ ଶିକ୍ଷକ ପରିଷଦ (All Utkal Teachers' Front) ଜରିଆରେ ଶିକ୍ଷକ ସଙ୍ଘମାନଙ୍କୁ ଏକତ୍ର କରିବାର ଯେଉଁ ଯୋଜନା କରିଥିଲେ, ତାହା ସାମାନ୍ୟ କେତେ ମାସ ବଞ୍ଚିରହି ଲୋପ ପାଇଲା । ତାହାର ଶବନ୍ୟାସ ଦେବାପାଇଁ ଆମେ ଆଉ ଉତ୍ସାହିତ ହୋଇ ପାରିଲୁ ନାହିଁ । ତେଣୁ ବର୍ଷ ବର୍ଷ ଧରି କୁହୁଡ଼ି ପହଁରିବା ପରେ—ମରୀଚିକାର ଅନୁଧାବନ ପରେ ଆମ୍ଭମାନଙ୍କ ମାନସିକ ଶନ୍ୟାଧାରରେ ନୈରାଶ୍ୟ ଓ କିଂକର୍ତ୍ତବ୍ୟବିମୂଢ଼ତା ଆସନ ଜମାଇବାକୁ ଆରମ୍ଭ କଲା ପରି ଅବସ୍ଥା ଉପୁଜିଲା ।

ଏହି ସମୟରେ ବୀରଭୂମି ଖୋର୍ଦ୍ଧାରୁ ଯେଉଁ ଯୁବକ ଆଗେଇ ଆସି ଆମ୍ଭମାନଙ୍କ ଅବସନ୍ନ ପ୍ରାଣରେ ଅଭିନବ ପ୍ରେରଣାର ଉତ୍ସ ଛୁଟାଇଦେଲେ, ସେ ହେଉଛନ୍ତି ପ୍ରାଣନାଥ ମହାବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ଶ୍ରୀ ଅବନୀ କୁମାର ବରାଳ । ଶ୍ରୀ ବରାଳ ନିଖିଳ ଭାରତ ବିଶ୍ୱବିଦ୍ୟାଳୟ କଲେଜ ଶିକ୍ଷକ ସଙ୍ଘ (All India University College Teachers' Association)ର ସମ୍ପାଦକ ଥିଲେ । ତିନି-ବର୍ଷ କାଳ ଏବଂ ଭାରତ-ସୋଭିଏତ ମୈତ୍ରୀ ସଙ୍ଘ ଆନୁକୂଲ୍ୟରେ ରୁଷିଆ ଦେଶ ପରିଭ୍ରମଣ କରିବାକୁ ଯାଇଥିଲେ । କ୍ଷୁଦ୍ର ଗଳ୍ପ ଓ ଉପନ୍ୟାସର ପ୍ରଣେତା ଭାବରେ ସେ କମ୍ ପରିଚିତ ନୁହନ୍ତି । ସେ ୧୯୬୯ ମସିହା ଜୁଲାଇ ୨୭ ତାରିଖ ଦିନ ଖ୍ରୀଷ୍ଟ କଲେଜଠାରେ ମାଧ୍ୟମିକ, ନିମ୍ନ ମାଧ୍ୟମିକ, କଲେଜ ତଥା ପ୍ରାଥମିକ ଶିକ୍ଷକ ସଙ୍ଘମାନଙ୍କର କାର୍ଯ୍ୟନିର୍ବାହିକା ସମିତିର ସଭ୍ୟମାନଙ୍କୁ ଏକତ୍ର କରାଇ Joint Ccuncil of action of the Teachers' Associations ଗଢ଼ି ଦେଲେ ଏବଂ ଏହି ସଂସ୍ଥା ତରଫରୁ ୩୧ । ୭ । ୬୯ ଦିନ ଶିକ୍ଷାମନ୍ତ୍ରୀଙ୍କୁ ଗୁଡ଼ିଏ ଗୋଟି ଦାବୀ ପୂରଣ କରିବା ପାଇଁ ପତ୍ର ଲେଖାଗଲା । ଦାବୀ ପୂରଣ ନ ହେଲେ ୧୬।୮।୬୯ରୁ ଜୋରଦାର ଆନ୍ଦୋଳନ କରାଯିବ ବୋଲି ମଧ୍ୟ ଜଣାଇ ଦିଆଗଲା । ଶିକ୍ଷାମନ୍ତ୍ରୀ ନିଷ୍କ୍ରିୟ ହେବାରୁ ଯଥା ସମୟରେ ଐତିହାସିକ ଆନ୍ଦୋଳନର ସୂତ୍ରପାତ ହୋଇଥିଲା ।

୧୯୭୧ ମସିହା ସେପ୍ଟେମ୍ବର ମାସ ୫ ତାରିଖ 'ଗୁରୁ ଦିବସ' ଦିନ ଭୁବନେଶ୍ୱର କଳା ମଣ୍ଡପରେ ପ୍ରାୟ ପାଞ୍ଚ ଶହ ଶିକ୍ଷକଙ୍କ

ସମାବେଶରେ 'ନିଖିଳ ଉତ୍କଳ ଶିକ୍ଷକ ମହାସଂଘ' ଗଠିତ ହେଲା । ସେହି ସଭାରେ ସର୍ବସମ୍ମତି କ୍ରମେ ମୁଁ ମହାସଂଘର ସଭାପତି ଭାବରେ ନିର୍ବାଚିତ ହେଲି ।

ଶିକ୍ଷକ ମହାସଂଘର ସଭାପତି ହେବା ପରେ ମୋର ଅବନୀ ବାବୁଙ୍କ ସହ ନିବିଡ଼ ସମ୍ପର୍କର ଦ୍ୱାର ମୁକ୍ତ ହେଲା । ମୁଁ ଟିକିଏ ମାତ୍ର ଅତି-ରଞ୍ଜନ ନ କରି କହିବି ଯେ, ସେ ସୁବକ୍ତା ହେଲେହେଁ ବଚନ-ସର୍ବସ୍ୱ ନୁହନ୍ତି—ଜଣେ ନିଷ୍ଠାପର କର୍ମୀ । ତାଙ୍କର ଅଧ୍ୟାପକ କର୍ତ୍ତବ୍ୟ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍‌ର ସଭ୍ୟ ଦାୟିତ୍ୱ ତୁଲାଇବା ପରେ ଯାହା ସମୟ ବଳେ, ତାହା ମହାସଂଘର ମଙ୍ଗଳବୃଦ୍ଧିରେ ନିୟୋଜିତ ହୁଏ । ମହାସଂଘ ପାଇଁ ସ୍ୱତନ୍ତ୍ର ପାଣ୍ଠିର ବ୍ୟବସ୍ଥା ହୋଇପାରି ନାହିଁ । ତଥାପି ଦୁର୍ଗତ ଶିକ୍ଷକର ହିତକଳ୍ପେ ସେ ଅକୁଣ୍ଠିତ ଭାବରେ ହାତ ପାଣ୍ଠି ବ୍ୟୟ କରି ପକାନ୍ତି । କୌଣସି ସଭାସମିତିକୁ ଯିବାପାଇଁ ଟାକ୍‌ସି ଖରଚ ଏବଂ ତୁରନ୍ତ ଉତ୍ତର ଦେବା ପାଇଁ ଫୋନ୍ ଖରଚ ସକାଶେ ସେ କାହାରିକୁ ଅପେକ୍ଷା କରନ୍ତି ନାହିଁ । କଠୋର ପରିଶ୍ରମ ଜଣେ ଉତ୍ତମ କର୍ମୀର ଲକ୍ଷଣ । ସେ ଯେତିକି ଖଟନ୍ତି, ତାହା ସାଧାରଣ ଯୁବକ ପକ୍ଷରେ ସୁଲଭ ନୁହେଁ । ତାଙ୍କର ସଦା-ପ୍ରଫୁଲ୍ଲ ମୁଖମଣ୍ଡଳ, କର୍ତ୍ତବ୍ୟ ସାଧନରେ ମୁକ୍ତହସ୍ତତା, ବିଭାଗୀୟ ହାକିମଙ୍କୁ ଠେକଠୋକ୍ ଭାବରେ ଜବାବ ଦେବା ଏବଂ ଦାବୀ ହାସଲ ପାଇଁ ନିରବଚ୍ଛିନ୍ନ ପ୍ରୟାସ ଚଳାଇବା—ଏସବୁ ତାଙ୍କ ଜୀବନର ବୈଶିଷ୍ଟ୍ୟ ଏବଂ ତାଙ୍କର କୃତିତ୍ୱ ଉପରେ ମୋର ସମ୍ପୂର୍ଣ୍ଣ ବିଶ୍ୱାସ ଅଛି ।

---

# ମୋର ସମାଜ ସେବା

## ବିଧବା-ବିବାହ

ପ୍ରାୟ ୧୯୨୯ ମସିହାର କଥା । ସେତେବେଳକୁ ବିଧବା ଓ ବିଧବା ବ୍ରାହ୍ମଣ କନ୍ୟାର ବିବାହ ଏହି ଶବ୍ଦ ଉଚ୍ଚାରଣରେ ଯେମିତି କି ପାପ ଲାଗୁଥିଲା ! ମୋର ମନେ ଅଛି, ସାରା ଓଡ଼ିଶାରେ ସେତେବେଳକୁ ବ୍ରାହ୍ମଣ ସମାଜରେ କେବଳ ପାଞ୍ଚଟି ବିଧବା ବିବାହ ହୋଇଥିବାର ଖବର କାଗଜରୁ ଜାଣିଥିଲି । ଏହିପରି ସମୟରେ ମୋ ଗାଁରେ ଗୋଟିଏ ଅତି ସୁନ୍ଦରୀ ଚତୁର୍ଦ୍ଦଶୀ ବିଧବା ବାଳିକା ଥାଏ ! ମୁଁ ତାହାର ବିବାହ ପାଇଁ ତାର କରେଇ ଶ୍ରୀ ବଂଶୀଧର ରଥଙ୍କୁ ପ୍ରବର୍ତ୍ତାଇଲି । ବଂଶୀଧର ବାବୁ ରେଲବାଇରେ ଜଣେ କିରାଣୀ ଥିଲେ । ବହୁ କଷ୍ଟରେ ଗୋଟିଏ ଶିକ୍ଷିତ ବିପତ୍ନୀକ ବରର ସନ୍ଧାନ ମିଳିଲା । ବହୁ ଆଡ଼ମ୍ବରରେ ବିବାହ କାର୍ଯ୍ୟ ନିଷ୍ପନ୍ନ ହେଲା । ଶ୍ରୀ ଶରତଚନ୍ଦ୍ର ମୁଖାର୍ଜି, I.A.S ନିମନ୍ତ୍ରିତ ହୋଇ ଏହି ବିବାହରେ ଯୋଗ ଦେଇଥିଲେ ଓ ଉପସ୍ଥିତ ଜନତାଙ୍କୁ ଗୋଟିଏ ଭାଷଣରେ ମୁଗ୍‌ଧ କରିଥିଲେ । ମୁଁ, ମୋର ସ୍ୱର୍ଗତ ମାତୁଳ ବୃନ୍ଦାବନ ରଥ ଓ ମୋର ବାଲ୍ୟଗୁରୁ କେନ୍ଦ୍ରାପଡ଼ା ହାଇସ୍କୁଲର ଶିକ୍ଷକ ଶ୍ରୀ ନକୁଳ ଚରଣ ମିଶ୍ର ବିଧବା ବିବାହରେ ଯୋଗ ଦେବା ହେତୁ ଏକ ବର୍ଷ ପର୍ଯ୍ୟନ୍ତ ସମାଜରେ ବାଛନ୍ଦ ହୋଇ ନିର୍ଯ୍ୟାତନା ଭୋଗିଥିଲୁ ।

ଏହି ଘଟଣାର ପ୍ରାୟ ବର୍ଷକ ପରେ ଗୋଟିଏ ପିତୃମାତୃ ଶୂନ୍ୟା, ନିରୁଦ୍ଦିଷ୍ଟ-ଭର୍ତ୍ତୃକା ବିବାହିତା କନ୍ୟାର ବିବାହରେ ମୁଁ ନିଜେ କନ୍ୟାଦାନ କରିଥିଲି । ସେହି ଦିନଠାରୁ ଉକ୍ତ ବାଳିକା ଧର୍ମକନ୍ୟା ଭାବରେ ମୋ ଘରକୁ ଯିବା ଆସିବା କରୁଛି । ବରର ଘର ଇନ୍ଦାକୋ ଗ୍ରାମରେ ।

ଏତଦ୍‌ବ୍ୟତୀତ ଆଉ ତିନୋଟି ବିଧବା କନ୍ୟାର ବିବାହରେ ମୁଁ ଉଦ୍ୟୋକ୍ତା ଥିଲି ।

## ନାରୀ-ମଙ୍ଗଳ-ସମିତି

ଶ୍ରୀ ବୈରାଗୀ ଚରଣ ମିଶ୍ରଙ୍କ ପ୍ରତିଷ୍ଠିତ "ନାରୀ ମଙ୍ଗଳ ସମିତି"ର ସଭ୍ୟ ହୋଇ ମୁଁ ମାସିକ ଚାନ୍ଦା ଦେଉଥିଲି । ସେହି ସମୟରେ ଗୋଟିଏ ଗର୍ଭବତୀ ବିଧବା ବ୍ରାହ୍ମଣୀଙ୍କୁ ଭ୍ରୂଣ ହତ୍ୟାରୁ ନିବୃତ୍ତ କରାଇ ଉକ୍ତ ବୈରାଗୀ ବାବୁଙ୍କ ପରାମର୍ଶରେ ତାହାଙ୍କୁ କଟକ ଅନାଥାଶ୍ରମରେ ରଖାଇଥିଲି ଏବଂ ପ୍ରସବ ପରେ ତାଙ୍କୁ ଆଣି ତାହାର ପିତୃ ଗୃହରେ ରହିବାର ବ୍ୟବସ୍ଥା କରି ଦେଇଥିଲି ! ସେତେବେଳେ ସର୍ବସାଧାରଣଙ୍କ ପକ୍ଷରୁ ମୋ ପ୍ରତି ଓ ବିଧବାର ପିତାଙ୍କ ପ୍ରତି ଯେଉଁ ନିର୍ଯ୍ୟାତନା ଆରମ୍ଭ ହୋଇଥିଲା, ତାହା ଅକାତରରେ ସହିବାକୁ ପଡ଼ିଥିଲା । ତାପରେ ଆଉ ଦୁଇ ଜଣ ବିଧବାଙ୍କୁ ଅନାଥାଶ୍ରମରେ ଭର୍ତ୍ତି କରାଇଥିଲି ।

## ବାଲ୍ୟ ବିବାହ ନିରୋଧ

ଶ୍ରୀ ହରବିଲାସ ଶାରଦାଙ୍କ ବିବାହ ଆଇନ ନୂଆ ହୋଇ କେନ୍ଦ୍ର ବ୍ୟବସ୍ଥାପକସଭାରେ ମଞ୍ଜୁରି ଲାଭ କରିଥାଏ । କେନ୍ଦ୍ରାପଡ଼ା ମ୍ୟୁନିସିପାଲିଟିର ଚେୟାରମ୍ୟାନ ପ୍ରାୟ ୫୦ ବର୍ଷ ବୟସ୍କ ଶ୍ରୀ କାହ୍ନୁଚରଣ ପଣ୍ଡା, ବି. ଏଲ୍. ମୋର ପ୍ରତିବେଶୀ ଗ୍ରାମର ପ୍ରାୟ ବାରବର୍ଷର ଝିଅଟିଏ ବିବାହ କଲେ । ମୁଁ ସେତେବେଳର କଂଗ୍ରେସ କର୍ମୀ ଶ୍ରୀ ଅଦ୍ୱୈତ ବଲ୍ଲଭ ରାୟଙ୍କୁ ମୋକଦ୍ଦମା ଆଗତ କରିବାକୁ ସମର୍ଥନ ଓ ଉତ୍ସାହ ଦେଇଥିଲି ଏବଂ ଆର୍ଥିକ ସାହାଯ୍ୟ ମଧ୍ୟ କରିଥିଲି । ପଣ୍ଡା ମହାଶୟଙ୍କୁ ତଳ କୋର୍ଟରେ ଜେଲ୍ ଓ ଜରିମାନା ଦଣ୍ଡ ହୋଇଥିଲା । ମାତ୍ର ଅପିଲ କୋର୍ଟରେ ସେ ନିର୍ଦ୍ଦୋଷ ପ୍ରମାଣିତ ହୋଇଥିଲେ ବୋଲି ମନେ ପଡ଼ୁଛି । ହେଲେହେଁ, କନ୍ୟାଟି ପିତୃ-ଗୃହରେ ଥିବାରୁ ପଣ୍ଡା ମହାଶୟ ତାହାକୁ ଗୃହଯୋଗ୍ୟ ହେବା ପରେ ନେଇ ଯିବାକୁ ଯେତେ ଚେଷ୍ଟା କଲେହେଁ ମୁଁ ତାହା କରାଇ ଦେଇ ନାହିଁ ଏବଂ କନ୍ୟାର ପିତାମାତାଙ୍କୁ ଅନ୍ୟ ସୁପାତ୍ରରେ କନ୍ୟା ପ୍ରଦାନ କରିବାକୁ ରାଜି କରାଇଥିଲି । କନ୍ୟାର ପିତା ମରିଗଲେ ଏବଂ ସେହି ସୁଯୋଗରେ ପଣ୍ଡା ମହାଶୟ ହଠାତ୍ ଦିନେ ପୋଲିସ ଓ ମଟର ପଠାଇ କନ୍ୟା ଓ ତାହାର ମାତାଙ୍କୁ କେନ୍ଦ୍ରାପଡ଼ା କଚେରିକୁ ନେଇଗଲେ । ମୁଁ କେତେ ଜଣ ଯୁବକଙ୍କୁ ସଙ୍ଗରେ ଧରି ସେହି ମୋଟରରେ ଗଲି ଏବଂ କନ୍ୟା ଓ ତାହାର ମାତାଙ୍କୁ ସାହସ ଦେଇ ହାକିମ ଆଗରେ ବିବାହ ଅସ୍ୱୀକାର କରିବାକୁ

ପ୍ରେରଣା ଦେଲ । ଏସ୍.ଡ଼.ଓ.ଙ୍କ ଆଗରେ କନ୍ୟାଟି ଖୁବ୍ ସାହସ ଓ ନିଃସଂକୋଚରେ କହିଲା ଯେ, ସେ ପତିଙ୍କୁ ବିବାହ କରିନାହିଁ । ପତିଙ୍କର ଚେଷ୍ଟା ବିଫଳ ହେଲା ଏବଂ ଆମ୍ଭେମାନେ କନ୍ୟାସହ ଫେରି ଆସିଲୁଁ । କିଛିଦିନ ପରେ କନ୍ୟାର ମାତା ଆଶାତିରିକ୍ତ ଧନର ପ୍ରଲୋଭନରେ ପଡ଼ି କନ୍ୟାଟିକୁ ତାହାର ଅନିଚ୍ଛା ସତ୍ତ୍ୱେ ସ୍ୱାମୀଙ୍କ ଗୃହକୁ ପଠାଇ ଦେଇଥିଲା ।

ପତି ମହାଶୟ ଦଣ୍ଡିତ ହେବା ପରେ ସର୍ବସାଧାରଣଙ୍କର ଗୋଟାଏ ଭୟ ଆସିଗଲା । ମୁଁ ନାରୀମଙ୍ଗଳ ସମିତିର ସଭ୍ୟ ବୋଲି ଅନେକେ ଜାଣିଥିଲେ । ତେଣୁ କେତେକ ଲୋକ ନିଜର ଅଳ୍ପବୟସ୍କା କନ୍ୟାର ବିବାହ ବିରୁଦ୍ଧରେ ମୁଁ ଯେପରି ସଙ୍ଗିନ୍ ପନ୍ଥା ଗ୍ରହଣ ନ କରେ, ସେଥିପାଇଁ ବିବାହ ପୂର୍ବରୁ ମୋତେ ଅନୁରୋଧ କରିବାକୁ ଆସିଛନ୍ତି ଏବଂ ମୋଠାରୁ ନିରାଶ ବାଣୀ ଶୁଣି ବିବାହ ବନ୍ଦ କରିଛନ୍ତି । ଥରେ ଗୋଟାଏ ବିବାହର ନିର୍ବନ୍ଧ ସରିଯାଇଥିଲା । ଉଭୟ ପକ୍ଷ ମୋର ଅନୁମତି ନେବାକୁ ଆସିଥିଲେ ଏବଂ ମୋତେ ଯଥୋପଯୋଗୀ ଭାବରେ ବଶୀଭୂତ କରିବାକୁ ଚେଷ୍ଟା କରିଥିଲେ । ମାତ୍ର ମୋର ବିବେକ କୌଣସି ପ୍ରକାରରେ ସେମାନଙ୍କ ଅଭି-ସନ୍ଧିର ଅନୁକୂଳ ହେଲା ନାହିଁ । ବିବାହ ବନ୍ଦ ରହିଲା ଏବଂ ପ୍ରାୟ ଏକ ମାସ ପରେ ବରପାତ୍ରର ଆକସ୍ମିକ ମୃତ୍ୟୁ ଘଟିଲା ।

ଗୋଟିଏ ଦ୍ୱାଦଶ ବର୍ଷୀୟା କନ୍ୟା ସହ କେଶରପୁର ଗ୍ରାମର ଆନନ୍ଦ ଦାଶ ନାମକ ୪୦ ବର୍ଷ ବୟସ୍କ ବିପତ୍ନୀକ ବ୍ୟକ୍ତିର ବିବାହ ପ୍ରସ୍ତାବ ଚାଲିଥାଏ । ଦିନେ ରାତିରେ କନ୍ୟାଟି ତାହାର ମା ସହିତ ମୋ ଘରକୁ ଆସିଲା ଏବଂ ପ୍ରସ୍ତାବିତ ବିବାହରେ ତାହାର ଅନିଚ୍ଛା ଜଣାଇ କିପରି ଏଥିରୁ ରକ୍ଷା ମିଳିବ ସେଥିପାଇଁ ମୋର ସାହାଯ୍ୟ ଲୋଡ଼ିଲା ଓ ଉଭୟଙ୍କର ଭାବରେ କାନ୍ଦିଲା । କନ୍ୟାଟିର ପିତା ମାତା ଏହି ବିବାହର ବିରୁଦ୍ଧରେ, ମାତ୍ର କନ୍ୟାର ପୋଷକ ପିତାର ଇଚ୍ଛା ଉପରେ ସେମାନଙ୍କର କିଛି ଅକ୍ତିଆର ନ ଥିଲା । ପୋଷକ ପିତା ଢାକାରେ ଥାଏ । ମୁଁ ସେହିକ୍ଷଣି କନ୍ୟା ହାତରେ ଖଣ୍ଡିଏ ଚିଠି ଲେଖାଇଲି । ସାନ ଝିଅଟିଏ ଯେଉଁ ଭାଷାରେ ଯେପରି ଭାବରେ ନିଜ ହୃଦୟର ବେଦନା ବ୍ୟକ୍ତ କରି ପିତାଙ୍କୁ ସେ ପ୍ରସ୍ତାବରୁ ନିବୃତ୍ତ କରାଇ ପାରିବ, ମୁଁ ସେହିପରି ଲେଖାଇଥିଲି । ମାତ୍ର ସବୁ ବୃଥା

ହେଲ—ପୋଷକ ପିତାଙ୍କର କୁଳୀନ କଠୋର ପ୍ରାଣ ତରଳିଲା ନାହିଁ । କିଛି ଦିନ ପରେ ସେ ଆସି ବିବାହର ଦୃଢ଼ତା-ବ୍ୟଞ୍ଜକ ନିର୍ବନ୍ଧ କାର୍ଯ୍ୟ ସାର ଦେଇ ବିବାହର ଆୟୋଜନରେ ଲାଗିଗଲେ । କନ୍ୟାଟି ସୁବିଧା ସୁଯୋଗ ଦେଖି ମୋ ପାଖକୁ ଆସେ ଏବଂ ମୁଁ କିପରି ପ୍ରତିକାର ଚିନ୍ତା କରୁଛି, ତାହା ଶୁଣି ଖୁସି ହୁଏ ।

ସାଧାରଣତଃ ବିବାହ ପୂର୍ବରୁ ବନ୍ଧୁବାନ୍ଧବମାନେ କନ୍ୟାକୁ ନିଜ ଘରକୁ ଡାକି ନେଇ ଭୋଜି ଖୁଆନ୍ତି ଓ ନୂଆ ଲୁଗା ପିନ୍ଧାନ୍ତି । ଏହି ଉପଲକ୍ଷ୍ୟରେ ବିବାହର ତିନି ଦିନ ପୂର୍ବରୁ କନ୍ୟାର ଭଗିନୀପତି ତାହାକୁ ମୋ ଇଙ୍ଗିତରେ ନିଜ ଘରକୁ ଡାକି ନେଲେ । ତତ୍ପର ଦିନ ସେ କନ୍ୟାସହ କେନ୍ଦ୍ରାପଡ଼ା ଗଲେ ଏବଂ ସେଠାରେ ଏସ୍.ଡି.ଓ.ଙ୍କ ଅଫିସରେ କନ୍ୟା ତାହାର ବିବାହ ସମ୍ବନ୍ଧୀୟ ସମସ୍ତ ଘଟଣା ଜଣାଇ ଏକ ଦରଖାସ୍ତ ଦାଖଲ କରି ଘରକୁ ଫେରି ଆସିଲା । ମଙ୍ଗଳବାର ପୂର୍ବଦିନ କେନ୍ଦ୍ରାପଡ଼ାରୁ ଜଣେ କନେଷ୍ଟବଲ ଆସି କନ୍ୟା ଘରେ ପହଞ୍ଚିଲା ଏବଂ ସମସ୍ତଙ୍କୁ ଜଣାଇ ଦେଲା ଯେ, ଯଦି କନ୍ୟାର ଇଚ୍ଛା ବିରୁଦ୍ଧରେ ବିବାହ କରାଯାଏ, ତେବେ ସେ ସମ୍ପୃକ୍ତ ବ୍ୟକ୍ତିଙ୍କୁ ଗିରଫ କରିବେ । କନେଷ୍ଟବଲକୁ ମଧ୍ୟ ହାତ କରିବାର ଚେଷ୍ଟା ହେଉଥାଏ ଏବଂ ତାହା ଶୁଣି କନ୍ୟାଟି ହତାଶ ହୋଇ ପଡୁଥାଏ । ମାତ୍ର ମୁଁ ସୁଯୋଗ ଦେଖି ତାହାକୁ ତାହାର କର୍ତ୍ତବ୍ୟ ସମ୍ବନ୍ଧରେ ସଚେତନ କରି ଦେବାକୁ ହେଳା କରୁ ନ ଥାଏ । କୌଣସି ପ୍ରକାରରେ ବିବାହ ହୋଇ ପାରିଲା ନାହିଁ । ପ୍ରାୟ ବର୍ଷକ ପରେ ସେହି ବରପାତ୍ରର ମୃତ୍ୟୁ ଘଟିଥିଲା । କନ୍ୟାଟି ଏ ପର୍ଯ୍ୟନ୍ତ ମୁଣ୍ଡରେ ସିନ୍ଦୂର ଓ ହାତରେ ଶଙ୍ଖା ଧରି ସୁଖମୟ ଜୀବନ ଯାପନ କରୁଛି ।

## ଅସବର୍ଣ୍ଣ ବିବାହ

ମୋର ଗୁରୁ ଶ୍ରୀ ଶୁକଦେବ ସାହୁ ଜାତିରେ ତେଲି ତନ୍ତ୍ରୀ । ସେ ସାକ୍ଷୀଗୋପାଳସ୍ଥ ଗୋପବନ୍ଧୁ ସେବାସଦନର ଗୋଟିଏ ପିତୃମାତୃ ଶୂନ୍ୟା ଅନାଥା ବାଳିକାକୁ ବିବାହ କରିଛନ୍ତି । କନ୍ୟାଟିର ଜାତି ଖଣ୍ଡାୟତ । ପଣ୍ଡିତ କୃପାସିନ୍ଧୁ ହୋତା କନ୍ୟାପିତା ହୋଇ କନ୍ୟା ସମ୍ପ୍ରଦାନ କରିଥିଲେ ଏବଂ ମୁଁ ବରପିତା ଆସନ ଗ୍ରହଣ କରିଥିଲି । ବରକନ୍ୟା

ଘରକୁ ଆସିବା ପରେ ଚତୁର୍ଥୀ ଦିନ ମୁଁ ମୋ ଖର୍ଚ୍ଚରେ ଗୁରୁଦେବଙ୍କ ଘରେ ଗୋଟିଏ ଭୋଜିର ବ୍ୟବସ୍ଥା କରିଥିଲି । ତାର ଜାତି ଭାଇ ଯୋଗ ଦେଇ ନ ଥିଲେ ହେଁ ସାମାଜିକ ଅତ୍ୟାଚାର କିଛି ଘଟି ନାହିଁ ।

## ଜାତିଭେଦ ବିରୁଦ୍ଧରେ ସେବା

ଶ୍ରୀ ମାଧୋଇ ରାଉଳ ନାମକ ୬୦ରୁ ବର୍ଷର ବୁଢ଼ା ତାହାର ବଡ଼ ପୁଅର ଦୁର୍ବ୍ୟବହାର ସହି ନ ପାରି ପୋଖରୀରେ ଆତ୍ମହତ୍ୟା କଲା । ତାହାର ବଡ଼ପୁଅ ଓ ଜାତିଭାଇମାନେ ଗୋଟିଏ ମକଦ୍ଦମା ସମ୍ପର୍କରେ କଟକ ଯାଇଥିଲେ । ମୁଁ, ତାହାର ସାନପୁଅ ଓ ମୋର ଜଣେ ଭୂତପୂର୍ବ ଛାତ୍ର, ଆମେ ତିନିଜଣ ଶବକୁ କାନ୍ଧରେ ନେଇ ଏକ ମାଇଲ ଦୂରବର୍ତ୍ତୀ ନଦୀ କୂଳରେ ବିସର୍ଜନ ଦେଇଥିଲୁଁ ।

## ହରିଜନ ସେବା

ମହାତ୍ମା ଗାନ୍ଧିଙ୍କ ହରିଜନ-ପଦଯାତ୍ରା ପରେ ସ୍ଥାନେ ସ୍ଥାନେ ହରିଜନ-ସେବା-କେନ୍ଦ୍ର ସ୍ଥାପିତ ହୋଇଥିଲା । ମୋର ଗ୍ରାମକୁ କେନ୍ଦ୍ର କରି ଚତୁଃପାର୍ଶ୍ୱବର୍ତ୍ତୀ କେତୋଟି ଗ୍ରାମକୁ ନେଇ ଗୋଟିଏ କେନ୍ଦ୍ର ବସାଇବା ପାଇଁ ଠିକ୍ କରାଗଲା । ତତ୍କାଳୀନ ହରିଜନ-ସେବା-ସଂଘର ସଭାପତି ଶ୍ରୀ ନନ୍ଦକିଶୋର ଦାସ, ଏମ୍. ଏ. (ଭୂତପୂର୍ବ ବାଚସ୍ପତି) ମୋ ଘରକୁ ଆସିଥିଲେ ଏବଂ ହରିଜନ କାର୍ଯ୍ୟ ପାଇଁ ଗୋଟିଏ ଘର ଭଡ଼ାରେ କରି ଦେବାକୁ ମୋତେ ଅନୁରୋଧ କରିଥିଲେ । ସେ ଏହା ବ୍ୟବସ୍ଥା କରିଦେଇ ଗଲେ ଯେ, ନିଯୁକ୍ତ କର୍ମୀ ଶରତଚନ୍ଦ୍ର ଦାସ ପ୍ରତି ମାସ ଶେଷରେ ତାଙ୍କର କାର୍ଯ୍ୟର ରିପୋର୍ଟ ମୋ ଜରିଆରେ ପଠାଇବେ । ତାଙ୍କ କାର୍ଯ୍ୟ ସନ୍ତୋଷଜନକ ଥିବାର ମୁଁ ସୁପାରିସ କଲେ ଯାଇଁ ଦରମା ମିଳୁଥିବ । ମୁଁ ଗୋଟିଏ ଘର ଭଡ଼ାରେ କରି ଦେଇଥିଲି ଓ ହରିଜନ ସେବା କାର୍ଯ୍ୟ କିଛିଦିନ ଚାଲିଥିଲା ।

ଗୁନ୍ଦୋଳରେ ଗୋଟିଏ ହରିଜନ ଅଷ୍ଟପ୍ରହରୀ ହୋଇଥିଲା । ସ୍ଥାନୀୟ ଜଣେ କଂଗ୍ରେସ କର୍ମୀ ଓ ମୋର କେତେକ ପୁରାତନ ଛାତ୍ର ତାହାର ଉଦ୍ୟୋକ୍ତା ଥିଲେ । ମୁଁ ଅଷ୍ଟପ୍ରହରୀ ଉଦ୍ଦେଶ୍ୟରେ ଚାଉଳ, ଡାଲି ଇତ୍ୟାଦି ପଠାଇଥିଲି ଓ ନିଜେ ମଧ୍ୟ ଯୋଗ ଦେଇଥିଲି । କେତେକ

ଗ୍ରାମବାସୀ ପ୍ରଥମେ ଯୋଗ ଦେଇଥିଲେ ହେଁ ପରେ ତାହାର ପ୍ରରୋଚନାରେ ପଡ଼ି ଗୃହ ଗୁଲଗଲେ ଏବଂ ନାନା ପ୍ରକାର ଗୋଳମାଳ ଆରମ୍ଭ କଲେ । ଯାହାହେଉ, ଶେଷ ପର୍ଯ୍ୟନ୍ତ ଆମରି ଜୟ ହେଲା । ଆମେ କେତେଜଣ ହରିଜନଙ୍କ ସହ ଏକା ପଙ୍କ୍ତିରେ ବସି ଖାଇବାରୁ କିଛି ଦିନ ପର୍ଯ୍ୟନ୍ତ ବାଟେ ଘାଟେ ଆମମାନଙ୍କର ତୀବ୍ର ସମାଲୋଚନା ହୋଇଥିଲା ।

୧୯୪୭ ମସିହାରେ ମୁଁ କେନ୍ଦ୍ରାପଡ଼ା ଲୋକାଲବୋର୍ଡ଼ର ଶିକ୍ଷା କମିଟିର ମେମ୍ବର ହୋଇଥିଲି । ସେତେବେଳେ କେତେକ ପ୍ରାଇମେରୀ ସ୍କୁଲ ପରିଦର୍ଶନ କରିବାର ସୁଯୋଗ ମୋତେ ମିଳିଥିଲା । ସ୍କୁଲ ଘରେ ହରିଜନ ପିଲାମାନେ ସବର୍ଣ୍ଣ ପିଲାଙ୍କ ସହ ଏକସ ବସୁ ନ ଥିବାର ଦେଖି ମୁଁ ଦୁଃଖିତ ହୋଇଥିଲି ଏବଂ ଶିକ୍ଷକମାନଙ୍କୁ ଘୃଣ୍ୟ ପରମ୍ପରା ଛାଡ଼ି ସନାତନ ଧର୍ମରେ ଆଗ୍ରହୀ ହେବାକୁ ପରାମର୍ଶ ଓ ସାହସ ଦେଇଥିଲି । ପରେ ମୁଁ ଅନୁସନ୍ଧାନ କରି ଜାଣିଥିଲି, ସେମାନେ ନିଜର ମତ ବଦଳାଇଛନ୍ତି ।

ନରସିଂହପୁର ଗ୍ରାମରେ ସବର୍ଣ୍ଣ ଓ ହରିଜନ ଛାତ୍ରଛାତ୍ରୀ ପାଇଁ ପୃଥକ ଭାବେ ଦୁଇଟି ସ୍କୁଲ ଥିଲା । ମୁଁ ଉଭୟ ସ୍କୁଲକୁ ମିଶାଇ ଦେବା ପାଇଁ ବୋର୍ଡ଼କୁ ଯେଉଁ ପ୍ରସ୍ତାବ ଦେଇଥିଲି, ତାହା ଗୃହୀତ ହୋଇଥିଲା ।

୧୯୩୩ ମସିହା ଦୋଳ ଦଶମୀ ମୋର କନ୍ୟାଟିର ପ୍ରଥମ ବାର୍ଷିକ ଜନ୍ମଦିବସ । ଏ ଦିନ ଗୋଟିଏ ଭୋଜିର ଆୟୋଜନ କରି ସ୍ଥାନୀୟ ବିଶିଷ୍ଟ ଲୋକଙ୍କୁ ଆମନ୍ତ୍ରଣ କରିବାର ଇଚ୍ଛା ହେଲା । ସେଥିପାଇଁ ଆବଶ୍ୟକ ସାମଗ୍ରୀ ମଧ୍ୟ ସଂଗ୍ରହ କଲି । ନିର୍ଦ୍ଦିଷ୍ଟ ଦିବସର ତିନି ଚାରିଦିନ ପୂର୍ବରୁ ମୁଁ ଦାନପୁର ଡାକଘରକୁ ଯିବାବେଳେ ଗୋଟିଏ ହରିଜନ ମହିଳା ପୋଖରୀରେ ଗାଧୋଇ ସାରି ଘରକୁ ଫେରୁଥିବାର ଦେଖିଲି । ତାହାର ପିନ୍ଧାଲୁଗା ଖଣ୍ଡିକ ଚିରା ଓ ମଇଳା ଧରି କଳା ପଡ଼ି ଯାଇଥାଏ । ଦୋଳବେଳେ ଅନେକ ଲୋକ ନୂଆ ଲୁଗା ପିନ୍ଧିବାର ପ୍ରଥା ଚଳି ଆସୁଛି । ଭାବିଲି, ଏହିପରି ଅନେକ ସ୍ତ୍ରୀ ଲୋକ ଥିବେ, ଯେଉଁମାନେ ଦୋଳଯାତ୍ରାରେ ନୂଆ ଲୁଗା ପିନ୍ଧିବାକୁ ପାଇବେ ନାହିଁ । ସଙ୍ଗେ ସଙ୍ଗେ ନିଷ୍ପତ୍ତି କଲି ଯେ, ସୁଖରେ କାଳ କାଟୁଥିବା ଲୋକଙ୍କୁ ଖାଇବାକୁ ନ ଦେଇ ହରିଜନ ମହିଳା ଓ ଦରିଦ୍ର ବିଧବାମାନଙ୍କୁ ବସ୍ତ୍ର ଓ ଅନ୍ନଦାନ କରିବି । ମୋ ଗାଁର ନିକଟବର୍ତ୍ତୀ କେଶରପୁର, ଦାନପୁର ଓ

ଖଣ୍ଡେଦା ସାହିରେ ଥିବା ପାଣ, କଣ୍ଟ୍ରର ସ୍ତ୍ରୀଲୋକ ଓ ସବୁ ଜାତିର ନବାଗ୍ରସ୍ଥା ବିଧବାମାନଙ୍କର ତାଲିକା ତିଆରି କରି ପ୍ରାପ୍ୟ ପରିଣତୀ ଶାଢ଼ୀ କିଣି ଆଣିଲି । ପ୍ରତ୍ୟେକ ସ୍ତ୍ରୀ ଲୋକଙ୍କୁ ନିମନ୍ତ୍ରଣ କରାଗଲା । ସେମାନେ ଛୁଆ ପିଲା ଧରି ଆସିବା ପାଇଁ କୁହାଗଲା । ସମସ୍ତେ ପରିଷ୍କୃତ ସ୍ଥାନରେ ତୃପ୍ତିର ସହିତ ଭୋଜନ କରି ଲୁଗା ପିନ୍ଧି ବିଦାୟ ନେଲେ । ମୁଁ ମଧ୍ୟ ହୃଦୟରେ ଅପାର ଆନନ୍ଦ ଅନୁଭବ କଲି ।

## ମଠର ଦାୟିତ୍ୱ

ଦକ୍ଷିଣ ବ୍ରହ୍ମପୁର ଗ୍ରାମରେ ଥିବା ଗୋଟିଏ ମଠର ମହନ୍ତ ଚେଲା ଗ୍ରହଣ କରିବା ପୂର୍ବରୁ ହଠାତ୍ ମରିଯିବାରୁ ସେ ଗ୍ରାମର ଜନସାଧାରଣ ମୋତେ ମଠର ଦାୟିତ୍ୱ ଦେଇଥିଲେ । ମୁଁ ଗୋଟିଏ ପରିଚାଳନା ସମିତି ଗଢ଼ି ତାହାରି ଜରିଆରେ ଦୁଇ ବର୍ଷ ପର୍ଯ୍ୟନ୍ତ ମଠ ଚଳାଇଥିଲି । ମଠର ଆର୍ଥିକ ଅବସ୍ଥା ସୁଧାରିବା ଉଦ୍ଦେଶ୍ୟରେ ମୁଁ ରଷି ପୂର୍ଣ୍ଣିମା ଓ ଦୋଳ ଉତ୍ସବରେ ପ୍ରଚଳିତ ଯାତ୍ରା ଓ ନାଚ ଇତ୍ୟାଦି ବନ୍ଦ କରି ଏବଂ ଅନ୍ୟାନ୍ୟ କେତେକ କ୍ଷେତ୍ରରେ ବ୍ୟୟ ସଙ୍କୋଚ କରି ଆର୍ଥିକ ଉନ୍ନତି ଘଟାଇବା ସଙ୍ଗେ ସଙ୍ଗେ କେତେକ ପରିମାଣରେ ଲୋକପ୍ରିୟତା ହରାଇଥିଲି ।

## ମହାଜନ କବଳରୁ ଖାତକକୁ ରକ୍ଷା

ଜଣେ ଖାତକ ମହାଜନଙ୍କୁ କିଛି ଜମି ବନ୍ଧକ ଦେଇ ଋଣ ନେଇଥିଲା ଏବଂ ଯଥା ସମୟରେ ସମୁଳସୁଧ ପରିଶୋଧ କରିଥିଲା । ମହାଜନ ପାଖରୁ ଦଲିଲ ଖଣ୍ଡିକ ଫେରିପାଇବା ଯେ କୌଣସି ଖାତକ ପକ୍ଷରେ ସମୟ ସାପେକ୍ଷ । କାରଣ ଖାତକ ବାରମ୍ବାର ମହାଜନଙ୍କ ଦ୍ୱାରକୁ ଆସିବାରେ ଅବହେଳା ନ କଲେ ହେଁ ଘରୁ ଆସିବାବେଳେ ପାଞ୍ଜି ଦେଖି ବାରଦୋଷ, ତିଥିଦୋଷ, ସଂକ୍ରାନ୍ତି, ପୂର୍ଣ୍ଣିମା ଇତ୍ୟାଦିର ନିର୍ଦ୍ଧାରଣରେ ଅବହେଳା କରିଥାଏ । ତା' ଛଡ଼ା ମହାଜନ କେତେବେଳେ ଅଗାଧୁଆ ଥାନ୍ତି, କେତେବେଳେ ତାଙ୍କ ଲୁଗା ମାରି ଥାଏ, କେତେବେଳେ ବା ସିନ୍ଦୁକ ଗୁହଟା ଅଡୁଆରେ ରହି ଯାଇଥାଏ । ଯାହାହେଉ, ପୂର୍ବୋକ୍ତ ଖାତକଟି ମୃତ୍ୟୁ ପୂର୍ବରୁ ଦଲିଲ ଫେରାଇ ନେଇ ପାରି ନ ଥିଲା । ପିତାଙ୍କ

ମୃତ୍ୟୁ ପରେ ପୁତ୍ର ମଧ୍ୟ ଦଲିଲ ଆଶାରେ ମହାଜନଙ୍କ ଦ୍ୱାରସ୍ଥ ହେବାକୁ ଭୁଲି ନ ଥିଲା । ମାତ୍ର ମହାଜନ ପାଞ୍ଜିରୁ ଉକ୍ତ 'ବାର' ବାହାର କରିବା ପୂର୍ବରୁ ଚିତ୍ରଗୁପ୍ତ ପାଞ୍ଜିର ନିର୍ଦ୍ଦେଶ ଅନୁସାରେ ଏ ଜଗତରୁ ବାହାରି ଗଲେ । ବର୍ତ୍ତମାନ ମହାଜନଙ୍କ ପୁତ୍ର ସହ ଖାତକ ପୁତ୍ରର ହିସାବ ନିକାଶ ବେଳ ।

ମହାଜନ ଖାତକକୁ ସମୂଳସୁଧ ଟଙ୍କାର ପରିମାଣ ଶୁଣାଇ ଦେଇ ଆଦାୟ ପାଇଁ ତାଗଦା କଲେ । ଖାତକ ବଗୁରୀ ଏ କଥାର ନିଷ୍ପତ୍ତି ପାଇଁ ଭଦ୍ରଲୋକ ସଭାରେ ଲାଗିଲା । ମୁଁ ସେହି ଭଦ୍ରଲୋକମାନଙ୍କ ମଧ୍ୟରେ ଜଣେ ଥିଲି । ମୁଁ ମହାଜନଙ୍କୁ ନାନା ପ୍ରଶ୍ନ କରି ସମୁଚିତ ଉତ୍ତର ନ ପାଇବାରୁ ତାଙ୍କ ବାପାଙ୍କ ହାତଖଟା ବହି ଦେଖାଇବା ପାଇଁ ବାଧ୍ୟ କଲି । ସେଥିରୁ ଜଣାଗଲା—ଖାତକର ପିତା ଚାରି ପାଞ୍ଚ ବର୍ଷ ତଳେ ସମସ୍ତ ଟଙ୍କା ପରିଶୋଧ କରି ଅଛନ୍ତି । ମହାଜନ ପ୍ରାପ୍ୟ ଆଉ କିଛି ନାହିଁ । ବରଂ ଖାତକର ପ୍ରାପ୍ୟ—ସେହି ଦଲିଲ ଫେରିକ, ବନ୍ଧକ ଜମିର ପୁନର୍ଦ୍ଦଖଲ ସ୍ୱତ୍ତ୍ୱ ଓ ସେହି ଜମିରୁ ଉତ୍ପନ୍ନ ଚାରି ପାଞ୍ଚ ବର୍ଷର ଫସଲର ମୂଲ୍ୟ, ଏହିପରି ବିବିଧ ।

ମହାଜନ ଆମକୁ ଫାଙ୍କିଦେଇ ଚାଲିଗଲେ । ମୁଁ ଖାତକକୁ ପରାମର୍ଶ ଦେଲି ଯେ ମହାଜନ ସେହି ବନ୍ଧକ ଜମିର ଫସଲ କଟାଇବା ବେଳେ ସେ ଗୋଟାଏ ହତିୟାର ଦେଖାଇ ମିଛରେ ଭୟ ପ୍ରଦର୍ଶନ କରୁ । ତାହାହିଁ ହେଲା ! ମହାଜନ ଧାନ କଟାଇ ନ ପାରି ଫେରି ଆସି ଏକ ଫୌଜଦାରି ମକଦମା ଦାଏର କଲେ । ଖାତକ ମୋତେ ସାକ୍ଷୀ କରି ମକଦମା ଲଢ଼ିଲା । ଖାତକ ଦୋଷୀ ପ୍ରମାଣିତ ହେଲେ ତାହାର ଜେଲଦଣ୍ଡ ହେବାର ଆଶଙ୍କା ଥାଏ ! ସେଥିପାଇଁ ସେ ମଝେ ମଝେ ମୋ ପାଖରେ ଅଧୀରତା ଓ ଦୁଃଖ ପ୍ରକାଶ କରୁଥାଏ । ସେ ଜେଲ ଭୋଗିଲେ ତାହାର ପିଲାଛୁଆ କେମିତି ବଞ୍ଚିବେ, ଏହାହିଁ ତାହା ପକ୍ଷରେ ଗୁରୁତର ସମସ୍ୟା ଥିଲା । ମୁଁ ତାକୁ ଏହି ଦୃଢ଼ ଆଶା ଦେଲି ଯେ, ସେ ଯେତେଦିନ ଜେଲ ଭୋଗିବ, ମୁଁ ତାର ପରିବାରକୁ ଭରଣପୋଷଣ ପାଇଁ ମାସିକ ପାଞ୍ଚଟଙ୍କା ଅର୍ଥ ସାହାଯ୍ୟ କରିବି ! ସେତେବେଳେ ଏତିକ ଟଙ୍କାରେ ତାହାର ପରିବାରର ଭରଣପୋଷଣ ଚଳିଯିବ ବୋଲି ସେ କହୁଥିଲେ ।

ଯେ ପ୍ରକୃତରେ ନିର୍ଦ୍ଦୋଷ ଥିବାରୁ ଭଗବାନ ତାଙ୍କୁ ରକ୍ଷା କରିବେ ବୋଲି ମୋର ବିଲକ୍ଷଣ ବିଶ୍ୱାସ ଥିଲା ! ଯଦିବା ତାଙ୍କୁ ଜେଲଦଣ୍ଡ ମିଳେ, ତାହା ଛଅ ମାସରୁ ବେଶି ହେବ ନାହିଁ ଏବଂ ଉକ୍ତ ସମୟ ପାଇଁ ତାହାର କଥାନୁସାରେ ମୋତେ ତିରିଶି ଟଙ୍କା ପର୍ଯ୍ୟନ୍ତ ଦେବାକୁ ପଡ଼ିବ, ଏହାହିଁ ମୁଁ ଭାବୁଥିଲି ! ଏଥିପାଇଁ ମୁଁ ଆଦୌ କୁଣ୍ଠିତ ନ ଥିଲି ଏବଂ ଖାତକର ମଧ୍ୟ ମୋ କଥା ଉପରେ ଯଥେଷ୍ଟ ବିଶ୍ୱାସ ଥିଲା । ସୁତରାଂ ମୋର ସହାନୁଭୂତିମୂଳକ ସାହାଯ୍ୟ ଜଣାଇ ଦେବା ପରେ ଖାତକର ମାନସିକ ବଳ ବଢ଼ିବାର ଏବଂ ତାହାର ନୈରାଶ୍ୟ ଓ ଭୟ ଦୂରୀଭୂତ ହେବାର ଲକ୍ଷ୍ୟ କଲି । ଏସ୍. ଡ଼ି. ଓ. ଶ୍ରୀ ମହୀନ୍ଦ୍ରନାଥ ଗୁହ ସେହି ମକଦ୍ଦମା ବିଚାର କଲେ ! ଖାତକ ପକ୍ଷରେ ମୁଁ ପ୍ରଧାନ ସାକ୍ଷୀ ଥିଲି ! ଭଗବାନଙ୍କ ଆଶୀର୍ବାଦରୁ ଖାତକ ନିର୍ଦ୍ଦୋଷ ପ୍ରମାଣିତ ହେଲା ! ସେ ତାହାର ଜମି ନିର୍ବିବାଦରେ ଦଖଲ କରୁଛି ।

ମହାଜନ ଖାତକ ଓ ଜମିଦାର ପ୍ରଜା ମଧ୍ୟରେ ସଂଘଟିତ ବାଦ ବିବାଦ ଏବଂ ବିରୁଦ୍ଧ ବାଦୀ ଦୁଇ ପକ୍ଷଙ୍କ ଭିତରେ ସୃଷ୍ଟି ହୋଇଥିବା ମାଲିମକଦ୍ଦମାଗୁଡ଼ିକ ଆପୋଷରେ ସାଲିସ୍ କରାଇ ଶାନ୍ତି ଆଣିବା ଦିଗରେ ମୁଁ ଯେତେ କାର୍ଯ୍ୟ କରିଛି, ତାହାର ସଂଖ୍ୟା ଦେଇ ହେବ ନାହିଁ ! ଲୋକ ସମାଜରେ ନିରପେକ୍ଷ ବିଚାରକ ବୋଲି ମୋର ଖ୍ୟାତି ଅଛି ! ପ୍ରବଳର ଅତ୍ୟାଚାରରୁ ଦୁର୍ବଳକୁ ରକ୍ଷା କରିବା ପାଇଁ ମୋତେ କିଛି ଆର୍ଥିକ କ୍ଷତି ମଧ୍ୟ ସହ୍ୟ କରିବାକୁ ପଡ଼ିଛି ।

## ବିଚ୍ଛିନ୍ନ-ଉତ୍କଳ-ଅବକାଶ ବାହିନୀକୁ ସାହାଯ୍ୟ

ବିଚ୍ଛିନ୍ନ ଉତ୍କଳ ଅବକାଶ ବାହିନୀର ଦୁଇ ତିନିଜଣ କର୍ମୀ ମୋ ସ୍କୁଲକୁ ଆସି ସେମାନଙ୍କ କର୍ମ-ଯୋଜନା ସମ୍ବନ୍ଧରେ ଛାତ୍ରମାନଙ୍କୁ ଭାଷଣ ଦେଇଥିଲେ । ମୁଁ ସେଦିନ ସଭାରେ ସଭାପତିରୂପେ ଛାତ୍ରମାନଙ୍କୁ ପରାମର୍ଶ ଦେଇଥିଲି ଯେ, ପ୍ରତ୍ୟେକେ ଜନ୍ମଭୂମିର ମହତ୍ ଉଦ୍ଦେଶ୍ୟ ସାଧନ ପାଇଁ ମାସିକ ଏକଅଣା ଲେଖାଏ ଦାନ କରନ୍ତୁ । ପ୍ରତି ମାସରେ ଛାତ୍ରଦତ୍ତ ସାହାଯ୍ୟ ଯେତିକି ହେବ, ମୁଁ ତାହାର ଅର୍ଦ୍ଧାଂଶ ଦେବି । ମୁଁ ଖୁବ୍ ନିଷ୍ଠା ସହକାରେ ଛାତ୍ରମାନଙ୍କଠାରୁ ଚାନ୍ଦା ଆଦାୟ କରୁଥିଲି ଓ ନିଜେ ମଧ୍ୟ

ଦେଉଥିଲି । ତାହା ସିଂହଭୂମିର ଗୋଟିଏ ମଧ୍ୟ ଇଂରାଜୀ ସ୍କୁଲର ପ୍ରଧାନ ଶିକ୍ଷକଙ୍କ ପାଖକୁ କେତେ ମାସ ଧରି ପଠାଯାଉଥିଲି ।

## ବନ୍ୟାପୀଡ଼ିତଙ୍କୁ ସାହାଯ୍ୟ

ଲୁଣା ନଦୀରେ ଶାଗୁଣାଘାଇ ଭାଙ୍ଗିଯାଇ ସେ ଅଞ୍ଚଳରେ ଶୋଚନୀୟ ଅବସ୍ଥା ସୃଷ୍ଟି କରିଥିଲା । ଶ୍ରୀ ଯଦୁମଣି ମଙ୍ଗରାଜ କଟକ ଜିଲ୍ଲାବୋର୍ଡ଼ ପ୍ରଦତ୍ତ ଚାଉଳ ଓ ଚୂଡ଼ା ଇତ୍ୟାଦି ନେଇ ରିଲିଫ୍ କାର୍ଯ୍ୟ କରିବାକୁ ଗଲାବେଳେ ମୁଁ ତାଙ୍କର ସହକର୍ମୀ ହୋଇଥିଲି ଏବଂ ଏକ ସପ୍ତାହ ପର୍ଯ୍ୟନ୍ତ ବନ୍ୟାଞ୍ଚଳରେ କାର୍ଯ୍ୟ କରିଥିଲି ।

ଏହି ବନ୍ୟାଦ୍ୱାରା ବିଧ୍ୱସ୍ତ ହୋଇଥିବା ଅଞ୍ଚଳ ସ୍ୱଚକ୍ଷୁରେ ଦେଖି ସରକାରଙ୍କ ପାଖରେ ରିପୋର୍ଟ ଦାଖଲ କରିବାକୁ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଆହ୍ୱାନ କ୍ରମେ ଭାରତ ବିଖ୍ୟାତ ନେତ୍ରୀ ଶ୍ରୀମତୀ କମଳା ଦେବୀ ଚଟ୍ଟୋପାଧ୍ୟାୟ ଓ ଶ୍ରୀମତୀ ଊର୍ମିଳା ମେହେଟ୍ଟ ଆସି ମୋର ଅତିଥି ହୋଇ ଥିଲେ । ମୁଁ ସେମାନଙ୍କର ସମସ୍ତ ପ୍ରକାର ସୁବିଧା କରି ଦେଇଥିଲି ।

୧୯୪୩ ମସିହାରେ ବିଶ୍ୱଯୁଦ୍ଧ ଯୋଗୁଁ ଧାନ ଚାଉଳର ଦର ଯଥେଷ୍ଟ ବଢ଼ିଗଲା ଏବଂ ତାହା ମଧ୍ୟ ଦୁର୍ଲଭ ହେଲା । ମୋର କେତେ ଜଣ ପଡ଼ୋଶୀ ହରିଜନ କାମ ନ ପାଇ ବେକାର ହେଲେ ଏବଂ ଭୀଷଣ ଭାବରେ ଖାଦ୍ୟାଭାବ ଅନୁଭବ କଲେ । ସେମାନଙ୍କ ଦୁଃଖ ଆଖିରେ ଦେଖି ବିଚଳିତ ହୋଇ ପଡ଼ିଲି ଏବଂ ସ୍ଥାନୀୟ ସଙ୍ଗତିସମ୍ପନ୍ନ ବ୍ୟକ୍ତିଙ୍କଠାରୁ ଧାନ, ଚାଉଳ ଓ ଟଙ୍କା ଆକାରରେ ଚାନ୍ଦା ଆଦାୟ କରି ସେମାନଙ୍କୁ ସାହାଯ୍ୟ କରିଥିଲି । ମୋର ଖଣ୍ଡିଏ ଅନାବାଦି ଜମିରେ ବିଶେଷ ଆବଶ୍ୟକତା ନ ଥିଲେ ହେଁ ସେମାନଙ୍କୁ କାମ ଦେଇ ମୂଲ ଆକାରରେ କିଛି ଟଙ୍କା ସାହାଯ୍ୟ କରିଥିଲି । ତା ଛଡ଼ା ଜଣେ ମହାଜନଙ୍କଠାରୁ ମୋ ଦାୟିତ୍ୱରେ ଧାନ ଋଣ ଆଣି ସେମାନଙ୍କୁ କମ୍ ସୁଧରେ ଏବଂ କାହାକୁ ବା ବିନା ସୁଧରେ ଋଣ ଦେଇଥିଲି ।

## ସୁଷମ ବଣ୍ଟନ ଦାୟିତ୍ୱ

ପ୍ରାୟ ୧୯୪୬ ମସିହାରେ ଚିନି, ଲୁଗା, କିରାସିନ୍ ଇତ୍ୟାଦି ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ସୁରୁଖୁରୁରେ ବାଣ୍ଟିବା ପାଇଁ ମଫସଲରେ କମିଟିମାନ ଗଠିତ

ହୋଇଥିଲି । ମୁଁ କେନ୍ଦ୍ରାପଡ଼ା ଥାନା ୧୦ ନମ୍ବର ଇଉନିୟନ କମିଟିର ପ୍ରେସିଡେଣ୍ଟ୍ ହୋଇ ନିରପେକ୍ଷ ଭାବରେ ପଢ଼ ଜନଷ ବାଣ୍ଟି ଲୋକପ୍ରିୟ ହୋଇଥିଲି ଏବଂ କାର୍ଯ୍ୟ ଶେଷରେ ଭଲ କାମ କରିଥିବାରୁ ସରକାରଙ୍କ ଠାରୁ ଖଣ୍ଡିଏ ସାର୍ଟିଫିକେଟ ପାଇଥିଲି ।

ଏହି କମିଟିମାନ ଗଠିତ ହେବା ପୂର୍ବରୁ ଷ୍ଟୋପାମାଲ ଦୋକାନୀ-ମାନଙ୍କର ମନଇଚ୍ଛା ଦରବୃଦ୍ଧି ରୋକିବା ଲାଗି କେନ୍ଦ୍ରାପଡ଼ା ଏସ୍. ଡ଼ି. ଓ. ଦୃବେଦୋଳ ସୁକାମରେ ଯେଉଁ Vigilance Committee ଗଢ଼ିଥିଲେ, ମୁଁ ସେଥିରେ ଜଣେ ସଭ୍ୟ ହୋଇଥିଲି । ମୋ ଅଞ୍ଚଳରେ ଯେଉଁମାନେ, ଧାନ ବିକ୍ରୀ ନ କରି ଲୁଚାଇ ରଖିଥିଲେ, ସେମାନଙ୍କ ବିରୁଦ୍ଧରେ ସରକାରଙ୍କୁ ଜଣାଇ ଧାନ ଜବତ କରିବା ଦ୍ୱାରା ମୁଷ୍ଟିମେୟ ଧନୀଙ୍କର ଚକ୍ଷୁଶୂଳ ହେବାକୁ ପଡ଼ିଥିଲା ।

## ଲୋକ କଲ୍ୟାଣ

କ୍ୱେଟା ଓ ବିହାର ଭୂମିକମ୍ପ ବେଳେ ଛାତ୍ରମାନଙ୍କ ସହ ସମାଗତ ଏକ ସପ୍ତାହ ପର୍ଯ୍ୟନ୍ତ ଭୂମିକମ୍ପଜନିତ ଦୁଃଖ ଦୁର୍ଦ୍ଦଶା ସମ୍ବଳିତ ଗୀତ କରୁଣ ଭାବରେ ଗାଇ ଗାଇ ଘର ଘର ବୁଲି ଚାନ୍ଦା ଉଠାଇଥିଲି ।

୧୯୪୭ ରାଷ୍ଟ୍ରବିପ୍ଳବ ବେଳେ ଅଭ୍ୟାଗତ ଶରଣାର୍ଥୀମାନଙ୍କ ପାଇଁ ଶିକ୍ଷକ ଓ ଛାତ୍ରମାନଙ୍କଠାରୁ ଚାନ୍ଦା ଆଦାୟ କରି ଏବଂ ନିଜେ ଯଥାଶକ୍ତି ଦେଇ ଆତ୍ମପ୍ରସାଦ ଅନୁଭବ କରିଥିଲି ।

## ବାରିକ ଓ ଖଣ୍ଡାୟତ ବିବାଦ

ମୋ ଘର ପାଖରୁ ୪ କିଲୋମିଟର ଦୂରରେ ଖଣ୍ଡାୟତ ବହୁଳ ଖମ୍ବୋଳ ଗ୍ରାମ ଅବସ୍ଥିତ । ପାଞ୍ଚ ଛଅ ଘର ବାରିକ ଅଛନ୍ତି । ଆଗେ ପ୍ରାପ୍ତ ସମ୍ବାଦ ଏହି ବାରିକମାନେ ମୁନିବଙ୍କୁ କ୍ଷୌର କରିବା ଛଡ଼ା ସେମାନଙ୍କ ଭୋଜଭାତରେ ଅଇଣ୍ଠା ପତ୍ର ଉଠାଉଥିଲେ ଏବଂ ବନ୍ଧୁ ଘରେ ମୃତ୍ୟୁ ସଂବାଦ ଦେଇ ଆସୁଥିଲେ । ଏବେ ସେମାନଙ୍କ ଜାତିଆଣ ସଭାରେ ଏ ଦୁଇଟି କାର୍ଯ୍ୟ ନ କରିବାକୁ ସିଦ୍ଧାନ୍ତ ହୋଇଛି ; କିନ୍ତୁ ଖଣ୍ଡାୟତମାନେ ସେମାନଙ୍କ ଦାବୀରୁ ଓହରିଯିବାକୁ ରାଜି ନୁହନ୍ତି । ଏଥିପାଇଁ ଉଭୟଙ୍କ ମଧ୍ୟରେ ମନୋମାଳିନ୍ୟ ଓ ବିବାଦ ସୃଷ୍ଟି ହେଲା ।

ଖଣ୍ଡାୟତମାନେ ବାଉରିଙ୍କ ଘର ଛୁଇଁଲେ ନାହିଁ । ଦୂରରୁ ଡାକ ଡକାଇ ଖୌର ହେଲେ । ସେମାନଙ୍କ ବିରୋଧ ଯୋଗୁଁ ବାଉରିମାନେ ନିଜର ଜମି ଚାଷ କରିବା, ଜମିରେ ପାଣି ମଡ଼ାଇବା ଇତ୍ୟାଦି କାର୍ଯ୍ୟ କରି ପାରିଲେ ନାହିଁ, ଏପରିକି ମାଡ଼ ଭୟରେ ପରିବାରଙ୍କୁ ନେଇ ଦୂରବର୍ତ୍ତୀ ବନ୍ଧୁ ଘରେ ଛାଡ଼ି ଦେଇ ଆସିଲେ । ଘର ଜଗିବାକୁ କେବଳ ଜଣେ ଜଣେ ରହିଲେ । ଗାଈ ବଳଦ ବିକି ଦେଲେ । ସେମାନଙ୍କ ଚାଷ ଜମି ପଡ଼ିଆ ରହିଲା ।

ଏହି ଘଟଣା ବେଳେ ମୁଁ ଘର ଗାଡ଼ କଟକରେ ରହୁଥିଲି । ଘରେ ଥିଲେ ଉଭୟ ପକ୍ଷଙ୍କ ମଧ୍ୟରେ ସଦ୍‌ଭାବ ଆଣିବାକୁ ଚେଷ୍ଟା କରିଥାନ୍ତି । ସାହାଡ଼ିହ, ବନ୍ଧୁ ଭିତରେ ବିବାଦର ସମାଧାନ ପାଇଁ ସମୟ କଲି । ଖଣ୍ଡୋଳ ଗ୍ରାମରେ ମୋର ଅନେକ ଛାତ୍ର ଥିଲେ । ସେମାନଙ୍କ ମଧ୍ୟରେ ଧନୀ ଘର ପିଲା ଶ୍ରୀ ନୀଳମଣି ନାୟକ ଜଣେ । ପ୍ରଜା-ସୋସାଲିଷ୍ଟ ଦଳର ଜଣେ କର୍ମୀରୂପେ ତାହାଙ୍କୁ ବହୁ ଲୋକ ଜାଣନ୍ତି ଏବଂ ଗ୍ରାମବାସୀ ସମସ୍ତେ ତାହାର ପ୍ରଭାବରେ ପ୍ରଭାବିତ ।

ନୀଳମଣିର କଥାନୁସାରେ ଗୋଟିଏ ଦିନ ସ୍ଥିର ହେଲା । ମୁଁ ସେ ଗ୍ରାମକୁ ଗଲି । ଗ୍ରାମର ଆବାଳବୃଦ୍ଧ ସଭାରେ ଉପସ୍ଥିତ । ବାଉରିମାନେ ଗଲେ । ବାଉରିମାନଙ୍କର ଗତାନୁଗତିକ ଢାମ ଏ କାଳରେ ଆଶା କରିବା ଉଚିତ ନୁହେଁ । ପ୍ରତ୍ୟେକ ଅନୁନ୍ନତ ଜାତିରେ ଗୋଟାଏ ଜାଗରଣ ଆସିବାରେ ଲକ୍ଷ୍ୟ କରିପାରନ୍ତି । ସେହି ପଦଦଳିତ ଜାତି ମଧ୍ୟରୁ କେତେ ବି. ଏ., ଏମ୍. ଏ. ପାସ୍‌ କଲେଣି ଓ ସରକାରଙ୍କ ଉଚ୍ଚ ପଦବୀରେ ରହିଲେଣି । ସ୍ୱାଧୀନତା ପରେ ସେମାନଙ୍କୁ ଆଉ ଅବହେଳିତ କରିଦେବା ଉଚିତ ନୁହେଁ । ସ୍ରୋତର ପ୍ରତିକୂଳରେ ଯିବା ମୂର୍ଖତା ହେବ । ଏହିପରି ଭାବରେ ଭାଷଣ ଦେଲି । କିନ୍ତୁ କାହାରି ଭାବାନ୍ତର ଘଟିଲା ନାହିଁ । ତାପରେ ମୁଁ ବାଉରିମାନଙ୍କୁ ସେହି ସଭାରେ ଏକାବେଳକେ ଲମ୍ବ ହୋଇ ଗୋଡ଼ତଳେ ପଡ଼ିଯିବା ଲାଗି ଇଙ୍ଗିତ ଦେଲି । ସେମାନେ ତାହା କଲେ । ଆଶ୍ଚର୍ଯ୍ୟର କଥା, କାହାରି ହେଲେ ଦୟାର ଉଦ୍ରେକ ହେଲା ନାହିଁ । ତିନି ଚାରି ଜଣ ପୂର୍ବ ଜିଦ୍ ଧରି ବସିଲେ ।

ମୁଁ ନିଜକୁ ବଡ଼ ଅସହାୟ ଓ ପରାଜିତ ମନେକଲି । ଭାବିଲି, ମୁଁ ନ୍ୟୂନତାସୂଚକ କିଛି କାର୍ଯ୍ୟ କଲେ ଯଦି ବାଳକମାନଙ୍କର ମହୋପକାର ହେବ, ତାହାହେଲେ ମୁଁ କରିବି । ମୁଁ ନିରାଶ ହୋଇ ଫେରି ଆସିଲେ ଅବସ୍ଥା ଅସମ୍ଭାଳ ହେବ, ହୁଏ ତ ରକ୍ତାକ୍ତ କାଣ୍ଡ ଘଟିଯିବ । ମୁଁ ହଠାତ୍ ଉଠି ପଡ଼ିଲି, ବାଷ୍ପରୁଦ୍ଧ କଣ୍ଠରେ କହିଲି, "ମାଳମଣି, ଏହି ସଭାରେ ମୋର କେତେ ଗୁରୁଜନ ଥିବେ । ମୁଁ ଦୁଃଖିତ ଯେ, ମୋର ନ୍ୟାୟସଙ୍ଗତ ଅନୁରୋଧ କେହି ରଖିଲେ ନାହିଁ । ଯାହାହେଉ, ମୁଁ ବର୍ତ୍ତମାନ ଶେଷ ଅନୁରୋଧଟି କରି ବିଦାୟ ନେଉଛି ।" ଏହା କହିସାରି ମୁଁ ମଧ୍ୟ ସଭା ଆଗରେ ବାଳକମାନଙ୍କ ଲାଗି ସାଷ୍ଟାଙ୍ଗ ପ୍ରଣତି କରିସାରି ଉଠିଲି । ସଭାସ୍ଥଳ ନିର୍ବାକ୍ ହୋଇଗଲା । ମୁଁ ସାଇକେଲ ଧରି ପଳାଇ ଆସିଲି ।

ଚାରି ପାଞ୍ଚ ଦିନ ପରେ ଯେଉଁ ଦିନ ଶୁଣିଲି ଯେ, ଖଣ୍ଡାୟତମାନେ ବାଳକମାନଙ୍କର ଘର ଛପର କରି ଦେଲେ, ସେମାନଙ୍କ ବଳଦ ନ ଥିବାରୁ ଚାଷ ପାଇଁ ନିଜ ବଳଦ ଯୋଗାଇଲେ ଏବଂ ବାଳକମାନଙ୍କ ପରିବାରବର୍ଗ ବନ୍ଦିଘରୁ ଫେରି ଆସିଲେ, ସେଦିନ ମୁଁ କିପରି ଆନନ୍ଦରେ ଅଭିଭୂତ ହେଲି, ତାହା ପ୍ରକାଶ କରିବାକୁ ଭାଷା ନାହିଁ ।

# ମୁକ୍ତି ସଂଗ୍ରାମରେ ମୁଁ

## ଅସହଯୋଗ ଆନ୍ଦୋଳନ

ଭାରତର ମୁକ୍ତି ପାଇଁ ପ୍ରଥମ ପଦକ୍ଷେପ ସ୍ୱରୂପ ୧୯୨୧ରେ ମହାତ୍ମାଗାନ୍ଧି ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଥିଲେ । ମୁଁ ୭ମ ଶ୍ରେଣୀରେ ଘଣ୍ଟାମୁଣ୍ଡାଇରେ ପଢ଼ୁଥିଲି । ୰ ଯଦୁମଣି ମଙ୍ଗରାଜଙ୍କ ପ୍ରଗଲ୍‌ଭ ବକ୍ତୃତାରୁ ଇଂରେଜ ସରକାରଙ୍କ ସ୍ୱରୂପର ପରିଚୟ ପାଇ ମୋର ବାଲ୍ୟଜୀବନ ଏପରି ପ୍ରଭାବିତ ହୋଇଥିଲା ଯେ, ମୁଁ ସେହି ସମୟରୁ ନିୟମିତ ଭାବରେ ଖଦଡ଼ି ପିନ୍ଧିବା ଆରମ୍ଭ କଲି ଏବଂ ଗାନ୍ଧିଜୀଙ୍କ ଆଦର୍ଶରେ ଜୀବନ ଗଢ଼ିବାକୁ ଉତ୍ସାହିତ ହୋଇଥିଲି ।

## ଲବଣ ସତ୍ୟାଗ୍ରହ

୧୯୩୦ ମସିହାରେ ଗାନ୍ଧିଜୀ ଲବଣ ସତ୍ୟାଗ୍ରହ ପାଇଁ ଆହ୍ୱାନ ଦେଲେ । ସମୁଦ୍ର ଉପକୂଳରେ ଲୋକେ ନିଷିଦ୍ଧ ଅଞ୍ଚଳରେ ଲୁଣ ମାରି ଆଇନ ଭଙ୍ଗ କରନ୍ତୁ ଓ ଜେଲ ବରଣ କରନ୍ତୁ, ଏହାହିଁ ତାଙ୍କ ଆହ୍ୱାନର ଅର୍ଥ ।

ମୁଁ ଶ୍ରେଣୀରେ ପାଠ ପଢ଼ାଇବା ବେଳେ ଯେଉଁ ଅଧିକ ବୟସର ପିଲା ଭଲ ପଢ଼ନ୍ତି ନାହିଁ, ମୁଁ ତାଙ୍କୁ ଛୁଟିଗଲେଇ କହେ— ପାଠ ତ ହେଉ ନାହିଁ । ଲୁଣ ମାରିବାକୁ ଯାଅ । ଜେଲଦଣ୍ଡ ମିଳିବ । ଗୋଟାଏ ନେତା ହୋଇ ବାହାରିବ, ଲୋକଙ୍କଠାରୁ ପ୍ରଶଂସା ବି ଶୁଣିବ ।

ଥରେ ସ୍କୁଲ ପାଖରେ ଜଣେ କଂଗ୍ରେସ କର୍ମୀଙ୍କ ଆୟୋଜନରେ ସଭାଟିଏ ହେଲା । ସଭାରେ ଲୁଣ ମାରିବାକୁ ବାହାରିବା ପାଇଁ ଯୁବକ-ମାନଙ୍କୁ ପ୍ରେରଣା ଦିଆଗଲା । ସେତିକବେଳେ ମୋର ଉଦ୍ଦିଷ୍ଟ ଛାତ୍ରମାନେ ନାଁ ଦେଲେ ଏବଂ ସଭା ଭାଙ୍ଗିବା ପରେ କଟକ ଚାଲିଯାଇ ସ୍ୱରାଜ

ଆଶ୍ରମରେ ରହିଲେ । ପୁଲିସ ସେମାନଙ୍କୁ ଆଶ୍ରମରୁ ନେଇଯାଇ ଥାନା ଘରେ ରଖିଲେ ।

ତହିଁ ଆରଦିନ ପ୍ରାୟ ସକାଳ ୮ଟା ବେଳକୁ ଜଣେ ପୋଲିସ ସ. ଇ., ଦୁଇ ଜଣ କନେଷ୍ଟବଲ ଓ ଗୋଟିଏ ଭ୍ୟାନ୍ ଧରି ସ୍କୁଲ ପାଖରେ ପହଞ୍ଚିଲେ ଏବଂ କଟକ ଗୁଲି ଯାଇଥିବା ପିଲମାନଙ୍କ ଅଭିଭାବକଙ୍କୁ ଡକାଇ ପଠାଇଲେ । ସେମାନଙ୍କୁ କଟକ ଯିବାକୁ ପଡ଼ିବ ଏବଂ ମୁଁ ମଧ୍ୟ ଛାତ୍ରାବାସର ତତ୍ତ୍ୱାବଧାୟକ ଭାବରେ ଯିବି ବୋଲି ଶୁଣାଇ ଦିଆଗଲା ।

ଆମ୍ଭେମାନେ ଯାଇଁ ଜଗତ୍‌ପୁରଠାରେ ପହଞ୍ଚିଲୁ । ସ. ଇ. ବାବୁ କହିଲେ, ବର୍ତ୍ତମାନ ମହାନଦୀ ପାର ହୋଇ କୋର୍ଟରେ ପହଞ୍ଚିବାକୁ ହେବ । ସେତେବେଳକୁ ପ୍ରାୟ ମଧ୍ୟାହ୍ନ । ନଈ ବାଲି ତାତିଥିବ । ତେଣୁ ଖରା ନ କମିଲେ ଆମ୍ଭେମାନେ ଯିବୁ ନାହିଁ ବୋଲି ମୁଁ ଜିଦ୍ ଧରି ବସିଲି । ସ. ଇ. ବାବୁ କଅଁଳେଇ କହିଲେ—ନଈ ଆର ପାଖରେ ସେ ଆମ୍ଭମାନଙ୍କୁ ଘୋଡ଼ା ଗାଡ଼ିରେ ନେଇଯିବେ । ତାଙ୍କ କଥା ଶୁଣି ନ ପାରି ଚଲୁ । ସେ କୂଳରେ ପହଞ୍ଚି ମୁଁ ଗୋଟାଏ ଗଛ ଛାଇରେ ବସି ପଡ଼ିଲି ଏବଂ ଘୋଡ଼ାଗାଡ଼ି ଅଣାଇବାକୁ କହିଲି । ସ. ଇ. କହିଲେ, "ଆମ୍ଭେମାନେ ଗୁଲିକରି ଯାଉଥିବୁ । ଯେଉଁଠି ଘୋଡ଼ାଗାଡ଼ି ମିଳିବ, ସେଇଠି ବସିବୁ । ମୁଁ ରାଜି ନ ହେବାରୁ ସେ ହଠାତ୍ ଉତ୍ତେଜିତ ସ୍ୱରରେ କହିଲେ "ଆପଣ ସରକାରୀ ଗୁକିରୀ କରି ଏମିତି କଣ କହୁଛନ୍ତି ?" ମୋ କଥା ରହିଲା । ସେ ଜଣେ କନେଷ୍ଟବଲକୁ ପଠାଇ ଘୋଡ଼ାଗାଡ଼ି ଅଣାଇଲେ ।

କଟକରେ ପହଞ୍ଚିବା ପରେ କୋର୍ଟ ଇନ୍‌ସପେକ୍ଟର ଥାନାକୁ ଯିବାକୁ ଏବଂ ଆମକୁ ଯାହା ଶିଖାଇ ଦିଆଯିବ, ସେହିପରି କହିବାକୁ କହିଲେ । ମୁଁ କହିଲି—ମୁଁ ଯାହା ଜାଣେ ତାହାହିଁ କହିବି । ମିଛ କହିପାରିବି ନାହିଁ ।

ଆହେଦ୍ ସାହେବଙ୍କ କୋର୍ଟରେ ମକଦମା ପଡ଼ିଲା । ସରକାରଙ୍କ ଇଚ୍ଛା ଥାଏ, ସ୍କୁଲ ପାଖରେ ଯେଉଁ ସଭା ହୋଇଥିଲା, ତାହାର ଉଦ୍‌ଯୋକ୍ତାଙ୍କୁ ଜେଲ୍ ଦେବାକୁ ହେବ । ମାହାଙ୍ଗାର ଜଣେ କର୍ମୀ ଶ୍ରୀ ବ୍ରହ୍ମାନନ୍ଦ ଶତପଥୀଙ୍କୁ ଦୋଷୀ ସାବ୍ୟସ୍ତ କରିବା ପାଇଁ ପୋଲିସ ପକ୍ଷରୁ ଚେଷ୍ଟା ଗୁଲିଥାଏ । କିନ୍ତୁ ପ୍ରକୃତରେ ସେ ସଭାରେ ନ ଥିଲେ । ମୁଁ

ମୋ ସାକ୍ଷ୍ୟରେ ଶ୍ରୀ ଶତପଥୀ ସଭାରେ ନ ଥିଲେ ବୋଲି କହିଲେ ହେଁ ଆହେଦ୍ ସାହେବ ମୋ କଥାକୁ ବଦଳାଇ 'ସେ ଥିଲେ' ବୋଲି ଲେଖିଲେ । ସାକ୍ଷ୍ୟ ବିବରଣୀରେ ଦସ୍ତଖତ କରିବାକୁ ମୋତେ ଦିଆଗଲା । ମୁଁ ତାହା ଆମୂଳଚୂଳ ପଢ଼ି ପ୍ରତିବାଦ କରି କହିଲି ଯେ, ସେ 'ସଭାରେ ଥିଲେ' ବୋଲି ମୁଁ କହି ନାହିଁ । ଆହେଦ୍ ସାହେବ ଇଚ୍ଛାକରି ଯେଉଁ ଭୁଲ୍ କରିଥିଲେ, ତାହା ସଂଶୋଧନ କରିବାକୁ ବାଧ୍ୟ ହେଲେ ।

ମୁଁ ସାକ୍ଷ୍ୟ ଦେଇ ବାହାରି ଆସିବା ପରେ ତତ୍କାଳୀନ ପୁଲିସ ସାହେବ ଶ୍ରୀପତି ନନ୍ଦ ମୋ ଉପରେ ଭାରି ରାଗିଯାଇ ଦାନ୍ତ କାମୁଡ଼ି କହିଲେ—"ତୁମେ ସରକାରଙ୍କ ବିରୁଦ୍ଧରେ ସାକ୍ଷ୍ୟ ଦେଲ । ତୁମ ଚାକିରି ଖଣ୍ଡିକ ନ ନେଇ ଛାଡ଼ିବି ନାହିଁ ।" ମୁଁ ସଙ୍ଗେ ସଙ୍ଗେ କହିଲି, "କୋଡ଼ିଏ ଟଙ୍କିଆ ଚାକିରି ପ୍ରତି ମୋର ଲୋଭ ନାହିଁ, ଗଲେ ଯିବ ।" ସେତେବେଳେ ମ. ଇ. ସ୍କୁଲର ସେକେଣ୍ଡ୍ ପଣ୍ଡିତ ଭାବରେ ମୋର ଦରମା ଥିଲା କୋଡ଼ିଏ ଟଙ୍କା । ଭାବୁଥିଲି ଚାକିରି ତ ଛାଡ଼ି ପାରୁ ନାହିଁ । ଯଦି ଏହି ଘଟଣାରେ ଚାଲିଯାଏ, ମୋ ପକ୍ଷରେ ଆନନ୍ଦର ବିଷୟ ହେବ । ମୁଁ ପୂର୍ଣ୍ଣ ପ୍ରାଣରେ ଦେଶ ସେବା କରିବି । ତା ପରେ ମୁଁ ଚାକିରି ହରାଇବି ବୋଲି ମୋର ବନ୍ଧୁ ମାନେ ଆଶଙ୍କା କଲେ ଏବଂ ଲୋକ ମୁଖରେ ମଧ୍ୟ ଶୁଣାଗଲା । ମାତ୍ର ମୋର ଚାକିରି ନ ଯାଇ ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ଅକ୍ଷୟ କୁମାର ଚକ୍ରବର୍ତ୍ତୀଙ୍କର ଚାକିରି ଗଲା । ସେତେବେଳେ ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି କଟକ ଜିଲ୍ଲା ବୋର୍ଡ଼ର ଚେୟାରମ୍ୟାନ ଥିଲେ । ସରକାରଙ୍କ ଦାସତ୍ୱ ତାଙ୍କର ଅସ୍ଥିମଜ୍ଜାଗତ । ସେ ଜିଦ୍ ଧରି ବସିଲେ ଯେ, ଶ୍ରୀ ଚକ୍ରବର୍ତ୍ତୀଙ୍କୁ ସ୍କୁଲରୁ ଅନ୍ତର ନ କଲେ ସ୍କୁଲକୁ ସରକାରୀ ଗ୍ରାଣ୍ଟ୍ ଦିଆଯିବ ନାହିଁ । ତେଣୁ ପରିଚାଳନା କମିଟି ବାଧ୍ୟ ହୋଇ ତାଙ୍କଠାରୁ ଇସ୍ତଫା ଦାବି କଲେ ଏବଂ ସେ ମଧ୍ୟ ସ୍କୁଲର ହିତ ଦୃଷ୍ଟିରୁ ଆନନ୍ଦ ମନରେ ଚାଲିଗଲେ ।

## ଅସ୍ପୃଶ୍ୟତା ବିରୁଦ୍ଧରେ ଅଭିଯାନ

୧୯୩୪ରେ ମହାତ୍ମା ଗାନ୍ଧୀ ହରିଜନମାନଙ୍କର ହିତକଳ୍ପେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପଦଯାତ୍ରା କରିଥିଲେ । ସେ କଟକ-ଚାନ୍ଦବାଲି ରାସ୍ତାରେ ଯିବାବେଳେ ମୋର ଘର ପାଖ କାକଟିଆ ଓ ସଲର ଗ୍ରାମରେ ରହଣି

କରିଥିଲେ । ଏହି ଉଭୟ ସ୍ଥାନରେ ଅତିଥିମାନଙ୍କର ଚର୍ଚ୍ଚା ଲାଗି ମୋ ଉପରେ ଦାୟିତ୍ୱ ଦିଆ ଯାଇଥିଲା । ମୁଁ ଲୋକମାନଙ୍କଠାରୁ ନଗଦ ଟଙ୍କା ଏବଂ ଗୁଡ଼ଚାଉଳ ପରିବା ଆଦି ସଂଗ୍ରହ କରି ପଦଯାତ୍ରୀମାନଙ୍କର ସମ୍ବର୍ଦ୍ଧନା କରିଥିଲି ।

ଏହି ସମୟରେ ଗୋପବନ୍ଧୁ ଚୌଧୁରୀ, ରମା ଦେବୀ ଓ ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିହାରୀ ଚାନ୍ଦା ଆଦାୟ ପାଇଁ ମୋତେ ସଙ୍ଗରେ ଡାକି ନେଇଥିଲେ । ଆମ୍ଭେମାନେ କେତେକ ଗ୍ରାମକୁ ଯାଇଥିଲୁ । ଯେଉଁମାନେ ଦେବାର କଥା, ସେମାନେ ସଙ୍ଗେ ସଙ୍ଗେ ଦେଲେ । ମାତ୍ର କେତେଜଣ ଧନୀ ଲୋକ ଘରେ ଥାଇ ଆମକୁ ଦେଖାଦେଲେ ନାହିଁ । ଗାନ୍ଧିଜୀ ସଲାଗୋଠାରେ ରାତି କଟାଇଲେ । ବହୁ ଲୋକ ତାଙ୍କୁ ଦେଖିବା ପାଇଁ ଆସିଥାନ୍ତି । ଗାନ୍ଧିଜୀ ଦେଖା ଦେବାକୁ ରାଜି ହେଲେ ନାହିଁ । ଲୋକେ ବାଧ୍ୟ କରିବାରୁ ସେ ତମ୍ବୁ ଭିତରୁ ବାହାରକୁ ଆସି ଧାଡ଼ି ବାନ୍ଧି ଠିଆ ହୋଇଥିବା ଲୋକଙ୍କ ପାଖକୁ ଯାଇଁ ଚାନ୍ଦା ଆଦାୟ କଲେ । ଯେଉଁ ଧନୀ ବ୍ୟକ୍ତିମାନେ ଚାନ୍ଦା ଦେଇ ନ ଥିଲେ ଓ ଘରେ ରହି ଆମ୍ଭମାନଙ୍କୁ ଦେଖା ଦେଇ ନ ଥିଲେ, ସେମାନଙ୍କୁ ସେଠାରେ ଉପସ୍ଥିତ ଦେଖି ମୁଁ ବିସ୍ମିତ ହୋଇଥିଲି ।

## ବ୍ୟକ୍ତିଗତ ସତ୍ୟାଗ୍ରହ

୧୯୪୦ରେ ବିଶ୍ୱଯୁଦ୍ଧ ଲାଗିଥିଲା । ମହାତ୍ମାଜୀ ବ୍ୟକ୍ତିଗତ ସତ୍ୟାଗ୍ରହ ଦ୍ୱାରା ଜେଲ ବରଣ କରିବା ପାଇଁ ଡାକ ଦେବାରୁ ମୁଁ ମୋର ପ୍ରିୟ ଛାତ୍ର ଶ୍ରୀ ଶୁକଦେବ ସାହୁଙ୍କୁ ଉତ୍ସାହିତ କରିଥିଲି । ଏହିପରି ନିର୍ଦ୍ଦେଶ ଥିଲା ଯେ ସତ୍ୟାଗ୍ରହୀ କେଉଁ ସ୍ଥାନରେ ଯେଉଁ ଦିନ କେତେବେଳେ ଯୁଦ୍ଧ ବିରୋଧୀ ଧ୍ୱନି କରିବେ, ତାହା ପୂର୍ବରୁ ଜିଲ୍ଲା କଲେକ୍ଟରଙ୍କୁ ଜଣାଇ ଦେବେ । ତାହାହେଲେ ସେହି ସ୍ଥାନରେ ପୋଲିସଦଳ ଗାଡ଼ି ଧରି ଉପସ୍ଥିତ ରହିବେ ।

ନିର୍ଦ୍ଦିଷ୍ଟ ଦିନ ଶୁକଦେବଙ୍କୁ ଜେଲକୁ ପଠାଇବା ଲାଗି ଗୋଟିଏ ଭୋଜିର ଆୟୋଜନ କଲି । ସମସ୍ତେ ଖିରି—ଖେଚୁଡ଼ି ଖାଇ ସାରି ଢୋଲ କରତାଳ ଧରିଲେ ଏବଂ ଶୁକକୁ ଚନ୍ଦନ-ଚର୍ଚ୍ଚିତ ଓ ଫୁଲହାର-ଶୋଭିତ କରି ଶୋଭାଯାତ୍ରାରେ ଗୃହୋଳକୁ ନିଆଗଲା । ପୋଲିସଦଳ ଆଗରୁ ପହଞ୍ଚି ସାରିଥିଲେ । ଶୁକ ସମବେତ ଜନତାକୁ କହିଲା—"ଏ ଯୁଦ୍ଧରେ

ଇଂରେଜ ସରକାରକୁ ସାହାଯ୍ୟ କରିବା ଉଚିତ ନୁହେଁ ।” ଏତକ କହି ସାରିବା ପରେ ପୋଲିସଦଳ ତାଙ୍କୁ ଗାଡ଼ିରେ ବସାଇ ନେଇଗଲେ । ଏଥିର ସେ ଛଅମାସ ଜେଲ୍ ଭୋଗିଥିଲେ ।

## ‘ଭାରତ ଛାଡ଼’ ଆନ୍ଦୋଳନ

୧୯୪୨ ଅଗଷ୍ଟ ୮ ତାରିଖରେ ‘ଭାରତ ଛାଡ଼’ (Quit India) ଆନ୍ଦୋଳନ ଆରମ୍ଭ କରାଯିବା ପାଇଁ ନିଷ୍ପତ୍ତି ନିଆଗଲା । ସେହି ରାତିରେ ସହରରେ ଉପସ୍ଥିତ ମହାତ୍ମାଜୀ ପ୍ରମୁଖ ବିଶିଷ୍ଟ ନେତାମାନଙ୍କୁ ଆରେଷ୍ଟ କରାଯାଇ ବିଭିନ୍ନ କାରାଗାରକୁ ନିଆଗଲା । ଏ ସମ୍ବାଦ ୯ ତାରିଖରେ ବିଦ୍ୟୁତ୍ ବେଗରେ ଆକୁମାରୀ ହିମାଚଳ ପରିବ୍ୟାପ୍ତ ହୋଇଗଲା । ଭାରତର ସବୁ ଧର୍ମ, ସବୁ ସମ୍ପ୍ରଦାୟ ଓ ବିଭିନ୍ନ ସ୍ତରର ଲୋକମାନେ ଦେଶପ୍ରେମରେ ବିହ୍ୱଳ ହୋଇ ଭଙ୍ଗାରୁଜା କାମରେ ଲାଗିଗଲେ । ବଡ଼ ନେତାମାନେ ଧରା ହୋଇ ଜେଲ୍‌କୁ ଗଲେ ସିନା, ସେମାନଙ୍କ ଶୂନ୍ୟସ୍ଥାନ ପୂରଣ ପାଇଁ କେତେ ନୂଆ ନେତା ମୁଣ୍ଡ ଟେକିଲେ । ଦେଶର ମୁକ୍ତି ପାଇଁ ଭାରତବାସୀଙ୍କର ଏହି ସଙ୍କଳ୍ପର ଆନ୍ଦୋଳନକୁ ଇଂରେଜ ସରକାର ତାଙ୍କର ସମସ୍ତ ଶକ୍ତି ସହ ମୁକାବିଲା କରିବାକୁ ପ୍ରସ୍ତୁତ ହୋଇ ପଡ଼ିଲେ । କେତେ ମଲେ, କେତେ ସମ୍ପତ୍ତି ଲୁଟ୍ ହେଲା, କେତେ ଜେଲ୍‌ରେ ପଡ଼ିଲେ, ତାର ଇୟତ୍ତା ନାହିଁ ।

## ମୋ ନାଁରେ ୱାରେଣ୍ଟ୍

ଦିନେ ମୁଁ ସ୍କୁଲକୁ ଯାଇଁ ଦେଖିଲି ଯେ, ଛାତ୍ରମାନେ ଅଫିସ ଆଗରେ ଜାତୀୟ ପତାକା ଉତ୍ତୋଳନ କରିଛନ୍ତି । ମୁଁ ତାହାକୁ ସମ୍ମାନ ସହକାରେ ଆଣି ଅଫିସ ଟେବୁଲ ଉପରେ ରଖିଦେଇ ଘରକୁ ଖାଇବାକୁ ଚାଲିଗଲି । ଖାଇସାରି ଆସି ଦେଖିଲାବେଳକୁ ପତାକାଟି ପୁଣି ଉତ୍ତୋଳିତ ହୋଇଛି । ପିଲାମାନଙ୍କ ଇଚ୍ଛା ବିରୁଦ୍ଧରେ ମୁଁ କିଛି କରିବାକୁ ଠିକ୍ ମନେକଲି ନାହିଁ । ସମସ୍ତଙ୍କୁ ସ୍କୁଲର ଖେଳପଡ଼ିଆକୁ ଡାକନେଇ ସେଠାରେ ସଭାଟିଏ କଲି ଏବଂ ସେମାନେ ନିକଟବର୍ତ୍ତୀ ସ୍କୁଲଗୁଡ଼ିକୁ ଯାଇ ସେଗୁଡ଼ିକ ଯେପରି ବନ୍ଦ ହେବ, ତାହାର ବ୍ୟବସ୍ଥା କରିବା ପାଇଁ ପରାମର୍ଶ ଦେଲି । କିଛି ଦିନ ପର୍ଯ୍ୟନ୍ତ ସ୍କୁଲ କାର୍ଯ୍ୟ ବନ୍ଦ ହେଲା । ତିନି ଚାରି

ଜଣ ଗୁପ୍ତ କେନ୍ଦ୍ରାପଡ଼ାରେ ପିକେଟିଂ କରି ଆରେଷ୍ଟ ହେବାର ଶୁଣିଲି । କେତେଜଣ ଗୁପ୍ତ ଦାନପୁର ଡାକଘରଟି ପୋଡ଼ିଦେଲେ ଏବଂ ଆଉ କେତେଜଣ ପୋତପିଆଠାରେ ଟେଲିଗ୍ରାଫ୍ ତାର କାଟିଦେଲେ । ପୁଲିସ ପ୍ରତିଦିନ ସ୍କୁଲକୁ ଆସିବାକୁ ଲାଗିଲେ ଏବଂ ମୁଁ ଖଦଡ଼ ପିନ୍ଧୁଥିବାରୁ ମୋତେ ସନ୍ଦେହପୂର୍ଣ୍ଣ ଦୃଷ୍ଟିରେ ଦେଖିବାକୁ ଲାଗିଲେ । ସେତେବେଳେ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଶ୍ରୀ ବୀରକିଶୋର ପଟ୍ଟନାୟକ । ସେ ସଧୁ ବୁଦ୍ଧିରେ ପଡ଼ି ପୋଲିସଙ୍କୁ ରିପୋର୍ଟ କଲେ ଯେ, ମୁଁ ଆନ୍ଦୋଳନରେ ସକ୍ରିୟ ଭାଗ ନେଉଛି ଏବଂ ଗୁପ୍ତମାନେ ମୋ ଦ୍ୱାରା ପ୍ରଭାବିତ ହେଉଅଛନ୍ତି । ଏପରି କହିବା ତାଙ୍କର ଅଭିସନ୍ଧିମୂଳକ ଥିଲା ଏବଂ ସେ ପରେ ନିଜର ଭୁଲ୍ ବୁଝି ପାରିଥିଲେ । ମୋର ପ୍ରିୟ ଗୁପ୍ତ ଶ୍ରୀ ଶୁକଦେବ ସାହୁ ମଧ୍ଯ ମୁଁ ଲୁଚିଛପି ଆନ୍ଦୋଳନରେ ଭାଗ ନେଉଛି ବୋଲି କେତେକ ଗ୍ରାମଙ୍କ ଦସ୍ତଖତରେ ଥାନାକୁ ଦରଖାସ୍ତ ପଠାଇଲେ । ଶୁକ ମୋ ଆଗରେ ପରେ ସ୍ୱୀକାର କରିଥିଲା ଯେ, ମୁଁ ଜେଲ ଗଲେ ଅନେକେ ମୋତେ ଅନୁସରଣ କରିବେ ଏବଂ ଆମ ଅଞ୍ଚଳରେ ଆନ୍ଦୋଳନ ଜସୁଯୁକ୍ତ ହେବ ବୋଲି ସେ ମନେ କରୁଥିଲା । ଏସବୁର ଫଳରେ ମୋ ନାଁରେ ଓ୍ୟାରେଣ୍ଟ୍ ବାହାରିଲା ଏବଂ ତାହା କେନ୍ଦ୍ରାପଡ଼ା ଏସ୍. ଡ଼. ଓ.ଙ୍କ ପାଖକୁ ପଠାଗଲା ।

ଆନ୍ଦୋଳନରେ ମୁଁ ବିଶେଷଭାବରେ ଲିପ୍ତ ନ ଥିଲି । ସ୍କୁଲଟି ଦଶମ ବର୍ଷରେ ପଦାର୍ପଣ କଲେହେଁ ଜିଲ୍ଲା ବୋର୍ଡ଼ ଗ୍ରାଣ୍ଟ ପାଇ ନ ଥାଏ । ଅର୍ଥାଭାବ ଲାଗି ରହିଥାଏ । ସ୍କୁଲର ବାହ୍ୟ ଓ ଆଭ୍ୟନ୍ତରୀଣ ସକଳ ପ୍ରକାର ସମସ୍ୟା-ତରଣୀର କର୍ଣ୍ଣଧାର ମୁଁ । ଯାହାର ପ୍ରତିଷ୍ଠା ଓ କ୍ରମୋନ୍ନତି ପାଇଁ ମୁଁ ଜୀବନ ଓ ଯୌବନ ଅକାତରେ ସମର୍ପି ଦେଇଛି, ତାହାର କ୍ଷତି ସାଧନ କରି ମହାତ୍ମାରକ୍ଷୀୟ ସ୍ୱାର୍ଥଯଜ୍ଞରେ ଆହୁତି ଦେବାକୁ ମୋର ତିଳେ ହେଲେ ଇଚ୍ଛା ନ ଥିଲା । ମୋର ତ ପୁଣି ଇୟେ ଗୋଟାଏ ପ୍ରକାର ଦେଶସେବା । ତାହା ନୁହେଁ, ମୋ ଘରେ ଅଶୀ ବର୍ଷର ବୁଢ଼ୀ ମା ଓ ଦଶ ବର୍ଷର ଝିଅଟିର ତତ୍ତ୍ୱ ବୁଝିବାକୁ ମୋ ଛଡ଼ା ଦ୍ୱିତୀୟ ବ୍ୟକ୍ତି କେହି ନାହିଁ । ଏତେଗୁଡ଼ିଏ ଗୁରୁତର କର୍ତ୍ତବ୍ୟକୁ ଉପେକ୍ଷା କରି ମୁଁ ଜେଲ ଯିବାକୁ ପ୍ରସ୍ତୁତ ନ ଥିଲି । ତଥାପି ଓ୍ୱାରେଣ୍ଟ ବାହାରି ଯାଇଥିବାର ଶୁଣି ମୁଁ ମୋର କର୍ତ୍ତବ୍ୟ ସମ୍ପର୍କରେ ବହୁତ ଚିନ୍ତା କଲି । ଶେଷରେ ସ୍ଥିର କଲି, ମୁଁ କ୍ଷମା ପ୍ରାର୍ଥନା କରି ଜେଲ୍ ବରଣରୁ ନିବୃତ୍ତ

ହେବା ଉଚିତ ହେବ ନାହିଁ । ଯାହା ହେଉନା କାହିଁକି, ଭଗବାନଙ୍କ ଉପରେ ସବୁ ସମର୍ପି ଦେଇ ମୋତେ ଦେଶକାମ କରିବାକୁ ହେବ । ମୋର ପାଞ୍ଚଜଣ ସହକାରୀଙ୍କୁ କହିଲି, ମୁଁ ଜେଲରୁ ଫେରିବା ପର୍ଯ୍ୟନ୍ତ ସେମାନେ ମୋର ଘର ଖରଚ ପାଇଁ ଅର୍ଥ ଯୋଗାଇବେ ଓ ମୁଁ ପରେ ପରିଶୋଧ କରିବି । ହଷ୍ଟେଲ ପୁଷ୍ଟାଗ ଉପରେ ଦାୟିତ୍ୱ ଦେଲି, ସେ ଧାନ ଅମଳ ସମୟରେ ଚକ୍ତି ନେବ । ଏପରି ବ୍ୟବସ୍ଥା କରିବା ପରେ ଏସ୍. ଡ଼ି. ଓ. ଶ୍ରୀ ମଣୀନ୍ଦ୍ରନାଥ ଗୁହ ମୋତେ ଡକାଇ ପଠାଇଲେ । ସ୍କୁଲର ସଭାପତି ରାୟ ସାହେବ ଶ୍ରୀ ଦୋଳଗୋବିନ୍ଦ ମହାନ୍ତି ଓ ସମ୍ପାଦକ ଶ୍ରୀ ପଞ୍ଚାନନ କାନୁନଗୋ ମଧ୍ୟ ତାଙ୍କଠାରୁ ଚିଠି ପାଇ ଯାଇଥିଲେ । ଶ୍ରୀଯୁକ୍ତ ଗୁହ ସ୍କୁଲକୁ ଥରେ ଶହେ ଟଙ୍କା ଦାନ କରିଥିଲେ ଏବଂ ସ୍କୁଲ ସହ ମୋର ସମ୍ପର୍କ କଥା ଭଲରୂପେ ଜାଣିଥିଲେ । ମୁଁ ଜେଲ୍ ବରଣ କଲେ ସ୍କୁଲର ଅପୂରଣୀୟ କ୍ଷତି ଘଟିବାର ଆଶଙ୍କା କରି ସଭାପତି ଓ ସମ୍ପାଦକ ଦୁହେଁ ମୋର ଓ୍ୱାରେଣ୍ଟ ବନ୍ଦ କରିବା ପାଇଁ ଅନୁରୋଧ କଲେ । ମୋର ଭବିଷ୍ୟତ କାର୍ଯ୍ୟକଳାପରେ ଦୋଷ ଲକ୍ଷ୍ୟ କରା ନ ଯିବା ପର୍ଯ୍ୟନ୍ତ ୱାରେଣ୍ଟ ବନ୍ଦ ରହିଲା ବୋଲି ଏସ୍. ଡ଼ି. ଓ. ମନ୍ତବ୍ୟ ଦେବାରୁ ମୁଁ ଗୋଟାଏ ସଙ୍କଟରୁ ରକ୍ଷା ପାଇଗଲି ।

## କଂଗ୍ରେସ ପ୍ରୀତି

୧୯୩୭ ମସିହାରେ କେନ୍ଦ୍ରାପଡ଼ା ଥାନାରୁ ଶ୍ରୀ ପଦୁମଣି ମଙ୍ଗରାଜ କଂଗ୍ରେସ ଦଳରୁ ବ୍ୟବସ୍ଥା ସଭା ପାଇଁ ପ୍ରାର୍ଥୀ ହୋଇଥିଲେ । ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି ତାଙ୍କର ପ୍ରତିଦ୍ୱନ୍ଦୀ ଥିଲେ । ସେ ମୋତେ ବଶୀଭୂତ କରିବା ପାଇଁ ନାନା କୌଶଳ ଅବଲମ୍ବନ କରି ନିରାଶ ହେବାରୁ ଶେଷରେ ଜଲ ଇନ୍ସପେକ୍ଟର ଶ୍ରୀ ସୁକାନ୍ତ ରାଓଙ୍କୁ ଧରିଲେ । ସୁକାନ୍ତବାବୁ ମୋତେ ଡ଼କାଇ ଲକ୍ଷ୍ମୀଧର ବାବୁଙ୍କ ସପକ୍ଷରେ ଭୋଟ ଦ୍ରବ୍ୟର ପାଇଁ ଅନୁରୋଧ କଲେ ଏବଂ ଶେଷରେ କହିଲେ ଯେ, ଲକ୍ଷ୍ମୀଧର ବାବୁ ମୋର ସ୍କୁଲ ପାଇଁ ପାଞ୍ଚଶ ଟଙ୍କା ଦେବାକୁ ରାଜି ଅଛନ୍ତି । ସୁକାନ୍ତ ବାବୁଙ୍କ ସହ ମୋର ଘନିଷ୍ଠ ବନ୍ଧୁତା ଥିଲା । ମୁଁ ଅତି ବିନୟର ସହିତ କହିଲି—"ମହାଶୟ, ମୁଁ ୧୯୨୧ ମସିହାରୁ ନିୟମିତ ଭାବରେ ଖଦଡ଼ ପରିଧାନ କରୁଛି । ମହାତ୍ମା ଗାନ୍ଧିଙ୍କ ପ୍ରତି ମୋର ଅଚଳା ଭକ୍ତି । ମୁଁ

ଖଦଡ଼ ପିନ୍ଧ ବେକଂଗ୍ରେସ ପ୍ରାର୍ଥୀଙ୍କୁ ସମର୍ଥନ କରି ପାରିବ ନାହିଁ । ଯେଉଁ ବ୍ୟକ୍ତିତ୍ୱ ଓ ପ୍ରତିଷ୍ଠା ବଳରେ ସାମାନ୍ୟ ଲୋକ ମୁଁ ଗୋଟାଏ ମ: ଇ: ସ୍କୁଲ ପ୍ରତିଷ୍ଠା କରିପାରିଲି, ତାହା ଉପାଚନକୁ ଯିବ । ସାମାନ୍ୟ କେତେ ଟଙ୍କା ପାଇଁ ମୁଁ ଧର୍ମଭ୍ରଷ୍ଟ ହୋଇ ପାରିବ ନାହିଁ ।"

ଏତିକରେ କଥା ସରିଲା ନାହିଁ । ସ୍କୁଲ ସମ୍ପାଦକ ଶ୍ରୀ ପଞ୍ଚାନନ କାନୁନ୍‌ଗୋ ଲକ୍ଷ୍ମୀଧର ବାବୁଙ୍କର ବନ୍ଧୁ ଥିଲେ । ସେ ଇନ୍‌ସପେକ୍ଟରଙ୍କ ପାଖରେ ମୋ ବିରୁଦ୍ଧରେ ଏହି ଅଭିଯୋଗ ଉପସ୍ଥାପିତ କଲେ ଯେ, ମୁଁ ନିର୍ବାଚନରେ କଂଗ୍ରେସକୁ ସାହାଯ୍ୟ କରି ଅପରାଧ କରିଛି । ତତ୍କାଳୀନ ଜିଲ୍ ଇନ୍‌ସପେକ୍ଟର ଶ୍ରୀ ପଦ୍ମଚରଣ ପଟ୍ଟନାୟକ ମୋ ବିରୁଦ୍ଧରେ ଦରଖାସ୍ତର ସତ୍ୟାସତ୍ୟ ତଦନ୍ତ କରିବା ପାଇଁ ଧୋବଡ଼ାକୁ ଆସିଲେ । ବସ୍ତୁତଃରେ ନିଷ୍ଟୟ ମୋତେ ଦଣ୍ଡ ମିଳିଥାନ୍ତା । ମାତ୍ର ତଦନ୍ତରେ ଅଳ୍ପ କେତେ ଦିନ ପରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିବାରୁ ମୁଁ ରକ୍ଷା ପାଇଗଲି ।

ଶ୍ରୀ ପଞ୍ଚାନନ କାନୁନଗୋ ଏହି ଘଟଣାରେ ମୋ ପ୍ରତି ବିଦ୍ୱେଷଭାବ ପୋଷଣ କରିବା ସ୍ୱାଭାବିକ । ତାଙ୍କର ପୁଅଟି ଆମ ସ୍କୁଲରେ ପଢ଼ୁଥିଲା । ସେ ତାହାର ଟ୍ରାନ୍‌ସଫର ସାର୍ଟିଫିକେଟ୍ ନେବା ପାଇଁ ପତ୍ର ଲେଖିଲେ । ଏତେବେଳକୁ ତାଙ୍କ ଉପରେ ମୋର ପଚିଶ ଟଙ୍କା ପ୍ରାପ୍ୟ ଥିଲା । ମୁଁ କହିଲି, ଉକ୍ତ ଟଙ୍କା ପରିଶୋଧ ନ କରିବା ପର୍ଯ୍ୟନ୍ତ ସାର୍ଟିଫିକେଟ୍ ଦିଆଯିବ ନାହିଁ । ତହିଁ ଆର ଦିନ ସେ ପ୍ରଧାନ ଶିକ୍ଷକଙ୍କୁ ନିର୍ଦ୍ଦେଶ ଦେଲେ ଯେ, ସ୍କୁଲ ଓ ହଷ୍ଟେଲର ଏକାଉଣ୍ଟ ଖାତା ପିଅନ ହାତ ତାଙ୍କ ପାଖକୁ ପଠାଯାଉ । ମୁଁ ପ୍ରଧାନ ଶିକ୍ଷକଙ୍କୁ ଅଭୟ ଦେଇ କହିଲି, "ଆପଣ ନୀରବ ରହନ୍ତୁ । ଆପଣ ଆଦେଶ ନ ମାନୁଥିବା ହେତୁ ସେ ଚାକରୀରୁ ବହିଷ୍କାର କରି ପାରିବେ ନାହିଁ ।" ମୁଁ ସମ୍ପାଦକଙ୍କୁ ଲେଖିଲି— ସେ ନିଜେ ଆସି ଅଫିସ୍‌ରେ ମୋ ଆଗରେ ହିସାବ ଖାତା ଦେଖି ପାରନ୍ତି । ମୁଁ ଖାତା ପଠାଇ ପାରିବି ନାହିଁ । ମୋର ଏ ପ୍ରକାର ଚିଠି ପାଇ ସମ୍ପାଦକ ପଚିଶ ଟଙ୍କା ଓ ସାର୍ଟିଫିକେଟ୍ ନେବା ପାଇଁ ନିୟମାନୁଯାୟୀ ସ୍କୁଲ ପ୍ରାପ୍ୟ ପଠାଇ ଦେବାରୁ ମୁଁ ସାର୍ଟିଫିକେଟ୍ ଦେଇଥିଲି ।

ସମ୍ପାଦକ ନାମକୁ ମାତ୍ର ଥିଲେ । ମୋ ଉପସ୍ଥିତିରେ ତାଙ୍କର କର୍ତ୍ତୃତ୍ୱ ବା କ୍ଷମତା କିଛି ନ ଥିଲା । ମୁଁ ଚାହିଁଥିଲେ ତାଙ୍କୁ ଚବିଶ ଘଣ୍ଟା ଭିତରେ ସମ୍ପାଦକ ପଦରୁ ବିତାଡ଼ିତ କରି ପାରିଥାନ୍ତି । ମାତ୍ର ମୁଁ ତାହା କଲି ନାହିଁ । ସେ ଏହି ଦିନଠାରୁ ତିନିବର୍ଷ ପର୍ଯ୍ୟନ୍ତ ସମ୍ପାଦକ ହୋଇ ରହିଲେ ଏବଂ ତାଙ୍କ ସହ ମୋର ପୂର୍ବ ବନ୍ଧୁତା ଫେରି ଆସିଥିଲା ।

## ଗାନ୍ଧୀ-ସ୍ମାରକ-ନିଧି

ମହାତ୍ମା ଗାନ୍ଧିଙ୍କ ମହାପ୍ରୟାଣ ପରେ ତାଙ୍କ ଇଚ୍ଛା ଅନୁସାରେ କେତେକ ଲୋକହିତକର କାର୍ଯ୍ୟ କରିବା ପାଇଁ ଅର୍ଥ ସଂଗ୍ରହ ସକାଶେ ବେତନ ଭୁକ୍ତ କର୍ମୀ ନିଯୁକ୍ତ ହୋଇଥିଲେ । ମୁଁ ବେତନ ନେବି ନାହିଁ ବୋଲି ଜଣାଇ ଦେଇଥିଲି ଏବଂ ପ୍ରାୟ ଦୁଇ ହଜାର ଟଙ୍କା ଆଦାୟ କରିଥିଲି ।

## କସ୍ତୁରବା-ସ୍ମାରକ-ନିଧି

ଏଥି ପାଇଁ ମୁଁ କେତେ ଚାନ୍ଦା ଆଦାୟ କରିଥିଲି, ତାହା ମୋର ମନେ ନାହିଁ ।

## କଟକ ସହୀଦ୍ ଭବନ

ମ୍ୟୁନିସିପାଲିଟି ଅଫିସ ପାଖରେ ସହୀଦମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ଯେଉଁ ହିତଳ ପ୍ରସାଦ ନିର୍ମିତ ହୋଇଛି, ସେଥିଲାଗି ମୁଁ ପଚିଶ ଟଙ୍କା ଆଦାୟ କରି ଡକ୍ଟର ହରେକୃଷ୍ଣ ମହତାବଙ୍କ ନାମରେ ପଠାଇଥିଲି ।

---

# ମୋର ବହି ଲେଖା

୧୯୨୯ ମସିହାରେ ମୁଁ ପଞ୍ଚାମୃତ୍ଯାଇ ମି. ଇ. ସ୍କୁଲରେ ଷଷ୍ଠ ଶ୍ରେଣୀରେ ନାମ ଲେଖାଇଲି । ସେହି ବର୍ଷ ଗ୍ରୀଷ୍ମ ଛୁଟି ପରେ ସ୍କୁଲରେ "ଜ୍ଞାନବିବର୍ଦ୍ଧିନୀ ଛାତ୍ର ସମିତି" ନାମରେ ଗୋଟିଏ ଆଲୋଚନା ସଭା ବା Debating Club ଗଠିତ ହେଲା । ମୁଁ ଉଚ୍ଚ ପ୍ରାଥମିକ ବୃତ୍ତି ଲାଭ କରିଥିଲି ବୋଲି ଭଲ ପିଲା ରୂପେ ଗଣ୍ୟ ହେଉଥିବାରୁ କିମ୍ବା ମୋର ସାହିତ୍ୟରେ ବ୍ୟୁତ୍ପତ୍ତି ଥିବାରୁ ସେହି ସମିତିରେ ମୋତେ ସମ୍ପାଦକ କରି ଦିଆଗଲା । ସଭାପତି ହେଲେ ଆମର ହେଡ୍‌ପଣ୍ଡିତ ଶ୍ରୀଯୁକ୍ତ ରାସବିହାରୀ ବାବୁ । ପ୍ରତି ଶନିବାର ଦିନ ଦୁଇଟା ପରେ ସଭା ହୁଏ ଏବଂ ସଭାପତିଙ୍କ ପୂର୍ବ ନିର୍ଦ୍ଦିଷ୍ଟ ବିଷୟରେ ପିଲାମାନେ ପ୍ରବନ୍ଧ ଲେଖିଆଣି ପାଠ କରନ୍ତି । ମୋର ମନେଅଛି, ମୋର ପ୍ରଥମ ଲେଖା 'ଛାତ୍ର ଓ ତାର କର୍ତ୍ତବ୍ୟ' ପ୍ରବନ୍ଧଟିକୁ ସଭାପତି ଓ ଉପସ୍ଥିତ ଶିକ୍ଷକମାନେ ପ୍ରଶଂସା କରିଥିଲେ ।

ସମ୍ପାଦକ ମନୋନୀତ ହେଲାପରେ ମୋର ଦାୟିତ୍ୱ ଢେର ବଢ଼ି ଯାଇଥିଲା । ମୁଁ ସବୁଦିନେ ମନେ କରୁଥିଲି ମୋର ଲେଖା ଯଦି ଅପେକ୍ଷାକୃତ ସୁନ୍ଦର ନ ହୁଏ, ତେବେ ପିଲାମାନେ ଉପହାସ କରିବେ ଏବଂ ମୁଁ ସମ୍ପାଦକ ପଦ ପାଇଁ ଯୋଗ୍ୟ ନୁହେଁ ବୋଲି ବଖାଣ କରିବେ । ସେଥିପାଇଁ ମୁଁ କିପରି ଭଲ ଲେଖିବି, ଏହାହିଁ ମୋର ପରମ ଚିନ୍ତା ହେଲା । ମୋର କାମନାକୁ ରୂପାୟିତ କରିବା ଲାଗି ମୁଁ ଠିକ୍ କରି ନେଲି ଯେ, ରୁଟିନ ଅନୁସାରେ ବିଭିନ୍ନ ପାଠ୍ୟ ପୁସ୍ତକ ପଢ଼ିବା ପରି ପ୍ରତିଦିନ ଲାଇବ୍ରେରି ବହିରୁ କେତେକ ପୃଷ୍ଠା ନିଶ୍ଚୟ ପଢ଼ିବି । ତାହାହିଁ କଲି । ପ୍ରତିଦିନର ପାଠ୍ୟ ମୁଁ ଅଳ୍ପ ସମୟରେ ଆୟତ୍ତ କରି ନିଏ । ତାହାପରେ ଧରେ ବାଜେ ବହି । ଆଜିକାଲି ପରି ସେତେବେଳେ ଓଡ଼ିଆରେ ଏତେ ବହି ନ ଥିଲା । ଲାଇବ୍ରେରିରେ ବଙ୍ଗଳା ବହି ବହୁତ ଥିଲା । ମୁଁ ନିମ୍ନ ପ୍ରାଥମିକ ଶ୍ରେଣୀରେ ପଢ଼ିବା ବେଳେ ବଙ୍ଗଳା ଶିଖିଥିଲି । ସେହି

ସମସ୍ତଙ୍କୁ ବଙ୍ଗଳା ବହି ପଢ଼ି ମୁଁ ତାହା ଅଙ୍କେଣରେ ବୁଝି ପାରୁଥିଲି ଏବଂ ଯେଉଁଠି ପାରୁ ନ ଥିଲି, ତାହା ମୋର ମାଲୁକ ୬ ବୃନ୍ଦାବନ ରଥଙ୍କ ଠାରୁ ବୁଝି ନେଉଥିଲି । ସେ ସେଠାରେ ଗୁରୁଟ୍ରେନିଂ ସ୍କୁଲର ହେଡ୍‌ପଣ୍ଡିତ ଥିଲେ ।

ପ୍ରକୃତରେ ବାଜେ ବହି ପଢ଼ିବାରେ କେତେ ଆମୋଦ, ତାହା କେବଳ ଅନୁଭବୀଙ୍କୁ ଜଣା । ମୁଁ ତ କହିବି, ବାଜେ ବହି ପଢ଼ିବା ନିଶା ଗଞ୍ଜେଇ ଅଫିମ ନିଶାଠାରୁ ବଳିଯିବ । ଏହି ନିଶା ମୋତେ ଶାରୀରିକ ବ୍ୟାୟାମରୁ ବଞ୍ଚିତ କରୁଥିଲା । ତା ଛଡ଼ା ତାସ ବା ପଶା ଖେଳିବାକୁ ବାରଣ କରୁଥିଲା । ମୁଁ ଅବଶ୍ୟ ପରେ ଖେଳପ୍ରିୟ ହୋଇ ପଡ଼ିଥିଲି । ମାତ୍ର ତାସର ଶଡ଼ଆ, ଠିକଣ ବା ପଶା ଖେଳର 'ପୋବାର' ସମ୍ବନ୍ଧରେ ମୋର ଠିକ୍‌ଏ ହେଲେ ଧାରଣା ନାହିଁ ଏ ପର୍ଯ୍ୟନ୍ତ । ଲାଇବ୍ରେରୀରେ ମୋର ଉପଯୋଗୀ ଯେତେ ବହିଥିଲା, ତାହା ସବୁ ପଢ଼ିସାରି ପଞ୍ଚାମୃତ୍ତାଇ ଟ୍ରେନିଂସ୍କୁଲ ଲାଇବ୍ରେରୀର କେତେଖଣ୍ଡ ବହି ପଢ଼ିଥିବା କଥା ମୋର ଭଲ ମନେ ଅଛି । ଛୁଟିରେ ଘରେ ପଢ଼ିବାକୁ ବହି ମିଳିବ ନାହିଁ ବୋଲି ମୁଁ ଶିକ୍ଷକଙ୍କୁ କେତେ ଖୋସାମଦ୍ କରି ଏକାବେଳକେ ସାତ ଆଠ ଖଣ୍ଡ ବହି ନେଇ ଆସେ । ବହି ପଢ଼ିବାରେ ଅଭ୍ୟାସ ରଖିବା ବା ନିଜକୁ ପୁସ୍ତକ କୀଟରେ ପରିଣତ କରି ଦେବା ଦ୍ୱାରା ଯେ ଅଶେଷ ଲାଭ ହୁଏ, ଏହା ମୁଁ ବେଶ୍ ଉପଲବ୍ଧି କରିଛି ଏବଂ ସବା ଗୁରୁରେ, କେବଳ ବହି ମାଧ୍ୟମରେ ମୁଁ ଯେଉଁ ଅମୂଲ୍ୟ ଜ୍ଞାନରାଶି ଆହରଣ କରିଛି, ତାହା ମୋର ଜୀବନ ଓ ଚରିତ୍ର ଉପରେ କମ୍ ପ୍ରଭାବ ପକାଇ ନାହିଁ ।

ମୁଁ ଏହିଠି ଆଉ ଗୋଟିଏ କଥା କହି ରଖେ । ପିଲିଦିନୁ ମୁଁ ଭାରି ବହି-ରଙ୍କ ଥିଲି । ବାପାଙ୍କଠାରୁ ଜଳଖିଆ ଖାଇବା ବାହାନାରେ, କେତେବେଳେ ଅବା ଘରୁ ଚୋରି କରି ଯେଉଁ ପଇସା ପାଏ, ତହିଁରେ ସ୍କୁଲ ଦୋକାନ ହାଟରୁ ବହି କିଣିବା ମୋର ଗୋଟିଏ ଅଭ୍ୟାସ ଥିଲା । 'ନନ୍ଦ-ଷେର୍ଷ', 'ଜେମାଦେଈ କାନ୍ଦ', 'ଦୁଇ ସଉତୁଣୀ କଳି' ଇତ୍ୟାଦି ଦୁଇ ପୂର ପଇସିଆ ବହି ସେତେବେଳେ ଗାଁ ମହଲରେ ଭାରି ଲୋକପ୍ରିୟ ଥିଲା ଏବଂ ମୁଁ ସେହିଥିରୁ ପେଡ଼ିଏ ଖଣ୍ଡେ ସଂଗ୍ରହ କରିଥିଲି । ପରବର୍ତ୍ତୀ ଜୀବନରେ ମୋର ଏହି ପୁସ୍ତକପ୍ରିୟତା ଅକ୍ଷୁଣ୍ଣ ଥିଲା । କଟକରେ ପଢ଼ିଲି

ବେଳେ ମୁଁ ବାଲିନ୍ଦ ଗ୍ରନ୍ଥକାରଙ୍କୁ ଭେଟି ଅନେକ ବହି ପାଇଥିଲି ଏବଂ ତଦ୍ଦ୍ୱାରା ନିଜ ଗ୍ରାମରେ 'ଶୁଙ୍କ୍ଲେଶ୍ୱର ପୁସ୍ତକାଳୟ' ପ୍ରତିଷ୍ଠା କରିଥିଲି । ଏହି ପୁସ୍ତକାଳୟର ଆଲମିରା ଖଣ୍ଡିକ ଏବଂ ବଛା ବଛା କେତେକ ବହି ଏବେ ସୁଦ୍ଧା ଦୋହଲା ହାଇସ୍କୁଲରେ ଅଛି ।

ମୁଁ କପରି ଭାବରେ ବହି ପଢୁଥିଲି, ତାହା ଏଠାରେ ଲେଖିବା ଦରକାର । ସେତେବେଳେ ଓଡ଼ିଆରେ ଉପନ୍ୟାସ ବହି ପ୍ରାୟ ନ ଥିଲା । ଜୀବନ ଚରିତ ଖୁବ୍ କମ ଥିଲା । ରାଧାନାଥ, ମଧୁସୂଦନ, ଫକୀରମୋହନ, ଚିନ୍ତାମଣି ଓ ଗଙ୍ଗାଧର ଇତ୍ୟାଦି ବିଖ୍ୟାତ କବିମାନଙ୍କ ପ୍ରଣୀତ କାବ୍ୟ, କବିତା ଓ ଗଳ୍ପ ସବୁ ଆଲୋଚନା କରୁଥିଲି । ଏହାଛଡ଼ା ଓଡ଼ିଆ ଓ ବଙ୍ଗଳାରେ ଅନେକ ଗଦ୍ୟ ବହି ମଧ୍ୟ ମୁଁ ପଢ଼ୁଥିଲି । କେତେଖଣ୍ଡ ବହି ପଢ଼ିବା ପରେ ମୋର ଦିନେ ମନେ ହେଲା—ଖଣ୍ଡିଏ ଖାତା କରି ତହିଁରେ କଠିନ ଶବ୍ଦର ଅର୍ଥ, ସୁନ୍ଦର ସୁନ୍ଦର ବାକ୍ୟ ଏବଂ ଇଂରାଜୀ ଓ ସଂସ୍କୃତର ଅର୍ଥ ସହ ଉଦ୍ଧୃତାଂଶ (Quotation) ଟିପିରଖିଲେ, ସବୁ ଦିନକୁ ମନେ ରହିବ ଏବଂ ମୁଁ କୌଣସି ବିଷୟରେ ପ୍ରବନ୍ଧ ଲେଖିବାବେଳେ ସେଗୁଡ଼ିକ ବ୍ୟବହାର କରିବା ଦ୍ୱାରା ମୋ ଲେଖାର ସରସତା ଓ ଉତ୍କର୍ଷ ବଢ଼ିବ । ସଙ୍ଗେ ସଙ୍ଗେ ଖାତା ତିଆରିକଲି । ଶ୍ରୀ ଶଶିଭୂଷଣ ରାୟଙ୍କ ପ୍ରଣୀତ 'ଦାକ୍ଷିଣାତ୍ୟ ଭ୍ରମଣ' ପଢ଼ି ତହିଁରୁ 'ଅପୂର୍ଣ୍ଣକର୍ଣ୍ଣକାରିଣୀ କ୍ଷୁଧାର ବଶବର୍ତ୍ତୀ ହୋଇ' ଏହି ବାକ୍ୟାଂଶ ପରି ଅନେକ ସୁନ୍ଦର ଖଣ୍ଡବାକ୍ୟ ଓ ପୂର୍ଣ୍ଣବାକ୍ୟ ଟିପିଥିବାର ମୋର ଭଲ ମନେ ଅଛି । 'ଅନ୍ଧକାରମୟ ନାତିଶୀତୋଷ୍ଣ ଗୃହରେ ଶ୍ରମାପନୋଦନକାରିଣୀ ନିଦ୍ରା ହୁଏ ଏବଂ 'ଦସ୍ୟୁବୃତ୍ତି-ତାର ମୂର୍ତ୍ତି ପ୍ରକାଶକ' ଏହି ଦୁଇଟା କଥା ମୁଁ କେଉଁଥିରୁ ପାଇଥିଲି, ତାହା ମନେ ନ ଥିଲେହେଁ ଷଷ୍ଠ ଓ ସପ୍ତମ ଶ୍ରେଣୀରେ ଏହି ବାକ୍ୟ ଓ ବାକ୍ୟାଂଶ ସହ ମୋର ଯେ ପରିଚୟ ଘଟିଛି, ସେଥିରେ ସନ୍ଦେହ ନାହିଁ ।

ମୁଁ ମାରବରେ କୌଣସି ବହି ପଢ଼େ ନାହିଁ । ବଡ଼ ପାଟିରେ ନ ପଢ଼ିଲେ ମୋର ମନବୋଧ ହୁଏ ନାହିଁ । ପାଟିକରି ପଢ଼ିଲେ ମନୋଯୋଗ ଆହତ ହୁଏ ନାହିଁ, ଉଚ୍ଚାରଣ ଦୋଷଶୂନ୍ୟ ହୁଏ ଏବଂ ବର୍ଣ୍ଣାଶୁଦ୍ଧି ଘଟେ ନାହିଁ, ଏହା ମୋର ଅନୁଭୂତ ସତ୍ୟ । ମୋର ମନେ ପଡ଼ୁଛି, ସେହି ସମୟରେ ଆମ ହେଡ଼ପଣ୍ଡିତ ମହାଶୟ କହୁଥିଲେ ଯେ, ମ.ଇ. ସ୍କୁଲରେ

ପଢ଼ିବା ବେଳେ ଗୋଟିଏ ଚଉଦ ବର୍ଷର ପିଲା 'ବାଣପୁର' ନାମରେ ଗୋଟିଏ କବିତା ପୁସ୍ତକ ଲେଖିଛନ୍ତି । ସେହି ପିଲାଟି ପରେ 'ନଅାଁ ଖୁଣ୍ଟା' ସମ୍ପାଦକ ଶ୍ରୀ ଗୋଦାବରୀଶ ମହାପାତ୍ର ନାମରେ ସୁପରିଚିତ ହେଲେ । ତାହା ଶୁଣି ମୁଁ ଭବିଷ୍ୟତରେ କେମିତି ବହି ଲେଖିବି, ଏହି କାମନା ମୋ ମନରେ ଉଦିତ ହେଲା । ମୋର ମାମୁଁ 'ଆର୍ଯ୍ୟଧର୍ମ' ପ୍ରତି ଅନୁରକ୍ତ ଥିଲେ । ଏହି ଧର୍ମର ପ୍ରବର୍ତ୍ତକ ଶ୍ରୀ ଦୟାନନ୍ଦ ସରସ୍ୱତୀଙ୍କ ଖଣ୍ଡିଏ ବୃହତ୍ ଜୀବନ ଚରିତ ତାଙ୍କ ପାଖରେ ଥିଲା । ମୁଁ ସେତେବେଳେ ତାକୁ ପଢ଼ୁଥିଲି ଏବଂ ସେହି ବହିରୁ ଯାହାସବୁ ଟିପି ରଖିଥିଲି, ତାହାର ସାହାଯ୍ୟରେ ଖଣ୍ଡିଏ ବହି ଲେଖିଥିଲି କଟକରେ ଟ୍ରେନିଂ ପଢ଼ିବା ବେଳେ । ବାରମ୍ବାର ସଂଶୋଧନ, ପରିବର୍ତ୍ତନ ଓ ପରିବର୍ଦ୍ଧନ ପରେ ତାହା 'ଦୟାନନ୍ଦ ସରସ୍ୱତୀ' ନାମ ନେଇ ମୁଦ୍ରିତ ହୋଇଅଛି ।

୧୯୨୨ ମସିହାରେ ମୁଁ କଟକ ଟ୍ରେନିଂ ସ୍କୁଲରେ ପ୍ରବେଶ କଲି । ବାଞ୍ଛାନିଧି ରଥ ସେଇଠି ମୋର ସହାଧ୍ୟାୟୀ ହେଲେ । ଠିକ୍ କେବେ ମନେ ନାହିଁ—ବୋଧହୁଏ; ପ୍ରାରମ୍ଭିକ ଅବସ୍ଥାରେ—ବାଞ୍ଛାନିଧି ବାବୁଙ୍କର ତାଙ୍କ ପିତାଙ୍କ ସହ କୌଣସି ଗୋଟିଏ ବିଷୟରେ ମନୋମାଳିନ୍ୟ ଘଟିଥିଲା ଏବଂ ସେ ପିତାଙ୍କ ପାଖକୁ ଖଣ୍ଡିଏ ପଦ୍ୟମୟ ପତ୍ର ଲେଖିଥିଲେ । ମୁଁ ତାହା ପଢ଼ିବାକୁ ପାଇଥିଲି; ମାତ୍ର କେମିତି ପାଇଲି ତାହା କହି ପାରୁ ନାହିଁ । ଚଉଦ ଅକ୍ଷରୀ ସେହି ପଦ୍ୟଟିର ଭାଷା ଓ ଭାବ ଏକାନ୍ତ ଚିତ୍ତାକର୍ଷକ ଓ ମର୍ମସ୍ପର୍ଶୀ ହୋଇଥିଲା । ମୁଁ ତାହା ପଢ଼ି ଯେତିକି ସନ୍ତୋଷ ପାଇଲି, ତହୁଁ ବଳି ଦୁଃଖ ମଧ୍ୟ ଅନୁଭବ କଲି । ଦୁଃଖର କାରଣ, ବାଞ୍ଛାନିଧି ଏମିତି ଲେଖିପାରେ, ଅଥଚ ମୁଁ ପାରେ ନାହିଁ । ମୋର ଏହି ଅସୂୟା ବା ପରଶ୍ରୀକାତରତା ଘୃଣ୍ୟ ଓ ନିନ୍ଦନୀୟ ହେଲେହେଁ ବିଷରୁ ଅମୃତ ବାହାରିବା ପରି ତାହା ମୋ ପକ୍ଷରେ ମଙ୍ଗଳଦାୟକ ଓ ଉନ୍ନତି ବିଧାୟକ ହୋଇଥିଲା । ପଢ଼ିବାବେଳେ ବାଞ୍ଛାନିଧି ମୋର ଅନ୍ତରଙ୍ଗ ବନ୍ଧୁଥିଲେ । ମୋର ତାଙ୍କ ସହିତ ଶତ୍ରୁତା ବା ତିକ୍ତତାର ଅବକାଶ ନ ଥିଲା । ଥିଲା ତାଙ୍କ କବିତା ଲେଖିବା ଶକ୍ତି ସହିତ । ବାଞ୍ଛାନିଧିଙ୍କ ପ୍ରତିଭା ବିରୁଦ୍ଧରେ ମୋ ଅନ୍ତଃକରଣରେ ସେଉଁ ପ୍ରତିଦ୍ୱନ୍ଦ୍ୱିତା ସୃଷ୍ଟି ହୋଇଥିଲା, ତାହା କେବଳ ମୋତେ ଜଣା, ବାଞ୍ଛାନିଧିଙ୍କୁ କିଛି ଜଣା ନ ଥିଲା । ଯାହାହେଉ ମୋର ଏଭଳି ମନୋବୃତ୍ତିରେ ବାଞ୍ଛାନିଧି ବା ଆଉ କାହାର କିଛି କ୍ଷତି ହୋଇ ନାହିଁ ।

ବରଂ ମୋର ଏବେ ମନେ ହେଉଛି ଯେ, କପଣ ଜୀବ ଆଦରଣ ଜଣ ଭବିଷ୍ୟତରେ ଜଣେ ଲେଖକ ରୂପେ ପ୍ରତିଷ୍ଠିତ ହେବ, ସେହି କାମନା ଉତ୍ତରୋତ୍ତର ବର୍ଦ୍ଧିତ ହୋଇଛି ।

କିନ୍ତୁ ବାଞ୍ଛାନିଧି ତାଙ୍କର କବିତା ଲେଖିବା ଶକ୍ତିକୁ ଶାଣିତ କରିବା ପାଇଁ ମନ ବଳାଇ ନାହାନ୍ତି । ଅଭ୍ୟାସ ଓ ସାଧନା ଅଭାବରୁ ସେ ଶକ୍ତି-କଳିକା ବିକଶିତ ହୋଇ ପାରିଲା ନାହିଁ । ବଳବତୀ ଇଚ୍ଛା ଓ ତଦନୁରୂପ ସାଧନା ବା ଚେଷ୍ଟାର ସମନ୍ୱୟ ନ ଘଟିଲେ ଲେଖକ ହେବାର ଆଶା ଚରିତାର୍ଥ ହୋଇ ପାରିବ ନାହିଁ ।

ମ. ଇ. ସ୍କୁଲରେ ପଢ଼ିବା ବେଳେ ଯେଉଁ ଟିପାଖାତା କରିଥିଲି, କଟକରେ ତାହାର କଳେବର କ୍ରମଶଃ ବଢ଼ିବାରେ ଲାଗିଲା । ଟ୍ରେନିଂ ସ୍କୁଲର ବିରାଟ ଲାଇବ୍ରେରୀ ଦେଖି ମୋର ଆଖି ଖୋସି ହୋଇଗଲା । ଲାଇବ୍ରେରୀର ଭାର କରଣୀଙ୍କ ଉପରେ ନ୍ୟସ୍ତ ଥିଲା । ମୁଁ ତାଙ୍କୁ କାର୍ଯ୍ୟରେ ସାହାଯ୍ୟ କରି ତାଙ୍କର ପ୍ରିୟ ହୋଇଥିଲି । ତେଣୁ ମୁଁ ମାଗିବା ମାତ୍ରେ ତାଙ୍କଠାରୁ ବହି ପାଉଥିଲି । ମୁଁ ବାଜେ ବହି ପଢ଼ିବାରେ ଏତେ ସମୟ ଦେଲି ଯେ, ଦୈନନ୍ଦିନ ପାଠ ପ୍ରସ୍ତୁତ କରିବାରେ ଅବହେଳା ପ୍ରକାଶ କରିବାକୁ ବାଧ୍ୟ ହେଲି । ଥରେ ଗୋଟିଏ ପରୀକ୍ଷାରେ ସନ୍ତୋଷଜନକ ନମ୍ବର ନ ରଖି ପାରିବାରୁ ଶିକ୍ଷକ ମହାଶୟଙ୍କଠାରୁ ଗାଳି ଶୁଣିବାକୁ ପଡ଼ିଥିଲା । ତେଣୁ ମୁଁ ନିଜର ଭୁଲ ବୁଝି ସଂଯତ ଭାବରେ ପଢ଼ାପଢ଼ି କରିବାକୁ ଲାଗିଲି ।

ମୁଁ ପ୍ରଥମ ବାର୍ଷିକ ଶ୍ରେଣୀରେ ପଢ଼ୁଥିଲା ବେଳେ 'ଉତ୍କଳ ସାହିତ୍ୟ ସମାଜ' କର୍ତ୍ତୃକ କେତୋଟି ପୁରସ୍କାର ଘୋଷିତ ହେଲା । ପ୍ରବନ୍ଧ ପ୍ରତିଯୋଗିତା ମାଧ୍ୟମରେ ଏଗୁଡ଼ିକ ଦିଆ ଯିବାର କଥା । ସ୍କୁଲଗ୍ରୁପ, କଲେଜ ଗ୍ରୁପ ଓ ଅନ୍ୟମାନଙ୍କ ପାଇଁ ସ୍ୱତନ୍ତ୍ର ପ୍ରବନ୍ଧ ନିର୍ଦ୍ଦିଷ୍ଟ ହୋଇଥିଲା । ମୁଁ ସ୍କୁଲଗ୍ରୁପ ଭାବରେ 'ଖ୍ରୀଷ୍ଟ' ପ୍ରବନ୍ଧ ଲେଖିଥିଲି ଏବଂ ପ୍ରତିଯୋଗିତାରେ ପ୍ରଥମ ହୋଇ ପନ୍ଦର ଟଙ୍କା ପୁରସ୍କାର ପାଇଥିଲି । ସ୍ୱର୍ଗତ କାଳୀପ୍ରସନ୍ନ ସିଂହଙ୍କ ବଙ୍ଗଳା ମହାଭାରତରୁ ମୁଁ ଖ୍ରୀଷ୍ଟଙ୍କ ଜୀବନ ଚରିତ ସଂଗ୍ରହ କରିଥିଲି ସିନା, କିନ୍ତୁ ମୋ ଲେଖାରେ ଯେଉଁ ଭାଷା ଓ ଶୈଳୀ ବ୍ୟବହାର କରିଥିଲି

ଏବଂ ଯେଉଁ ସବୁ ଇଂରାଜୀ ଓ ସଂସ୍କୃତର ଉଦ୍ଧୃତାଂଶ ଓ ଆହୁରି ଅନେକ ପ୍ରାମାଣିକ ବିଷୟର ଅବତାରଣା କରି ପ୍ରବନ୍ଧର କଳେବର ବଢ଼ାଇ ଦେଇଥିଲି, ତାହାସବୁ ମୋର ଟିପାଖାତାରୁ ପାଇଥିଲି । ଟିପାଖାତା କେତେ ସହାୟକ, ତାହା ମୁଁ ସେତିକିବେଳେ ଜାଣି ପାରିଲି ।

ଏହି ପ୍ରସଙ୍ଗରେ ଗୋଟିଏ କଥା ମନେପଡ଼ୁଛି । ୰ଲକ୍ଷ୍ମୀନାରାୟଣ ସାହୁ ଜଣେ ଭାରତ ବିଖ୍ୟାତ ଲୋକ । ସେ ଇଂରାଜୀ, ଓଡ଼ିଆ, ଇତିହାସ ଓ ଦର୍ଶନଶାସ୍ତ୍ର ଏହି ଚାରୋଟି ବିଷୟରେ ଏମ୍. ଏ. ପାସ୍ କରିଥିଲେ । ସେ କଲେଜରେ ଆଇ. ଏ. ପର୍ଯ୍ୟନ୍ତ ପଢ଼ିଥିଲେ । ପରେ ବାହାରେ ପ୍ରାଇଭେଟରେ ବି. ଏ. ଓ ଚାରିଥର ଏମ୍. ଏ. ପାସ୍ କରିଥିଲେ । ଷାଠିଏ ବର୍ଷ ବୟସରେ ସେ ଇତିହାସରେ ଏମ୍. ଏ. ହେଲେ । ମୁଁ ଥରେ ତାଙ୍କ ଘରକୁ ଯାଇଥିଲି । ତାଙ୍କୁ ପଚାରିଲି, "ଆପଣ ବୁଢ଼ା ଦିନେ କିପରି ଧୈର୍ଯ୍ୟ ଧରି ପ୍ରକାଣ୍ଡ ବହି ସବୁ ପଢ଼ି ପାସ୍ କରୁଛନ୍ତି ?" ସେ ହସି ହସି କହିଲେ—"ମୁଁ କ'ଣ ପରୀକ୍ଷା ସମୟରେ ପଢ଼େ ? ବହି ପଢ଼ିବା ମୋର ଅଭ୍ୟାସ ଓ ବ୍ୟବସାୟ । ମୁଁ ଜୀବନରେ ଅନେକ ବହି ପଢ଼ିଛି ଏବଂ ମୋର ଟିପା ଖାତାରେ ଅନେକ ବିଷୟ ଲେଖି ରଖିଛି । ପରୀକ୍ଷା ଦେବାକୁ ମନ ହେଲେ ସେହି ଖାତା ସବୁ ଓଲଟାଇ ଯାଏ । ଏହା କହି ସେ ତାଙ୍କର ଟିପାଖାତା ସବୁ ମୋତେ ଦେଖାଇଲେ । ମୁଁ ତ ଦେଖି ଅବାକ୍ ।

ଟ୍ରେନିଂ ସ୍କୁଲରେ ପଢ଼ିବା ସମୟରେ Director of Physical Exercise ଆସି ଆମ୍ଭମାନଙ୍କୁ ଅନେକଗୁଡ଼ିଏ ଶାରୀରିକ ବ୍ୟାୟାମ ଏବଂ ଦେଶୀ ଓ ବିଦେଶୀ ଖେଳସବୁ ଶିଖାଇଥିଲେ । ମୁଁ ଗୋଟିଏ ସ୍ୱତନ୍ତ୍ର ଖାତା କରି ଖେଳର ନାମ ଓ ପ୍ରଣାଳୀ ଇତ୍ୟାଦି ଲେଖି ପ୍ରାୟ ବର୍ଷେକ ପରେ ସେହି ପାଣ୍ଡୁଲିପି ସଂଶୋଧନ କରି 'ବିବିଧ ଖେଳଶିକ୍ଷା' ନାମ ଦେଇ ଛପାଇଲି । ଏହାହିଁ ମୋର ପ୍ରଥମ ବହି ଏବଂ ଓଡ଼ିଆରେ ଖେଳ ସମ୍ବନ୍ଧୀୟ ସର୍ବପ୍ରଥମ ପୁସ୍ତକ । ଟ୍ରେନିଂ ସ୍କୁଲରେ ପଢ଼ିବା ସମୟରେ 'ମୁକୁର', 'ପଞ୍ଚାମୃତ', 'ଉତ୍କଳ ମଧୁପ' ଓ 'ସହକାର'ରେ ମୋର କେତୋଟି ଲେଖା ପ୍ରକାଶିତ ହୋଇଥିବ ।

ଉତ୍କଳ ସାହିତ୍ୟ ସମାଜରୁ ପୁରସ୍କାର ପ୍ରାପ୍ତି ଓ 'ବିବିଧ ଖେଳ-ଶିକ୍ଷା'ର ପ୍ରକାଶ ଯୋଗୁଁ ମୋର ନିଜପ୍ରତି ପ୍ରତ୍ୟୟ ଆସିଲା । ମୁଁ ଚେଷ୍ଟା

କଲେ କିଛି ଲେଖି ପାରିବ ବୋଲି ମନରେ ଆଶା ଓ ଦମ୍ଭ ଜାତ ହେଲା । ଗ୍ରନ୍ଥଜୀବନ ଯାଙ୍କ ହେବାପରେ ମୋର ପ୍ରଣୀତ 'ଦୟାନନ୍ଦ ସରସ୍ୱତୀ' ଓ 'ନେପୋଲିୟନ' ପ୍ରକାଶିତ ହେଲା । ୧୯୩୨ ମସିହାବେଳକୁ ମୋର ସ୍ତ୍ରୀର ପରଲୋକ ଘଟିବାରୁ ମୁଁ ନିଜକୁ ଦୋହଳୀରେ ମ: ଇ: ସ୍କୁଲ ପ୍ରତିଷ୍ଠା ପାଇଁ ନିଯୋଜିତ କଲି । ସଙ୍ଗେ ସଙ୍ଗେ ନାନା ରାଜନୈତିକ, ସାମାଜିକ ଓ ଲୋକକଲ୍ୟାଣକର କାର୍ଯ୍ୟରେ ବ୍ୟାପୃତ ହୋଇ ପଡ଼ିବାରୁ ଲେଖନୀ ଚାଳନା ସମ୍ଭବପର ହେଲା ନାହିଁ । ସେହିଦିନଠାରୁ ଦୀର୍ଘ ଅଠର ବର୍ଷ କାଳ ମୁଁ ବହି ଲେଖିଲି ନାହିଁ ସିନା କିନ୍ତୁ ନାନା ଗ୍ରନ୍ଥ ଅଧ୍ୟୟନ କରିବାରୁ ବିରତ ହୋଇ ନାହିଁ । ମୋର ଭାଗ୍ୟର ବିପର୍ଯ୍ୟୟ ଘଟିଲା— ଦୋହଳୀର ପାଣିପବନ ମୋ ପକ୍ଷରେ ଦୁଃସହ ହେଲା । ମୁଁ ବେଦନାହତ ହୃଦୟରେ ଏଠାରୁ ବିଦାୟ ନେଇ ଦୂରବର୍ତ୍ତୀ ଏକ ପଲ୍ଲୀରେ ଦୁନିଆ ଦାଉରୁ ଅବ୍ୟାହତି ଲଗି ଉଦ୍ୟମ ଚଳାଇଲି । ନୂତନ ସ୍ଥାନଟିରେ ମାନସିକ ଶାନ୍ତିର ଯଥେଷ୍ଟ ଉପାଦାନ ଥିଲା । ତାହାର ସୁଯୋଗ ନେଇ ମୁଁ ସେଠାରେ କେତେ ଖଣ୍ଡ ପାଠ୍ୟପୁସ୍ତକ ଓ ଶିଶୁ ସାହିତ୍ୟ ଲେଖିଲି । ମୋ ପ୍ରଣୀତ ବହିଗୁଡ଼ିକର ତାଲିକା ଏଠାରେ ଦେଉଛି—

(ଜୀବନ ଚରିତ)

୧—ନେପୋଲିୟନ
୨—ଦୟାନନ୍ଦ ସରସ୍ୱତୀ

(ଶିଶୁ ସାହିତ୍ୟ)

୩ – ହୁକେ ହୋ (ବିଷ୍ଣୁପଦ ପୁରସ୍କାର ପ୍ରାପ୍ତ)
୪ – ବନର ମନକଥା (ରାଜ୍ୟ ସରକାର ପୁରସ୍କାର ପ୍ରାପ୍ତ)
୫—କିଏ କେମିତି
୬—ଗୁରୁ ଚରିତ
୭—ଚରିତ ଓ ଚରିତ
୮—ଗୁଣ ଦର୍ପଣ
୯—ଭକ୍ତ ଓ ଭଗବାନ

(ପାଠ୍ୟ ପୁସ୍ତକ)

୧୦— ସରଳ ବ୍ୟାକରଣ ଓ ରଚନା (୪ର୍ଥ-୫ମ ଶ୍ରେଣୀ ପାଇଁ)
୧୧— ସହଜ ରଚନା ଓ ପ୍ରବନ୍ଧ (୪ର୍ଥ-୫ମ ଶ୍ରେଣୀ ପାଇଁ)
୧୨— ମାଧ୍ୟମିକ ବ୍ୟାକରଣ ଓ ରଚନା (୬ଷ୍ଠ-୭ମ-୮ମ ଶ୍ରେଣୀ ପାଇଁ)
୧୩ ମାଧ୍ୟମିକ ପ୍ରବନ୍ଧ ଲିଖନ ଶିକ୍ଷା (୬ଷ୍ଠ-୭ମ-୮ମ ଶ୍ରେଣୀ ପାଇଁ)
୧୪—ବିବିଧ ଖେଳଶିକ୍ଷା
୧୫—English to Oriya Dictionary (ଅପ୍ରକାଶିତ)

ମୋର ୭୯ ବର୍ଷ ଆରମ୍ଭରେ ଯେଉଁ ଜନ୍ମ ଜୟନ୍ତୀ ଉତ୍ସବ ପାଳିତ ହେଲ, ତାହା ପୂର୍ବରୁ ନିଜର ଆତ୍ମ-ଚରିତ 'ଜଣେ ଶିକ୍ଷକର ନିଜ କଥା' ପ୍ରକାଶ କଲି ।

ବର୍ତ୍ତମାନ ଛାତ୍ରଛାତ୍ରୀମାନଙ୍କୁ ସଂକ୍ଷେପରେ କିଛି କହି ମୋର ଲେଖାର ଉପସଂହାର କରିବି । ମୁଁ ନିଜ ସମ୍ବନ୍ଧରେ ଯାହା ଲେଖିଲି, ତାହା କେବଳ ପିଲମାନଙ୍କର ଦିଗ୍‌ଦର୍ଶନ ପାଇଁ ଉଦ୍ଦିଷ୍ଟ । ସେଥିରେ ମୁଁ ମୋର ଅହମିକା ବା ଆତ୍ମ ପ୍ରାଧାନ୍ୟ ପ୍ରକାଶ କରିବାକୁ ଯାଇ ନାହିଁ । ମୁଁ ଯେପରି ଭାବରେ ସାଧନା କରି ସାମାନ୍ୟ ଲେଖକଟିଏ ହୋଇ ପାରିଛି, ପିଲମାନେ ସେହିପରି କରି କୃତାର୍ଥ ହୁଅନ୍ତୁ ବୋଲି ମୁଁ କାମନା କରେ ।

ପିଲମାନେ, ତୁମ ଲାଇବ୍ରେରୀରେ ଅସଂଖ୍ୟ ବହି ଅଛି । ସେଗୁଡ଼ିକ ଆଲମାରୀସ୍ଥ ହେବା ପାଇଁ କିଣାଯାଇ ନାହିଁ । ସେଗୁଡ଼ିକର ସଦ୍‌ବ୍ୟବହାର କର । ଉପନ୍ୟାସ ବହି ମୋଟେ ଛୁଅଁ ନାହିଁ । ଜୀବନ ଚରିତ ବହିରୁ ଯେତେ ପଢ଼ି ପାରିବ ସେତେ ଭଲ । ଖାଲି ପଢ଼ିଗଲେ ହେବ ନାହିଁ, ସାଧୁ ସନ୍ଥ ଓ ମନୀଷୀ ବା ମହାପୁରୁଷମାନଙ୍କ ପଦାଙ୍କ ଅନୁସରଣ କରି ନିଜ ଜୀବନକୁ ନିୟନ୍ତ୍ରିତ କରିବାକୁ ଯଥାସାଧ୍ୟ ଚେଷ୍ଟା କର । ମନୋରଞ୍ଜନ ପାଇଁ ବିବିଧ ବିଷୟକ ପୁସ୍ତକ ବାଛି ତହିଁରେ ଆନ୍ତରିକ ମନଃସଂଯୋଗ କର । ବରଂ ଖଣ୍ଡେ ବହି ଭଲ କରି ପଢ଼ିବ, ମାତ୍ର ତରତର ହୋଇ ଏକାଧିକ ବହି ପଢ଼ିବାରେ ସାର୍ଥକତା ନାହିଁ । ଲେଖକ ବହିଟିର ବିଷୟ ବସ୍ତୁ କିପରି ସଜାଡ଼ିଛନ୍ତି, ପରିଚ୍ଛେଦ ଇତ୍ୟାଦି କିପରି ଭାବରେ କଳ୍ପିତ ହୋଇଅଛି, ବିଭିନ୍ନ ଶବ୍ଦ କାହିଁକି କେଉଁଠି ବ୍ୟବହୃତ ହୋଇଛି, ଉପମା

ବହୁ କାହିଁକି ଦିଆ ଯାଇଛି—ଏଥିକୁ ଉପରେ ଶ୍ୟେନ ଦୃଷ୍ଟି ରଖ । ନ ବୁଝି ପାରିଲେ ଶିକ୍ଷକଙ୍କୁ ପଚାରିବ, କିନ୍ତୁ ଅଜ୍ଞତାକୁ ପ୍ରଶ୍ରୟ ଦେବ ନାହିଁ ।

ତୁମ୍ଭମାନଙ୍କୁ ମୌଳିକ ଗଳ୍ପ ଲେଖିବାକୁ ମୁଁ ଉତ୍ସାହ ଦେଇ ପାରିବି ନାହିଁ । ସିଦ୍ଧହସ୍ତ ନ ହେଲେ ଯେପରି ଲେଖାରେ ସମୟ ନଷ୍ଟ କରିବା ଉଚିତ ନୁହେଁ । ପୌରାଣିକ ବା ଐତିହାସିକ ବିଷୟ ବସ୍ତୁ ସାହାଯ୍ୟରେ ଗଳ୍ପ ଲେଖିବାକୁ ପ୍ରୟାସ କଲେ ଭଲ ହେବ । ଜଣଙ୍କର ପୂର୍ଣ୍ଣାଙ୍ଗ ଜୀବନ ଚରିତକୁ ସଂକ୍ଷେପରେ ଲେଖିବା କମ୍ ବାହାଦୁରୀ ନୁହେଁ । କଥୋପକଥନ ଛଳରେ ଏକାଙ୍କିକା ସାହାଯ୍ୟରେ କୌଣସି ବିବରଣୀ ବା ଘଟଣା ପ୍ରକାଶ କରିବା ଦ୍ୱାରା ଦକ୍ଷତାର ପରିଚୟ ମିଳେ । ଉଚ୍ଚ ଶ୍ରେଣୀର ଛାତ୍ରଛାତ୍ରୀମାନେ ଇଂରେଜୀ ବହିରୁ କାଳ୍ପନିକ ଗଳ୍ପ, ଜୀବଜନ୍ତୁ ବିଷୟକ ଗଳ୍ପ ଓ ଅନ୍ୟ ଉପାଦେୟ ଲେଖା ଅନୁବାଦ କରି ଶିଖନ୍ତୁ । ସ୍ଥୂଳତଃ ବର୍ଣ୍ଣନାତ୍ମକ ଓ ବିବରଣାତ୍ମକ ପ୍ରବନ୍ଧ ଲେଖି ହାତ ଦୋରସ୍ତ କରିବା ପରେ ଚିନ୍ତାମୂଳକ ଲେଖା ପ୍ରତି ପ୍ରୟାସୀ ହେବା ଉଚିତ । ଭଲ କରି ମନେ ରଖିବାକୁ ହେବ, ଗୁଡ଼ାଏ ବହି ନ ପଢ଼ିଲେ ଭାଷା ଓ ଭାବ ସରସ, ନିର୍ଦ୍ଦୋଷ ଓ ବିଶୁଦ୍ଧ ହେବ ନାହିଁ ।

— —

# ଭଗବତ୍ କୃପା

ଭଗବାନଙ୍କ ଆଶୀର୍ବାଦରୁ ମୁଁ ନିମ୍ନଲିଖିତ କାର୍ଯ୍ୟମାନ କରିବାକୁ ସମର୍ଥ ହୋଇଅଛି ।

## ରାସ୍ତା ନିର୍ମାଣ

* ହୋହଲ ସ୍କୁଲଟି କଟକ-ଚାନ୍ଦବାଲି ରାସ୍ତା ପାଖରୁ ଦୁଇ କିଲୋମିଟର ଦୂରବର୍ତ୍ତୀ । ବନ୍ୟାଞ୍ଚଳର ଲୋକେ ହାନପୁର, ହୋହଲ ଦେଇ ଗୃହୋଳରେ ଚଢ଼େଇ ବସ୍ ଧରନ୍ତି । ହାନପୁରଠାରେ ଝୋଟ ଗୋଦାମ ଥିବାରୁ ଶହ ଶହ ଶଗଡ଼ ଝୋଟ ବୋହି ଏଇ ବାଟରେ ଯିବା ଆସିବା କରେ । ମୁଁ ସ୍କୁଲଟି ପ୍ରତିଷ୍ଠା କରିବା ପରେ ଗୃହୋଳରୁ ସ୍କୁଲ ପର୍ଯ୍ୟନ୍ତ ଏବଂ ସେଠାରୁ ହାନପୁର ପର୍ଯ୍ୟନ୍ତ ଗୋଟିଏ ସଡ଼କ ତିଆରିରେ ମନ ଦେଲି । କେନ୍ଦ୍ରାପଡ଼ା ଲୋକାଲ ବୋର୍ଡ଼ ଚେୟାରମ୍ୟାନ୍ ସ୍ୱର୍ଗତ ହୋକଗୋବିନ୍ଦ ମହାନ୍ତି ମୋ ଅନୁରୋଧ ରଖି ସେଥିପାଇଁ ଦୁଇଶହ ଟଙ୍କା ମଞ୍ଜୁର କଲେ । ୧୯୩୨ ମସିହାର କଥା । ହଜାରେ ମାଟିକାମ ପାଇଁ ମୂଲିଆଙ୍କୁ ଦେଢ଼ ଟଙ୍କା ଦେବାକୁ ପଡ଼ିଥିଲା । କେଡ଼େ ଶସ୍ତା ଯୁଗ ।

ରାସ୍ତାପାଇଁ କେତେକ ଲୋକ ମାଗଣା ଜମି ଦେଲେ । କେତେକଙ୍କୁ ମୂଲ୍ୟ ଦେବାକୁ ପଡ଼ିଲା । ଜମିର ଜରସମନ ଓ ରେଜଷ୍ଟ୍ରି ବାବଦକୁ ପ୍ରାୟ ଦେଢ଼ଶ ଟଙ୍କା ମୋ ହାତରୁ ଖର୍ଚ୍ଚ ହୋଇଥିଲା ।

ଏହି ରାସ୍ତା ପାଇଁ ଉକାଶ ରାଉଳ ନାମକ ଜଣେ ଲୋକ ଜମି ଛାଡ଼ିବାକୁ ରାଜି ହେଲେ ନାହିଁ । ମୁଁ ନାନା ପ୍ରକାର ଚେଷ୍ଟା କଲି, ଜମିର ପ୍ରକୃତ ମୂଲ୍ୟର ଦୁଇ ତିନିଗୁଣ ଦେବାକୁ କହିଲି । ମାତ୍ର ତାଙ୍କୁ ମଙ୍ଗାଇ ପାରିଲେ ନାହିଁ । ଦିନେ ରାତିରେ ତାଙ୍କ ପାଖକୁ ଯାଇ ଲମ୍ବ ହୋଇ ତାଙ୍କ ଗୋଡ଼ ତଳେ ପଡ଼ିଯିବାରୁ ଓ ଜବାବ ନ ପାଇଲେ ଉଠିବି ନାହିଁ କହିବାରୁ

ତାଙ୍କ କଣ୍ଠରେ ସରସ୍ୱତୀ ବସିଲେ । ସେ ମୂଲ୍ୟ ନ ନେଇ ପ୍ରାୟ ଦୁଇଗୁଣ୍ଠ ଜମି ରାସ୍ତା ପାଇଁ ଦାନ କରିଦେଲେ ।

❋ ମୋ ନିଜ ଗ୍ରାମର ସବର୍ଣ୍ଣ ଓ ହରିଜନମାନେ ଦୁଇଟି ପଡ଼ାରେ ବାସ କରନ୍ତି । ଏହି ଉଭୟ ପଡା ମଧ୍ୟରେ ଯିବା ଆସିବା ରାସ୍ତା ନ ଥିଲା । ଚାଷ ଜମି ଥିବାହେତୁ ନାନା ଅସୁବିଧା ଓ ବିବାଦ ଉପୁଜୁଥିଲା । ମୁଁ ପ୍ରାୟ ୧୫୦୦ ଫୁଟ ଲମ୍ବ ଓ ୧୦ ଫୁଟ ଓସାରର ଜମି ଚାଷୀଙ୍କଠାରୁ କିଣି ଚନ୍ଦାରେ ରାସ୍ତା ତିଆରି କରାଇଥିଲି ।

## ପକ୍କା ପୋଲ ନିର୍ମାଣ

ଜଣେ ଇଉନିୟନ ପ୍ରେସିଡେଣ୍ଟଙ୍କ ଜରିଆରେ ଗହଣା ମୌଜାରେ ଗୋଟିଏ ପକ୍କା ପୋଲ ତିଆରି ପାଇଁ ସରକାରଙ୍କଠାରୁ ଟ ୨୫-୦୦ ମିଳିଥିଲା । ଏତିକ ଟଙ୍କାରେ କାର୍ଯ୍ୟ ହୋଇ ପାରିବା ସମ୍ଭବ ନୁହେଁ । ତେଣୁ ସେହି ଗ୍ରାମର କେତେକ ଶିକ୍ଷିତ ବେଜଗାରିଆ ଭଦ୍ରବ୍ୟକ୍ତିଙ୍କୁ ସେଥିପାଇଁ ଚାନ୍ଦା ମାଗିଲି ଓ ସେମାନେ ଜବାବ ଦେଲେ । ଶହେ ଟଙ୍କା ପର୍ଯ୍ୟନ୍ତ ଖରଚ ହେଲା । ପୋଲଟି ତିଆରି ସରିବା ପରେ କିଛି ମାଟିକାମ କରିବାର ଥିଲା । ମୁଁ ଟଙ୍କା ମାଗନ୍ତେ ପ୍ରତିଶ୍ରୁତି ଦେଇଥିବା ଜଣେ ଭଦ୍ର-ବ୍ୟକ୍ତି—ଯେ କି ଖଡ଼ଗପୁର ରେଳବାଇରେ ଚାକିରି କରୁଥିଲେ-- କହିଲେ, ମୁଁ କୁଆଡ଼େ ସେ ଟଙ୍କାରୁ କିଛି ଆତ୍ମସାତ୍ କରିଛି । ମୋତେ ବଡ଼ ବାଧିଲା । ତାଙ୍କ ସହିତ ଯୁକ୍ତି କରିବାକୁ ମୋର ଇଚ୍ଛା ହେଲା ନାହିଁ । ମୁଁ କ୍ରୋଧରେ ବଶୀଭୂତ ହୋଇ କହିଲି—ତୁମର ଏ ପ୍ରକାର ପ୍ରତାରଣା ପାଇଁ ପୋଲଟି ଧ୍ୱଂସ ପାଇଯାଉ । ସେହି ଆବଶ୍ୟକ ମାଟିକାମ ନ ହୋଇ ଥିବାରୁ ପୋଲଟି ସେହି ବର୍ଷ ବର୍ଷା ଋତୁରେ ଭାସିଗଲା ।

❋ ଦକ୍ଷବ୍ରହ୍ମପୁର ଗ୍ରାମରେ ପୋଲଟିଏ ହେବା ପାଇଁ ସରକାରଙ୍କଠାରୁ ଟ ୫୦-୦୦ ମିଳିଥିଲା । ମୁଁ ମୋ ହାତରୁ ଆଉ ଟ ୫୦-୦୦ ଦେଇ ତାହା କରିଥିଲି । ଗ୍ରାମବାସୀମାନେ ମିଳିମିଶି କିଛି ମାଟିକାମ କରି ଦେଇଥିଲେ ।

❋ ବନ୍ୟା ସହାୟକ ପାଣ୍ଠିରୁ କେଶରପୁର ଗ୍ରାମରେ ଗୋଟିଏ ପୋଲ ତିଆରି ପାଇଁ ପ୍ରାୟ ପାଞ୍ଚଶ ଟଙ୍କା ପାଇଥିଲି । ଏହା ମୋର ଘର

ପାଖରେ । ବର୍ଷା ସମୟରେ ଲୋକେ ମାତାୟାତରେ ବିଶେଷ ଅସୁବିଧା ଭୋଗୁଥିଲେ । ମୁଁ ସେଥିପାଇଁ ଶତାଧିକ ଟଙ୍କା ହାତରୁ ଖରଚ କରିଥିଲି ।

## ପକ୍କା କୂପ ଖନନ

କେନ୍ଦ୍ରାପଡ଼ା ଲୋକାଲ ବୋର୍ଡ଼ ପ୍ରଦତ୍ତ ଅର୍ଥ ସାହାଯ୍ୟରେ ସର୍ବ-ସାଧାରଣଙ୍କ ହିତକଳ୍ପେ ଗୋଟିଏ ପକ୍କା କୂଅ (masonary well) ଖୋଳାଇଥିଲି । ଏଥିପାଇଁ ମୋ ହାତରୁ ପ୍ରାୟ ତିନିଶହ ଟଙ୍କା ବ୍ୟୟିତ ହୋଇଥିଲା ।

## ସ୍କୁଲପାଇଁ ସାହାଯ୍ୟ

* ଦୋହଲ ହାଇସ୍କୁଲର ୪ର୍ଥ ଓ ୫ମ ଶ୍ରେଣୀ ଉଠାଇ ଦିଆଯିବାରୁ ଗୋଟିଏ ଉଚ୍ଚ ପ୍ରାଥମିକ ସ୍କୁଲର ଆବଶ୍ୟକତା ଉପଲବ୍ଧି କରି ସେଥିପାଇଁ ଅର୍ଥ ସାହାଯ୍ୟ କରିଥିଲି ।

* ଦୋହଲରେ ଯୁବକମାନେ ଗୋଟିଏ ବାଳିକା ମାଇନର ସ୍କୁଲ ପ୍ରତିଷ୍ଠା କଲେ । ମୋର ପୁତ୍ର ଶ୍ରୀ ଶଶିଭୂଷଣ ରଥ ବି.ଏ., ବି.ଇଡ଼. ପ୍ରଧାନ ଶିକ୍ଷୟିତ୍ରୀଙ୍କ ଦରମା ଦେଉଥିଲେ ଏବଂ ମୁଁ ଜଣେ ସହକାରୀ ଶିକ୍ଷକଙ୍କୁ ମାସିକ ଟ ୫୦-୦୦ ହିସାବରେ ଛଅମାସ ଦେବା ପରେ ସ୍କୁଲଟି ସରକାରୀ ସ୍ୱୀକୃତି ପାଇ ନ ପାରି ଭାଙ୍ଗିଗଲା ।

## ଜୀବିକା ପାଇଁ ସାହାଯ୍ୟ

*୧୯୪୭ ମସିହାରେ ହିନ୍ଦୁ-ମୁସଲମାନ ସଂଘର୍ଷ ବେଳେ ମୋର ଜଣେ ପଡ଼ୋଶୀ ଶ୍ରୀ ନରହରି ନାୟକ କଲିକତାରୁ ପଳାଇ ଆସିଲା । ସେ ସେଠାରେ ଗୁଡ଼ଆ ଦୋକାନ କରି ଚଳୁଥିଲା । ଘରେ ପାଖରେ ବେକାର ହୋଇ କଷ୍ଟ ଭୋଗିବାରୁ ମୁଁ ତାକୁ ଦୋକାନ କରିବା ପାଇଁ ପଚାଶଟଙ୍କା ଦେଇଥିଲି ଏବଂ ସେ ତିନି ବର୍ଷମାଧ୍ୟ ପରେ ପରିଶୋଧ କରିଦେଲା । ଏହି ଦୋକାନ ଦ୍ୱାରା ସେ ପରିବାରଟିକୁ କୌଣସି ମତେ ଭରଣପୋଷଣ କରି ପାରୁଛି ।

* ମାଟ୍ରିକ୍ ଫେଲ୍ ହୋଇଥିବା ଶ୍ରୀ ଯଦୁନାଥ ମହାନ୍ତି ଫରେଷ୍ଟ ଡିପାର୍ଟମେଣ୍ଟରେ କାର୍ଯ୍ୟ କରୁଥିଲା । ଦୁର୍ଭାଗ୍ୟବଶତଃ ବୃକ୍ଷଗୁଡ଼ିକ ବଢାଉଡ଼ି

ହୋଇ ଘରେ ବସି ରହିଲି । ୧୫ ଟଙ୍କା ପାଇଲେ ସେ ବାଣପଦା ଯାଇଁ ଚାକିରି ଖୋଜନ୍ତା ବୋଲି କହିବାରୁ ମୁଁ ତାକୁ ଟଙ୍କା ଦେଲି । ମାତ୍ର ତାହାର ଆଶା ପୂର୍ଣ୍ଣ ହେଲା ନାହିଁ । ତାହାର କଷ୍ଟ ଦେଖି ମୁଁ ତାକୁ ବୋହଲ ମଧ୍ୟ-ଇଂରାଜୀ ସ୍କୁଲରେ ଦୁଇବର୍ଷ ପାଇଁ ଅତିରିକ୍ତ ଶିକ୍ଷକରୂପେ ନିଯୁକ୍ତ ଦେଇଥିଲି ।

* ଜହଙ୍ଗିର ଗ୍ରାମର ବୃନ୍ଦାବନ ଦାସ ନିଜର ଖଣ୍ଡିଏ ଟାକ୍ସି ଚଳାଇ ଜୀବିକା ନିର୍ବାହ କରୁଥିଲେ । ତାହାର ମରାମତି ପାଇଁ ପ୍ରାୟ ଏକ ହଜାର ଟଙ୍କା ଦରକାର ବୋଲି କହିବାରୁ ଓ ଗାଡ଼ି ଚାଲିଲେ ପ୍ରତି ମାସରେ ଟଙ୍କା ପରିଶୋଧ କରିବାର ଆଶା ଦେବାରୁ ମୁଁ ତାହାକୁ ଟଙ୍କା ଦେଲି । ମାତ୍ର ଗାଡ଼ି ମରାମତି ପାଇଁ ଏତିକି ଟଙ୍କା ଯଥେଷ୍ଟ ନ ହେବାରୁ ମୁଁ ଦେଇଁ ଦେଇଁ ତିନି ହଜାର ଟଙ୍କା ପର୍ଯ୍ୟନ୍ତ ଦେଇଦେଲି । ଦୁର୍ଭାଗ୍ୟକୁ ଗାଡ଼ି ଚାଲିବାର ଚାରି ପାଞ୍ଚ ଦିନ ପରେ ଏକ୍‌ସିଡେଣ୍ଟ ଯୋଗୁଁ ତାହା ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା । ବୃନ୍ଦାବନର ଜୀବିକା ଗଲା । ମୁଁ ମଧ୍ୟ ଅମ୍ଳାନ ବଦନରେ କ୍ଷତି ସହିବାକୁ ବାଧ୍ୟ ହେଲି ।

* କେଶରପୁର ଗ୍ରାମର ଅଚ୍ୟୁତାନନ୍ଦ ରାଉଳ ନିଜ ସାମାନ୍ୟ ଜମିରେ ପରିବାର ପ୍ରତିପୋଷଣ ପାଇଁ ଅସମର୍ଥ ହେବାରୁ ରେଡ଼ି-ମେଡ଼୍ ଦୋକାନଟିଏ କରିବା ପାଇଁ ମୋର ଆର୍ଥିକ ସାହାଯ୍ୟ ପକାଶେ ପ୍ରାର୍ଥୀ ହେଲା । ମୁଁ ଦଫାଓ୍ୟାରିରେ ତାକୁ ଏକ ହଜାର ଟଙ୍କା ପର୍ଯ୍ୟନ୍ତ ସାହାଯ୍ୟ କଲି । ସେ ପ୍ରାୟ ଅଧାଅଧି ଟଙ୍କା ପରିଶୋଧ କରିବା ପରେ, ଗ୍ରାହକ-ମାନଙ୍କଠାରୁ ବାକି ଆଦାୟ କରି ନ ପାରିବାରୁ ଦୋକାନଟି ଭାଙ୍ଗିଗଲା । ମୁଁ ତାକୁ ସ୍ୱଳ୍ପ ଜମିରୁ କିଛି ବିକି ମୋର ଟଙ୍କା ପରିଶୋଧ କରିବାକୁ ବାଧ୍ୟ କରିପାରିଲି ନାହିଁ । ପରବର୍ତ୍ତୀ କାଳରେ ମୋର ଋଣ ଲାଗି ସେ ତାହାର ବ୍ୟସ୍ତତା ପ୍ରକାଶ କରୁଥିଲେ ହେଁ ମୁଁ ତାକୁ ମୋ ଟଙ୍କା କଥା ଚିନ୍ତା ନ କରିବାକୁ କହିଦେଲି ।

* ମୋର ପଡ଼ୋଶୀ ଜଣେ ଦରିଦ୍ର ଲୋକ ଅନ୍ୟ ଲୋକ ସହ ମିଳି ଶଗଡ଼ ଖଣ୍ଡିଏ କିଣିଲେ ତଦ୍ୱାରା କୁଟୁମ୍ବ ପୋଷି ପାରନ୍ତା ବୋଲି କହିବାରୁ ମୁଁ ତାହାର ଅନୁରୋଧ ଅନୁସାରେ ଟ ୨୫ଙ୍କା ସାହାଯ୍ୟ କଲି । ସେ ଟଙ୍କା ଫେରାଇଦେବାକୁ ଜବାବ କରିଥିଲେ ହେ ଦେଲା ନାହିଁ । ମୁଁ ମଧ୍ୟ ତାକୁ ଆଉ ମାଗିଲି ନାହିଁ ।

## ଉପନୟନରେ ସଂସ୍କାର

ଦିନେ ଟାଖ ଗ୍ରାମର ଜଣେ ବ୍ରାହ୍ମଣ ପୁତ୍ରର ଉପନୟନ ପାଇଁ ସାହାଯ୍ୟ ମାଗିଲେ । ମୋର ମନ ହେଲା, ଏକାଦିନକେ ପାଞ୍ଚ ଜଣ ଦରିଦ୍ର ପିଲାଙ୍କ ଉପନୟନ ମୋ ଘରେ ନୂତନ ଭାବରେ କରାଇବ । ଇଚ୍ଛା ଅନୁସାରେ ଅନ୍ୟ ତିନ ଜଣ ପିତାଙ୍କଠାରୁ ସମ୍ମତି ପାଇଲି । ଏହି ତିନ ଜଣ ସ୍ୱଚ୍ଛଳ ଅବସ୍ଥାପନ୍ନ ଥିଲେ । ମାତ୍ର ମୁଁ ଉପନୟନର ସବୁ ପ୍ରକାର ବ୍ୟବସ୍ଥା କରିବାର ପ୍ରାକ୍‌କାଳରେ ସେମାନେ ମନା କରିଦେଲେ ଏବଂ ଲଜ୍ଜା ସଙ୍କୋଚର ବଶବର୍ତ୍ତୀ ହୋଇ ସାମାନ୍ୟ ଜମିରୁ କିଛି କିଛି ବିକ୍ରୟ କରି କାର୍ଯ୍ୟ ଚଳାଇବାକୁ ଶ୍ରେୟସ୍କର ମନେ କଲେ । ତେଣୁ ମୁଁ ପ୍ରଥମ ପ୍ରାର୍ଥୀଙ୍କୁ ଶହେ ଟଙ୍କା ସାହାଯ୍ୟ କଲି ।

## ଅସହାୟଙ୍କୁ ସାହାଯ୍ୟ

* ଯାଜପୁର ଅଞ୍ଚଳର ଗୋଟିଏ ପିଲା ଏକାଦଶ ଶ୍ରେଣୀରେ ପଢ଼ିବା ବେଳେ କଟକ ଆସିଥିଲା ଏମ୍‌ପ୍ଲୟମେଣ୍ଟ ଏକ୍‌ସ୍‌ଚେଞ୍ଜରେ ନାଁ ରେଜିଷ୍ଟ୍ରି କରିବାକୁ । ତାହାର ପକେଟ୍‌ମାରୁ ହୋଇଗଲା ଏବଂ ସେ ହେଡ୍ ଅଫିସ ପିଣ୍ଡାରେ ବସି କାନ୍ଦୁଥିଲା । କେହି ଜଣେ ତାକୁ ମୋ ପାଖକୁ ପଠାଇ-ଦେଲା ଏବଂ ସେ ଦଶଟଙ୍କା ପାଇଲେ ଘରକୁ ଯାଆନ୍ତା ବୋଲି ମୋତେ କହିଲା । ମୁଁ ତାକୁ ଦଶ ଟଙ୍କା ଦେଇ ପଚାରିଲି—ତୁମକୁ ଏ ଟଙ୍କା ଦାନ କରିଦେବି, କି ତୁମେ ଘରକୁ ଯାଇଁ ଟଙ୍କା ଫେରାଇ ଦେବ ? ସେ ମୋର ବିଶ୍ୱାସ ପ୍ରଶ୍ନଟିରେ ହଁ ଭରିଲା, ମାତ୍ର ପଠାଇ ଦେଲା ।

* ଜଣେ ଲୋକ ମୋତେ ଗ୍ରାଣ୍ଡସାଥି ବସ୍ତ୍ର ଦୋକାନରେ ଭେଟି ଜଣାଇଲେ ଯେ, ତାଙ୍କର ବାରିପଦାକୁ ବଦଳି ହୋଇ ଯାଉଛି । ତାଙ୍କର ଚମଡ଼ା ବ୍ୟାଗ୍‌ଟି କିଣିନେଇ ତାଙ୍କୁ ଦଶ ଟଙ୍କା ଦେଲେ ସେ ଉପକୃତ ହେବେ । ବ୍ୟାଗର ଦାମ୍ ଦଶ ଟଙ୍କାରୁ ବେଶୀ ହେବ ବୋଲି ଅନୁମାନ କଲି । ମୁଁ ତାଙ୍କୁ ଯାଜପୁର ପିଲାଟିର ପ୍ରତାରଣା କଥା କହିଲି ଏବଂ ଦଶ ଟଙ୍କା ଦେଲି । ବ୍ୟାଗ୍ ରଖିଲି ନାହିଁ । ସେ ବାରିପଦାରେ ପହଞ୍ଚି କୃତଜ୍ଞତାପୂର୍ଣ୍ଣ ଚିଠି ଖଣ୍ଡିଏ ଲେଖିଲେ । ମାତ୍ର ଛଅ ମାସ ପର୍ଯ୍ୟନ୍ତ ଚିଠି କି ଟଙ୍କା ପଠାଇଲେ ନାହିଁ । ମୁଁ ଅବଶ୍ୟ ଟଙ୍କା ଫେରି ପାଇବାର ଆଶା

ରଖି ନ ଥିଲି; ତଥାପି ବେଳେ ବେଳେ ଭାବୁଥିଲି—ଇଏ ବି ଯାଜପୁର ପିଲା ଭଲ ହେଲା। ଦିନେ ହଠାତ୍ ତାଙ୍କଠାରୁ ଡାକ ଯୋଗେ ଟଙ୍କା ପାଇଗଲି।

* ଦିନେ ଯୋରରୁ ଅନନ୍ତପୁର ଗଲାବେଳେ ବସରେ ବସିଥିବା ଜଣେ ଲୋକଙ୍କୁ କଣ୍ଡକ୍ଟର ବାଟରୁ ବସ୍‌ରୁ ଓହ୍ଲାଇ ଯିବାକୁ ବାଧ୍ୟ କଲେ। ତା ପାଖରେ ଆବଶ୍ୟକ ବସ୍ ଭଡ଼ା ନ ଥିବାରୁ ସେ ବଞ୍ଚିତ ହେଉଥିଲା। ମୁଁ ତାହା ଜାଣି ତାକୁ ଟଙ୍କାଏ ପର୍ଯ୍ୟନ୍ତ ଦେଇଥିଲି।

## ପର ପାଇଁ କ୍ଷତି ସ୍ୱୀକାର

* ଶ୍ରୀ କାଶୀନାଥ ତ୍ରିପାଠୀ ମୋ ଗାଁର ଜଣେ ଲୋକ। ଥରେ ସେ କୌଣସି ସୂତ୍ରରୁ ନଗଦ ପାଞ୍ଚଶତ ଟଙ୍କା ପାଇଥିଲା। ବୃନ୍ଦୋଳ ବ୍ରାଞ୍ଚ ପୋଷ୍ଟମାଷ୍ଟର ଶ୍ରୀ ଉମାପ୍ରସନ୍ନ ଆଚାର୍ଯ୍ୟ ଋଣ ଆଶାରେ ତା ପାଖକୁ ଗଲା ଏବଂ ତାକୁ ପ୍ରଚଳିତ ସୁଧହାର ଅପେକ୍ଷା ବେଶୀ ଦେବା ପାଇଁ କହିଲା। ତ୍ରିପାଠୀ ସୁଧ ଲୋଭରେ ପଡ଼ି ରାଜି ହେଲା। ଦୁହେଁ ସାଙ୍ଗ ହୋଇ ମୋ ପାଖକୁ ଆସିଲେ। ଉମାପ୍ରସନ୍ନକୁ ଋଣ ଦେବା ନିରାପଦ ନୁହେଁ କହିବାକୁ ମୋତେ ସୁଯୋଗ ମିଳିଲା ନାହିଁ। ତ୍ରିପାଠୀର ଇଚ୍ଛା ଅନୁସାରେ ଉମା-ପ୍ରସନ୍ନ ମୋତେ ଟ ୫୦୦-୦୦ର ହ୍ୟାଣ୍ଡନୋଟ୍ ଲେଖିଦେଲା ଏବଂ ତ୍ରିପାଠୀର ଇଚ୍ଛା ବିରୁଦ୍ଧରେ ମୁଁ ତାକୁ ସେତିକ ଟଙ୍କାର ହ୍ୟାଣ୍ଡନୋଟ୍ ଲେଖିଦେଲି। ପୋଷ୍ଟମାଷ୍ଟରଠାରୁ ବହୁ କଷ୍ଟରେ ଚାରି ବର୍ଷ ଭିତରେ ତିନି ଶହ ଟଙ୍କା ଆଦାୟ ହେଲା। ଏହାପରେ ସରକାରୀ ତହବିଲ ତୋଷରପ ଯୋଗୁଁ ପୋଷ୍ଟମାଷ୍ଟରଙ୍କୁ ଦୁଇ ବର୍ଷ ଜେଲ୍ ହୋଇଗଲା। ତ୍ରିପାଠୀ ବେଶୀ ସୁଧ ଲୋଭରେ ଋଣ ଦେବାକୁ ଯାଇଁ, ଅସଲ ବି ପୂରା ପାଇଲା ନାହିଁ। 'ଅଳ୍ପ ଧନ ଚେଳବ ମନ' ନ୍ୟାୟରେ ସେ ଯେଉଁ ଅନ୍ତର୍ବେଦନା ଭୋଗ କଲା, ମୁଁ ତାହା ଉପଲବ୍ଧି କଲି। ଟଙ୍କା ଅନାଦାୟ ପାଇଁ ମୁଁ ଦାୟୀ ନୁହେଁ। ତଥାପି ମୁଁ ଏହା ହିଁ ଚିନ୍ତା କଲି ଯେ, ମହାଜନର ମୋ ଉପରେ ଦୃଢ଼ ବିଶ୍ୱାସ ଥିଲା ଏବଂ ମୋ ଜରିଆରେ ଟଙ୍କା କାରବାର ହେଲେ ଟଙ୍କା ବୁଡ଼ିଯିବାର ଆଶଙ୍କା ସେ କରୁ ନ ଥିଲା। ବର୍ତ୍ତମାନ ସେ କ୍ଷତିଗ୍ରସ୍ତ ହେଲେ ମୋତେ କଳଙ୍କ ଲାଗିବ ବୋଲି ମୋର ବିବେକ ମୋତେ କହିଲା।

ତେଣୁ ମୁଁ ନିଜ ହାତରୁ ତାକୁ ଦୁଇ ଶହ ଟଙ୍କା ଦେଇଦେଲି ।
ମୂଳଧନଟି ପାଇ ସେ ମଧ୍ୟ ଅପ୍ୟାମ୍ପିତ ହେଲା ।

## ଦେଶପାଇଁ ଦାନ

ଚୀନ୍ ଦେଶ ସାଙ୍ଗେ ଯୁଦ୍ଧ ଲାଗିଥିବା ବେଳେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ର କେନ୍ଦ୍ରାପଡ଼ାରେ ଗୋଟିଏ ସଭା କରିଥିଲେ । ଜନ୍ମଭୂମି ପ୍ରତି ମୋର ସର୍ବଶ୍ରେଷ୍ଠ କର୍ତ୍ତବ୍ୟର ପ୍ରତୀକ ସ୍ୱରୂପ ଦେଶର ଯୁଦ୍ଧ-ପାଣ୍ଠିକୁ ତାଙ୍କ ହାତରେ ପାଞ୍ଚଶ ଟଙ୍କା ଅର୍ପଣ କରିଥିଲି ।

ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ଆର୍ଥିକ ସଙ୍ଗ୍ରହରୁ ଭୁବନେଶ୍ୱର ଅଧିବେଶନରେ ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ଶ୍ରୀ ସତ୍ୟ ମୋହନ ପ୍ରଧାନଙ୍କ ହସ୍ତରେ ଦେଶର ଯୁଦ୍ଧ ପାଣ୍ଠିକୁ ଟ୫୦.୦୦ ଏବଂ ପାକିସ୍ଥାନ ସହ ବଙ୍ଗଳା ଦେଶର ଯୁଦ୍ଧ ବେଳେ ଭାରତରେ ଆଶ୍ରୟପ୍ରାପ୍ତ ଶରଣାର୍ଥୀ ମାନଙ୍କ ପାଇଁ ପ୍ରଧାନ ମନ୍ତ୍ରୀଙ୍କ ସାହାଯ୍ୟ ପାଣ୍ଠିକୁ ଟ ୧୫୦.୦୦ ଦାନ କରିଥିଲି । ଏତଦ୍‌ବ୍ୟତୀତ ଦୈନିକ ସମାଜରୁ ନେତାଜୀଙ୍କୁ ୪୮ ଲକ୍ଷ ଟଙ୍କା ଦାନ ଦେଇଥିବା ଦମ୍ପତି ଶ୍ରୀ ଉପେନ୍ଦ୍ରଲାଲ ଚୌଧୁରୀ ଓ ଶ୍ରୀମତୀ ଜ୍ୟୋତ୍ସ୍ନାମୟୀ ଚୌଧୁରୀ ଆଜି ଦାରିଦ୍ର୍ୟର ଭିକାରୀ ସାଜିଥିବାର ସମ୍ବାଦ ଅବଗତ ହୋଇ ସଂଘ ପକ୍ଷରୁ ସେମାନଙ୍କ ଅସାଧାରଣ ଦେଶପ୍ରେମର ସ୍ମାରକ ସ୍ୱରୂପ ଟ ୫୦.୦୦ 'ଫ୍ରିଡମ୍ ଫାଇଟର୍ସ ଆସୋସିଏସନ୍', ୧୧ ଗଭର୍ଣ୍ଣମେଣ୍ଟ ପ୍ଲେସ୍, ଇଷ୍ଟ କଲିକତା-୧ କୁ ପଠାଇ ଦେଇଥିଲି ।

## ସହପାଠୀଙ୍କ ପ୍ରତି ସ୍ନେହ

✻ ମୁଁ ଓ ମୋ ଗାଁର ଆର୍ତ୍ତବନ୍ଧୁ ମହାନ୍ତି ଏକା ସାଙ୍ଗରେ ତୃତୀୟ ଶ୍ରେଣୀରେ ପଢ଼ୁଥିଲୁ । ଆର୍ତ୍ତ ଅକାଳରେ ମରିଗଲା ଓ ତାହାର ପୁଅ କୃଷ୍ଣ ମୂଲ ଲାଗି କୌଣସି ପ୍ରକାରେ କୁଟୁମ୍ବ ଚଳାଇଲା । ଦୁର୍ଭାଗ୍ୟକୁ ସେ ଶୂଳ ବେଗରେ ଅଧିକାଂଶ ସମୟରେ ଶଯ୍ୟାଶାୟୀ ହେବାରୁ ତାହାର ଦୁର୍ଦ୍ଦଶା ବଢ଼ିଗଲା । ସେ ଅନ୍ୟ ଉପାୟ ନପାଇ ମୋ ପାଖକୁ ଚାଲି ଆସିଲା । ଛଅ ସାତଦିନ ମୋ ପାଖରେ ରହି ପ୍ରତିଦିନ ମେଡ଼ିକାଲ ଯିବାକୁ ଲାଗିଲା । ସେ ଦିନେ ମୋତେ କହିଲା ଯେ, ଜଣେ ଡାକ୍ତରଙ୍କୁ ପଚିଶ ଟଙ୍କା ଦେଲେ ସେ ମେଡ଼ିକାଲରେ ସିଟ୍ କରାଇଦେବେ ଏବଂ ଏକ୍ସ-ରେ ମଧ୍ୟ ହେବ । ମୁଁ

ସଙ୍ଗେ ସଙ୍ଗେ ଟ ୫୦.୦୦ ଦେଲି । ତାହାର ଘର ଖଣ୍ଡିକ ଅଧା ଭାଙ୍ଗି ଯାଇଥିଲା । ମୋର ଗୋଟିଏ ପୁରୁଣା ଘର ଭାଙ୍ଗିବାକୁ ପଡ଼ିଲା । ସେଥିରୁ ଯାହା କାଠ ବାଉଁଶ ମିଳିଲା, ତାହା ତାକୁ ଘର କରିବା ପାଇଁ ଦେଲି । ମାତ୍ର ସେ ଅର୍ଥାଭାବରୁ ଘର କରି ନପାରି ମୋ ଗ୍ରହଣ ବଳକଦେଇ ଟ ୬୦.୦୦ ପାଇଲି ବୋଲି କହିଲା ।

❋ ଶ୍ରୀ ଜୟକୃଷ୍ଣ ମିଶ୍ର ମୋ ପର କଟକ ଟ୍ରେନିଂ ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ଭବାନୀପାଟଣାରେ ଶିକ୍ଷକ ପାଇଲେ ଓ ସେହିଠାରେ ବସବାସ କରିବାକୁ ଲାଗିଲେ । ସାମାନ୍ୟ ଆୟରେ ବଡ଼ ଶୋଚନୀୟ ଅବସ୍ଥାରେ ଚଳନ୍ତି । ମୁଁ ଥରେ ସେଠାକୁ ଯାଇଥିଲି ଓ ତାଙ୍କର ଦୁରବସ୍ଥା ଆଖିରେ ଦେଖି ଆସିଥିଲି । ତାଙ୍କ ପୁଅଟି ମାଟ୍ରିକ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବାରୁ ମୁଁ ତିନି ଥରରେ ଟ ୧୦୦-୦୦ ପର୍ଯ୍ୟନ୍ତ ଦେଇଥିଲି ।

## ବନ୍ଧୁ ପ୍ରତି ସହାନୁଭୂତି

❋ ୧୯୬୩ ମସିହାରେ ମୋର ମାମୁଁଙ୍କ ଘର ପୋଡ଼ିଗଲା । ସାନ ମାମୁଁଙ୍କର ଦୁଇ ପୁଅ ଶଶିଭୂଷଣ ଓ ସାରଦାପ୍ରସାଦ ପୃଥକାନ୍ନରେ ଚଳୁଥିଲେ । ସେ ଦୁହିଙ୍କୁ ଗୃହ ସେଇଆ ଗୌଣୀରେ ଭରଣେ ଲେଖାଏ ଧାନ ଦେଇଥିଲି ଓ ବଡ଼ ମାମୁଁଙ୍କ ସମେତ ସମସ୍ତଙ୍କୁ ଆବଶ୍ୟକ ସଂଖ୍ୟାରେ ଧୋତି ଓ ଶାଢ଼ୀ ଯୋଗାଇଥିଲି ।

❋ ମୋର ନିଜର ଖୁଡ଼ୀଶୁରଙ୍କର ଆର୍ଥିକ ଅବସ୍ଥା ଶୋଚନୀୟ ହୋଇ ପଡ଼ିଥିଲା । ତେଣୁ ତାଙ୍କୁ ଦୁଇ ଥରରେ ଦୁଇଶହ ଟଙ୍କା ସାହାଯ୍ୟ କରିଥିଲି ।

❋ ଆମର ପୂର୍ବ ପରିଚିତ୍ କେତେ ଜଣ ଥିଲେ । ସେମାନେ ଗରିବ ଥିଲେ । ମୋର କନ୍ୟାର ବିବାହ ବେଳକୁ ମୁଁ ପ୍ରତ୍ୟେକଙ୍କ ଘରକୁ ଯାଇଁ କହି ଆସିଥିଲି ଯେ, ସେମାନେ ବିବାହ ଉତ୍ସବରେ ମୋ ଘରକୁ ଆସିବେ, ମାତ୍ର କିଛି ଭେଟିର ଦେବେ ନାହିଁ । ତଥାପି ସେମାନେ ମୋତେ ଭେଟିର ଦେବା ବେଳେ ମୁଁ ହସି ହସି ଫେରାଇ ଦେଲି ଓ ସେମାନଙ୍କୁ ତାହା ଗ୍ରହଣ କରିବାକୁ ଅନୁରୋଧ କଲି । ଯେଉଁମାନେ ଆସିଥିଲେ, ସେମାନଙ୍କୁ କାହାକୁ ଧୋତି ଓ କାହାକୁ ଶାଢ଼ୀ ଦେଇ ସନ୍ତୁଷ୍ଟ କରିଥିଲି । ଯାହାର

ଶକ୍ତି ଅଛି, ସେ ବେଗାର ଦେଉ, ମାତ୍ର ଦରିଦ୍ର ଲୋକେ ସମାଜ ଚଳଣି ଅନୁସରଣ କରି ବେଗାର ଦେବାଟାକୁ ମୁଁ ପସନ୍ଦ କରେ ନାହିଁ । ମୁଁ ଜଣେ ବନ୍ଧୁକୁ ବେଗାର ଦେଇଥିଲି ବୋଲି ସେ ମୋତେ ବେଗାର ଦେବାକୁ ବାଧ୍ୟ, ଏପରି ସାମାଜିକ ବ୍ୟବସ୍ଥା ସୁନ୍ଦର ନୁହେଁ ।

* ମୋର ତିନିଜଣ ମାମୁଁ ଥିଲେ । ମଝିଆଁ ମାମୁଁ ନନ୍ଦକିଶୋର ରଥ ଚିରକୁମାର ଥିବାରୁ ବିବାହ କରି ନ ଥିଲେ । ତେଣୁ ସମସ୍ତ ସମ୍ପତ୍ତି ବଡ଼ ମାମୁଁ ଗୋବିନ୍ଦ ରଥ ଓ ସାନ ମାମୁଁ ବୃନ୍ଦାବନ ରଥ ବାଣ୍ଟି ନେବାର କଥା । ମୁଁ, ମୋର ବାଲ୍ୟ ଗୁରୁ ଦୟ ଶ୍ରୀ ଚକ୍ରଧର ଦାଶ ଓ ଶ୍ରୀ ନକୁଳ ଚରଣ ମିଶ୍ର ତିନିହେଁ ମିଳି ବାଣ୍ଟିବାର ଦାୟିତ୍ୱ ନେଲୁ । ସୁବ୍ୟବସ୍ଥାରେ ବାଣ୍ଟ ହୋଇଗଲା । କେବଳ ବଡ଼ ମାମୁଁ ପାଇଥିବା ଖଣ୍ଡିଏ ଘରବାଡ଼ି ଜମିରେ ରାସ୍ତା ଦେବାକୁ ସାନ ମାମୁଁ ରାଜି ହେଲେ ନାହିଁ । ସାନ ମାମୁଁ ଶିକ୍ଷିତ ଓ ଉଦାରମନା ଲୋକ ଥିଲେହେଁ ରାସ୍ତା ଦେବା ଘଟଣାରେ ସଙ୍କୀର୍ଣ୍ଣତା ପ୍ରକାଶ କରିବା ମୋ ପକ୍ଷରେ ବଡ଼ ବିସ୍ମୟଜନକ ହେଲା । ସେ କୌଣସି ପ୍ରକାରେ ରାଜି ନ ହେବାରୁ ମୁଁ ମୋ ଜମିରୁ ବଡ଼ ମାମୁଙ୍କୁ ରାସ୍ତା ଦେବି ବୋଲି କହିଲି ଏବଂ ତିନି ଗୃହେନ ପରେ ତିରିଶ କଡ଼ ଲମ୍ବ ଓ ପାଞ୍ଚ କଡ଼ ଓସାରର ରାସ୍ତାଟିଏ ତାଙ୍କ ନାମରେ ରେଜେଷ୍ଟ୍ରି କବଲା କରିଦେଲି ।

## ହରିଜନ ପ୍ରୀତି

* ଆମ ଗାଁରେ କେହି ନିଜ ଜମିରେ ଚଣା ବା ଖେସାରି ଫସଲ କରନ୍ତି ନାହିଁ । ଗ୍ରାମବାସୀ କେତେ ଜଣ ମିଳି ଦଳବଦ୍ଧ ଭାବରେ ଚଣା ଫସଲ କରନ୍ତି ଓ ଜମି ମାଲିକଙ୍କୁ ଅଧେ ବୁଝେଇ ଦିଅନ୍ତି । ମୋର ଖଣ୍ଡିଏ ଜମିରେ ଭଲ ଚଣା ହୁଏ । ଥରେ ମୋ ଗାଁର ସବର୍ଣ୍ଣ ଓ ହରିଜନ-ମାନେ ସେଥିରେ ଚଣା ବୁଣିଛନ୍ତି ବୋଲି ଦାବୀ କଲେ । ମୁଁ ମଧ୍ୟ ତଦନ୍ତ କରି ଜାଣିଲି ଯେ, ପ୍ରକୃତରେ ଉଭୟେ ବୁଣିଛନ୍ତି । ମୁଁ ମୋର ମାଲିକ ଭାଗ ନେଇଗଲେ ଅପର ଅଧିକାରେ ଦୁଇ ଦଳ ସନ୍ତୁଷ୍ଟ ହୋଇ ପାରିବେ ନାହିଁ ଜାଣି, ମୁଁ ମୋ ଭାଗ ଛାଡ଼ିଦେଲି ଓ ଉତ୍ପନ୍ନ ଫସଲ ସେହି ଦୁଇ ଦଳ ବାଣ୍ଟି ନେବାକୁ କହିଲି । ଏହା ସଙ୍ଗେ ସଙ୍ଗେ ନିଷ୍ପତ୍ତି କରିଦେଲି ଯେ,

ଭବିଷ୍ୟତରେ କେବଳ ହରିଜନ ବଳ ସେ ଜମିରେ ଚଷା ବୁଣିବେ । ଏପରି କରିବା ଦ୍ୱାରା ମୁଁ ଅଧ ମହଣ ଚଣା ହରାଇଥିଲି ।

※ ମୋ ଜମିପାକ ଭାଗଚାଷୀମାନେ ଚାଷ କରନ୍ତି ଏବଂ ମୁଁ ସବୁଠାରୁ ଦରିଦ୍ର ଲୋକଙ୍କୁ ଚାଷ କରିବାକୁ ଅଗ୍ରାଧିକାର ଦିଏ । ଗୃହ ପାଞ୍ଚଜଣ ହରିଜନ ଲୋକ କିଛି ଜମି ଚାଷ କରୁଥିଲେ । କ୍ରମାଗତ ବାତ୍ୟା ଓ ବର୍ଷାର ଅଭାବ ଯୋଗୁଁ ସେମାନେ ମୋର ଭାଗ ମୋତେ ନ ଦେଇ ନିଜେ ଖରଚ କରି ଦେଲେ । ତେଣୁ ସେଭଳି ଲୋକଙ୍କୁ ଆଉ ଜମି ଦେବ ନାହିଁ ବୋଲି ଠିକ୍ କଲି । ମୋର ଏହି ନିଷ୍ପତ୍ତିରେ ସେମାନେ ଦୁଃଖିତ ହେବା ସ୍ୱାଭାବିକ । ସେମାନେ ଜମି ପାଇବାକୁ ଏକାନ୍ତ ଅନୁରୋଧ କରିବାରୁ ମୁଁ କହିଦେଲି ଯେ, ଯାହାଠାରେ ଯାହା ବାକି ଅଛି, ସେମାନେ ତାହା ନ ଦିଅନ୍ତୁ, କିନ୍ତୁ ଆଉ ଜମି ପାଇଁ ଓଜର ନ କରନ୍ତୁ । ଏହା ଫଳରେ ଜଣକୁ କିଛିଟା ହୁରି ସେରିଆ ଗୌଣୀରେ ଗ୍ଳକଣ ଗଉଣୀ, ଅନ୍ୟ ଦୁଇ ଜଣକୁ ତିରିଶ ଗୌଣୀ ଓ କୋଡ଼ିଏ ଗୌଣୀ ଛାଡ଼ିଦେଲି । ସେତେବେଳେ ଏକ ଗୌଣୀ ଧାନର ମୂଲ୍ୟ ଥିଲା ଅଢ଼େଇ ଟଙ୍କା । ଲକ୍ଷ୍ୟକଲି, ସେମାନେ ସନ୍ତୁଷ୍ଟ ହୋଇ ଚାଲିଗଲେ ।

## ୪୦ ବର୍ଷ ପରେ ଋଣ ପରିଶୋଧ

୧୯୨୫ ମସିହାରେ ମୋର ପୁନର୍ବିବାହ ହେଲା । ସେତେବେଳେ କଟକର ଜଣେ କବିରାଜଙ୍କଠାରୁ ଅଧସେର ମଦନାନନ୍ଦ ମୋଦକ ନେଇ ଦୁଇଟଙ୍କା ଦେଇଥିଲି ଓ ଦୁଇଟଙ୍କା ବାକି ରଖିଥିଲି । ୧୯୬୫ ମସିହାରେ ମୁଁ ଦିନେ ବାଲୁବଜାରରେ ଗଲାବେଳେ ତାଙ୍କୁ ଦୋକାନରେ ବସିଥିବାର ଦେଖିଲି । ସେତିକିବେଳେ ମୋର ମନକୁ ଆସିଲା—ଏ ବାବୁ କିଏ ଓ ମୋର ଚିହ୍ନା ଭଳି ଜଣା ପଡ଼ୁଛନ୍ତି । ତା ପରେ ମନେ ପଡ଼ିଲା, ତାଙ୍କର ଦୁଇଟି ଟଙ୍କା ମୁଁ ଦେଇ ନାହିଁ । ତହିଁଆର ଦିନ ତାଙ୍କୁ ଭେଟି ଟଙ୍କା ଦେଲି ଓ କ୍ଷମା ମାଗିଲି । ସେ କହିଲେ—"ଏହି ସାମାନ୍ୟ ଟଙ୍କା ପାଇଁ ମୁଁ ଗରିବ ହୋଇଯିବି ନାହିଁ, କି ଆପଣ ବଡ଼ଲୋକ ହେବେ ନାହିଁ । ୪୦ ବର୍ଷ ପରେ ଆପଣ ଯାଚିକରି ଦୁଇଟଙ୍କା ଦେଉଛନ୍ତି । ଆପଣଙ୍କ ଭଳି ସାଧୁ ଲୋକ ମୁଁ ଜୀବନରେ ଦେଖି ନାହିଁ । ତାଙ୍କର ଏହି କଥା ଶୁଣି ମୁଁ କେତେଦୂର ତୃପ୍ତ ହୋଇଥିଲି, ତାହା ପ୍ରକାଶ କରିବା ପାଇଁ ଭାଷା

ନାହିଁ । ସେହି କବିରାଜଙ୍କ ନାମ ଶ୍ୟାମସୁନ୍ଦର ମହାପାତ୍ର । ତାଙ୍କ ଘର ଚେଙ୍କାନାଳଠାରେ ।

## ଦରିଦ୍ର ନର-ନାରାୟଣ

ମୋ କନ୍ୟାଟି ସାତ ଦିନରେ ମା-ଛେଉଣ୍ଡ ହୋଇଥିବାରୁ ତାହାର ପ୍ରଥମ ବାର୍ଷିକ ଜନ୍ମ ଦିବସରେ ଭୋଜିଭାତ କରିବାକୁ ମନ ବଳାଇଲି । ସେଥିପାଇଁ କାକରା, ପାୟସ ଇତ୍ୟାଦି ଉଚ୍ଚ ସ୍ତରର ଖାଦ୍ୟ ପ୍ରସ୍ତୁତ ହେବ ଏବଂ ତଥାକଥିତ ଭଦ୍ରଲୋକମାନଙ୍କୁ ଆମନ୍ତ୍ରଣ କରାଯିବ, ଏହାହିଁ ସ୍ଥିର କଲି ।

ଦୋଳଯାତ୍ରା ବେଳ । ଜନ୍ମଦିନ ଦଶମୀ ତିଥି ସପ୍ତାହେ ଖଣ୍ଡେ ଥିଲା । ମୁଁ ଦାନପୁର ଗ୍ରାମକୁ ଯିବା ବେଳେ ରାସ୍ତା ପାଖରେ ଥିବା ପୋଖରୀଟିରୁ ଗୋଟିଏ ପାଲୁଣୀ ଗାଧୋଇସାରି ଉଠି ପଡୁଥିଲା । ତାହାର ପିନ୍ଧା ଶାଢ଼ୀଟି ଏତେ ମଇଳା ଯେ କଳା ପଡ଼ିଯାଇଛି ଏବଂ ତାହା ପୁଣି ଦୁଇ ତିନି ଜାଗାରେ ଚିରି ଯାଇଛି । ମୋ ଦୃଷ୍ଟିରେ ପଡ଼ିଲା ମାତ୍ରକେ ଭାବିଲି—ମୋ ଗାଁରେ ଏପରି ଗରିବ ଥାଉଁ ଥାଉଁ ସେମାନଙ୍କୁ ଭୁଲିଯାଇ, କନ୍ୟାର ଜନ୍ମଦିନରେ ଅବସ୍ଥାପନ୍ନ ଲୋକଙ୍କୁ ଭୂରି ଭୋଜନ ଦେବା ଠିକ୍ ହେବ ନାହିଁ । ବରଂ ଏହିପରି ଗରିବମାନଙ୍କୁ ସନ୍ତୁଷ୍ଟ କଲେ ଧର୍ମ ହେବ ।

ସେହିଦିନ ମୋ ଗାଁର ଦୁଇ ପାଖରେ ଥିବା ଦୁଇଟି ପାଣସାହିର ସ୍ତ୍ରୀ ଲୋକମାନଙ୍କ ତାଲିକା କଲି । ତା ଛଡ଼ା ଉଚ୍ଚ ଜାତିର ଅସହାୟା ଅବଳାମାନଙ୍କୁ ମଧ୍ୟ ତାଲିକାରେ ରଖିଲି । ପ୍ରାୟ ପଚିଶ ଖଣ୍ଡ ମୋଟା ଶାଢ଼ୀ ଖଣ୍ଡ ପ୍ରତି ଟ ୨-୦୦ ହିସାବରେ କଣା ହେଲା । ସମସ୍ତଙ୍କୁ ଅର୍ଚ୍ଚନା କରାଗଲା । ସମସ୍ତେ ପରିଷ୍କୃତ ଜାଗାରେ ବସି ଖାଇଲେ । ସେଦିନ ମୋ ମନରେ ଯେଉଁ ଅଭୂତପୂର୍ବ ଆନନ୍ଦ ଜାତ ହେଲା, ତାହା ଭୁଲି ହେବାର ନୁହେଁ ।

## ଶତ୍ରୁର ଉପକାର

❋ ମୋ'ର ଗ୍ରାମର ବେଣୁଧର ତ୍ରିପାଠୀ ଉ. ପ୍ରା. ସ୍କୁଲରେ ମୋର ସହପାଠୀ ଥିଲା । ଗୋଟାଏ ହିସାବରେ ସେ ମୋର ପୁତୁରା । ତାହାର ପୁଅ ବାଉରିବନ୍ଧୁ ମୋର ଛାତ୍ର ଥିଲା ଓ ମାଟ୍ରିକ୍ ପାସ ପରେ ଗୋଟିଏ ମ. ଇ. ସ୍କୁଲର ପ୍ରଧାନ ଶିକ୍ଷକ ହୋଇଥିଲା ।

ମୁଁ ଦୋହଲ ସ୍କୁଲ ଛାଡ଼ିବା ପରେ ବେଣୁଧର ହାଇସ୍କୁଲର କର୍ତ୍ତୃପକ୍ଷଙ୍କ ମୋ ବିରୁଦ୍ଧରେ କିଛି କହି ସେମାନଙ୍କ ହୃଦୟରେ ଆନନ୍ଦର ସଞ୍ଚାର କରୁଥିଲା । ଏଥିରେ ଲୁକ୍କାୟିତଭାବରେ ତାହାର କିଛି ସ୍ୱାର୍ଥ ଥିଲା କି ଅଭ୍ୟାସ ବଶତଃ ସେ ଏହା କରୁଥିଲା, ମୁଁ କହିପାରିବି ନାହିଁ । କେତେ ଲୋକ ବେଣୁର ଏପ୍ରକାର କାର୍ଯ୍ୟ ମତେ କହନ୍ତି ଓ ମୁଁ ବିନା ନିର୍ବେଦରେ ତାହା ଶୁଣେ ।

ପରେ ବେଣୁ ମୋତେ କହିଲା ଯେ, ତାହାର ପୁଅଟି କପରି ମୌଳିକ ଶିକ୍ଷା ଟ୍ରେନିଂ ପାଆନ୍ତା । ବେଣୁ ଯେ ମୋର ଶତ୍ରୁ ପର୍ଯ୍ୟାୟରେ ରହିଛି, ମୁଁ ଏକଥା ମନକୁ ନ ଆଣି ସଙ୍ଗେ ସଙ୍ଗେ ବାଉରିବନ୍ଧୁକୁ ମୌଳିକ ଟ୍ରେନିଂ ସ୍କୁଲରେ ଭରତି କରାଇଦେବାର ପ୍ରତିଶ୍ରୁତି ଦେଲି । ମୌଳିକ ଶିକ୍ଷା ବିଭାଗରେ ମୋର ଛାତ୍ର ଆନନ୍ଦଚନ୍ଦ୍ର ମିଶ୍ର ହେଡ୍-ଆସିଷ୍ଟାଣ୍ଟ୍ ଥିଲେ । ସେ ମୋର ପତ୍ର ପାଇ ବାଉରିବନ୍ଧୁକୁ ଭର୍ତ୍ତି କରାଇ ଦେଲେ । ଟ୍ରେନିଂ ପାସ୍ ପରେ ପୁଣି ବେଣୁ ମୋର ଶରଣାଗତ ହେଲା ଏବଂ ମୋର ପ୍ରିୟ ଛାତ୍ର ସେହି ଆନନ୍ଦର ସାହାଯ୍ୟରେ ବାଉରିବନ୍ଧୁକୁ ମୌଳିକ ସ୍କୁଲରେ ଶିକ୍ଷକତା ମିଳିଗଲା ।

❊ ମୋର ଗ୍ରାମର ଶ୍ରୀ ବଂଶୀଧର ରଥ ଦୋହଲ ହାଇସ୍କୁଲ ପରିଚାଳନା କମିଟିର ସଭ୍ୟ ଥିଲେ । ସେ ଆଗେ ରେଲବାଇ ବିଭାଗରେ କିରାଣୀ କାର୍ଯ୍ୟ କରୁଥିଲେ । ମୁଁ ସ୍କୁଲରୁ ବିଦାୟ ନେବା ଯେଉଁମାନଙ୍କର ଅଭିପ୍ରେତ ଥିଲା, ସେ ତନ୍ମଧ୍ୟରୁ ଜଣେ ।

ତାଙ୍କର ପୁଅ ରବିନାରାୟଣ ହାଇସ୍କୁଲରେ ପଢ଼ିବାବେଳେ ଅର୍ଥାଭାବ ବଶତଃ ପାଠ୍ୟ ପୁସ୍ତକ କିଣି ନପାରିବାରୁ ମୁଁ ତାହାକୁ ଚାଳିଶି ଟଙ୍କା ଦେଇଥିଲି । ସେହି ରବି ମାଟ୍ରିକ୍ ପାଶ ପରେ କାରବାଟି ଷ୍ଟାଡ଼ିଅମ୍‌ରେ କାର୍ଯ୍ୟ କଲା ଓ ଘରୋଇଭାବରେ ଏମ୍. ଏ. ପାଶ କରି ବର୍ତ୍ତମାନ କଣ୍ଟ୍ରାକ୍ଟର ହୋଇଛି । ଷ୍ଟାଡ଼ିଅମ୍ ଭାଙ୍ଗିଯିବା ପରେ ରବିର ଅନୁରୋଧ ରଖି ତାକୁ ଏହି ସଙ୍ଘର କାର୍ଯ୍ୟାଳୟରେ ମାସିକ ଦେଢ଼ଶ ଟଙ୍କା ଦରମାରେ ଚାରି ମାସ ପର୍ଯ୍ୟନ୍ତ କାର୍ଯ୍ୟ ଦେଇଥିଲି ।

କଟକରେ ୧୯୭୩ ମସିହାରେ ଅନୁଷ୍ଠିତ ମୋର ଜୟନ୍ତୀ ପାଇଁ ରବି ୧୦୧-୦୦ ଚାନ୍ଦା ଦେଇଥିଲା ।

---

# ମୁଁ ଭଗବାନଙ୍କୁ ଯେପରି ବୁଝେଁ

## ସାକାର ପୂଜାରେ ନିଷ୍ଠା

ଆମ ଘରେ ରାଧାକୃଷ୍ଣଙ୍କ ପିତ୍ତଳ ମୂର୍ତ୍ତି ସହ କେତେ ମୂର୍ତ୍ତି ଶାଳଗ୍ରାମ ଥିଲେ । ମୁଁ ପଞ୍ଚମ ଶ୍ରେଣୀରେ ପଢୁଥିବା ସମୟର କଥା ମନେ ଅଛି । ମୁଁ ଖଣ୍ଡିଏ ପୂଜା ପଦ୍ଧତି ବହି କେଉଁଠୁ ପାଇ; ତହିଁରୁ ତୁଳସୀ-ଚୟନ, ଜଳ ପବିତ୍ରୀକରଣ, ଚନ୍ଦନ ଅର୍ପଣ ଓ ନୈବେଦ୍ୟ ପୂଜା ଇତ୍ୟାଦିର ମନ୍ତ୍ରସବୁ ଶିଖି ଗୃହଦେବତାଙ୍କୁ ପୂଜା କରୁଥିଲି । ପୂଜାରେ ମୋର ଘଣ୍ଟାଏ ପର୍ଯ୍ୟନ୍ତ ସମୟ ଅତିବାହିତ ହେଉଥିଲା ।

## ସାକାର ପୂଜାରେ ଅବିଶ୍ୱାସ

ଶ୍ରୀ ଶୁକ୍ଳେଶ୍ୱର ଆମ ଗ୍ରାମର ଇଷ୍ଟ ଦେବତା । ପ୍ରତି ସଂକ୍ରାନ୍ତି, ପୂର୍ଣ୍ଣିମା, ଗଣେଶ ଚତୁର୍ଥୀ, ବସନ୍ତ ପଞ୍ଚମୀ ଇତ୍ୟାଦିରେ ଏହି ଦେବତାଙ୍କ ପାଖରେ ପାଳି ବା ଯାତ୍ରା ହୁଏ । କେତେକ ନିର୍ଦ୍ଦିଷ୍ଟ ଲୋକ ଏକାଠି ହୋଇ ଭାଗ ବସି ପାଳିକରି ନିର୍ଦ୍ଦିଷ୍ଟ ଦିବସରେ ଭୋଗ ଲଗାନ୍ତି ।

ମୁଁ ପଞ୍ଚମ ଶ୍ରେଣୀରେ ପଢୁଥାଏ । ଥରେ ଆମ ପାଳିଦିନ ମୁଁ ମନ୍ଦିରକୁ ଯାଇଥିଲି । ଲୋକମାନେ ପ୍ରସାଦ ପାଇବାକୁ ବସିଗଲେ । ଟିକିଏ ଦୂରରେ ତିନିଜଣ ହରିଜନ ଶ୍ରେଣୀର ଲୋକ କଦଳୀ ପତ୍ର ପକାଇ ବସିଲେ । ମନ୍ଦିରର ମହାନ୍ତ ଗୋଟିଏ ଲଣ୍ଠନ ନେଇ ପ୍ରସାଦ ପାଇବାକୁ ବସିଥିବା ଲୋକମାନଙ୍କ ମୁହଁ ଦେଖିବାକୁ ଲାଗିଲେ । ଉଦ୍ଦେଶ୍ୟ, ଆମନ୍ତ୍ରଣ ପାଇ ନ ଥିବା କୌଣସି ଲୋକ ବସିଛି କି କ'ଣ । ମହାନ୍ତ ସେହି ହରିଜନ ତିନି ଜଣଙ୍କୁ ଗୁଡ଼ିଏ ବକି ବାହାର କରିଦେଲେ । ଏହି ଘଟଣାରେ ମୁଁ ବ୍ୟଥିତ ହେଲି ଏବଂ ପରଦିନ ବାପାଙ୍କୁ କହିଲି "ଗରିବମାନଙ୍କୁ ଖାଇବା ଜାଗାରୁ ଉଠାଇ ଦିଆଗଲା । ଧର୍ମ କେମିତି ହେଲା ବାପା ? ଆମର ଏ

ଘାଳ ଦେବା ନାହିଁ ।" ବାପା କହିଲେ—"ଆମେ ଗାଁ ମକଦମ । ଘାଳ ନଦେଲେ ଲୋକେ ନିନ୍ଦା କରିବେ ।" ମୁଁ ମନେ ମନେ କହିଲି, ବାପାଙ୍କ ଅନ୍ତେ ମୁଁ ଘାଳ ଦେବି ନାହିଁ । ସେହି ବର୍ଷ ବାପା ମରିଗଲେ । ତହିଁଆର ବର୍ଷ ଘାଳ ପୂର୍ବରୁ ମୁଁ ମୋର ମା'ଙ୍କୁ ଗତ ବର୍ଷର ପ୍ରତିଜ୍ଞା କଥା ଶୁଣାଇବାରୁ ଘାଳ ଦେବା ବନ୍ଦ ହେଲା ।

ମୋର ମାମୁଁ ଦୟାନନ୍ଦ ସରସ୍ୱତୀଙ୍କର ଭକ୍ତ । ତାଙ୍କ ପାଖରେ ଏହି ମହାପୁରୁଷଙ୍କ ପ୍ରଣୀତ 'ସତ୍ୟାର୍ଥପ୍ରକାଶ' (ବଙ୍ଗଳା) ବହି ଥାଏ । ସେ ମୋତେ ପଢ଼ିବାକୁ ଦେଲେ ଓ ମୁଁ ତାହାକୁ ଆମୂଳଚୂଳ ପଢ଼ିଲି । ହିନ୍ଦୁ ଧର୍ମର କୁସଂସ୍କାର ବିରୁଦ୍ଧରେ ତାଙ୍କର ବଳିଷ୍ଠ ଯୁକ୍ତି ମୋ ହୃଦୟରେ ଭାବାନ୍ତର ସୃଷ୍ଟି କଲା । ମୁଁ ମୂର୍ତ୍ତି ପୂଜାର ବିରୋଧୀ ହୋଇ ପଡ଼ିଲି ।

## ଭକ୍ତି ନାମରେ ଭଣ୍ଡାମୀ

ମୁଁ ପଞ୍ଚାମୁଣ୍ଡାଇରେ ୬ଷ୍ଠ ବା ୭ମରେ ପଢ଼ିବା ବେଳେ ଥରେ ମୋର ଜଣେ ସହପାଠୀଙ୍କ ଘରକୁ ଯାଇଥିଲି । ସକାଳେ ଦେଖିଲି, ମୋ ସଙ୍ଗୀର ପିତା 'ସେବା' କରିବାକୁ ବସିଲେ । ଅର୍ଦ୍ଧବୃତ୍ତାକାରରେ ବିଭିନ୍ନ ଦେବ ଦେବୀଙ୍କ ଧାଡ଼ି । ତୁଳସୀ ତାଙ୍କ ଆଗରେ ରଖିଲେ । ଗିଲାସେ ପାଣି ରହିଲା । ଧାଡ଼ିରୁ ଟିକେ, ପାଣିରୁ ଟୋକେ, ଏହିପରି ଭାବରେ ପାଣି ସେତିକ ଶେଷ ହୋଇଗଲା । କିଛି ଚନ୍ଦନ ଘୋରି ତାହାକୁ ନିଜ ସର୍ବାଙ୍ଗରେ ଶହ ଆଙ୍କିବା ପରି ଚର୍ଚ୍ଚା କଲେ । ମୁଁ ତାଙ୍କୁ ଦେଖି ଭାବୁଥାଏ, ଭାରି ଧାର୍ମିକ ପୁରୁଷ । ମୁଁ ଯାଇଁ ମାମୁଁଙ୍କୁ ଏକଥା କହିବାରୁ ସେ ସେହି ବ୍ୟକ୍ତିର ଅସୁନ୍ଦର କାର୍ଯ୍ୟକଳାପ ସମ୍ପର୍କରେ ଯାହା କହିଲେ, ତହିଁରୁ ଜାଣିଲି ଯେ, ସେ ଜଣେ ପ୍ରତାରକ, ଭଣ୍ଡ ଓ ଚରିତ୍ରହୀନ ।

ବିଭିନ୍ନ ଗ୍ରାମରେ ଇଷ୍ଟଦେବତାଙ୍କ ମନ୍ଦିରର ଦୁର୍ଦ୍ଦଶା, ଭୂସମ୍ପତ୍ତିର ଅପହରଣ, ସେବାପୂଜାର ବିଭ୍ରାଟ, ଦୋଳଯାତ୍ରା ଓ ଦୁର୍ଗାପୂଜା ଇତ୍ୟାଦି ଆଧ୍ୟାତ୍ମିକ ଉତ୍ସବରେ ଲୋକମାନଙ୍କର ଭକ୍ତିର ଅଭାବ ଓ ତାମସିକତାର ପ୍ରାଚୁର୍ଯ୍ୟ, ଯଜ୍ଞ ଓ ଅଷ୍ଟପ୍ରହରୀ ନାମରେ ଅର୍ଥର ଅପଚୟ, ତୀର୍ଥସ୍ଥାନମାନଙ୍କରେ ଘୋର ବ୍ୟଭିଚାର, କେତେକ 'ଧବୋପବାସୀ କାଶିଗୃମିବାଣୀ' ପ୍ରଭୃତି ବିଶିଷ୍ଟ ତଥାକଥିତ ସାଧୁମାନଙ୍କର ଉଚ୍ଚ ଶିକ୍ଷିତ, ଉଚ୍ଚ ପଦାରୂଢ଼ ଓ ପାଶ୍ଚାତ୍ୟ-ଶିକ୍ଷା-ପ୍ରବୀଣ ବ୍ୟକ୍ତିମାନଙ୍କ ଉପରେ ପ୍ରଭାବ ପ୍ରତିଷ୍ଠା—ଏସବୁ

ଦେଖି ମୁଁ ବିସ୍ମିତ ଓ ଲଜ୍ଜିତ ହେଉଥିଲି ଏବଂ 'ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ' ଓ 'ମହାଜନୋ ଯେନ ଗତଃ ସ ପନ୍ଥା' ଏହି ଦୁଇଟି ମହାବାକ୍ୟକୁ ଭିତ୍ତି କରି ମୋ ଜୀବନ ଗଢ଼ିବାରେ ପ୍ରବୃତ୍ତ ହୋଇଥିଲି ।

ଜଣେ ଭକ୍ତ ଭଗବାନଙ୍କୁ କହିଥିଲେ—

ରତ୍ନାକର ସ୍ତବ ଗୃହଂ ଗୃହିଣୀ ଚ ପଦ୍ମା
ଦେୟଂ କିମସ୍ତି ଭବତେ। ପୁରୁଷୋତ୍ତମାୟ ।
ଆଭୀର-ବାମନୟନା-ହୃତ-ମାନସାୟ
ଦତ୍ତଂ ମନୋ ଯଦୁପତେ ତ୍ୱମିଦଂ ଗୃହାଣ ।

ହେ ଭଗବାନ୍, ନାନା ରତ୍ନପରିପୂର୍ଣ୍ଣ ସମୁଦ୍ର ତୁମର ଘର ଏବଂ ସୌଭାଗ୍ୟଦାୟିନୀ ଲକ୍ଷ୍ମୀ ତୁମର ପତ୍ନୀ । ସୁତରାଂ ତୁମର ଅଭାବ କିଛି ନାହିଁ । ଗୋପାଙ୍ଗନାମାନେ ତୁମର ମନ ହରଣ କରିନେଇଥିବାରୁ ତୁମପାଖରେ ମନର ଅଭାବ ଅଛି । ତେଣୁ ମୁଁ ମୋର ମନଟି ତୁମକୁ ଦେଉଛି ।

ଭଗବାନଙ୍କୁ ମନ **ସମର୍ପଣ କରିବା** ଏକ ଦୁରୂହ ବ୍ୟାପାର । ଏହାହିଁ ପ୍ରକୃତ ଭକ୍ତି । ମନ-ସମର୍ପଣକାରୀ ବ୍ୟକ୍ତି ଭଗବତ୍‌ସୃଷ୍ଟି ପ୍ରତ୍ୟେକ ପ୍ରାଣୀଙ୍କୁ ସ୍ନେହ କରିବ, ଭଗବତ୍ **ବାଣୀକୁ ଅକ୍ଷରେ ଅକ୍ଷରେ** ପାଳନ କରିବ, ଏହାହିଁ ପରମ ଧର୍ମ ।

## କର୍ମ ଏବ ବ୍ରହ୍ମ

'କର୍ମ ଏବ ବ୍ରହ୍ମ' ବେଦୋକ୍ତ ଏହି ବାଣୀ ମୋ ଜୀବନର ଧ୍ୟେୟ । ୧୯୩୨ ମସିହାରେ ହୋମିଓ ସ୍କୁଲର ପ୍ରତିଷ୍ଠା ବେଳରୁ ଏଯାବତ୍ ମୁଁ ସର୍ବଦା ବିବିଧ କାର୍ଯ୍ୟରେ ବ୍ୟସ୍ତ ଏବଂ ଗତ ୪୦ ବର୍ଷର ଅଭିଜ୍ଞତାରୁ ମୁଁ କହିବି ଯେ, ମନୁଷ୍ୟ ସତ୍‌କର୍ମ ମାଧ୍ୟମରେ ସବୁ ସଦ୍‌ଗୁଣର ଅଧିକାରୀ ହୋଇ ପାରିବ, ଯଦି ସେଥିପାଇଁ ତାହାର ବଳବତୀ ଇଚ୍ଛା ଥାଏ । 'ପରିଶ୍ରମ ମନୁଷ୍ୟର ସତର୍କ ପ୍ରହରୀ' ବୋଲି ଯାହା କୁହାଯାଏ, ତାହା ନିରାଟ ସତ୍ୟ ।

ମୁଁ ଜୀବନରେ ବହୁ ଜୀବନଚରିତ ପଢ଼ିଛି—ପଢ଼ିନାହିଁ କେବଳ ଅବସର ବିନୋଦନ ପାଇଁ; ସମ୍ପୃକ୍ତ ବ୍ୟକ୍ତିଙ୍କର ମହନୀୟ ଆଦର୍ଶ

ଅନୁସରଣ କରି ନିଜକୁ ପରିଚାଳିତ କରିବା ପାଇଁ ପଢ଼ିଛି । ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଇଂରାଜୀ ଓ ବଙ୍ଗଳାରେ ଲିଖିତ ଜୀବନ ଚରିତ ମୁଁ ବହୁବାର ପଢ଼ିଛି ଏବଂ ତାଙ୍କର ଦାନସାଗରତ୍ୱ ଓ ଦୟାସାଗରତ୍ୱରେ ବିସ୍ମୟାଭିଭୂତ ହୋଇ ପଡ଼ିଛି ।

ମହାତ୍ମା ଗାନ୍ଧି, ସ୍ୱାମୀ ବିବେକାନନ୍ଦ ଓ ଉତ୍କଳମଣି ଗୋପବନ୍ଧୁ ମୋ ଜୀବନ-ଗଗନର ଧ୍ରୁବତାରା, ଭବିଷ୍ୟତ୍ ଜୀବନ-ଧରଣୀର ପ୍ରଥମ ପ୍ରଦର୍ଶକ । ଯେମାନଙ୍କ ଅଲକ୍ଷ୍ୟ ଆଶୀର୍ବାଦ ଯୋଗୁଁ ମୁଁ ଅନ୍ୟାନ୍ୟ ଆଦର୍ଶ ପୁରୁଷଙ୍କର ଗୁଣରାଶି ନ୍ୟୂନତମ ପରିମାଣରେ ଆହରଣ କରିବାକୁ କ୍ଷମ ହୋଇଛି ।

'କର୍ମ ଏବ ବ୍ରହ୍ମ' ମନ୍ତ୍ରଟି ଯୋଗୁ ମୁଁ ଜମିଦାର ହାତରୁ ପ୍ରଜାକୁ, ମହାଜନର କବଳରୁ ଖାତକକୁ, ସବଳର ଅତ୍ୟାଚାରରୁ ଦୁର୍ବଳକୁ ରକ୍ଷା କରିବାରେ ତ୍ରୁଟି କରି ନାହିଁ । ମକଦ୍ଦମା ସମ୍ପୃକ୍ତ ଦୁଇ ପକ୍ଷଙ୍କୁ ଯଥାଶକ୍ତି ବୁଝାଇ ମକଦ୍ଦମା ରଫା କରିଦେବା ଓ ଉଭୟଙ୍କ ମଧ୍ୟରେ ଭ୍ରାତୃଭାବ ଜନ୍ମାଇବା ପାଇଁ ମୁଁ ସମସ୍ତ ପ୍ରକାର ପ୍ରଯତ୍ନରୁ କ୍ଷାନ୍ତ ହୋଇ ନାହିଁ । ନିରାଶ୍ରୟଙ୍କୁ ସାହାଯ୍ୟ ଦେବା ଏବଂ ଆର୍ତ୍ତ ଓ ବିପନ୍ନର ସେବା କରିବା ପାଇଁ ଅଗ୍ରସର ହୋଇ ମୁଁ କେତେକ କ୍ଷେତ୍ରରେ ବିପଦ ବରଣ କରିଛି ଓ ସେଥିପାଇଁ ଆନନ୍ଦ ଲାଭ କରିଛି । ଦରିଦ୍ର ରୋଗୀକୁ ଔଷଧ କିଣି ଆଣି ଦେଇଛି ।

ପୁରୀ ମନ୍ଦିରକୁ ବହୁଥର ଯାଇଛି । ମନ୍ଦିରର ଶିଳ୍ପକଳା ଓ ବିଶାଳତା ଦେଖି ମୁଗ୍ଧ ହୋଇ ଲୋତକ ଗଡ଼ାଇଛି । ମାତ୍ର ଦେବତାଙ୍କୁ ଦର୍ଶନ କରିବାକୁ ଓ ତାଙ୍କୁ ମୁଣ୍ଡିଆ ମାରିବାକୁ କେବେହେଲେ ମନ ବଳାଇ ନାହିଁ । ମହାପ୍ରସାଦ କିଣିବା ତ ଦୂରର କଥା । ଘରେ ଥିଲେ ଜାଗର ଚତୁର୍ଦ୍ଦଶୀ ଦିନ ଗ୍ରାମର ଇଷ୍ଟଦେବତା ଶୁକ୍ଳେଶ୍ୱରଙ୍କ ମନ୍ଦିରକୁ ଯାଏ । ସଙ୍ଗରେ କିଛି ଖୁଚୁରା ମୁଦ୍ରା ନିଏ । ମିଷ୍ଟାନ୍ନ ଦୋକାନ କେତୋଟି ବସିଥାଏ । ଥିଲାବାଲା ଲୋକେ ନିଜର ପିଲାଙ୍କ ପାଇଁ ମିଷ୍ଟାନ୍ନ କିଣନ୍ତି । ମୁଁ ଲକ୍ଷ୍ୟ କରିଥାଏ, କେଉଁ ପିଲା ମିଷ୍ଟାନ୍ନ ଦୋକାନ ଦେଖି ଲୁବ୍ଧ ହେଉଛି ଏବଂ ଥିଲାବାଲାଙ୍କ ପିଲାଙ୍କ ମିଷ୍ଟାନ୍ନ ଭୋଜନକୁ ଚାହିଁ ରହୁଛି । ତା ଛଡ଼ା ନିଜ ଗ୍ରାମ ଓ ନିକଟବର୍ତ୍ତୀ ଗ୍ରାମର ପିଲାମାନଙ୍କୁ ମୁଁ ଭଲ ଶିକ୍ଷି-

ଥାଏ । ମୁଁ ସେହିଭଳି ପିଲାଙ୍କର ବୁଭୁକ୍ଷା କ୍ଷମତା ପରିମାଣରେ ଦୂର କରେ । ତାଛଡ଼ା ମନ୍ଦିରର ପଣ୍ଡା ଓ ମାଳୀ ବେଜଗାରିଆଙ୍କଠାରୁ କିଛି ପାଇବାର ଆଶା ରଖିଥାନ୍ତି । ସେମାନଙ୍କୁ ମଧ୍ୟ କିଛି ଦେଇଥାଏ ।

କାହାରିକୁ ନିରାଶ ନ କରିବା ଧର୍ମ । ଯିଏ ଯେଉଁ ଉଦ୍ଦେଶ୍ୟରେ ଆସେ, ସେ ମୋଠାରୁ ନାସ୍ତି ବାଣୀ ଶୁଣେନା । ମୁଁ ଯଥାଶକ୍ତି ତାକୁ ସାହାଯ୍ୟ କରେ ।

ମୋ ଆଖିରେ ଦରିଦ୍ର-ନାରାୟଣ ହିଁ ଜୀବନ୍ତ ଦେବତା । ସେମାନଙ୍କୁ ଉପେକ୍ଷା କରି ସାକାର-ପୂଜାରେ ଭଗବାନଙ୍କୁ ସନ୍ତୁଷ୍ଟ କରିହେବ ବୋଲି ମୋର ତିଳେହେଲେ ବିଶ୍ୱାସ ନାହିଁ । ଗୀତା ଓ ଅନ୍ୟାନ୍ୟ ଧର୍ମଶାସ୍ତ୍ର ମାଧ୍ୟମରେ ଭଗବାନ୍ ଯାହା ଉପଦେଶ ଦେଇଛନ୍ତି, ତାହା ପାଳନ ନ କଲେ ଓ ତଦନୁଯାୟୀ କାର୍ଯ୍ୟ ନକଲେ ଭଗବାନଙ୍କୁ ଲାଭ କରିବା ଅସମ୍ଭବ ।

ଅନ୍ଧାନୁସରଣକୁ ମୁଁ ଘୃଣା କରେ ।

ମୁଁ ଜୀବନରେ କୌଣସି ସାଧୁସନ୍ଥଙ୍କର ଶିଷ୍ୟ ହୋଇ ନାହିଁ । ମୋ ମତରେ ମହାତ୍ମା ଗାନ୍ଧିଜୀ ହେଉଛନ୍ତି ସର୍ବଶ୍ରେଷ୍ଠ ପୁରୋହିତ ସନ୍ଥ । ରାଜନୈତିକ, ସାମାଜିକ ଓ ଆଧ୍ୟାତ୍ମିକ ଚେତନା ସୃଷ୍ଟି କରିବାରେ ସେ ଅଦ୍ୱିତୀୟ । ମୁଁ ବାଲ୍ୟକାଳରୁ ତାଙ୍କ ପ୍ରବର୍ତ୍ତିତ ବାଣୀ ଓ କାର୍ଯ୍ୟକଳାପ ଅନୁସରଣ କରି ଆସୁଛି ।

---

# ଭାଗ୍ୟଂ ଫଳତି ସର୍ବତ୍ର

## ଶ୍ରୀ ପଦ୍ମନାଭ ବାରିକ

ପୂର୍ବ ପରିଚିତ ବି. ଏ. ପାସ୍ କରିଥିବା ଜଣେ ଯୁବକ ମୋ ଅଫିସରେ ପହଞ୍ଚିଲେ । ସେ ଗତ ପାଞ୍ଚ ବର୍ଷ ହେଲା ଚାକିରି ପାଇ ନ ଥିବାରୁ କଟକରେ ଟିଉସନ କରିବା ପାଇଁ ଆସିଛନ୍ତି ଓ ମୋ ଅଫିସରେ ରହିବାକୁ ଚାହାନ୍ତି । ମୁଁ ରହିବାକୁ ସମ୍ମତି ଦେଲି । ତହିଁ ଆରଦିନ ସେ ମୋତେ କହିଲେ ଯେ, ସେ କୌଣସି ପ୍ରକାରେ ପାଞ୍ଚଟି ଟଙ୍କା ଯୋଗାଡ଼ କରି ଆସିଥିଲେ । ସେତିକ ବସ୍ ଭଡ଼ାରେ ଗଲା । ମୁଁ ତାଙ୍କୁ ଏକମାସ ପର୍ଯ୍ୟନ୍ତ ସକାଳ ଓଳିଟି ମାଗଣା ଖାଇବାକୁ ଦେବି କହି, ରାତି ଓଳିଟି ସେ ଉପବାସ କରି ଭଗବାନଙ୍କୁ ଦୁଃଖ ଜଣାଇବା ଉଚିତ ବୋଲି ଉପଦେଶ ଦେଲି । ସେ ଏହି ଭାବରେ ରହି ପ୍ରାୟ ମାସକ ପରେ ଟିଉସନ ପାଇବାରୁ ମୁଁ ତାଙ୍କୁ ଏଣିକି ହୋଟେଲରେ ଖାଇବାକୁ ପରାମର୍ଶ ଦେଲି । ହୋଟେଲରେ ଆଗେ ପଚାଶ ଟଙ୍କା ଅଗ୍ରିମ ଦେବାକୁ ହେବ । ତେଣୁ ତାଙ୍କୁ ଏତିକ ଟଙ୍କା ଧାର ଦେଲି । ସେ ମୋ ପାଖ ଛାଡ଼ି ଅନ୍ୟ ଗୋଟିଏ ବସାରେ ରହିଲେ । ସେତେବେଳକୁ ସେ ହୋଟେଲରେ ପଚିଶି ଟଙ୍କା ଓ ଜଳଖିଆ ଦୋକାନରେ ପଚାଶ ଟଙ୍କା ଧାରରେ ଖାଇଥିଲେ ଏବଂ ସେମାନଙ୍କୁ ଟଙ୍କା ଦେଇ ପାରି ନ ଥିଲେ । ଦିନେ ସେ କୌଣସି କାର୍ଯ୍ୟରେ ମୋ ପାଖକୁ ଆସିଲେ ଏବଂ ସେହି ଉଭୟ ଦୋକାନୀଙ୍କ ହାବୁଡ଼ରେ ପଡ଼ିଗଲେ । ଟଙ୍କା ନ ଦେଲେ ଉଭୟେ ତାଙ୍କ ସାଇକେଲଟି ଛଡ଼ାଇ ନେବାକୁ ଉତ୍ତେଜିତ ସ୍ୱରରେ କହିବାରୁ ତାଙ୍କ ମୁହଁ କଳା ପଡ଼ିଗଲା । ମୁଁ ନୀରବ ହୋଇ ବସିଥାଏ । ସେ ଟିଉସନ କରି ଯାହା ପାଉଛନ୍ତି, ତହିଁରୁ ମାସକୁ ଟଙ୍କାଏ ବଳୁ ନ ଥିବ, ଏହା ମୁଁ ଭଲରୂପେ ଜାଣିଥିଲି । ଅର୍ଥାଭାବ ପାଇଁ ସେ ଅନ୍ୟ ଚକ୍ଷୁରେ ପ୍ରତାରକ । ମୁଁ ତାଙ୍କର ଅସହାୟ ଅବସ୍ଥା ଦେଖି

ଭାବିଲି—ମାସେ ଖାଇବାକୁ ଦେଲି; ପଚିଶି ଟଙ୍କା ଦେଇଛନ୍ତି, ପାଇ ନାହିଁ । ଆଜି ମୋ ଆଗରେ ଜଣେ ବି. ଏ. ପାସ୍ ଯୁବକ ଅପଦସ୍ଥ ହେବ, ଏହା ମୁଁ କେମିତି ସହିବି ? ଉଭୟ ଦୋକାନୀ ଅଦ୍ଭୁତ ସୁଧ ଦାବୀ କରୁଥିଲେ । ମୁଁ ସେ ଦୁହିଁଙ୍କୁ ସଙ୍ଗେ ସଙ୍ଗେ ପଚିଶ ଟଙ୍କା ଦେଇ ଯୁବକଙ୍କୁ ରକ୍ଷା କଲି ଏବଂ ଭଗବାନଙ୍କୁ ମନେ ମନେ ପ୍ରାର୍ଥନା କଲି ଯେ, ସେ ମୋତେ ଏହିପରି ଶୁଭ ବୁଦ୍ଧି ଦେଉଥାନ୍ତୁ ।

## ଶ୍ରୀ ହୃଦାନନ୍ଦ ନାୟକ

ଥରେ ମାଟ୍ରିକ୍ ପାସ୍ ଜଣେ ଶିକ୍ଷକ ସମ୍ପାଦକଙ୍କ ମନମୁଖୀ ବ୍ୟବହାରରେ ଚାକିରିରୁ ବହିଷ୍କୃତ ହୋଇ କଟକରେ ଟିଉସନ ଖୋଜିବା ଆଶାରେ ଆସିଲେ । ତାଙ୍କ ଘର ପୁରୀ ଜିଲ୍ଲା ବାଲିପାଟଣାରେ । ସେ ଜଣେ ଜ୍ୟୋତିଷୀ । ଆଜିକାଲି ଚାକିରି ତ ମିଳୁ ନାହିଁ । ତା ଛଡ଼ା କଟକରେ ରହି ଚାକିରି ଖୋଜିବା ପାଇଁ କେତେ ଜଣଙ୍କର ବା ଶକ୍ତି ଅଛି ? ମୁଁ ତାଙ୍କୁ ପନ୍ଦର ଦିନ ପର୍ଯ୍ୟନ୍ତ ସକାଳ ଓଳି ମାଗଣା ଖାଇବାକୁ ଦେବି, ରାତି ଓଳି ସେ ଉପାସ ରହିବେ ଏବଂ ଟିଉସନ ପାଇଲା ପରେ ସେ ନିଜର ଖାଦ୍ୟ ବ୍ୟବସ୍ଥା ହୋଟେଲରେ କରିବେ, ଏହିପରି ଶୁଣାଇ ଦେଇ ଅଫିସରେ ସ୍ଥାନ ଦେଲି । ପନ୍ଦର ଦିନ ପରେ ଟିଉସନ ମିଳିଲା ଏବଂ ହୋଟେଲରେ ଅଗ୍ରିମ ଦେବା ପାଇଁ ତାଙ୍କୁ କୋଡ଼ିଏ ଟଙ୍କା ଧାର ଦେଲି । ପ୍ରାୟ ଦୁଇ ମାସ ପରେ ସେ ମୋତେ କହିଲେ ଯେ, ସେ ତାଙ୍କର ଜଣେ ପୂର୍ବତନ ଶିକ୍ଷକଙ୍କ ସାହାଯ୍ୟରେ ମିଉନିସିପାଲିଟିର ଗୋଟିଏ ପ୍ରାଇମେରୀ ସ୍କୁଲରେ ଶିକ୍ଷକ ହୋଇ ପାରନ୍ତେ, ଯଦି ସମ୍ପୃକ୍ତ କିରାଣୀଙ୍କୁ ପଚିଶ ଟଙ୍କା ଦିଆଯାନ୍ତା । ସେ କେମିତି ଚାକିରିଟିଏ ପାଆନ୍ତୁ ବୋଲି ମୁଁ ଅନେକ ସମୟରେ ଭାବୁଥିଲି । କାରଣ ତାଙ୍କର ଦାରିଦ୍ର୍ୟ ମୁଁ ସହି ପାରୁ ନ ଥିଲି । ମୁଁ ସଙ୍ଗେ ସଙ୍ଗେ ପଚିଶ ଟଙ୍କା ବଢ଼ାଇ ଦେଲି । କିଏ ସାଧୁ, କିଏ ଚୋର, ଏକଥା ଜାଣିବା ମୋ ପକ୍ଷରେ ସମ୍ଭବ ନ ଥିଲା; କିନ୍ତୁ ପରର ଦୁଃଖ ସହଜରେ ଜାଣିପାରୁଥିଲି । ଚାରି ପାଞ୍ଚ ମାସ ପର୍ଯ୍ୟନ୍ତ ସେ ଚାକିରି ନ ପାଇବାରୁ ମୋ ମନରେ ସନ୍ଦେହ ଜାତ ହେଲା । ମୁଁ ପଚାରିବାରୁ ସେ କହିଲେ ଯେ, ସେ ତାଙ୍କର ସେହି ଶିକ୍ଷକଙ୍କୁ ଟଙ୍କା ଦେଇ ସାରିଛନ୍ତି । ଟଙ୍କା ଫେରାଇ ଆଣି ମୋତେ ଦେବାକୁ ଓ ଦରକାର ବେଳେ ପୁଣି ନେବାକୁ ମୁଁ ଉପଦେଶ ଦେଲି ।

ଦୁଇ ଦିନ ପରେ ସେ ମୋ ହାତକୁ ଖଣ୍ଡିଏ ଚିଠି ବଢ଼ାଇ ଦେଲେ । ତାକୁ ପଢ଼ି ଜାଣିଲି, ତାଙ୍କର ସେହି ଶିକ୍ଷକ ପିଆରୀମୋହନ ଏକାଡ଼େମିରେ ଶିକ୍ଷକତା କରନ୍ତି । ସେ ପନ୍ଦର ଦିନ ପରେ ଟଙ୍କା ଦେବେ ବୋଲି ଲେଖିଛନ୍ତି । ନିର୍ଦ୍ଦିଷ୍ଟ ସମୟ ଗତ ହେବା ପରେ ମୁଁ ମୋର ଜଣେ ସହକାରୀଙ୍କୁ ଏକାଡ଼େମି ସ୍କୁଲକୁ ଯାଇଁ ସେହି ଶିକ୍ଷକଙ୍କ ଠାରୁ ଟଙ୍କା ଆଦାୟ କରିବାକୁ ଆଦେଶ ଦେଲି । ଏ କଥା ଜ୍ୟୋତିଷୀ ଶିକ୍ଷକ ଜାଣି ସଙ୍ଗେ ସଙ୍ଗେ ମୋ ଅଜାଣାରେ ଘରକୁ ଗ୍ଲଟିଗଲେ ଏବଂ ମୋର ସହକାରୀ ଏକାଡ଼େମିରେ ସେ ନାମରେ ଶିକ୍ଷକ କେହି ନାହାନ୍ତି ଜାଣି ନିଷ୍ଫଳ ହୋଇ ଫେରି ଆସିଲେ ।

ପ୍ରତିଥର ପରୀକ୍ଷାରେ ଜଣେ ଅତିରିକ୍ତ କର୍ମୀ ରହି ଦୁଇ ତିନି ମାସ କାମ କରି ଦରମା ପାଆନ୍ତି । ସେ ସତ କଥା କହିଥିଲେ ତାଙ୍କୁ ଏହି ସୁବିଧା ଦେଇଥାନ୍ତି ଏବଂ ସେ ଋଣମୁକ୍ତ ହୋଇ ଆହୁରି ଟଙ୍କା ପାଇଥାନ୍ତେ । ସେ ଟଙ୍କା ଠକି ନେଲେ ବୋଲି ଦୁଃଖିତ ହୋଇ ନାହିଁ, ବରଂ ତାଙ୍କର ବୁଦ୍ଧିହୀନତା ଦେଖି ବିସ୍ମିତ ହେଲି ।

## ଶ୍ରୀ ଯୁଧିଷ୍ଠିର ସ୍ୱାଇଁ

ଶ୍ରୀ ଯୁଧିଷ୍ଠିର ସ୍ୱାଇଁ ମାର୍ଶାଘାଇ ପାଖ କରଞ୍ଜ ଗ୍ରାମରୁ ଦୋହଲ ମ: ଇ: ସ୍କୁଲରେ ପଢ଼ିବାକୁ ଆସିଲା । ସେ ନି: ପ୍ରା: ଓ ଉ: ପ୍ରା: ବୃତ୍ତି ଲାଭ କରିଥିଲା । ସେତେବେଳର ନିୟମାନୁସାରେ ତାକୁ ୫ମ ଶ୍ରେଣୀରେ ଭର୍ତ୍ତି କରିବାର କଥା । ମାତ୍ର ତାହା ହେଲେ ମ: ଇ: ବୃତ୍ତି ପରୀକ୍ଷା ପାଇଁ ନିର୍ଦ୍ଦିଷ୍ଟ ବୟସ ସୀମା ଗଡ଼ିଯିବ, ଏଣୁ ତାକୁ ୭ମ ଶ୍ରେଣୀରେ ନେଲି । ସେ ଖୁବ ଦରିଦ୍ର କିନ୍ତୁ ବୁଦ୍ଧିମାନ୍ ଥିଲା । ଏହି ଶ୍ରେଣୀରେ ସେ ABC ଆରମ୍ଭ କଲେ ହେଁ ଶୀଘ୍ର ଇଂରାଜୀରେ ଅନ୍ୟ ପିଲାଙ୍କୁ ଟପି ଗଲା । ସେ ମ: ଇ: ବୃତ୍ତି ଲାଭ କରି ପାରିବ ବୋଲି ମୋର ବିଲକ୍ଷଣ ବିଶ୍ୱାସ ଥିଲା । ତେଣୁ ମୁଁ ଦୀର୍ଘ ଦୁଇ ବର୍ଷ କାଳ ହଷ୍ଟେଲରେ ବିନା ପାରିଶ୍ରମିକରେ ତାହାର ପଢ଼ା ଦେଖିବାକୁ ଲଗିଲି ।

ମୁଁ କଟକରେ ଖବର କାଗଜରୁ ଜାଣିଲି, ସେ ବୃତ୍ତି ଲାଭ କରିଛି । ମୋ ସ୍କୁଲରେ ପ୍ରଥମ ହୋଇ ସେ ବୃତ୍ତି ପାଇବାରୁ ମୁଁ ଆନନ୍ଦରେ ଅଭିଭୂତ ହୋଇ ପଡ଼ିଲି । ସଙ୍ଗେ ସଙ୍ଗେ କଲିଜିଏଟ୍ ସ୍କୁଲର ପ୍ରଧାନ

ଶିକ୍ଷକ ସୁକାନ୍ତ ରାଉତଙ୍କ ସହ ଦେଖାକଲି ଏବଂ ସେ ତାକୁ କେବଳ ବୃତ୍ତି ଟଙ୍କାରେ ଚଳାଇ ନେବେ ବୋଲି ତାଙ୍କଠାରୁ ପ୍ରତିଶ୍ରୁତି ଘେନି ଆସିଲି । କଟକରୁ ଯୁଧିଷ୍ଠିରକୁ ପତ୍ର ଲେଖି ଜଣାଇ ଦେଲି ଯେ, ମୁଁ ତାହାକୁ ମୋ ଘରୁ ପୁରୁଣା ଟ୍ରଙ୍କ, ମଶାରି ଯୋଗାଇ ଦେବି । ସେ କେବଳ ଥାଳି ତାଟିଆ ଧରି ଚାଲିଆସୁ ।

ଯୁଧିଷ୍ଠିର କିଛି ଉତ୍ତର ଦେଲା ନାହିଁ କି ମୋର ଘରେ ନିର୍ଦ୍ଦିଷ୍ଟ ଦିବସରେ ପହଞ୍ଚିଲା ନାହିଁ । ସେ ଆସିଥିଲେ ମୁଁ କଲେଜିଏଟ୍ ସ୍କୁଲରେ ତାହାର ନାମ ଲେଖାଇ ଦେଇଥାନ୍ତି । ମୁଁ ତାହାର ନୀରବତାର କାରଣ ଚିନ୍ତା କରୁଥିବା ସମୟରେ କଟକ ଇନ୍ସପେକ୍ଟରଙ୍କଠାରୁ ଗୋଟିଏ ପତ୍ର ପାଇଲି । ସେଥିରେ ଲେଖାଥିଲା, ମୁଁ କାହିଁକି ସାର୍ଟିଫିକେଟ୍ ନଦେଇ ହଇରାଣ କରୁଛି । ମୁଁ ବିସ୍ମିତ ହେଲି । ଇନ୍ସପେକ୍ଟରଙ୍କୁ ଜଣାଇ ଦେଲି ଯେ, ସେ ହଷ୍ଟେଲ ପାଉଣା ବାକି ରଖିଥିବାରୁ ସାର୍ଟିଫିକେଟ ଦିଆଯାଇ ନାହିଁ । ଇନ୍ସପେକ୍ଟର ପୁଣି ଲେଖିଲେ ଯେ, ସେଥିପାଇଁ ସାର୍ଟିଫିକେଟ୍ ଦେବା ବନ୍ଦ କରାଯାଇ ପାରିବ ନାହିଁ ।

ମୁଁ କିଂକର୍ତ୍ତବ୍ୟମୂଢ଼ ହୋଇ ପଡ଼ିଲି । ହଠାତ୍ ଦିନେ ଯୁଧିଷ୍ଠିର ମୋ ପାଖରେ ଯାଇଁ ପହଞ୍ଚିଲା । ସେ କୁଜଙ୍ଗ ହାଇସ୍କୁଲର ଶିକ୍ଷକମାନଙ୍କ କୁଶିକ୍ଷାରେ ପଡ଼ି ମୋ ବିରୁଦ୍ଧରେ ଇନ୍ସପେକ୍ଟରଙ୍କୁ ଲେଖିଥିବାର ମାନିଲା । ମୁଁ ତାଠାରୁ ଏହିପରି ଗୋଟିଏ ଲେଖା ଲେଖାଇନେଲି ଯେ, ସାର୍ଟିଫିକେଟ୍ ରେଜିଷ୍ଟ୍ରି ଭି: ପି: କରି ପଠାଇ ମୁଁ ହଷ୍ଟେଲ ବାକି ବାବଦ ଟଙ୍କା ଆଦାୟ କରିନେବି । ତାହାହିଁ କରାଗଲା । ତାହାର ସେହି ଲେଖା ଚିଠିକୁ ମୁଁ ଇନ୍ସପେକ୍ଟରଙ୍କ ପାଖକୁ ପଠାଇ ଦେବାରୁ ପ୍ରତାରଣା କରୁଥିବା ଯୋଗୁଁ ତାକୁ ଦଶଟଙ୍କା ଜୋରିମାନା କରାଗଲା । ଏହି କାରବାରରେ ମଧ୍ୟ ଦୁଇ ମାସ ପର୍ଯ୍ୟନ୍ତ ଡେରି ହୋଇ ଯିବାରୁ ସେ ଏହି ସମୟ ପାଇଁ ବୃତ୍ତି ଟଙ୍କା ହରାଇଲା ।

ଯୁଧିଷ୍ଠିର ପ୍ରତ୍ୟେକ ବିଷୟରେ ଭଲ ଜ୍ଞାନ ଅର୍ଜନ କରିଥିଲା । ଇଂରାଜୀରେ ତାହାର ବ୍ୟୁତ୍ପତ୍ତି ଅସାଧାରଣ ଥିଲା । ତଥାପି ସେ ମାଟ୍ରିକ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀ ପାଇ ନଥିବାପରି ମନେ ପଡ଼ୁଛି । ସେ ବର୍ତ୍ତମାନ ଗୋଟିଏ ପ୍ରାଇମେରୀ ସ୍କୁଲର ଶିକ୍ଷକ ।

କଟକରେ ପଢ଼ିଥିଲେ ତାହାର ଜୀବନ ଉଜ୍ଜ୍ୱଳ ହୋଇଥାନ୍ତା ଏବଂ ସେ ସହଜରେ ଶିକ୍ଷାର ଶୀର୍ଷ ସ୍ଥାନକୁ ଉଠିପାରିଥାନ୍ତା ବୋଲି ମୁଁ ମନେ କରୁଥିଲି ।

ତାହାର ଦୁର୍ଭାଗ୍ୟ ପାଇଁ ମୁଁ ଅତ୍ୟନ୍ତ ଦୁଃଖିତ । କୁଜଙ୍ଗ ହାଇସ୍କୁଲର ଯେଉଁ ଶିକ୍ଷକମାନେ ତାହାକୁ ଉପଯୁକ୍ତ ପରାମର୍ଶ ନ ଦେଇ କୃତଘ୍ନ ହେବାକୁ ଶିଖାଇଲେ, ସେମାନଙ୍କୁ ନିନ୍ଦା କରିବାକୁ ମୁଁ ଭାଷା ପାଉ ନାହିଁ ।

# ଉପକୃତ ଛାତ୍ରଙ୍କ ପରିଚୟ

ଶିକ୍ଷକ ଜୀବନରେ ମୁଁ ପ୍ରତ୍ୟେକ ଛାତ୍ରକୁ ପୁତ୍ରବତ୍ ସ୍ନେହ ଦେବାରେ ଅଭ୍ୟସ୍ତ ଥିଲି । ମୋର ହୃଦୟରେ ପ୍ରକୃତି-ଦତ୍ତ ଭାବରେ ଯେଉଁ ପୁତ୍ର ସ୍ନେହ ଥିଲା, ତାହା ମୋର ପୁତ୍ରଶୂନ୍ୟତା ହେତୁ ଶହ ଶହ ଛାତ୍ରଙ୍କୁ ଆକର୍ଷଣ କରିଥିଲା ବୋଲି ମୁଁ ମନେକରେ । ଧନୀ ଛାତ୍ର ଅପେକ୍ଷା ଦରିଦ୍ର ଛାତ୍ରଙ୍କ ପ୍ରତି ମୁଁ ଅଧିକତର ଦୟାଳୁ ଓ ସ୍ନେହଶୀଳ ଥିଲି । ପ୍ରାୟ ପ୍ରତ୍ୟେକର ଜୀବନ-ଇତିହାସ ମୁଁ ଜାଣିବାକୁ ଚେଷ୍ଟା କରୁଥିଲି ଏବଂ ତଦନୁଯାୟୀ ତାହା ପ୍ରତି ମୋର କର୍ତ୍ତବ୍ୟ ସମ୍ପର୍କରେ ବିଶେଷ ଧ୍ୟାନ ଦେଉଥିଲି ।

ଛାତ୍ରମାନଙ୍କ ଉପକାର ପାଇଁ ମୁଁ କଅଣ କରିଛି ଏବଂ କିଏ କିପରି ଉପକୃତ ହୋଇଛନ୍ତି, ତାହାର ଇୟତ୍ତା ନାହିଁ । ଯେଉଁ କେତେ ଜଣ ବିଶେଷ ଭାବରେ ମୋର ଦୃଷ୍ଟି ଆକର୍ଷଣ କରିଥିଲେ, ସେମାନଙ୍କ ମଧ୍ୟରୁ ମାତ୍ର କେତେ ଜଣଙ୍କର ପରିଚୟ ଏଠାରେ ଦେଉଛି ।

ମୋତେ ଆଶ୍ଚର୍ଯ୍ୟ ଲାଗୁଛି ଏବଂ ଦୁଃଖର ସହିତ କହିବାକୁ ପଡ଼ୁଛି ଯେ, ବାଲ୍ୟଜୀବନରେ ଦୁଃଖ ଦାରିଦ୍ର୍ୟ ଯାହାର ସହଚର ଥିଲା, ଅପରର ସ୍ୱେଚ୍ଛାକୃତ ସାହାଯ୍ୟ ବଳରେ ଭାବୀ ଜୀବନ ତାହାର ଉଜ୍ଜ୍ୱଳ ହେଲାବେଳେ ଅତୀତର ସ୍ମୃତି ତାହାକୁ ପ୍ରଭାବିତ କରୁ ନାହିଁ କାହିଁକି ? ଦାତାର ମୁକ୍ତ-ହସ୍ତତାକୁ ପାଥେୟ କରି ସେ ଅଗ୍ରସର ହୋଇଥିବା ସତ୍ତ୍ୱେ ଅପର ପ୍ରତି ତାହାର ଯଥାଶକ୍ତି କର୍ତ୍ତବ୍ୟ ସମ୍ପର୍କରେ ଅବହିତ ହେଉ ନାହିଁ କାହିଁକି ? ଏ ସବୁ ତ ବଡ଼ କଥା—ଅର୍ଥସାପେକ୍ଷ । ଉପକାରୀ ପ୍ରତି କୃତଜ୍ଞତା ପ୍ରକାଶ କରିବାରେ ତ ଅର୍ଥର ଆବଶ୍ୟକତା ନାହିଁ । ଏ ସୌଜନ୍ୟର ଅଭାବ କାହିଁକି ? ବିଧି ବିଧାନ ବିଚିତ୍ର ।

## ଶ୍ରୀ ଚୈତନ୍ୟ କୁମାର ସାହୁ

ମଧ୍ୟ-ବୈଶ୍ୟ କୁଳରେ ଚୈତନ୍ୟର ଜନ୍ମ । ମୋର ଗ୍ରାମ ନୁହେଁ— ମୋ ପ୍ରତିଷ୍ଠିତ ସ୍କୁଲର ଗ୍ରାମ । ଗୃହ ଜମି ନାହିଁ । ବାପ ତାହାର ସେଠାରେ ସ୍କୁଲରେ ଶିକ୍ଷକତା କରି ଛୋଟ ଛୋଟ ପିଲଙ୍କୁ ପଢ଼ାଇ ସାମାନ୍ୟ କିଛି ରୋଜଗାର କରୁଥିଲେ । ଚୈତନ୍ୟ ନିଜର ବିଦ୍ୟାବୁଦ୍ଧି, ପଢ଼ିବାରେ ଆଗ୍ରହ ଓ ଅଧ୍ୟବସାୟ ଗୁଣରେ ଶିକ୍ଷକମାନଙ୍କର ପ୍ରିୟ ହୁଏ ଏବଂ ସ୍କୁଲରୁ ଆର୍ଥିକ ସାହାଯ୍ୟ ପାଇ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ ପାସ୍ କରେ । ତା ପରେ ସେ କଟକ ପଳାଇ ଆସିଲା ମୋର ସାହାଯ୍ୟ ସହାନୁଭୂତି ପାଇବା ଆଶାରେ ।



୧୯୬୩ ମସିହା । ଗୋଟିଏ ଭଡ଼ା ଘରେ ସଂଘର କାର୍ଯ୍ୟାଳୟ ଥାଏ । ମୁଁ କଟକ ଗଲେ ସେଠାରେ ଡେରା ପକାଇଥାଏ । ଚୈତନ୍ୟର ଦାରିଦ୍ର୍ୟ, ବିନମ୍ର ଭଦ୍ର ବ୍ୟବହାର, ଅଧିକନ୍ତୁ ତାହାର ସୁନ୍ଦର ହସ୍ତାକ୍ଷର ମୋତେ ଆକୃଷ୍ଟ କଲା । ମୁଁ ତାହାକୁ ମାସିକ ତିରିଶ ଟଙ୍କା ଦରମାରେ ସଂଘର କର୍ମୀରୂପେ ଗ୍ରହଣ କଲି । ମୋ କାମ କରିବା ସଙ୍ଗେ ସଙ୍ଗେ ସେ ଷ୍ଟେନୋଗ୍ରାଫି ଶିଖିବ ବୋଲି ସ୍ଥିର କଲା ।

ସେ ବର୍ତ୍ତମାନ ଏମ୍. ଏ.; ଏଲ୍. ଏଲ. ବି; ଡି. ଟି. ଏଲ୍.; (Diploma in Taxation Law) ଡି. ଆର୍. ଏଲ୍. (Diploma in Russian Language) ।

ଭଗବାନ ଦରିଦ୍ରର ସାହା । ଷ୍ଟେନୋଗ୍ରାଫି ପଢ଼ି ସାରିବା ପରେ ସେ ଡାଇରେକ୍ଟର ଅଫ୍ ଇଣ୍ଡଷ୍ଟ୍ରି ଅଫିସରେ ଚାକିରୀଟିଏ ପାଇଲା । ମୁଁ ମୋ ଅଫିସ ପାଇଁ ଅନ୍ୟ କର୍ମୀ ରଖିବାରୁ ସେ ରଦ୍ବହାର ଅନ୍ୟତ୍ର ସୁବିଧା କଲା । ମାତ୍ର ଖୁବ୍ ଶୀଘ୍ର ଫେରିଆସି କହିଲା, ତାକୁ ସେ କଥା ଭଲ ଲାଗିଲା ନାହିଁ ।

ମୁଁ ଅମଲମାନଙ୍କ ଦୈହିକ ଧନ୍ଦା ସମ୍ପର୍କରେ ଅବହିତ । କିନ୍ତୁ ଚୈତନ୍ୟ ବିପକ୍ଷଧର୍ମୀ । ସରକାରୀ ଚାକିରିଟିଏ ପାଇ କଥଞ୍ଚିତ୍ ମାନସିକ ଶାନ୍ତି ଲାଭ କଲା ପରେ ସେ ନିଜକୁ ଏକ ଅଧ୍ୟବସାୟୀ ଛାତ୍ରରୂପେ ଗଢ଼ିନେଲା । ଇଭିନିଂ କଲେଜରେ ନାମ ଲେଖାଇଲା । ସେ ହିନ୍ଦୀରେ କୋବିଦ ପରୀକ୍ଷା ଦେଇ ପ୍ରଥମ ଥର ପାଇଁ ଅକୃତକାର୍ଯ୍ୟ ହୋଇଛି ।

ଅବସର ସମୟରେ ସେ ସର୍ବଦା ଅଧ୍ୟୟନରତ । ନିଜର ପାଠ୍ୟ ପୁସ୍ତକ ଛଡ଼ା ଦୈନିକ ଓ ସାପ୍ତାହିକ ଇଂରାଜୀ ଏବଂ ଓଡ଼ିଆ ପତ୍ରିକା ତାହାର ନିତ୍ୟ ସହଚର । ଉଚ୍ଚ କୋଟିର ସନ୍ଦର୍ଭ ଓ କବିତା ପାଠ ଏବଂ ମଧ୍ୟେ ମଧ୍ୟେ କିଛି ଲେଖିବା ମଧ୍ୟ ତାହାର ଅଭ୍ୟାସରେ ପରିଣତ । ସେ ଗୁଡ଼ାଏ କବିତା ଲେଖିଛି । କେତେକ ପ୍ରକାଶ ପାଇଛି । ଅଧିକାଂଶ ଅପ୍ରକାଶିତ । ଯେଉଁ କୋଠରୀରେ ସେ ରହେ, ସ୍ତୂପୀକୃତ ପୁସ୍ତକ ସବୁ ଦେଖିଲେ ଅବାକ୍ ହେବାକୁ ପଡ଼େ ।

ସରକାରୀ ଚାକିରୀ ଓ ଅଧ୍ୟୟନ ସଙ୍ଗରେ ସାଂସ୍କୃତିକ କ୍ରିୟାକଳାପରେ ତାହାର ଯୋଗଦାନ ସମାନ୍ତରାଳଭାବରେ ଚାଲିଛି । 'ଜାତି-ପ୍ରେମ-ବହ୍ନି' ଅନୁଷ୍ଠାନର ସମ୍ପାଦକ ସେ । ଅଳ୍ପ କେତେ ଦିନ ହେଲା ଜୀବନ୍ୟାସ ପାଇଛି । ତାହାର ସ୍ଥାୟିତ୍ୱ ଓ ଉତ୍ତରୋତ୍ତର ଉନ୍ନତି ପାଇଁ ସେ କମ୍ ଚିନ୍ତିତ ନୁହେ । ଏବେ ଗୋଟିଏ ଜୟନ୍ତୀ ସମିତିର ସମ୍ପାଦକତ୍ୱ ମଧ୍ୟ ତାକୁ ପ୍ରଦତ୍ତ ହୋଇଛି ।

ତାହାର ଏକାଗ୍ରତା, ଅଧ୍ୟବସାୟ, ଆନ୍ତରିକ କର୍ମନିଷ୍ଠା ଓ ଉଚ୍ଚ ଆକାଂକ୍ଷା ଦେଖିଲେ ଯେ କେହି ଗୁଣଗ୍ରାହୀ ଲୋକ ପୁଲକିତ ହେବ । ଆଳସ୍ୟ ପରିହାର କରି, କଠୋର ଶ୍ରମରୁ ଆନନ୍ଦର ଉତ୍ସ ଝରାଇ ପାରିଲେ ପଙ୍ଗୁର ଗିରି-ଲଙ୍ଘନ-ଶକ୍ତି ଜାତ ହେବ, ଏହାର ପ୍ରମାଣ

ଚୈତନ୍ୟ । କେବେ ଦିନ ହେବ, ସରକାରୀ ଚାକରୀ ମୋହରୁ ମୁକ୍ତ ହୋଇ ସ୍ୱାଧୀନ ଜୀବନ ଯାପନ କରିବା ଭଳି ଏକ ଅନୁଷ୍ଠାନ ଗଢ଼ିବାରେ ତାହାର ଉଦ୍ୟମ ବର୍ତ୍ତମାନ କଳ୍ପନା ଅବସ୍ଥାରେ । ମୋର ପୂର୍ଣ୍ଣ ବିଶ୍ୱାସ, ସେ ସେଥିରେ ମଧ୍ୟ ଜୟଯୁକ୍ତ ହେବା ସଙ୍ଗେ ସଙ୍ଗେ ତାହାର ସ୍ୱଭାବ-ସଜାତ ସମାଜସେବା ଓ ସାଂସ୍କୃତିକ କର୍ମାନୁଷ୍ଠାନକୁ ପ୍ରସାରିତ ଓ ରୂପାୟିତ କରିବା ପାଇଁ ପ୍ରଚୁର ସମୟ ପାଇବ ଏବଂ ତାହାର ସାଧନା ସାଫଲ୍ୟ-ମଣ୍ଡିତ ହେବ ।

ସେ ସରକାରୀ ଚାକରୀ ତ୍ୟାଗ କରି ଏବେ ଗୋଟିଏ ରଙ୍ଗ କାରଖାନା ଆରମ୍ଭ କରିଛି । ସେଥିପାଇଁ ସରକାରୀ ସାହାଯ୍ୟ ତାକୁ ମିଳିଛି ।

## ଶ୍ରୀ ଦେବରାଜ ପଣ୍ଡା

ବାଙ୍କି ବଇପୁର ମ: ଇ: ସ୍କୁଲରେ ହଷ୍ଟେଲ ପିଲାଏ ବାରଣ୍ଡାରେ ମୋ ପାଇଁ ବାହାରେ ଖଟଟିଏ ପକାଇ ଦେଲେ । ଖରାଦିନ । ମୁଁ ଶୋଇବା ପରେ ପିଲାଟିଏ ଆସି ମୋତେ ମୋଡ଼ାମୋଡ଼ି କଲା । ପରଦିନ ସକାଳେ ସେହି ପିଲାଟି ମୋତେ ତାହାର ଘର ଦେଖାଇବାକୁ ନେଲା । ଘରଟି ଗୃହକର୍ତ୍ତାର ଭୀଷଣ ଦାରିଦ୍ର୍ୟର ମୂକ ସାକ୍ଷୀ ।

ପଚାରିଲି—କଣ ଚାହୁଁ ?

"ଏବର୍ଷ ମାଇନର ପାସ୍ କରିବ । ଆପଣ ମୋତେ ମାଟ୍ରିକ ପଢ଼ାଇ ଦିଅନ୍ତୁ ।"

ମୁଁ ହଁ ଭରିଲି ।

ଘରେ ମୋର ସାବତ-ମା ଏକା ବୁଢ଼ୀ ଲୋକ । ଦେବ ହାଟ ବଜାରରୁ ସଉଦା କିଣିଆଣେ । ଏତିକି ତାର କାମ । ପୁତ୍ର ସ୍ନେହରେ ପାଳିତ ହେଲା ଓ ଚାରି ବର୍ଷ ରହି ମାଟ୍ରିକ୍ ଦ୍ୱିତୀୟ ଶ୍ରେଣୀରେ ପାଶ୍ କଲା ।

ମୋର କନ୍ୟା ଓ ଜାମାତା ପୁରୀରେ ଥିଲେ । ଦେବ ତାଙ୍କ ପାଖରେ ରହିବାର ଆଶା ରଖି ପୁରୀ କଲେଜରେ ନାମ ଲେଖାଇଲା । ମୋର ନାତି ନାତୁଣୀଙ୍କୁ ପଢ଼ାଇ ଚଳିଲା । ଆଇ. ଏସ୍. ସି ପାସ ପରେ

ଭାଗ୍ୟବଶତଃ ସେହି କଲେଜରେ ଚାକିରି ପାଇଲା ଲେବରେଟରି ଆସିଷ୍ଟାଣ୍ଟ ଭାବରେ । ସରେଇ ଭାବରେ ପରୀକ୍ଷା ଦେଇ ସେ ବର୍ତ୍ତମାନ ଏମ୍. ଏ. । ତାହାର ବିବାହ ଗୋଟିଏ ମାଟ୍ରିକ୍ ପାସ୍ କନ୍ୟା ସହ ହେଲା ।



ମୁଁ ବର-ପିତା କାର୍ଯ୍ୟ ଚଳାଇଥିଲି । ଶ୍ୱଶୁରଙ୍କ ପ୍ରଦତ୍ତ ଏକ ହଜାର ଟଙ୍କାରେ ନିଜର ଆୟ ମିଶାଇ ପୁରୀରେ ଖଣ୍ଡିଏ ପକ୍କା ଘର ସେ କରିଛି ।

ଏବେ ସୁଦ୍ଧା ମୋ ଗାଁର ଲୋକ ଦେବର ସଦ୍‌ଗୁଣର ପ୍ରଶଂସା କରିଥାନ୍ତି । ତାହାର ମୋ ପ୍ରତି ସ୍ନେହ, ଭକ୍ତି ଓ କୃତଜ୍ଞତାର ସୀମା ନାହିଁ । ଅନୁଗୃହୀତ ଛାତ୍ରମାନଙ୍କ ମଧ୍ୟରେ ଦେବରାଜ ବେଶୀ ପ୍ରଶଂସାର୍ହ ।

## ଶ୍ରୀ ଗଙ୍ଗାଧର ନାୟକ

ଗଙ୍ଗାଧର ଚନ୍ଦ୍ରଦକୁଲଟ ହାଇସ୍କୁଲରେ ପଢ଼ିବା ସମୟରେ ମୋ ପାଖକୁ ଆସିଥିଲା ସାହାଯ୍ୟ ଆଶାରେ । ଜାତିରେ ଜ୍ୟୋତିଷୀ । ଘର ଖଣ୍ଡିଏ ଛଡ଼ା ଆଉ କିଛି ନାହିଁ । ବଡ଼ଭାଇ କୌଳିକ ବୃତ୍ତି କରି ଘର ଚଳାଉଥିଲେ । ଗଙ୍ଗାଧର ଟିଉସନ କରି ସ୍କୁଲ ଦରମା ଦେଉଥିଲା । ଏକାଦଶ ଶ୍ରେଣୀରେ ଛାତ୍ରାବାସରେ ରହିବାକୁ ହେବ, ଟିଉସନ ଆୟ ହରାଇବାକୁ ପଡ଼ିବ—ଏହାହିଁ ଥିଲା ତାହାର ପ୍ରଧାନ ଚିନ୍ତା । ମୁଁ ତାହାକୁ ଦେଢ଼ଶହ ଟଙ୍କା ଦେଇ ତାହାର ଚିନ୍ତା ଦୂରକଲି । ସେ ହଷ୍ଟେଲରେ ରହି ପାଠ ପଢ଼ିଲା ଓ ୨ୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲା ।

ସେତେବେଳେ ବ୍ରାହ୍ମଣ, କରଣ, ଖଣ୍ଡାୟତ ଛଡ଼ା ଅନ୍ୟ ଜାତିର ଛାତ୍ରଙ୍କୁ ପଢ଼ିବା ଲାଗି ଷ୍ଟାଇପେଣ୍ଡ (Other Backward class stipend) ମିଳୁଥିଲା । ଗଙ୍ଗାଧର ମାଟ୍ରିକ୍ ପରୀକ୍ଷାରେ ଭଲ ମାର୍କ ରଖିଥିବାରୁ ସେ ନିଶ୍ଚୟ ସେହି ଷ୍ଟାଇପେଣ୍ଡ ପାଇ ପାରିବ ଆଶା ରଖି ତାକୁ କେନ୍ଦ୍ରାପଡ଼ା ଇଞ୍ଜିନିୟରିଂ ସ୍କୁଲରେ ଭର୍ତ୍ତି କରାଇ ଦେଲି ଏବଂ ତା ପାଇଁ ମୁଁ ଟ ୧୩୦୦-୦୦ ଖରଚ କରିବା ପରେ ସେ ଷ୍ଟାଇପେଣ୍ଡ ପାଇଁ ଯୋଗ୍ୟ ହେଲା ନାହିଁ ବୋଲି ଜାଣିଲି । ମୋର ଅକଲ ଗୁଡ଼ୁମ୍ ହେଲା । ତାକୁ ଆହୁରି ଦୁଇ ବର୍ଷ ପଢ଼ିବାକୁ ହେବ । ମୁଁ ତ ଆଉ ସାହାଯ୍ୟ କରି ପାରିବ ନାହିଁ । ତେଣୁ ତା ପାଇଁ ଗୋଟିଏ କନ୍ୟା ଖୋଜିଲି ଏବଂ ତାହାର ଭାବୀ ଶ୍ୱଶୁର ଉପରେ ଦାୟିତ୍ୱ ଲଦି ଦେବାର ସ୍ଥିର କଲି ।

ସୌଭାଗ୍ୟବଶତଃ ମୋର କାମନା ରୂପାୟିତ ହେଲା । ବିବାହ ପରେ ତାହାର ଶ୍ୱଶୁର ଦୁଇ ବର୍ଷ ପଢ଼ାଇ ଦେଲେ । ଓଭରସିଅର ପରୀକ୍ଷାରେ ପାସ୍ ହୋଇଗଲା । ମାତ୍ର ଚାକିରି କାହିଁ ? ସେ ଧରାଧରି କରି ଓ୍ୟାର୍କ ସର୍କାର ଚାକିରିଟିଏ ପାଇ କୌଣସି ପ୍ରକାରେ କୁଟୁମ୍ବ ଚଳାଇଲା । ପାଞ୍ଚବର୍ଷ ପରେ ସେ ଯୋଗ୍ୟତା ଅନୁରୂପ ଚାକିରି ପାଇଛି ।

ମାତ୍ର ମୋର ତେରଶହ ଟଙ୍କା ପରିଶୋଧ କରିବା ଭଳି ତାହାର ଶକ୍ତି ନ ଥିବାର ଦେଖି ସେ କୌଣସି ପ୍ରକାରେ ମୋତେ ଅଧା ଟଙ୍କା ଦେବାକୁ ଜଣାଇ ଦେବାରୁ ସେ ଋଣ କରି ମୋ ପାଖରୁ ଋଣମୁକ୍ତ ହେଲା ।

## ଶ୍ରୀ ଭିକାରୀ ଚରଣ ଦାସ

କୋଠପଦା ସ୍କୁଲର ଛାତ୍ର । ମୁଁ ସେଠାରେ ଶିକ୍ଷକ ଥିବା ସମୟରେ ଯେଉଁ ୫।୭ ଜଣ ଛାତ୍ରଙ୍କୁ ବିନା ପାରିଶ୍ରମିକରେ ମୋର ଅବସର ସମୟରେ ଇଂରାଜୀ ପଢ଼ାଉଥିଲି, ଭିକାରୀ ସେଥି ମଧ୍ୟରୁ ଜଣେ । ମୁଁ ଇଂରାଜୀରେ ଅନୁବାଦ ଶିଖାଉଥିଲି । ସେମାନେ ଗୋଟିଏ ଖାତାରେ ପ୍ରତି ଦିନର ଅନୁବାଦ ଉଠାଇବେ, ମୁଁ ତାହା ସଂଶୋଧନ କରିବି । ଦିନେ ଦେଖିଲି, ସମସ୍ତଙ୍କ ଖାତାରେ କେତେକ ଦିନର ସଂଶୋଧନ ହୋଇ ନାହିଁ । ନ ହେବାର କାରଣ ମୋର ତ୍ରୁଟି—ସମ୍ପୃକ୍ତ ପିଲାଙ୍କର । ସେମାନଙ୍କ ଦୋଷ ସଂଶୋଧନ ପାଇଁ କହିଲି—ଯାହାର ଯେତେ ଦିନର ସଂଶୋଧନ ହୋଇ

ନାହିଁ, ତାକୁ ସେତେ ଦୁଇଅଣା ଜୋରିମାନା ଦେବାକୁ ପଡ଼ିବ । ପରଦିନ ନିଜ ନିଜର ଜୋରିମାନା ଦେବାପାଇଁ ସେମାନେ କହିଲେ ।

ଭିକାରି ପିତୃହୀନ ଓ ଘର ଗରିବ ଥିଲା । ଅତି କଷ୍ଟରେ ମା ଓ ପୁଅ ଦୁହେଁ ଚଳୁଥିଲେ । ସେ ମୋତେ ଏକାନ୍ତରେ କ୍ଷମା ମାଗି କହିଲା ଯେ, ସେ ଦଶଅଣା ଦେଇ ପାରିବ ନାହିଁ । ମୁଁ ଜୋରିମାନା ଛାଡ଼ିଦେଲି । ଅନ୍ୟମାନେ ଜୋରିମାନା ଆଣିଲେ ନାହିଁ କି କ୍ଷମା ମାଗିଲେ ନାହିଁ । ମୁଁ ବିରକ୍ତ ହୋଇ ଭିକାରି ଛଡ଼ା ଆଉ କାହାରିକୁ ପଢ଼ାଇଲି ନାହିଁ । ସେମାନେ ବୋଧହୁଏ ପରିଶ୍ରମ କରିବାକୁ ରାଜି ନଥିଲେ, ତେଣୁ ମୋ ନିଷ୍ପତ୍ତି ସେମାନଙ୍କ ଅନୁକୂଳ ହେଲା । ମାତ୍ର ମୋ ମନ ବୁଝିଲା ନାହିଁ । ମୁଁ ନିଜେ ସେମାନଙ୍କୁ ଜୋରିମାନା ଛାଡ଼ି ଦେଲି, ସେମାନେ ପଢ଼ିବାକୁ ଆସନ୍ତୁ ବୋଲି କହିପାରୁ ନଥାଏ । ତେଣୁ ଜଣେ ଶିକ୍ଷକଙ୍କ ଜରିଆରେ କୁହାଇଲି । ମାତ୍ର ବୃଥା ହେଲା । ଭିକାରି ଏକୁଟିଆ ପଢ଼ୁଥାଏ ।



ଭିକାରିର ବୟସ ବେଶୀ ଥିବାରୁ ସେ ମ. ଇ. ସ୍କୁଲର ବୃତ୍ତି ପରୀକ୍ଷାକୁ ପ୍ରେରିତ ହୋଇ ପାରିଲା ନାହିଁ । ତାକୁ କହିଲି, ସେ ଯଦି ସେତେବେଳର ସାଧାରଣ ପରୀକ୍ଷା (Common Examination) କେନ୍ଦ୍ରରେ ପ୍ରଥମ ସ୍ଥାନ ଅଧିକାର କରିବ, ମୁଁ ତାକୁ ମାଟ୍ରିକ୍ ପଢ଼ାଇ ଦେବି । ସେ ପ୍ରଥମ ହେଲା । ମୁଁ ତାହାର ନାମ ଦୋହଳ ହାଇସ୍କୁଲରେ

ଲେଖାଇ ଦେଲି । ଦରମା ଗୁଡ଼ ଜମାଇ ଦେଲି ! ହଷ୍ଟେଲରେ ମାଗଣା ଖାଇବାର ବ୍ୟବସ୍ଥା ହେଲା । ତଥାପି ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ମୁରଲୀଧର ଆଚାର୍ଯ୍ୟ ପ୍ରତି ବର୍ଷ ତା ପାଇଁ ଦୁଇ ମାସର ଖରଚ ବାବଦ ଟଙ୍କା ଲେଖାଏ ମୋ ଠାରୁ ବୃତ୍ତି ନେଉଥିଲେ । ଅର୍ଥାତ୍ ତା ପାଇଁ ମୋତେ ମୋଟରେ ଟ ୧୭୦-୦୦ ସାହାଯ୍ୟ କରିବାକୁ ପଡ଼ିଥିଲା ।

ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ୍ ପାସ୍ ପରେ ସେ କଟକ ପଳାଇ ଆସିଲା ଏବଂ ବର୍ଷେ କାଳ ଗୃହ ଶିକ୍ଷକ ହୋଇ କଲେଜରେ ଅଧ୍ୟୟନ କଲା । ପରବର୍ଷ ପଶୁପାଳନ ବିଭାଗର ଡିରେକ୍ଟରଙ୍କ ଅଫିସରେ କିରାଣି ଖଣ୍ଡିଏ ମିଳିଯିବାରୁ ନାଇଟ୍ କଲେଜରେ ତିନି ବର୍ଷ ପଢ଼ି ବି. ଏ. ପାସ୍ କଲା ।

ତାକୁ କିରାଣି ଚାକିରି ଭଲ ଲାଗିଲା ନାହିଁ । ଅଳ୍ପ ଦରମା ହେଉ ପଛକେ ଶିକ୍ଷକତା କରି ପବିତ୍ର ଜୀବନ କଟାଇବା ପାଇଁ ତାହାର ଇଚ୍ଛା ବଳବତୀ ହୋଇ ଉଠିଲା । ବି. ଏ. ପାସ୍ ସଙ୍ଗେ ସଙ୍ଗେ ଅନୁଗୁଳ ଟ୍ରେନିଂ କଲେଜରେ ପ୍ରବେଶ କରିବାର ସୌଭାଗ୍ୟ ମିଳିଗଲା । ତାକୁ ସେତେବେଳେ ଅଧ୍ୟକ୍ଷ ଶ୍ରୀ ସର୍ବେଶ୍ୱର ଦାସ କହିଥିଲେ—"ଶିକ୍ଷକତା ନକରି କିରାଣି ଚାକିରିରୁ ଟ୍ରେନିଂ କଲେଜ ମାଡ଼ିବା ଘଟଣାରେ ତୁମେ ପ୍ରଥମ ହେଲ ।" ଟ୍ରେନିଂ ପଢ଼ିବା ସମୟରେ ମୁଁ ତାହାକୁ ଦୁଇ ଶହ ଟଙ୍କା ଧାର ସ୍ୱରୂପ ଦେଇଥିଲି ଏବଂ ସେ ତାହା ଚାକିରି କରି ପରିଶୋଧ କରି ଦେଇଥିଲା ।

ଏଇ ଭଜାଗ୍ର ବର୍ତ୍ତମାନ କୋଠପଦା ହାଇସ୍କୁଲର ପ୍ରଧାନ ଶିକ୍ଷକ । ସେ ମୋର ଗୋଟିଏ ବଡ଼ ଫଟୋ ତାହାର ଘରେ ରଖିଛି ଏବଂ କଟକ ଆସିଲେ ସେ ମୋତେ ଦେଖା ନ କରି ଘରକୁ ଫେରିବ ନାହିଁ । ତାହାର ସୌଜନ୍ୟ ଓ ବିନମ୍ର ବ୍ୟବହାର ଅନୁକରଣୀୟ ।

## ଶ୍ରୀ ଶଙ୍କର ପ୍ରସାଦ ନାୟକ

ମୁଣ୍ଡରେ ବିସ୍କୁଟ ଟିଣ ବୋହି କଟକ ସହର ରାସ୍ତାରେ ଯାଉଥିଲା ଶଙ୍କର । ମୁଁ ସତ୍ୟନାରାୟଣ ପ୍ରେସରେ ରହି ଟ୍ରଣ୍ଟ ଛପାଉଥାଏ । ତାଠାରୁ କିଛି ବିସ୍କୁଟ କିଣି ଦୁଃଖସୁଖ ହେବାରୁ ଜାଣିଲି --ତା ଘର

ଜଗତ୍‌ସିଂହପୁର । ଜାତିରେ ଜ୍ୟୋତିଷୀ । ପିତୃମାତୃହୀନ ; ଆଉ କେହି ନାହାନ୍ତି ତାର । ଗୃହ ପାଞ୍ଚ ମାସ ହେଲା ବସ୍ତୁଟି ବେପାର କରି ଅତି ସାମାନ୍ୟ ସଞ୍ଚୟ କରିଛି ।



ତା ପ୍ରତି ମୋର ସହାନୁଭୂତିର ଉଦ୍ରେକ ହେଲା । ପ୍ରେସରେ ଛଅ ମାସ ଶିଖିଲେ କମ୍ପୋଜିଟର ହୋଇ ଭବିଷ୍ୟତରେ ପରିବାର ପ୍ରତିପୋଷଣ କରି ପାରିବ ବୋଲି ସ୍ଥିର କଲି । ସେ ରାଜି ହେଲା । ମୁଁ ଛଅ ମାସର ଖରଚ ଟ ୧୫୦-୦୦ ଚଳାଇଲି ।

କାମ ଶିଖିସାରି ସେ ବିଭିନ୍ନ ପ୍ରେସରେ କାମ କରିବାକୁ ଲାଗିଲା । ମାତ୍ର ନିୟମିତ ଦରମା ବା ମୂଲ ନ ପାଇବାରୁ ତାକୁ ବଡ଼ କଷ୍ଟ ଭୋଗିବାକୁ ପଡ଼ିଲା । ସେ ଗୋଟିଏ ଭଡ଼ା ଘରେ ରହୁଥାଏ । ତେଣୁ ସେ ଅନେକ ସମୟରେ ଖାଇବାକୁ ପାଉ ନଥିବାର ଲକ୍ଷ୍ୟ କଲି । ମୁଁ ବା କେତେ ସାହାଯ୍ୟ କରିବି ?

ମୋ ପରାମର୍ଶରେ ସେ ଦିନେ ସରକାରୀ ଛାପାଖାନାକୁ ଗଲା ଏବଂ ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଦ ତଳେ ପଡ଼ିଯାଇ ନିଜର ଦୁଃଖ ଜଣାଇଲା ଏବଂ କାନ୍ଦି ପକାଇଲା । ସେ ପ୍ରସନ୍ନ ହେଲେ । ପ୍ରଥମେ ସେ ଛାପାଖାନାରେ

ଠିକା ମୂଲିଆ ହେଲା । ତାପରେ କ୍ରମଶଃ ସ୍ଥାୟୀ ମୂଲିଆ, ଡ୍ରିଲ୍ ବ୍ଲାଷ୍ଟର, କଂପ୍ରେସର ହୋଇ ଏବେ ସିନିଅର କଂପ୍ରେସରକୁ ପ୍ରମୋସନ ପାଇଛି । ମାସକୁ ତିନି ଶହ ଟଙ୍କା ପର୍ଯ୍ୟନ୍ତ ଦରମା ଓ ଭତ୍ତା ମିଶି ପାଏ ।

ଦାରିଦ୍ର୍ୟର ଉତ୍କଟ ଅବସ୍ଥାରେ ଥିବା ପିଲାଟିର ଜୀବନ ସାର୍ଥକ ହୋଇଛି ଦେଖି ମୋର ଛାତି ଗର୍ବରେ ଫୁଲି ଉଠେ ଓ ମୁଁ ହୃଦୟରେ ଅପାର ପୁଲକ ଲାଭ କରେ ।

## ଶ୍ରୀ ଗୋପୀନାଥ ପଣ୍ଡା

କୋଠପଦା ସ୍କୁଲରେ ମୋର ଛାତ୍ର ଥିଲା । ଯେଉଁ କେତେ ଜଣ ଛାତ୍ରଙ୍କୁ ମୋର ଅବସର ସମୟରେ ବିନା ପାରିଶ୍ରମିକରେ ଇଂରାଜୀ ପଢ଼ାଉଥିଲି, ତହିଁ ମଧ୍ୟରୁ ଗୋପୀନାଥ ଜଣେ । ସେ ନିଜେ ସ୍ୱୀକାର କରିଛି ଯେ, ମୋଠାରୁ ଲବ୍ଧ ଜ୍ଞାନରେ ତାହାର ଇଂରାଜୀ ଜ୍ଞାନ-ମୂଳଦୁଆ ମଜବୁତ ହୋଇଥିଲା ଏବଂ ହାଇସ୍କୁଲରେ ତାକୁ ଏଥିଲାଗି ବେଶୀ ପ୍ରୟାସ କରିବାକୁ ପଡ଼ି ନଥିଲା ।



କଟକରେ ରାସ୍ତା ଉପରେ ତା ସହ ମୋର ଦେଖାହେଲା । ପଚାରିଲି—କଣ କରୁଛୁ ?

ସେ କହିଲା—କଲେଜରେ ନାଁ ଲେଖାଇଛି । ଶ୍ୱଶୁରଙ୍କଠାରୁ ସାହାଯ୍ୟ ମିଳିବାର ପ୍ରତିଶ୍ରୁତି ପାଇ ସାହସ କଲି, ମାସେ ବିବାହ ପରେ ସେ ଠକ ଦେଲେ ।

"କେଉଁଠି ରହୁଛ ?

"ହଷ୍ଟେଲରେ ତ ରହିପାରିବ ନାହିଁ । ମେସ୍ ମିଳୁ ନାହିଁ । ଦଶ ଟଙ୍କାରେ ଗୋଟିଏ ଘର ଭଡ଼ା ନେଇ, ହାତେ ହାତେ ଘୋଷାଇ କରି ଚଳିଯାଉଛି । ସେ ଘରଟା ଗୁହାଳ ସଙ୍ଗେ ସମାନ ।"

ମୁଁ କହିଲି—ଆଚ୍ଛା, ମୋ ଅଫିସ୍‌ରେ ରହ । ଘର ଭଡ଼ା ଦଶ-ଟଙ୍କା ରହିଯିବ ।

ସେ ମୋ ଅଫିସରେ ରହିଲା । ନିର୍ଦ୍ଦିଷ୍ଟ କେତେ ଘଣ୍ଟା ଅଫିସ କାମ କଲେ ମୁଁ ତାକୁ ମାସିକ କୋଡ଼ିଏ ଟଙ୍କା ଦିଅନ୍ତି କହିବାରୁ, ସେ ବିନୀତ ଭାବରେ ଅନିଚ୍ଛା ପ୍ରକାଶ କରି କହିଲା ଯେ, ତାହାର ଗୋଟିଏ ଉଚ୍ଚ ଆଶା ପୂରଣରେ ବାଧା ଘଟିବ ।

ନଷ୍ଟେମ୍ବର୍ ଚାଲିଲା । କଲେଜକୁ ଯିବା ପର୍ଯ୍ୟନ୍ତ ଓ କଲେଜରୁ ଫେରିବା ପରେ ଗୋପୀ ତାହାର ପଢ଼ା ଘର ଛାଡ଼ି କୁଆଡ଼େ ଯିବାର ମୁଁ ଦେଖେ ନାହିଁ । ସବୁବେଳେ ସ୍ତୂପୀକୃତ ପୁସ୍ତକରାଶି ସହ ତାହାର କଥାବାର୍ତ୍ତା, ଆଲୋଚନା, ସାକ୍ଷାତ୍କାର ସବୁ କରୁଛି । ମୁଁ ତାହାର ପୁସ୍ତକ-କୀଟଭାବ ଦେଖି ମନେ କରେ, ତାହାର ଅନ୍ତରେ ଉଚ୍ଚାଶାହିଁ ଏପ୍ରକାର ଏକାଗ୍ରତା ଓ ଅଧ୍ୟବସାୟର ପ୍ରସୂତି ।

ସେ ସଂସ୍କୃତରେ ଅନର୍ସ ସହ ବି. ଏ. ପାସ୍ କରିବା ପରେ ସେହି ବିଷୟରେ ଏମ୍ ଏ. ପଢ଼ିବାକୁ ମନ ବଳାଇଲା । ତାହାର ଆର୍ଥିକ ଅବସ୍ଥା ଆକାଂକ୍ଷାର ଅନୁକୂଳ ହେବ ନାହିଁ, ମୁଁ ଭଲକରି ଜାଣେ । ପଚାରିଲି—କେମିତି ସାହସ କରୁଛ ? ସେ କହିଲା, "ଆପଣ ମୋତେ ମାସିକ କିସ୍ତିରେ ହଜାରେ ଟଙ୍କା ଦିଅନ୍ତୁ । ସରକାରୀ ଋଣ ପାଇବାକୁ ଚେଷ୍ଟା କରିବି । ଚାକିରୀ କଲାପରେ ଆପଣଙ୍କ ଋଣ ପରିଶୋଧ କରିଦେବି ।"

ମୋର ଅର୍ଥାଭାବ ସତ୍ତ୍ୱେ ଭଲ ହେଲ । ସେ ବାଣୀବହାରରୁ ପ୍ରଥମ ଶ୍ରେଣୀରେ ଏମ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସରକାରୀ କଲେଜରେ ଚାକିରୀ ପାଇଲ ଏବଂ କେତୋଟି କିସ୍ତିରେ ମୋର ହଜାରେ ଟଙ୍କାରୁ ଆଠଶହ ଟଙ୍କା ବିନା ସୁଧରେ ପରିଶୋଧ କରି ଅବଶିଷ୍ଟ ଦେଲନାହିଁ ।

ସପ୍ତମ ଶ୍ରେଣୀରେ ଜଣେ ଅତି ସାଧାରଣ ଛାତ୍ର ଭାବରେ ପରିଚିତ ଗୋପୀନାଥ ଦୃଢ଼ ମନୋବଳ ନେଇ, ଦାରିଦ୍ର୍ୟ ସହିତ ସଂଗ୍ରାମ କରି ଶିକ୍ଷାର ଶୀର୍ଷ ସ୍ଥାନରେ ନିଜକୁ ପହଞ୍ଚାଇ ଦେବା ଘଟଣା ମୋ ପକ୍ଷରେ ବଡ଼ ଆନନ୍ଦଦାୟକ ।

ଚାକିରୀ ପାଇବା ପରେ ସେ ମୋତେ ମାସକୁ ମାସ ଟଙ୍କା ଦେବ ବୋଲି ଯେଉଁ ଜବାବ କରିଥିଲା, ତହିଁରୁ ସେ ସ୍ଖଳିତ ହେଲା । ମୋର ହଜାରେ ଟଙ୍କା ପାଇବାକୁ ୧୦ ବର୍ଷ ଲାଗିଗଲା ।

୧୯୬୩ ଡିସେମ୍ବର ମାସରେ କଟକରେ ମୋର ୬୯ତମ ଜନ୍ମ ଜୟନ୍ତୀ ଉତ୍ସବ ପାଳିତ ହେଲା । ସେ ଆମନ୍ତ୍ରଣ ପାଇ ସୁଦ୍ଧା ଉତ୍ସବରେ ଯୋଗ ଦେଲା ନାହିଁ, ଚାନ୍ଦା ନ ଦେବାର ମଧ୍ୟ ଶୁଣିଲି । ସେ ଖଣ୍ଡିଏ ଜୟନ୍ତୀ ସ୍ମରଣିକା ବହି ପାଇବା ପାଇଁ ତାହାର ଜଣେ ଛାତ୍ର ହାତରେ ଖବର ପଠାଇଥିଲା । ସେତେବେଳକୁ ତାହା ଉପରେ ମୋର ଦୁଇ ଶହ ଟଙ୍କା ପ୍ରାପ୍ୟ ଥିଲ । ସରକାରୀ ଚାକିରୀ ପାଇବା ପରେ ତାଠାରେ କୃତଜ୍ଞତାର ଲକ୍ଷଣ ଦେଖିଲି ନାହିଁ । ତେଣୁ ମୁଁ ବାର୍ତ୍ତାବହ ହାତରେ କହିଲି ଯେ— ସ୍ମରଣିକା ବହି ପାଇବାର ଯୋଗ୍ୟତା ତାହାର ନାହିଁ । ମୋର ଏହି ଉକ୍ତିରେ କୁଆଡ଼େ ତାହାର ସମ୍ମାନ ନଷ୍ଟ ହେଲା । ସେ ମୋ ପାଖକୁ ଲେଖିଲା—"ଜୟନ୍ତୀ ହେବା ଭଳି ଯୋଗ୍ୟତା ଆପଣଙ୍କର ନାହିଁ । କେତେକ ଅର୍ବାଚୀନ ଅପ୍ରତିଷ୍ଠିତ ଯୁବକଙ୍କ ମାଧ୍ୟମରେ ଆପଣ ନିଜର ଜୟନ୍ତୀ କରାଇଛନ୍ତି । ସ୍ମରଣିକାରେ ଯେପରି କିଛି ପାଣ୍ଡିତ୍ୟପୂର୍ଣ୍ଣ ଗବେଷଣା ତଥ୍ୟ ନାହିଁ, ଯାହା କି ଅଧ୍ୟାପକମାନଙ୍କର ପାଠ୍ୟ । ନଚେତ୍, ଆପଣଙ୍କୁ ସ୍ତୁତି କରି ଯାହା ସବୁ ଗୁଣଗାନ କରାଯାଇଥିଲା, ସେଥିପାଇଁ ଆପଣ ସୁଯୋଗ୍ୟ ନୁହନ୍ତି ।"

## ଶ୍ରୀ ବିଦ୍ୟାଧର ଜେନା

କୋଠପଦା ସ୍କୁଲରେ ହରିଜନ ଷ୍ଟାଇପେଣ୍ଡ ପାଇ ପଢ଼ିଲା ଏବଂ ସପ୍ତମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହେଲା । ହଷ୍ଟେଲରେ ଆଠ ଦଶ ଜଣ ହରିଜନ ପିଲାଙ୍କ ଭିତରେ ସେ ବୁଦ୍ଧିମାନ୍, ପରିଶ୍ରମୀ ଓ ସୁଶୀଳ ଥିଲା ଏବଂ ଉଚ୍ଚ ଶିକ୍ଷା ପାଇଁ ତାଠାରେ ଆଗ୍ରହ ଓ ଅଭିଳାଷର ସୂଚନା ମିଳୁଥିଲା ।

ହରିଜନ ଷ୍ଟାଇପେଣ୍ଡ ଟଙ୍କା ମିଳିବାରେ ନାନା ଅସୁବିଧା ଥିଲା । ଯଥା ସମୟରେ ମିଳୁ ନ ଥିଲା । ଘରୁ ଟଙ୍କା ଆଣି ତିନି ଚାରି ମାସ ଚଳିଯିବା ଓ ପରେ ଟଙ୍କା ପାଇଲେ ଧାର ପରିଶୋଧ କରିବା କାହାର ପକ୍ଷରେ ତ ସମ୍ଭବ ନ ଥିଲା । ତେଣୁ ବିଦ୍ୟାଧର ହତବୁଦ୍ଧି ହୋଇଗଲା । ମୋତେ କହିଲା—"ମୁଁ ସେ କୌଣସି ହାଇସ୍କୁଲରେ ପଢ଼ିଲେ, ଷ୍ଟାଇପେଣ୍ଡ ଟଙ୍କା ମିଳିବା ପର୍ଯ୍ୟନ୍ତ ହଷ୍ଟେଲ ମେନେଜର ମୋ ଉପରେ ବାକି ରଖିପାରିବେ ନାହିଁ । ମୋତେ ଆପଣଙ୍କ ବୋହଲ ହାଇସ୍କୁଲକୁ ନିଅନ୍ତୁ ଓ ସାହାଯ୍ୟ କରନ୍ତୁ ।"

ମୁଁ ତାହାର ପଢ଼ିବା ଆଗ୍ରହ ଦେଖି ତାକୁ ନିବୃତ୍ତ କରି ପାରିଲି ନାହିଁ ।

ସେ ବୋହଲ ସ୍କୁଲରେ ଚାରି ବର୍ଷ ପଢ଼ିଲା । ମୁଁ ତାହାର ସବୁ ଖର୍ଚ୍ଚ ଚଳାଏ ଏବଂ ସେ ଷ୍ଟାଇପେଣ୍ଡ ପାଇଲେ ପରିଶୋଧ କରେ । ତାହାର ପଢ଼ା ସରିଲା ବେଳକୁ ମୋର ତା ଉପରେ ପଚାଶ ଟଙ୍କା ପର୍ଯ୍ୟନ୍ତ ପ୍ରାପ୍ୟ ହେଲା । ସେ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ ପାସ୍ କରିବାରୁ ମୁଁ ଖୁସି ହୋଇ ତାକୁ ସେ ଟଙ୍କା ଛାଡ଼ି ଦେଲି ।

ସେ ଟେଲିଗ୍ରାଫ୍ ଟ୍ରେନିଂ ପାଇ ଡାକଘରେ ଚାକିରି ପାଇବାର ପ୍ରାୟ ବର୍ଷକ ପରେ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହେଲା । ବିଭାଗୀୟ ସାହାଯ୍ୟରେ ସେ ଚିକିତ୍ସିତ ହେବାକୁ ଦିଲ୍ଲୀ ଗଲା । ସେତେବେଳେ ମୁଁ ତାକୁ ପଚାଶ ଟଙ୍କା ସାହାଯ୍ୟ କରିଥିଲି । ସେ ପରେ ପରିଶୋଧ କଲା ।

ବର୍ତ୍ତମାନ ସେ ତିନିଶହ ଟଙ୍କା ପର୍ଯ୍ୟନ୍ତ ଦରମା ପାଇଲାଣି । ଭଲରେ ଅଛି । ମୋର ବିନା ସାହାଯ୍ୟରେ ଜୀବନରେ ଉନ୍ନତି କରିବା

ତା ପକ୍ଷରେ ସମ୍ଭବ ହୋଇ ନ ଥାନ୍ତା ବୋଲି ସେ ବଡ଼ କୃତଜ୍ଞ । ତାଠାରେ ମୋ ସ୍ୱାସ୍ଥ୍ୟର ସାର୍ଥକତା ଦେଖି ମୁଁ ବଡ଼ ଆତ୍ମସନ୍ତୋଷ ଲାଭ କରେ ।

## ଶ୍ରୀ ଶୁକଦେବ ସାହୁ

ଶୁକଦେବ ୧୯୩୮ରେ ଦୋହଲରୁ ମ. ଇ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା । ଜାତିରେ ତନ୍ତୀ । ବାପ ତାର ଲୁଗା ବୁଣି କୁଟୁମ୍ବ ପୋଷୁଥିଲା । ଘର ଉପର ଖଣ୍ଡିକ ଛଡ଼ା ଚାଷ ଜମି କିଛି ନ ଥିଲା ।

କଟକରେ 'ମଧୁସୂଦନ ଗ୍ରାମୋଦ୍ୟୋଗ ମନ୍ଦିର'ରେ ଶ୍ରୀ ଅକ୍ଷୟ କୁମାର ଚକ୍ରବର୍ତ୍ତୀ ମେନେଜର ଥିଲେ । ମୁଁ ତାଙ୍କୁ କହି ଶୁକକୁ ତହିଁରେ ଭର୍ତ୍ତି କରିଦେଲି ।



ଟ୍ରେନିଂ ସରିଲା ବେଳକୁ ୧୯୪୧ରେ ଯୁଦ୍ଧବିରୋଧୀ ଧ୍ୱନି କରି ଜେଲ୍ ବରଣ କରିବାକୁ ଗାନ୍ଧିଜୀ ଆହ୍ୱାନ ଦେଲେ । ଶୁକକୁ କହିଲି । ସେ ରାଜି ହେଲା । ନିର୍ଦ୍ଦିଷ୍ଟ ଦିନ ମୋ ଘର ପାଖରୁ ଗୃହଦୋଳ ପର୍ଯ୍ୟନ୍ତ ଶୋଭାଯାତ୍ରାରେ ତାକୁ ନେଇଯିବା ପାଇଁ ଦଳେ ଯୁବକ ଓ ବାଳକଙ୍କୁ ମୋ ଘରେ କାକରା, ପାୟସ ଖୁଆଇଲି । ଝାଞ୍ଜ ମୃଦଙ୍ଗ ବଜାଇ ବଜାଇ ସେମାନେ ଗୃହଦୋଳ ଗଲେ । ଏଥିର ଦୁଇ ମାସ ଜେଲ୍ ଦଣ୍ଡ ମିଳିଲା ।

୧୯୪୨ 'ଭାରତ ଛାଡ଼' ଆନ୍ଦୋଳନରେ ଶୁକ୍ର ମୋ ଆଦେଶ ମାନି ପ୍ରାୟ ଦୁଇ ବର୍ଷ ଜେଲ ଭୋଗିଲା ।

ତା' ପରେ ଶୁକ ବୃଦ୍ଧ ପିତା, ବୃଦ୍ଧା ମାତା ଏବଂ ଶ୍ରେଷ୍ଠ ଭାଇ ଭଉଣୀମାନଙ୍କୁ ପୋଷିବା ଲାଗି ଚାକିରି ଧରିବାକୁ ବାଧ୍ୟ ହେଲା । ଉତ୍ତର ବାଲେଶ୍ୱରର ବାତ୍ୟାବିଧ୍ୱସ୍ତ ଅଞ୍ଚଳରେ ଚରଖା ସଂଘ ତରଫରୁ ରିଲିଫ୍ କାମ, ବରି ଶ୍ରୀରାମଚନ୍ଦ୍ରପୁର ମୌଳିକ ସ୍କୁଲରେ ଲୁଗାବୁଣା ଶିକ୍ଷକ, କେନ୍ଦୁଝର ଜିଲାରେ ସୂତାକାଟା ସୁପରଭାଇଜର, ନାରଣପୁର ଟ୍ରେନିଂ ସ୍କୁଲରେ ଧନ୍ଦା ଶିକ୍ଷକ ଏବଂ ଖାଲୁକଟା ସେକେଣ୍ଡାରୀ ଟ୍ରେନିଂ ସ୍କୁଲରେ ଧନ୍ଦା ଶିକ୍ଷକ ହୋଇ ଏବଂ ଚାକିରି ସଙ୍ଗେ ସଙ୍ଗେ ନିଜକୁ ଛାତ୍ର ଅବସ୍ଥାରେ ରଖି ମାଇନର ପାସ୍ କରିବାର ତେଇଶି ବର୍ଷ ପରେ ମାଟ୍ରିକୁଲେଟ୍ ଏବଂ ଆଉ ଦୁଇ ବର୍ଷ ପରେ ଇଣ୍ଟରମିଡ଼ିଏଟ ହେଲା । ଏହା ପରେ ତାକୁ ଆଶ୍ରମ ମ. ଇ. ସ୍କୁଲର ପ୍ରଧାନ ଶିକ୍ଷକ ପଦକୁ ଉନ୍ନୀତ କରାଗଲା । ୧୯୬୯ରେ ସେ ବି. ଏ. ପରୀକ୍ଷା ଦେଇ କୃତକାର୍ଯ୍ୟ ହୋଇଛି ।

ସେ ଓ୍ୱାର୍ଧା ସେବାଗ୍ରାମରେ ଦେଡ଼ ବର୍ଷ କାଳ ମୌଳିକ ତାଲିମ୍ ମଧ୍ୟ ପାଇଥିଲା ଏବଂ ହିନ୍ଦୀ କୋବିଦ ପରୀକ୍ଷାରେ ମଧ୍ୟ କୃତକାର୍ଯ୍ୟ ହୋଇଛି ।

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତିଷ୍ଠିତ କାଦୁଆ ଆଶ୍ରମରେ ଖଣ୍ଡାୟତ ଜାତିର ଗୋଟିଏ ଅନାଥା ବାଳିକା ଥିଲା । ଶୁକ ସହିତ ତାହାର ବିବାହ ସେହି ଆଶ୍ରମରେ ହୋଇଥିଲା । ପଣ୍ଡିତ କୃପାସିନ୍ଧୁ ହୋତା କନ୍ୟା ଦାନ କରିଥିଲେ ଏବଂ ମୁଁ ବର-ପିତାର ଆସନ ଗ୍ରହଣ କରିଥିଲି ।

ଏ ବର୍ଷ ଶୁକ ସ୍ୱାଧୀନତା ସଂଗ୍ରାମୀ ଭାବରେ ତମ୍ବାପଟା ସନନ୍ଦ ଏବଂ ମାସିକ ଦୁଇଶହ ଟଙ୍କା ପେନ୍‌ସନର ଭାଜନ ହୋଇଛି ।

ଶୁକ ମୋ ପାଖରେ ପଢ଼ିଲା ବେଳୁଁ ମୋ ପ୍ରତି ଅସାଧାରଣ ଭକ୍ତି ଅର୍ପଣ କରି ଆସୁଛି ଏବଂ ମୋର ଆଦର୍ଶ ଅନୁସରଣ କରି ନିଜକୁ ଅଧ୍ୟବସାୟୀ, କର୍ମନିଷ୍ଠ ଓ ଉଚ୍ଚାଶାସମନ୍ୱିତ କରି ପାରିଛି, ଯାହାର ଫଳରେ ସେ ମଧ୍ୟ ଆଜି ଜଣେ ଅନୁକରଣୀୟ ବ୍ୟକ୍ତି ରୂପେ ଗଣା ହୋଇ

ପାରେ । ତାହାର ରାଜନୈତିକ ଜୀବନ ଓ ଅସବର୍ଣ୍ଣ ବିବାହରୂପୀ ସମାଜ-ସଂସ୍କାର ପ୍ରିୟତା ମୋ'ର ପ୍ରେରଣା-ପ୍ରସୂତ ।

## ଶ୍ରୀ କୃଷ୍ଣଚନ୍ଦ୍ର ପଣ୍ଡା

ହୋହଲ ସହଯୋଗ ମ. ଇ. ସ୍କୁଲରେ ମୋର ଛାତ୍ର ଥିଲା । ତାହାର ବାପା ପିଲାଦିନେ ମରିଯାଇଥିଲେ । ଭୂସମ୍ପତ୍ତି ବା ଘରଦ୍ୱାର ନ ଥିଲା । ସେ ୭ମ ଶ୍ରେଣୀରେ ସରକାରୀ ବୃତ୍ତି ପାଇବ ବୋଲି ମୁଁ ଆଶା କରିଥିଲି । ମାତ୍ର ପରୀକ୍ଷା ପୂର୍ବରୁ ଅସ୍ୱାସ୍ଥ୍ୟ ଯୋଗୁଁ ସେ ସଫଳକାମ ହୋଇ ପାରିଲା ନାହିଁ । ତା ପାଇଁ ମୋର ବଡ଼ ଦୁଃଖ ହେଲା ଏବଂ ସେ କପରି ମାଟ୍ରିକ୍ ପଢ଼ିବ, ସେଥିପାଇଁ ଚିନ୍ତା କଲି । ସେତେବେଳେ କୁଜଙ୍ଗ ହାଇସ୍କୁଲରେ ଅଧା ଦରମା ଦେବାକୁ ପଡ଼ୁଥିଲା ଏବଂ ହଷ୍ଟେଲ ଖର୍ଚ୍ଚ ମଧ୍ୟ କମ୍ ଥିଲା । ମୁଁ ସାଇକେଲରେ କୁଜଙ୍ଗ ଯାଇଁ ପ୍ରଧାନ ଶିକ୍ଷକଙ୍କୁ ତା କଥା କହିବାରୁ, ମାସିକ ମାତ୍ର ପାଞ୍ଚ ଟଙ୍କାରେ ସେ ସେଠାରେ ପଢ଼ି ପାରିବ ବୋଲି ତାଙ୍କଠାରୁ ପ୍ରତିଶ୍ରୁତି ଘେନି ଆସିଲି । ମୁଁ ସବୁ ବହି ଖରିଦ କରିଦେବି ଓ ମାସିକ ଚାରିଟଙ୍କା ସାହାଯ୍ୟ କରିବାକୁ କହିବାରୁ ତାହାର ମାମୁଁ ଅବଶିଷ୍ଟ ଏକଟଙ୍କା ଦେବାକୁ ରାଜି ହେଲେ । କୃଷ୍ଣ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାସ୍ କଲା ।

ମୋର ଛାତ୍ରୀ ରେଣୁବାଳା ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ି ବିବାହ କରିଥିଲା ଏବଂ ଅକାଳ ବୈଧବ୍ୟ ପରେ କଟକ ମହିଳା ଟ୍ରେନିଂ ସ୍କୁଲରେ ନାମ ଲେଖାଇ ତାଲିମ୍ ପ୍ରାପ୍ତ ସପ୍ତମ ଶ୍ରେଣୀ ଯୋଗ୍ୟତା ହାସଲ କଲା । ମାତ୍ର ସେତିକରେ ତାହାର ମନ ସନ୍ତୁଷ୍ଟ ହେଲା ନାହିଁ । ତେଣୁ ହାଇ-ସ୍କୁଲରେ ୯ମ ଶ୍ରେଣୀରେ ନାମ ଲେଖାଇବା ଉଦ୍ଦେଶ୍ୟରେ ସେ ୮ମ ଶ୍ରେଣୀର ପାଠ ଘରେ ପଢ଼ିବାକୁ ଇଚ୍ଛାକଲା । ଏହି କୃଷ୍ଣକୁ ମୁଁ ତାହାର ଗୃହଶିକ୍ଷକ ରୂପେ ନିଯୁକ୍ତ କରିଦେଲି । ରେଣୁବାଳା ୯ମରେ ନାମ ଲେଖାଇ ବହୁ ଦୁଃଖ କଷ୍ଟ ସହି ବି. ଏ. ପାସ୍ କଲା । ତା ପରେ ବି. ଇଡ଼. ହେଲା । ବର୍ତ୍ତମାନ ସେ ଗୋଟିଏ ବାଳିକା ହାଇସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ । କୃଷ୍ଣ ତାହାର ସାହାଯ୍ୟରେ ପୂର୍ତ୍ତ ବିଭାଗର କିରାଣୀ କାମ ପାଇପାରିଲା । ସେ ତାହାର ଜୀବନରେ ବେଶ୍ ଆର୍ଥିକ ଉନ୍ନତି କରିଛି । ଘର ଖଣ୍ଡିକ କୋଠା କରିଛି ଓ ପ୍ରତି ବର୍ଷ ଜମିବାଡ଼ି ମଧ୍ୟ କିଣୁଛି । ତାହାର ଘର ମୋ ଘରଠାରୁ

ଅଧ କଲେମିଟର ହେବ । ତାହାର ସର୍ବୋଦୟ ମୋ ପକ୍ଷରେ ଯଥେଷ୍ଟ ଆନନ୍ଦ ଓ ଗର୍ବର ବିଷୟ ଏବଂ ତାହାର କୃତଜ୍ଞତା ଓ ସ୍ନେହ ଭକ୍ତିର କାର୍ପଣ୍ୟ ମୋର ତା ପ୍ରତି ଆଶୀର୍ବାଦରେ ଅନ୍ତରାୟ ହୋଇ ନାହିଁ ।

## ଶ୍ରୀ ଲକ୍ଷ୍ମୀଧର ସାହୁ

ହୋହଲ ସହଯୋଗ ମ· ଇ· ସ୍କୁଲରେ ୭ମ ଶ୍ରେଣୀରେ ପିତୃହୀନ ବାଳକଟି ପଢ଼ୁଥିବା ଅବସ୍ଥାରେ ଥରେ ମୋ ସଙ୍ଗ ଜଗିର ଲଗାଇ ମୋତେ ତାହାର ଘରକୁ ଡାକନେଲା । ଘରେ ତାହାର ବିଧବା ମାତା କେବଳ । ଜାତିରେ ଗୁଡ଼ିଆ । ମୋତେ ଖାଇବାକୁ ଭଲ ଉପାଦାନ ଓ ପିନ୍ଧିବାକୁ ଯୋଡ଼େ ଖଦଡ଼ ମିଳିଲା । ତାହାର ମା'ର ଅନୁରୋଧ, ପୁଅ କେମିତି ମାଟ୍ରିକ୍ ପଢ଼ିବ । ମୁଁ ଦାୟିତ୍ୱ ନେଲି ବୋଲି ପ୍ରତିଶ୍ରୁତି ଦେଇ ଆସିଲି ।

ପରବର୍ଷ ହୋହଲ ମଣ୍ଡଳ ହାଇସ୍କୁଲର ଅଷ୍ଟମ ଶ୍ରେଣୀ ଖୋଲିଲା । ପ୍ରତିଶ୍ରୁତି ଅନୁସାରେ ମୁଁ ଦଶମ ଶ୍ରେଣୀଯାଏ ତାହାର ଦରମା ଦେବାକୁ ଲଗିଲି । ଲକ୍ଷ୍ମୀଧର ଭଲ ପଢ଼ୁ ନ ଥିଲା । ତେଣୁ ତାହାର ମା'କୁ କହିଲି ଯେ, ସେ ମାଟ୍ରିକ୍ ପାସ୍ କରି ପାରିବ ନାହିଁ । ତେଣୁ ତାକୁ ପ୍ରାଥମିକ ସ୍କୁଲରେ ଶିକ୍ଷକ କରାଇ ଦେବ । ତାହାର ମା ରାଜି ନ ହେବାରୁ ଏକାଦଶ ଶ୍ରେଣୀର ସବୁ ଖରଚ ମୁଁ ବହନ କରିବ ନାହିଁ ବୋଲି ଜଣାଇ ଦେଲି । ଲକ୍ଷ୍ମୀଧରର ମା କୌଣସି ପ୍ରକାରେ ତାହା ଚଳାଇ ନେଲା । ମାତ୍ର ଫାଇନାଲ ଓ ସପ୍ଲିମେଣ୍ଟାରୀ ଉଭୟ ପରୀକ୍ଷାରେ ଅକୃତକାର୍ଯ୍ୟ ହେଲା ।

ସେହି ବେଳ ପଞ୍ଚାୟତ ଏବଂ ବିଧାନସଭା ପ୍ରାର୍ଥୀ ଶ୍ରୀ ପାନବନ୍ଧୁ ସାହୁଙ୍କର ଜଣେ କର୍ମୀ ଆବଶ୍ୟକ ହେବାରୁ ମୋର ପ୍ରସ୍ତାବ ଅନୁସାରେ ସେ ଲକ୍ଷ୍ମୀଧରକୁ ଗୋଟିଏ କେନ୍ଦ୍ରର ଦାୟିତ୍ୱ ଦେଲେ । ପାନବନ୍ଧୁ ସାହୁ ଜୟଲାଭ କରି ମନ୍ତ୍ରୀ ହେଲେ ଏବଂ ମୋର ଅନୁରୋଧ ରଖି ଲକ୍ଷ୍ମୀଧରକୁ ଡ୍ରାଫ୍ଟମାନସିପ୍ ପଢ଼ିବା ପାଇଁ ଧର୍ମଲୋପୁର ପଠାଇ ଦେଲେ । ସେହି ଲକ୍ଷ୍ମୀଧର ବର୍ତ୍ତମାନ ପାବର୍ଦ୍ଧୀପରେ ମାସିକ ଅଧହଜାରରୁ ବେଶୀ ଦରମା ପାଉଛି । କୋଠା ଖଣ୍ଡିଏ କରିଛି । ଉଦନ୍ତୁପାତରେ ଅନ୍ୟାନ୍ୟ ବିଷୟରେ

ଜନ୍ମିତ ମଧ୍ୟ ଘଟିଛି । ଯେଉଁମାନେ ପରର ଅନୁଗ୍ରହରେ ଦାରିଦ୍ର୍ୟରୁ ଯାଇଁ ଧନୀ ପର୍ଯ୍ୟାୟରେ ପହଞ୍ଚନ୍ତି, ସେମାନଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରିବାକୁ ମୋତେ ଭଲ ଲାଗେ । ଲକ୍ଷ୍ମୀଧରର ବ୍ୟବହାରରେ ମୋର ଅଧର ସ୍ଫୁରିତ ହୋଇଛି, ହୃଦୟରେ ଶେଳ-ଭେଦର ଯନ୍ତ୍ରଣା ଅନୁଭବ କରିଛି ସତ, ମାତ୍ର ପରକ୍ଷଣରେ ମୁଁ ଅନୁତାପ କରି ନିଜକୁ ନିଜେ ବୁଝାଇଛି ଯେ, ଦାନର ପ୍ରତି-ଦାନ ଆଶା କରିବା ମୋ ପକ୍ଷରେ ଉଚିତ ନୁହେଁ । ସେ ସୁଖରେ ରହୁ ।

## ଶ୍ରୀ ନବକିଶୋର ପଣ୍ଡା

କୋଠପଦାରେ ନବ ମୋର ଛାତ୍ର ଥିଲା । ଭେଡ଼ା ହାଇସ୍କୁଲରେ ୯ମ ଶ୍ରେଣୀକୁ ପ୍ରମୋସନ ପାଇ ଦାରିଦ୍ର୍ୟ ଯୋଗୁଁ ଘରେ ଅଟକିଲା । ମୁଁ ତାକୁ ପଢ଼ିବାକୁ ଉତ୍ସାହ ଦେଲି ଏବଂ ମୋର ପୂର୍ଣ୍ଣ ସାହାଯ୍ୟରେ ସେ ମାଟ୍ରିକ ପାସ୍ କଲା । ତା ପରେ ସେ ଓଭରସିୟର ହେବାକୁ ଆଶାକଲା ଏବଂ ମୋର ପରାମର୍ଶରେ ଭଦ୍ରକ ଇଞ୍ଜିନିୟରିଂ ସ୍କୁଲରେ ନାମ ଲେଖାଇଲା । ସେଥିପାଇଁ ମୁଁ ବିନା ସୁଧରେ ତାକୁ ପାଞ୍ଚଶ ଟଙ୍କା ଧାର ସୂତ୍ରରେ ଦେବି ଏବଂ ସେ ଚାକିରି କଲେ ମୋର ଟଙ୍କା ପରିଶୋଧ କରିବ—ଏହି ସର୍ତ୍ତ ରହିଲା ।

ନବ ପାସ୍ କଲା ମାତ୍ରେ ଓଭରସିୟର ଚାକିରି ପାଇଲା ଏବଂ ମୋ ପାଖକୁ ମାସିକ କୋଡ଼ିଏ ଟଙ୍କା ହିସାବରେ ପଠାଇଲା । ଶହେ ଟଙ୍କା ଦେବା ପରେ ସେ ଆଉ ନ ପଠାଇବାରୁ ମୁଁ ତାକୁ କଡ଼ା ଭାଷାରେ ପତ୍ର ଦେଲି । ସେ ଉତ୍ତର ଦେଲା ଯେ, ମୁଁ ତାକୁ ଧାର ଦେଇ ନଥିଲି—ମୁଁ ଦାନ କରିଛି ବୋଲି ମୋ ପତ୍ରରୁ ସୂଚିତ ହେଉଥିଲା । ତେବେ ସେ ଶହେ ଟଙ୍କା ପର୍ଯ୍ୟନ୍ତ କାହିଁକି ପଠାଇଲା ବୋଲି ପଚାରିବାରୁ ସେ ନୀରବ ରହି ପୁଣି ଟଙ୍କା ପଠାଇବାକୁ ଲାଗିଲା । କିଛି ଦିନ ପରେ ଟଙ୍କା ଆଉ ଆସିଲା ନାହିଁ । ଏଥର ମୁଁ ଆହୁରି କ୍ରୋଧ ପ୍ରକାଶ କରି ପତ୍ର ଲେଖିଲି । ସେ ଉତ୍ତର ଦେଲା—"ଆପଣ ଯେପରି ପତ୍ର ଲେଖୁଛନ୍ତି, ତଦ୍ଦ୍ୱାରା ମୋର ସମ୍ମାନ ନଷ୍ଟ ହେଉଛି । ଆପଣଙ୍କର ତଥା ମୋର ଜଣେ ଅନ୍ତରଙ୍ଗ ବନ୍ଧୁ କହୁଥିଲେ ଯେ, ଆପଣ ସେହି ପାଞ୍ଚଶ ଟଙ୍କା ହୃଦୟରୁ ଦାନ କରିଛନ୍ତି । ତଥାପି ମୁଁ ତ ଟଙ୍କା ଦେଉଛି ।"

ତାହାର ପତ୍ର ପାଇ ମୁଁ ଅତ୍ୟନ୍ତ ଉତ୍ତେଜିତ ହୋଇପଡ଼ିଲି । ମୋର ହୃଦୟ ବିଷମ ବେଦନାରେ ବ୍ୟଥିତ ହେଲା । ଏହି ସଂଘ ୧୯୫୭ରେ ସ୍ଥାପିତ ହେଲା । ୧୯୫୮ ରେ ନବ ଇଞ୍ଜିନିୟରିଂ ପଢ଼ୁଥିଲା । ସାହାଯ୍ୟ କରିବାକୁ ସଂଘର ଧନ କାହୁଁ ଆସିବ ? ସଂଘ ତାକୁ ବା କାହିଁକି ସାହାଯ୍ୟ କରିବ ? ମୁଁ ସଙ୍ଗେ ସଙ୍ଗେ ଉତ୍ତର ଦେଲି—ତୋର ଅଭିଯୋଗ ବଡ଼ ସାଂଘାତିକ । ଭଦ୍ରବ୍ୟକ୍ତିଙ୍କ ଉପସ୍ଥିତିରେ ବିଚାର ନ ହେବା ପର୍ଯ୍ୟନ୍ତ ତୁ ଟଙ୍କା ପଠାଇବୁ ନାହିଁ ।

ମୋ ଚିଠି ପାଇବା ପରେ ସେ ପଚାଶ ଟଙ୍କା ପଠାଇଦେଲା ଓ କ୍ଷମା ପ୍ରାର୍ଥନା କରି ଚିଠି ଲେଖିଲା । ମୁଁ ଉତ୍ତର ଦେଲି—ମୁଁ ତୋର ପରମ ଶୁଭକାଂକ୍ଷୀ, ତୋର ଅନିଷ୍ଟ ଚିନ୍ତା ମୁଁ କରିପାରିବ ନାହିଁ । କ୍ଷମା ପ୍ରାର୍ଥନାର ପ୍ରଶ୍ନ ନାହିଁ । ତୋତେ ଅନୁରୋଧ କରୁଛି, ତୁ କେବେହେଲେ ମୋ ସାମନାକୁ ଆସିବୁ ନାହିଁ ।

ତା ଠାରେ ମୋର ଆହୁରି ପ୍ରାପ୍ୟ ଥାଏ, ମାତ୍ର ଏତେ ସହଜେ ପୁଣି ସେ ଠକିଲା । ମୁଁ ତାହାକୁ ଲେଖିଲି—ମୁଁ ତୋ ନାମରେ ଚିଟିଂ କେସ୍ କରିବି । ତୁ ଆରେଷ୍ଟ ହୋଇ ଆସିବୁ ଓ ସରକାରୀ ଚାକିରି ଖଣ୍ଡିକ ହରାଇବୁ । ସେ ଭୟଭୀତ ହୋଇ ସଙ୍ଗେ ସଙ୍ଗେ ଦୁଇଶହ ଟଙ୍କା ପଠାଇ ଦେଲା ।

ନବ ଭୁବନେଶ୍ୱରରେ କୋଠା କରିଛି । ଜମି କିଣାରେ ବିରାମ ନାହିଁ । ମୁଁ କୋଠପଦା ଗ୍ରାମକୁ ଗଲେ ଲୋକେ ମୋତେ ହସି ହସି କହନ୍ତି ଯେ, ମୁଁ ହେଉଛି କୃଷ୍ଣ, ଆଉ ନବ ହେଉଛି ସୁଦାମା । ପ୍ରକୃତରେ ନବର ଭାଗ୍ୟୋଦୟ ସୁଦାମାର ଦାରିଦ୍ର୍ୟ-ଭଞ୍ଜନ ସହ ତୁଳନୀୟ ।

ଥରେ ତା ସହିତ ମୟୂରଭଞ୍ଜର ପଣ୍ଡିପୁରଠାରେ ଦୈବାତ୍ ଦେଖା ହୋଇଗଲା । ତା ପ୍ରତି ମୋର ଅସନ୍ତୋଷ ଲାଗି ସେ ଟିକେ ହେଲେ ଅପ୍ରତିଭ ନୁହେ । ବହୁଦିନ ପରେ ଦେଖା ହେଲେ ସୁଦ୍ଧା ଶ୍ରଦ୍ଧା କରିପେ ଦେବା ଭଳି ଶିଷ୍ଟାଚାର ସେ ଶିଖି ନ ଥିବାର ଦେଖିଲି ।

---

# 'ଶିକ୍ଷକ ଦର୍ପଣ' ସଂପାଦନା

୧୯୭୫ ମସିହାରେ ନିମ୍ନମାଧ୍ୟମିକ ଶିକ୍ଷକ ସଙ୍ଘର ମୁଖପତ୍ରରୂପେ 'ଶିକ୍ଷକ ଦର୍ପଣ' ପ୍ରକାଶ ପାଇଁବା ପାଇଁ କାର୍ଯ୍ୟକାରୀ ସମିତିରେ ପ୍ରସ୍ତାବ ଗୃହୀତ ହେଲା । ଶ୍ରୀ ହରିଶ୍ଚନ୍ଦ୍ର ଦେ ଓ ଶ୍ରୀ ସତ୍ୟପ୍ରିୟ ନାୟକ ସହ-ସମ୍ପାଦକ ରୂପେ ନିର୍ବାଚିତ ହେଲେ । ମୁଁ ମୁଖ୍ୟ ସମ୍ପାଦକ ହେଲି । ଏ ବର୍ଷଟି ତ୍ରୈମାସିକ ସଂସ୍କରଣ ହେବାପରେ ଗ୍ରାହକ ସଂଖ୍ୟା ବୃଦ୍ଧି ପାଇବାରୁ ଓ ଶିକ୍ଷକମାନେ ଦାବୀ କରିବାରୁ ୧୯୭୬ ମସିହାରୁ ଏହା ମାସିକ ପତ୍ରିକାରୂପେ ପ୍ରକାଶ ପାଇ ଆସୁଛି ।

ପ୍ରବନ୍ଧ, କବିତା, ଗଳ୍ପ, ଉପନ୍ୟାସ, ଏକାଙ୍କିକା ବ୍ୟତୀତ **ଶିକ୍ଷା ବିଭାଗ ହାକିମ କିଏ କେମିତି** ଶୀର୍ଷକ ଲେଖାରେ ଦୁର୍ନୀତିପରାୟଣ ଶିକ୍ଷା ବିଭାଗୀୟ ହାକିମମାନଙ୍କର ବେଆଇନ୍ କାର୍ଯ୍ୟକଳାପ, ଉତ୍କୋଚ ଗ୍ରହଣ, ଦାୟିତ୍ୱହୀନତା ଏବଂ ସ୍କୁଲ ସମ୍ପାଦକମାନଙ୍କର ଶିକ୍ଷକମାନଙ୍କ ପ୍ରତି ଅତ୍ୟାଚାର ଓ ସ୍କୁଲ ଧନ ଆତ୍ମସାତ୍ କରଣ ସମ୍ପର୍କରେ ନିର୍ମମ ଓ ନିରପେକ୍ଷ ସମାଲୋଚନା କରିଥାଏ । **ମସୀ-ଯୁଦ୍ଧ** ଅଧ୍ୟାୟରେ ଶିକ୍ଷା ବିଭାଗର ହାକିମ, ଶିକ୍ଷା-ସଚିବ ଓ ଶିକ୍ଷାମନ୍ତ୍ରୀ ଏବଂ ସ୍କୁଲ ସମ୍ପାଦକମାନଙ୍କୁ ମୁଁ ଯେଉଁ ଚିଠିପତ୍ର ଲେଖେ ଓ ଯେଉଁ ଉତ୍ତର ପାଏ, ତାହା ପ୍ରକାଶିତ ହୁଏ । **ଶୃଣ୍ୱନ୍ତୁ ସର୍ବେ** ଅଧ୍ୟାୟରେ ସଂଘର ସାଂଗଠନିକ କାର୍ଯ୍ୟାବଳି, ଶିକ୍ଷକମାନଙ୍କ କୃତ ଦୋଷତ୍ରୁଟି ପ୍ରଦର୍ଶନ ଓ ସେମାନଙ୍କୁ ପ୍ରଦତ୍ତ ପରାମର୍ଶ, ବିପ୍ଳବ ପାଇଁ ଆହ୍ୱାନ —ଏଇସବୁ ଆଲୋଚନା କରାଯାଏ । ଏହା ଛଡ଼ା ଶିକ୍ଷା ବିଭାଗୀୟ ଇସ୍ତାହାର ଓ ମହାସଂଘ ସମ୍ବାଦ ମଧ୍ୟ ପ୍ରକାଶିତ ହୁଏ । **ସମ୍ବାଦ ଓ ସଙ୍କେତ** ଅଧ୍ୟାୟରେ ଶିକ୍ଷକମାନଙ୍କ ଜାଣିବା ପାଇଁ ବିବିଧ ତଥ୍ୟ ପରିବେଷିତ ହୋଇଥାଏ । **ପତ୍ରାବଳି** ଅଧ୍ୟାୟରେ ଅତ୍ୟାଚାରିତ ଶିକ୍ଷକମାନଙ୍କର କରୁଣ-କାହାଣୀ-ସମ୍ବଳିତ ପତ୍ର ପ୍ରକାଶ କରାଯାଏ ।

ଶିକ୍ଷା ବିଭାଗ ହାକିମଙ୍କ ବିରୁଦ୍ଧରେ ଲେଖନୀ ଚଳାଇବା ଫଳରେ ସଂପୃକ୍ତ ହାକିମ ମୋ ନାମରେ ମାନହାନି ମକଦ୍ଦମା କରିବାର ଧମକ୍ ଦେଉଥାନ୍ତି । 'ଘାଣ୍ଟୁ ଖୋଳୁ ଖୋଳୁ ଆଳୁ ବାହାରିବୋ ପରି' କାଳେ ମକଦ୍ଦମା ହେବା ଯୋଗୁଁ ଆହୁରି ଚରିତ୍ର-ସଂହାର-ମୂଳକ କାର୍ଯ୍ୟ ପ୍ରକାଶ ପାଇଯିବ, ସେଥିପାଇଁ ସେମାନେ ନୀରବ ରହିଯାନ୍ତି । ଗୋଟିଏ ଲେଖା ଯୋଗୁଁ ହଳଦିପଦା ହାଇସ୍କୁଲର ସଭାପତି ଶ୍ରୀ ଅନିରୁଦ୍ଧ ନନ୍ଦ ମୋ ନାମରେ ବାଲେଶ୍ୱର ସବ୍‌ଡିଭିଜନାଲ ମାଜିଷ୍ଟ୍ରେଟଙ୍କ ଇଜଲାସରେ ମାନହାନି ମକଦ୍ଦମା କରିଥିଲେ ଏବଂ ଶେଷରେ ତାହା ରଫା ହୋଇଥିଲା ।

ଶିକ୍ଷକ ଦର୍ପଣରେ ପ୍ରକାଶ ପାଉଥିବା ଉପରି-ଉକ୍ତ ଶୀର୍ଷକ ଲେଖାମାନ ଏକତ୍ର କଲେ ଗୋଟାଏ ପ୍ରକାଣ୍ଡ ବହି ହୋଇଯିବ । ତେଣୁ ମୁଁ ତହିଁରୁ ନିବୃତ୍ତ ରହିଲି ଏବଂ କେତୋଟି ଲେଖା ଏଠାରେ ଉଦ୍ଧାର କରିବି ।

# ସମ୍ବାଦ ଓ ସଙ୍କେତ

## ଗୁରୁ ପୂଜା କାହିଁକି ?

ସେପ୍ଟେମ୍ବର ୫ ତାରିଖରେ ଗୁରୁଦିବସ ପାଳନ କରିବା ପାଇଁ ଶିକ୍ଷାବିଭାଗରୁ ନିର୍ଦ୍ଦେଶ ଆସିଥାଏ । ମହାତ୍ମା ଗାନ୍ଧିଜୀ ପ୍ରମୁଖ ଦେଶପ୍ରାଣ ଓ ବରେଣ୍ୟ ବ୍ୟକ୍ତିମାନଙ୍କର ପ୍ରତିଭା ପୂଜା ପାଇଁ ଆମେ ଯେପରି ଜୟନ୍ତୀ ଓ ତିରୋଧାନ ଦିବସ ପାଳନ କରୁଁ, ସେହିପରି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଆମର ଭୂତପୂର୍ବ ରାଷ୍ଟ୍ରପତି ରାଧାକୃଷ୍ଣନ୍‌ଙ୍କ ଜନ୍ମ ଦିବସକୁ ଗୁରୁଦିବସ ରୂପେ ପାଳନ କରିବାକୁ ଆନ୍ତରିକତା ପ୍ରକାଶ ପାଇବା ଉଚିତ । ରାଧାକୃଷ୍ଣନ୍‌ଙ୍କ ଫଟୋକୁ ଫୁଲହାରରେ ମଣ୍ଡିତ କରି ତାଙ୍କର ମହନୀୟ ଚିନ୍ତାଧାରା, ପାଣ୍ଡିତ୍ୟ ଓ ଦେଶହିତୈଷଣା ସହିତ ଛାତ୍ରଛାତ୍ରୀମାନଙ୍କୁ ପରିଚିତ ଓ ପ୍ରଭାବିତ କରାଇଲେ ଆମେ ପୂଜ୍ୟପୂଜା କଲୁଁ ବୋଲି ଆତ୍ମସନ୍ତୋଷ ଲାଭ କରିବୁଁ । ଏହି କାର୍ଯ୍ୟକ୍ରମ ଛଡ଼ା ସେଦିନ ଆଉ କିଛି କରାଯିବା ଉଚିତ ନୁହେଁ ।

ପିଲାମାନେ ଗୁରୁଙ୍କ କପାଳରେ ଚନ୍ଦନ ବା ଅଗୁରୁ ଦେଇ, ଗଳାରେ ଫୁଲହାର ଲମ୍ବାଇ, ଯେଉଁ ଆନ୍ତରିକ ବା କୈତବ ସ୍ନେହ ଭକ୍ତି

ପ୍ରକାଶ କରୁଥିବାର ଦେଖାଯାଏ, ତାହା ଗୁରୁମାନଙ୍କ ପକ୍ଷରେ ଯଥାର୍ଥ ବୋଲି ଯୁକ୍ତି କରାଯାଇପାରେ, ମାତ୍ର ଶିକ୍ଷକମାନେ ଯେ ଏ ପ୍ରକାର ପୂଜା ଗ୍ରହଣ ନ କରିବାକୁ କୃତସଂକଳ୍ପ ହେବା ଦରକାର, ତାହାର ନାନା କାରଣ ଅଛି ।

ଯେ ପର୍ଯ୍ୟନ୍ତ ସରକାର ବେସରକାରୀ ସ୍କୁଲ ଶିକ୍ଷକମାନଙ୍କ ପାଇଁ ଚାକରୀରେ ନିରାପତ୍ତା ଉପରେ ପ୍ରାଧାନ୍ୟ ନ ଦେଇଛନ୍ତି—ଯେ ପର୍ଯ୍ୟନ୍ତ କମିଟିର ନିରଙ୍କୁଶ କ୍ଷମତାକୁ ଶୃଙ୍ଖଳିତ କରିବା ଲାଗି ଏବଂ କମିଟିର ଅବୈଧ ବ୍ୟବହାରର ଶରବ୍ୟ ହେଉଥିବା ଶିକ୍ଷକ ସମାଜକୁ ରକ୍ଷା କରିବା ପାଇଁ ସରକାର ସମୁଚିତ ବ୍ୟବସ୍ଥା କରି ନାହାନ୍ତି – ଯେ ପର୍ଯ୍ୟନ୍ତ ଶିକ୍ଷକଙ୍କୁ ଦରମା ଦେବାରେ କୁମ୍ଭକର୍ଣ୍ଣ ନିଦ୍ରାର ଅବସାନ ନ ଘଟିଛି ଏବଂ ଯେ ପର୍ଯ୍ୟନ୍ତ ପବିତ୍ର ଶିକ୍ଷା ମନ୍ଦିରରୁ ସ୍ୱେଚ୍ଛାଚାରୀ କମିଟି ଦ୍ୱାରା ସଂଘଟିତ ଜାଲ ହାସ୍ତେର, ଧପାମି, ଠକାମି ଓ ହିଂସାତ୍ମକ କାର୍ଯ୍ୟର ନିରସନ ଲାଗି ସରକାରଙ୍କ ଆଡ଼ୁ ସଫଳ ଉଦ୍ୟମ ହୋଇ ନାହିଁ, ସେ ପର୍ଯ୍ୟନ୍ତ ଗୁରୁପୂଜା-ରୂପିଣୀ ଆତ୍ମସମ୍ମାନନାଶିନୀ ଅପସଂସ୍କୃତିରୁ ରହିତ ହେବା ବିଧେୟ ।

ଗୁରୁଦିବସରେ ଶିକ୍ଷକମାନଙ୍କ ସାହାଯ୍ୟ କଳ୍ପେ ଛାତ୍ରମାନେ ନିଜ ଭିତରୁ ଓ ବାହାରୁ ଚାନ୍ଦା ଉଠାଇବା ପାଇଁ ମଧ୍ୟ ସରକାରଙ୍କ ନିର୍ଦ୍ଦେଶ ଅଛି । ସବୁ ବିଭାଗରେ ସରକାର ପାଣିପରି ଖରଚ କରି ପ୍ରଜାଙ୍କ ଝାଳବୁହା ଧନରେ ହରିଲୁଟ୍ ଚଳାଇଥିବା ବେଳେ ଶିକ୍ଷକମାନଙ୍କୁ ଭିକ୍ଷାଲବ୍ଧ ଧନରେ ସନ୍ତୁଷ୍ଟ ରଖିବାକୁ ପ୍ରୟାସ କରିବା ଏକ ଚମତ୍କାର ପ୍ରତାରଣା ଓ ଭଣ୍ଡାମି ଛଡ଼ା ଆଉ କିଛି ନୁହେ । ସ୍ୱାଧୀନତା ପ୍ରାପ୍ତିର ୨୭ ବର୍ଷପରେ ସୁଦ୍ଧା ଆମ ଲୋକପ୍ରିୟ ସରକାରଙ୍କ ଏ ପ୍ରକାର ହୀନ ମନୋବୃତ୍ତି ଏବଂ ଭ୍ରଷ୍ଟ ଭାବନା ଓ ନଷ୍ଟ ନୀତି ଶିକ୍ଷକ ସମାଜର ସମ୍ମାନ ପ୍ରତି ଏକ ବିକଟ ଉପହାସ । ଯଦି ସରକାର ଶିକ୍ଷକ ପ୍ରତି ଏତେ ସକରୁଣ, ଶିକ୍ଷକ ଦେଶ ଓ ଜାତିର ମେରୁଦଣ୍ଡ ବୋଲି ଯଦି ସରକାର ସ୍ୱୀକାର କରୁଥାନ୍ତି, ତେବେ ଶିକ୍ଷା କର ବସାଇ ଶିକ୍ଷକମାନଙ୍କ ଦରମା ଓ ଭତ୍ତା ବଢ଼ାନ୍ତୁ ଏବଂ ବିବିଧ ସୁଯୋଗ ଦିଅନ୍ତୁ । ନଚେତ୍ ଶିକ୍ଷକ ସମାଜ 'ଜାତି ଯିବ ପେଟ ପୂରିବ ନାହିଁ' ଭଳି ଭିକ୍ଷାଲବ୍ଧ ଧନରେ ମନ ବଳାଇବ ନାହିଁ । ବରଂ ସେ ଦରିଦ୍ରତା ବରଣ କରି ଏ ବୈପ୍ଳବିକ

ଯୁଗରେ ବୈଦିକ ଯୁଗର ଐତିହ୍ୟ ଫେରାଇ ଆଣିବ, ତଥାପି ଭିକ୍ଷାଲବ୍ଧ ଧନ ଗ୍ରହଣ କରି ନିଜକୁ ଶ୍ରେଷ୍ଠ କରିଦେଇ ପାରିବ ନାହିଁ ।

ଶିକ୍ଷକ ଭାଇମାନେ, ଆମ ଦୁଃଖ ଦୁର୍ଦ୍ଦଶା ଦୂରୀଭୂତ ହେବାର ସାଧନା ଗୁରୁପୂଜା ନୁହେ । ଶପଥ ନେଇ ତାକୁ ବର୍ଜନ କରନ୍ତୁ । ଗୁରୁଦିବସରେ ବ୍ଲକସ୍ତରେ ନିରପେକ୍ଷ ଏବଂ ଏକମାତ୍ର ଉଦ୍ଦେଶ୍ୟ ପାଇଁ ଯଥା ସ୍ଥାନରେ ଓ ଯଥା କାଳରେ ଅନଶନ କରିବାକୁ ଶପଥ ନିଅନ୍ତୁ । ଛାତ୍ରଛାତ୍ରୀମାନଙ୍କୁ ଏକତ୍ର କରି ସେମାନଙ୍କୁ ସରକାର ତଥା କମିଟିର ବ୍ୟବହାରଗୁଡିକ ଶୁଣାନ୍ତୁ । ଦରମା ବଢ଼ିବା ଡେଣିକ ଥାଉ. ଜିବନ ସୁଯୋଗ ଚାଲିକୁ ଯାଉ, ଶ୍ରେଷ୍ଠତ୍ୱ ପୁରସ୍କାର ଦରକାର ନାହିଁ । ଦରକାର— ବ୍ଲକସ୍ତରେ ନିରନ୍ତର । ଏହାର ଅଭାବରେ ସରକାରଙ୍କ ପ୍ରଦତ୍ତ ଓ ଘୋଷିତ ସବୁ କିଛି ‘ବେଲ ପାଚଲେ କୁଆର କ ଯାଏ’ ଅବସ୍ଥାରେ ପରିଣତ ହେବ ।

## * ଆଖିବୁଜା ଶିକ୍ଷକ ଛଟେଇ (ଅଗଷ୍ଟ-୧୯୭୦)

ଗାଁ ଗଣ୍ଡାର ଗୃହୀମାନେ ଦୋଳପୂନେଇ ବେଳକୁ ଘରେଇ ଚାକର ବଦଳାନ୍ତି । ସେହିପରି ସରକାରଙ୍କ ଅବ୍ୟବସ୍ଥା ଯୋଗୁଁ ବେସରକାରୀ ମଧ୍ୟ ଇଂରାଜୀ ସ୍କୁଲଗୁଡ଼ିକ ସେକ୍ରେଟେରୀଙ୍କ ଘରୋଇ ସମ୍ପତ୍ତି ପରି ହୋଇଥିବାରୁ ସେ ନାନା ସ୍ୱାର୍ଥର ବଶବର୍ତ୍ତୀ ହୋଇ ଗ୍ରୀଷ୍ମ ଛୁଟି ପୂର୍ବରୁ ଶିକ୍ଷକ ଛଟେଇରେ ଲାଗି ପଡ଼ନ୍ତି । ନାନା କାରଣରୁ ଛଟେଇ ହୋଇଥାଏ ।

୧ । କମ୍ ଦରମାରେ ଅନ୍ୟ ଶିକ୍ଷକ ମିଳିଲେ,

୨ । ଗ୍ରାଣ୍ଟ ଟଙ୍କା ମିଳିଗଲେ ସେକ୍ରେଟେରୀ ତାକୁ ନିଜ ସ୍ୱାର୍ଥରେ ବିନିଯୋଗ କରି ପକାନ୍ତି । ଶିକ୍ଷକମାନଙ୍କୁ ଦେବାରେ ଡେରି କରନ୍ତି । ଶିକ୍ଷକମାନେ ବାରମ୍ବାର ଟଙ୍କା ମାଗି ସେକ୍ରେଟେରୀଙ୍କୁ ବିରକ୍ତ କଲେ,

୩ । କେତେକ ସେକ୍ରେଟେରୀଙ୍କ ଧାରଣା, ଦରମା ଆସେ ଶିକ୍ଷକଙ୍କ ପାଇଁ ମାତ୍ର ଭତ୍ତା ଆସେ ତାଙ୍କ ପାଇଁ । ତେଣୁ ଶିକ୍ଷକମାନେ ଭତ୍ତା ଦାବୀ କଲେ,

---

* ଜଗତ୍‌ସିଂହପୁର ଶିକ୍ଷକ ସଙ୍ଘରେ ଶିକ୍ଷାମନ୍ତ୍ରୀ ଶ୍ରୀ ଶରତ୍ କୁମାର କରଙ୍କ ଉପସ୍ଥିତିରେ ପଠିତ ।

୪ । ଗ୍ରୀଷ୍ମ ଛୁଟି, ଦଶହରା ଓ ବଡ଼ ଦିନ ଛୁଟିରେ ଶିକ୍ଷକମାନେ କାମ କରୁ ନ ଥିବାରୁ ସେଥିପାଇଁ ଦରମା ଦାବୀ କଲେ,

୫ । ଦରମାପ୍ରାପ୍ତି ରସିଦ ବହିରେ ଆଗେ ଦସ୍ତଖତ କରିଦେଇ ୧୫ ଦିନ ପରେ ବା ମାସକ ପରେ ଟଙ୍କା ନେବାକୁ ରାଜି ନ ହେଲେ,

୬ । ସେକ୍ରେଟାରୀଙ୍କ ପୁଅ ବା ଆତ୍ମୀୟକୁ ବିନା ପାଶ୍ରେମିକରେ ଟିଉସନ ନ କଲେ,

୭ । ସେକ୍ରେଟେରୀ ବା ପ୍ରେସିଡେଣ୍ଟ ବା ସଭ୍ୟମାନଙ୍କ ବିରୁଦ୍ଧରେ କେଉଁଠି କିଛି କହିଲେ ବା ସେମାନଙ୍କ ପଞ୍ଚାୟତ ନିର୍ବାଚନରେ ପ୍ରାର୍ଥିଙ୍କ ବିରୁଦ୍ଧରେ ପାଟି ଫିଟାଇଲେ,

୮ । ସେମାନଙ୍କ ଘରେ ବୈବାହିକ ସମ୍ପର୍କ ସ୍ଥାପନରେ ଅରାଜି ହେଲେ,

୯ । ବାଟଘାଟରେ ମେନେଜିଂ କମିଟିର ନବରତ୍ନଙ୍କ ଆଗରେ ଛତି ଫୁଲାଇ ଚାଲିଲେ ବା ସେମାନଙ୍କୁ ନମସ୍କାର ନ ପକାଇଲେ,

୧୦ । ସେମାନଙ୍କ ସହ ଦଳ ବାଡ଼ରେ କଜିଆ କଲେ,

୧୧ । ସେମାନଙ୍କ ପାଇଁ ମିଛ ସାକ୍ଷୀ ଦେବାକୁ ରାଜି ନ ହେଲେ,

୧୨ । ସେକ୍ରେଟେରୀ ସ୍କୁଲ ଧନ ଆତ୍ମସାତ୍ କରୁଥିବା ପଦାରେ ପ୍ରକାଶ କଲେ,

୧୩ । ସେକ୍ରେଟେରୀ ଇତ୍ୟାଦିଙ୍କ ଆତ୍ମୀୟ, ବନ୍ଧୁବାନ୍ଧବ, ସୂର୍ଯ୍ୟ ବନ୍ଧୁ ଓ ନିକଟ ସମ୍ପର୍କୀୟ ଯୁବକମାନେ ବେକାର ଅବସ୍ଥାରେ ବସି ରହିଲେ,

୧୪ । ନବ ନିଯୁକ୍ତ ଶିକ୍ଷକଙ୍କଠାରୁ ଅନ୍ତତଃ ମାସକର ଦରମା ମିଠେଇ ଖିଆ ସ୍ୱରୂପ ମିଳିବାର ପ୍ରତିଶ୍ରୁତି ନ ମିଳିଲେ,

୧୫ । ସେକ୍ରେଟେରୀଙ୍କ ଘରକୁ ଯାଇ ଦରମା ଆଣିବାଟା ଅପମାନଜନକ ମନେକଲେ,

୧୬ । ସେକ୍ରେଟେରୀଙ୍କ କଥାନୁସାରେ ଫେଲ୍ ପିଲାମାନଙ୍କୁ ପାସ୍ କରାଇ ନ ଦେଲେ,

ସ୍କୁଲତଃ ଶିକ୍ଷକମାନେ ସେକ୍ରେଟେରୀଙ୍କ ପାଖରେ ଚାକରବତ୍ କାର୍ଯ୍ୟ ନ କଲେ । ଛଟେଇର ଶରବ୍ୟ ହୋଇଥାନ୍ତି । ଏହାଛଡ଼ା ଆହୁରି ଅନେକ କାରଣ ଥାଇପାରେ, ଯାହାକି ମୋର ଚିନ୍ତାର ଅଗୋଚର ଓ ବୁଦ୍ଧିର ଅଗମ୍ୟ ।

ଆଗେ ଗ୍ରୀଷ୍ମ ଛୁଟି ପୂର୍ବରୁ ଛଟେଇ ହେବା ସାଧାରଣ ନୀତି ଥିଲା । ତା ହେଲେ ଶିକ୍ଷକ ଅନ୍ୟତ୍ର ସ୍କୁଲର ସନ୍ଧାନ କରୁଥିଲେ ବା ଟ୍ରେନିଂ ସ୍କୁଲରେ ଭରତି ହେବାପାଇଁ କସରତ୍ କରୁଥିଲେ । ଅସାଧୁ ସେକ୍ରେଟେରୀ-ଙ୍କର ଅନ୍ତତଃ ଏତିକି ଧର୍ମଜ୍ଞାନ ଥିଲା ବୋଲି କହିବାକୁ ହେବ । ମାତ୍ର ଏବେ ଏହି ଅଗଷ୍ଟ ମାସ ପର୍ଯ୍ୟନ୍ତ ଛଟେଇ ଚାଲିଥିବାର ଦେଖା ଯାଉଛି । ଧର୍ମର ସଜ୍ଞା ଦିନକୁ ଦିନ ବଦଳି ଯାଉଛି । ବର୍ତ୍ତମାନ ନକ୍‌ସଲ୍‌ପନ୍ଥୀଙ୍କ ଉଗ୍ରପନ୍ଥା ବା କମ୍ୟୁନିଷ୍ଟଙ୍କ ଭୂମି ଦଖଲ ତ ସେମାନଙ୍କ ମତରେ ଧର୍ମକାର୍ଯ୍ୟ । ସେହିପରି ଅସାଧୁ ସେକ୍ରେଟାରୀମାନେ ସେମାନଙ୍କ ଧର୍ମ-ଜ୍ଞାନର ସଂଶୋଧନ କଲେ ଅସମୀଚୀନ ହେବ କାହିଁକି ?

ସରକାରଙ୍କ ଯେଉଁ ଅବ୍ୟବସ୍ଥା ଯୋଗୁଁ ସେକ୍ରେଟେରୀମାନଙ୍କୁ ଉପରୋକ୍ତ ଷୋଳ ପ୍ରକାର ମଜକା ମିଳିଯାଉଛି, ଏ ବର୍ଷ ସେହି କାରଣରୁ ଆଉ ଗୋଟିଏ ନୂଆ ମଜକା ମିଳିଥିଲା । ତାହା ହେଉଛି ଡିରେକ୍ଟର ସାହେବଙ୍କ ସର୍କୁଲର । ସେ ମହୋଦୟ ଥରେ ମୋତେ କହିଲେ ଯେ, ରାଜ୍ୟରେ ୧୯୦୦ ତାଲିମ ପ୍ରାପ୍ତ ମାଟ୍ରିକ ଶିକ୍ଷକ ବସିଛନ୍ତି । ମୁଁ ଉତ୍ତରରେ କହିଥିଲି—ମ. ଇ. ସ୍କୁଲମାନଙ୍କରେ ପ୍ରାୟ ୮୦୦୦ ଅଣ-ତାଲିମ ଶିକ୍ଷକ ଅଛନ୍ତି । ଏପରି ସ଼୍ଳେ ତାଲିମ ପ୍ରାପ୍ତ ଶିକ୍ଷକ ନ ରଖିଲେ, ସ୍କୁଲର ଗ୍ରାଣ୍ଟ୍ ବନ୍ଦ ହେବ ବୋଲି ଡି. ଆଇ. ମାନେ ଧମକ ଦେଉଛନ୍ତି କାହିଁକି ? ସେ ମୋ କଥା ଶୁଣି ମତ ପ୍ରକାଶ କରିଥିଲେ ଯେ, ଅଣତାଲିମ ଶିକ୍ଷକଙ୍କ ପାଇଁ ପ୍ରାଇମେରୀ ବିଭାଗରେ ଯେପରି ବ୍ୟବସ୍ଥା ସବୁ କରାଯାଇ ଥିଲା, ଅନୁରୂପ ବ୍ୟବସ୍ଥା ମ. ଇ. ସ୍କୁଲ ଶିକ୍ଷକମାନଙ୍କ ପାଇଁ କରାଯିବ । ମୁଁ ତାଙ୍କ କଥାରେ କୃତକୃତ୍ୟ ଓ ଆଶାୟୀ ହୋଇ ଗତ ୮ । ୧ । ୭୦ ତାରିଖଠାରୁ ଏ ପର୍ଯ୍ୟନ୍ତ ତାଲିମ ସଂପର୍କରେ ଚୂଡ଼ାନ୍ତ ନିଷ୍ପତ୍ତି ଗୋଟାଏ କରିଦେବା ପାଇଁ କୋସିସ୍ କରୁଛି ଯେ, ଏ ପର୍ଯ୍ୟନ୍ତ ସଫଳ ହୋଇ ପାରି ନାହିଁ ।

ଧନ୍ୟ ସେ ତାଲିମ୍ । ଯେଉଁ ତାଲିମ୍ ପାଇଁ ଅଯୋଗ୍ୟ ଯୋଗ୍ୟ ହୋଇଯାଏ—ଅଳଜ୍ଞ ଅଭିଜ୍ଞ ହୋଇଯାଏ—ପଢ଼ାଇ ଜାଣୁ ନ ଥିବା ଶିକ୍ଷକ

ଅଧ୍ୟାପନାରେ ଅଶେଷବିଧ କୌଶଳ ଆୟତ୍ତ କରେ ବୋଲି ଆମ୍ଭମାନଙ୍କୁ କୁହାଯାଉଛି । ଆଗେ ପ୍ରାଇମେରୀ ଓ ମାଧ୍ୟମିକ ସ୍କୁଲରେ ପଢ଼ିବା ବେଳରେ ତାଲିମ୍ ପ୍ରାପ୍ତ ଶିକ୍ଷକଙ୍କ ସଂଖ୍ୟା ଆଙ୍ଗୁଠିରେ ଗଣି ହେଉଥିଲା । ସେତେବେଳେ ଆମେ ପ୍ରାଇମେରୀରେ ଯେଉଁ ଶିକ୍ଷା ପାଉଥିଲୁଁ, ତାହା ବର୍ତ୍ତମାନ ନିମ୍ନ ମାଧ୍ୟମିକରେ ନାହିଁ; ନିମ୍ନ ମାଧ୍ୟମିକ ଶିକ୍ଷା ମାଧ୍ୟମିକରେ ବା ମାଧ୍ୟମିକ ଶିକ୍ଷା କଲେଜର ନିମ୍ନ ସ୍ତରରେ ନାହିଁ । ଆଜି କାଲି ବହୁ ତାଲିମ୍ ପ୍ରାପ୍ତ ଶିକ୍ଷକ ରହିଲେଣି, ଅଥଚ ତାହାର ସୁଫଳ କାହିଁ ? ଆମ ମତରେ ଜଣେ ଅଣତାଲିମ୍ ପ୍ରାପ୍ତ ଅଭିଜ୍ଞ ଶିକ୍ଷକ ଜଣେ ସଦ୍ୟ ତାଲିମ୍-ପ୍ରାପ୍ତ ଶିକ୍ଷକଙ୍କଠାରୁ ଢେର୍ ଭଲ । ଶିକ୍ଷାର ମାନ କମିବାର କାରଣ ନୁହେଁ ତାଲିମ୍ ପ୍ରାପ୍ତ ଶିକ୍ଷକଙ୍କର ଅଭାବ । ବେସରକାରୀ ନିମ୍ନ ମାଧ୍ୟମିକ ଓ ମାଧ୍ୟମିକ ସ୍କୁଲର ପରିଚାଳନା 'ମାଙ୍କଡ଼ ହାତରେ ଶାଳଗ୍ରାମ' ପରି ହୋଇ ଥିବାରୁ ଏବଂ ଶିକ୍ଷା ବିଭାଗୀୟ ଅଫିସରମାନଙ୍କର ଶିକ୍ଷକ ସମାଜ ପ୍ରତି ଦାୟିତ୍ୱବୋଧ ଓ ସହାନୁଭୂତିଶୀଳତାର ଅଭାବ ଯୋଗୁଁ ଶିକ୍ଷକ ନିଜ କର୍ତ୍ତବ୍ୟରେ ନିଷ୍ଠାପର ହୋଇ ପାରୁନି । ତଳଠାରୁ ଉପର ପର୍ଯ୍ୟନ୍ତ ସବୁ ସ୍ତରର ଶିକ୍ଷା ବିଭାଗୀୟ କର୍ତ୍ତାମାନେ ରୋଗର ନିଦାନ ନ ବୁଝି ଔଷଧ ବ୍ୟବସ୍ଥା କଲାପରି ହାକିମି କରୁଛନ୍ତି । ପ୍ରଫେସର ହୁମାୟୁନ କବିର କହିଛନ୍ତି—"Without a good teacher even the best of systems is bound to fail" ସୁତରାଂ ଭଲ ବ୍ୟବସ୍ଥା କରି ନ ଗଲେ ଭଲ ଶିକ୍ଷକ ଆସିବେ କାହୁଁ ?

ହେଉ, ତାଲିମ ପ୍ରାପ୍ତ ଶିକ୍ଷକ ନିଯୁକ୍ତିର ଆବଶ୍ୟକତାକୁ ଆମେ ଅସ୍ୱୀକାର କରୁ ନାହୁଁ । ମାତ୍ର ସେମାନଙ୍କ ନିଯୁକ୍ତି ପାଇଁ ଯେ ପାଞ୍ଚବର୍ଷ ଏବଂ ତହିଁରୁ ବେଶୀ କାର୍ଯ୍ୟ କରିଥିବା ଶିକ୍ଷକଙ୍କୁ ଛଟେଇ କରାଯିବ, ଏଥିରେ ଆମେ ଏକମତ ନୋହୁଁ ଏବଂ ତାହା ବିରୁଦ୍ଧରେ ଆମେ ଦୃଢ଼ ପ୍ରତିବାଦ ଜଣାଉ ଅଛୁ । ଯେଉଁ ନୂଆ ସ୍କୁଲ ସବୁ ପ୍ରତିଷ୍ଠା କରାଯାଉଛି, ତାଲିମ୍ ପ୍ରାପ୍ତ ଶିକ୍ଷକ ନ ଥିଲେ ସ୍କୁଲକୁ ମଞ୍ଜୁରୀ ଦିଆଯିବ ନାହିଁ ବୋଲି ମତ କଡ଼ାକଡ଼ି ଭାବରେ ଚାଳନ କରାଯାଉ । ଦଶ ବର୍ଷର ଅଭିଜ୍ଞ ଶିକ୍ଷକଙ୍କୁ ବିନା ତାଲିମ୍‌ରେ ତାଲିମ୍ ପ୍ରାପ୍ତ ବୋଲି ଗଣ୍ୟ କରାଗଲେ ଏବଂ ପାଞ୍ଚ ବର୍ଷର ଅଭିଜ୍ଞ ଶିକ୍ଷକଙ୍କ ପାଇଁ ସଂକ୍ଷିପ୍ତ ପାଠ୍ୟ କ୍ରମର ବ୍ୟବସ୍ଥା କରାଗଲେ ସରକାରଙ୍କ ଯଥାର୍ଥ ନ୍ୟାୟ-ଜ୍ଞାନର ପରିଚୟ ମିଳନ୍ତା । ସ୍କୁଲ ବିଭାଗର

ଡିରେକ୍ଟର ମହୋଦୟଙ୍କ କଥା ଓ କାର୍ଯ୍ୟରେ ଅସାମଞ୍ଜସ୍ୟ ଶିକ୍ଷକ ସମାଜକୁ ବିବ୍ରତ, ବିକ୍ଷୋଭଗ୍ରସ୍ତ କରୁଛି ଏବଂ ତାଙ୍କ ଖାଇବା ପଥରେ ଧୂଳି ଦେଉଛି ।

ସବୁ ସ୍କୁଲକୁ ଯାଇ ବହିଷ୍କୃତ ଶିକ୍ଷକଙ୍କ ପାଇଁ ଚେଷ୍ଟା କରିବା ସମ୍ଭବ ହେଉ ନାହିଁ । ଏଣେ ଅଫିସରେ ଅନେକ କାର୍ଯ୍ୟ ବ୍ୟାହତ ହେଉଛି । ମଣ୍ଡଳ ସଂଘ ସବୁ ଯଦି କ୍ରିୟାଶୀଳ ରହନ୍ତେ, ତେବେ ସେହି ସଂଘର କାର୍ଯ୍ୟକାରୀ କମିଟିର ସଭ୍ୟମାନେ ସମ୍ପୃକ୍ତ ସେକ୍ରେଟେରୀଙ୍କ ଉପରେ ପ୍ରଭାବ ପକାଇ ଶିକ୍ଷକଙ୍କୁ ଛଟେଇରୁ ରକ୍ଷା କରି ପାରନ୍ତେ । ତାହା ହେଉ ନ ଥିବାରୁ ମୁଁ ବଡ଼ ଦୁଃଖିତ । ମଣ୍ଡଳ ସମ୍ପାଦକମାନେ କର୍ତ୍ତବ୍ୟନିଷ୍ଠ, ପରାର୍ଥପରାୟଣ ଓ ଆଦର୍ଶ-ସ୍ଥାନୀୟ ନ ହେଲେ ସଂଘର ଉନ୍ନତି କେମିତି ହେବ ?

ସବୁ ମଣ୍ଡଳରେ ସଂଘ ଗଠିତ ହେଲା ନାହିଁ । ମଣ୍ଡଳସଂଘରୁ ଜିଲ୍ଲା ସଂଘର ସୃଷ୍ଟି କେବଳ ଯୋଜନାରେ ହିଁ ରହିଲା । ପ୍ରାଦେଶିକ କାର୍ଯ୍ୟକାରୀ କମିଟିର ସଭ୍ୟମାନଙ୍କ ଚିନ୍ତା ଧାରା କଚ୍ଛପଗତି ଅନୁସରଣ କଲା । ସମସ୍ତେ ଚାହାଁଲେ ୬୫ ବର୍ଷର ବୃଦ୍ଧ ଏହି ଅକିଞ୍ଚନ ଆଡ଼େ । ସଂଘର ସର୍ବାଙ୍ଗୀନ ଦାୟିତ୍ୱର ରଶି ମୋ ହାତରେ ଧରାଇ ଦେଇ ସିଏ ସୁଆଡ଼େ ନିଶ୍ଚିନ୍ତ । ମୁଁ ତ ମଣିଷ—କଳ ନୁହେଁ, ମୋର ଶକ୍ତି ସୀମାବଦ୍ଧ । ମୁଁ କେମିତି ସବୁ କାମ ତୁଲାଇ ପାରିବ ? ତାହା ଛଡ଼ା, ଏତିକ ବେଳୁ ଯଦି ଏ ମଠରେ ଚେଲା ନ ରହେ, ତେବେ ଭବିଷ୍ୟତରେ ଯେ ନୂଆ ହୋଇ ଚେଲା ରହିବ, ତା ପକ୍ଷରେ କାର୍ଯ୍ୟ ତୁଲାଇବା ଭାରି କଷ୍ଟକର ହେବ ।

# ମସୀ ଯୁଦ୍ଧ

## ମୁଖ୍ୟମନ୍ତ୍ରୀ ନନ୍ଦିନୀଙ୍କୁ ପତ୍ର

ମନ୍ତ୍ରିମଣ୍ଡଳ ଗଠିତ ହେବା ପରେ ପରେ ଅସଂଖ୍ୟ ଟେଲିଗ୍ରାମ ଓ ପତ୍ର ମାଧ୍ୟମରେ ସେମାନଙ୍କୁ ଅଭିନନ୍ଦନ ଜଣାଇ ଦିଆଯାଏ । ଆହୁରି ମଧ୍ୟ ବିଭିନ୍ନ ସ୍ଥାନରେ ସେମାନଙ୍କୁ ସମୂହ ଭାବରେ ବା ବ୍ୟକ୍ତିଗତ ଭାବରେ ସମ୍ବର୍ଦ୍ଧନା ଦିଆଯାଏ । ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ପ୍ରଦତ୍ତ ଫୁଲହାରରେ ମନ୍ତ୍ରୀ ମହୋଦୟ ଭାରାକ୍ରାନ୍ତ ହୋଇ ପଡ଼ନ୍ତି ଏବଂ ଚାଟୁକାରମାନଙ୍କ ଅଭିନନ୍ଦନ ପତ୍ର-ପାଠ ଓ ବକ୍ତୃତା ପରମ୍ପରାରେ ସେ ନିଜକୁ କୃତାର୍ଥ

ମଣ୍ଡଳ । ଏଭଳି ଅନୁଷ୍ଠାନ ଦ୍ୱାରା ଅଭିନନ୍ଦନକାରୀ ଓ ଅଭିନନ୍ଦିତ କେତେ ପରିମାଣରେ ଉପକୃତ ହୁଅନ୍ତି, ତାହା ସେହିମାନେ ଜାଣିଥିବେ; ମାତ୍ର ମୋ ବିଚାରରେ ଏହା ଗୋଟିଏ ବିରାଟ ଅନ୍ଧାନୁସରଣ ଛଡ଼ା ଆଉ କିଛି ନୁହେଁ । ମୁଁ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ତାଙ୍କର କାର୍ଯ୍ୟଭାର ଗ୍ରହଣ କରିବା ପରେ କିପରି ଭାବରେ ଆବେଦନ କରିଥିଲି, ତାହା ଏଠାରେ ଉଦ୍ଧାର କରୁଛି ।

ମହାଶୟା,

ଆପଣ ରାଜ୍ୟ-ଶାସନର ଉତ୍ତୁଙ୍ଗ ଶିଖରରେ ଆରୋହଣ କରି ପାରିବାର ନେପଥ୍ୟରେ ଦୁଇକୋଟି ଜନତାର ବିପୁଳ ସଦିଚ୍ଛା, ଅଜସ୍ର ଆଶୀର୍ବାଦ ଓ ସୀମାତୀତ ସମର୍ଥନ ହିଁ ସ୍ପଷ୍ଟ । ତେଣୁ ବ୍ୟକ୍ତିଗତ ବା ବିଭିନ୍ନ ସଂସ୍ଥା ପ୍ରଦତ୍ତ ଅଭିନନ୍ଦନରେ ଆପଣଙ୍କୁ ଭାରାକ୍ରାନ୍ତ କରିବାର ଆବଶ୍ୟକତା ଅଛି ବୋଲି ମୁଁ ମନେ କରୁ ନାହିଁ ।

ପୁଣି, ଏ ସଂଘର ପ୍ରତିଷ୍ଠା କାଳରୁ ଅଦ୍ୟାବଧି ଷୋଳ ବର୍ଷ ଭିତରେ ବିଭିନ୍ନ ସମୟରେ ଶାସନ-ରଙ୍ଗମଞ୍ଚରେ ଗୋଟିକ ପରେ ଗୋଟିଏ ଯେତେ ମନ୍ତ୍ରିମଣ୍ଡଳ ଅଭିନୟ କଲେଣି, ସେମାନଙ୍କୁ ଅଭିନନ୍ଦନ ଜଣାଇ-ବାରେ ମୋର ଆନ୍ତରିକତାର ଅଭାବ ନ ଥିଲେ ହେଁ, ଉତ୍ତର କାଳରେ ଅଭିନନ୍ଦନ-ପତ୍ର ଲେଖି ପଠାଇବାରେ ମୁଁ ବିଦ୍ୟା-ବୁଦ୍ଧି-ବିବେକ ଓ ସମୟର ଅପଚୟ କଲି ବୋଲି ଅନୁତାପ କରିବାକୁ ପଡ଼ିଛି ।

ଏଣୁ ମୁଁ ପରମ୍ପରାର ପ୍ରତିକୂଳରେ ଯାଇ ବିନୀତ ଭାବରେ ଜଣାଇ ଦେବାକୁ ଚାହେଁ ଯେ, ଯେ ପର୍ଯ୍ୟନ୍ତ ଶାସନର ବିଭିନ୍ନ କ୍ଷେତ୍ରରେ ବିଶେଷତଃ ଶିକ୍ଷା ବିଭାଗର ବେସରକାରୀ ସଂସ୍ଥାରେ ଆପଣଙ୍କ ସମାଜବାଦୀ ନିଯ୍ୟା-କଳାପର ରୂପାୟନ ନ ଘଟିଛି, ସେ ପର୍ଯ୍ୟନ୍ତ ଆପଣଙ୍କୁ ଅଭିନନ୍ଦନ ଜଣାଇବାର ପ୍ରଶ୍ନ ଉଠୁ ନାହିଁ ।

ବେସରକାରୀ ସ୍କୁଲ କଲେଜର ଚଉଦ ହଜାର ଶିକ୍ଷକ-ଶିକ୍ଷୟିତ୍ରୀ ଯେଉଁ ଦୁର୍ଗତି-ସାଗରରେ ଉବେଇ ଟୁବେଇ ହେଉଛନ୍ତି—ତଥାକଥିତ ଗଣତାନ୍ତ୍ରିକ ସଂସ୍ଥାରୂପୀ ପରିଚାଳନା ସମିତିଗୁଡ଼ିକର ସ୍ୱେଚ୍ଛାଚାରର ଶିକାର ହୋଇ ଅଚିନ୍ତନୀୟ ଅସମ୍ମାନ ଓ ଆର୍ଥିକ କ୍ଷତିକୁ ଭାଗ୍ୟଲିପି ରୂପେ ସହି

ଯିବାକୁ ବାଧ୍ୟ ହେଉଛନ୍ତି—ଭାରତର ମୁକ୍ତି ଦିବସଠାରୁ ଏ ପର୍ଯ୍ୟନ୍ତ ୨୫ ବର୍ଷ ଭିତରେ କୌଣସି ମନ୍ତ୍ରିମଣ୍ଡଳ ତାହା ଶୁଣିବାକୁ ଉତ୍କର୍ଣ୍ଣ ହୋଇ ନାହାନ୍ତି—ବିଚାର କରିବାକୁ ବୁଦ୍ଧି ବିବେକ ମଧ୍ୟ ଖଟାଇ ନାହାନ୍ତି ।

ଏଣୁ ଯେଉଁଦିନ ଏହି ବିରାଟ ଶିକ୍ଷକ ସମ୍ପ୍ରଦାୟ ସେମାନଙ୍କ ଦୁଃଖ ଦୁର୍ଦ୍ଦଶାର ଦୂରୀକରଣରେ ଆପଣଙ୍କ ବାସ୍ତବ ସହିଷ୍ଣୁତାର ସ୍ୱାକ୍ଷର ଦେଖିବେ, ସେହିଦିନ ସେମାନଙ୍କ ହୃଦୟର ନିଭୃତ ପ୍ରଦେଶରୁ ଆପଣଙ୍କ ଉଦ୍ଦେଶ୍ୟରେ ଅନର୍ଗଳ ପ୍ରଶଂସା ଓ ଅକୃତ୍ରିମ କୃତଜ୍ଞତା ଅଜାଡ଼ି ହୋଇ ପଡ଼ିବ ଏବଂ ଆପଣ ବେସରକାରୀ ଶିକ୍ଷା ଓ ଶିକ୍ଷକ ସମାଜର ତ୍ରାଣକର୍ତ୍ତା ଭାବରେ ଐତିହାସିକ ବ୍ୟକ୍ତି ହୋଇଯିବେ ।

ଭଗବାନ୍ ଆପଣଙ୍କୁ ଓ ଆପଣଙ୍କ ମୁଖ୍ୟ ମନ୍ତ୍ରିଙ୍କୁ ଦୀର୍ଘାୟୁ କରନ୍ତୁ ।

ଶୁଭାନୁଧ୍ୟାୟୀ

**ଶ୍ରୀ ବନମାଳୀ ବ୍ରହ୍ମଚାରୀ**

## ● ସ୍କୁଲ ସମ୍ପାଦକମାନଙ୍କ 'ଯୁଦ୍ଧଂ ଦେହି' ଆହ୍ୱାନ

(ସେପ୍ଟେମ୍ବର-୧୯୭୧)

ଶିକ୍ଷା-ସେକ୍ରେଟେରୀ ମାନ୍ୟବର ଶିକ୍ଷାମନ୍ତ୍ରୀଙ୍କ ଆଦେଶରେ ୧୯ । ୫ । ୭୧ ତାରିଖରେ ଯେଉଁ ସର୍କୁଲାର ଜାରି କଲେ, ତାହା ନିଶ୍ଚିତ ସତ୍ୟ ସମ୍ବଳିତ ଏବଂ ବେସରକାରୀ ସ୍କୁଲ କଲେଜଗୁଡ଼ିକରେ କାର୍ଯ୍ୟ କରୁଥିବା ଶିକ୍ଷକମାନଙ୍କ ଦାରୁଣ ଦୁର୍ଦ୍ଦଶା ସମ୍ପର୍କରେ ସରକାରଙ୍କ ସ୍ପଷ୍ଟ ସ୍ୱୀକୃତି ମୂଳକ, ଯାହା କି ଭୂତପୂର୍ବ ଶିକ୍ଷାମନ୍ତ୍ରୀମାନେ ବିଚାରକୁ ନେଇ ନ ଥିଲେ, ସମ୍ବାଦପତ୍ରର ସମ୍ପାଦକମାନେ ସେଥିପାଇଁ 'ସମ୍ପାଦକୀୟ' ଲେଖୁ ନ ଥିଲେ, ବିଭିନ୍ନ ଦଳ ଓ ମତର ରାଜନୈତିକ ନେତାମାନେ ବିଧାନସଭା ସଦନରେ ପାଟି ଫିଟାଉ ନ ଥିଲେ । ବରଂ, ଏମାନଙ୍କ ମଧ୍ୟରୁ ଅନେକେ ଶିକ୍ଷକ ସମ୍ପ୍ରଦାୟ ବିରୁଦ୍ଧରେ ବିଷୋଦ୍‌ଗାରଣ କରିବାକୁ ଭୁଲି ନାହାନ୍ତି ।

ଆଶ୍ଚର୍ଯ୍ୟ ଲାଗେ, ଏ ଦେଶର ତଥାକଥିତ ଶିକ୍ଷାବିତ୍, ରାଜନୀତିଜ୍ଞ ଓ ସାମ୍ବାଦିକମାନଙ୍କ ଚରିତ୍ର ବିଶ୍ଳେଷଣ କଲେ । ସ୍କୁଲର ଉତ୍ସବ ଓ ସଭା ସମିତିରେ ଯୋଗ ଦେବାପାଇଁ ଯଥେଷ୍ଟ ବାଟ ଖରଚ ଓ ଭତ୍ତା ଦେଇ ଏମାନଙ୍କୁ ଆମନ୍ତ୍ରଣ କରି ନେଲେ ଶିକ୍ଷାର ଅଧୋଗତି ଓ ଶିକ୍ଷକମାନଙ୍କ ଶୁଷ୍କ ଦୁର୍ଦ୍ଦଶା ଦେଖି ଏମାନେ ଶତକଣ୍ଠ ହୋଇଯାନ୍ତି କେବଳ । ଶିକ୍ଷକ ସମ୍ପ୍ରଦାୟର ଅକଥନୀୟ ଦୁର୍ଗତି ସମ୍ପର୍କରେ ମୁଣ୍ଡ ଖେଳାଇବାକୁ କେବେ ହେଲେ କର୍ତ୍ତବ୍ୟ ମନେ କରି ନାହାଁନ୍ତି ।

ଆମ୍ଭମାନଙ୍କ ଦୀର୍ଘକାଳ ଅରଣ୍ୟ ରୋଦନ ପରେ, ଭାଗ୍ୟକୁ ଯେଉଁ ଭଦ୍ରବ୍ୟକ୍ତି ୧୯୬୯ ବିକ୍ଷୋଭ-ବେଳେ ଆମ ଆୟୋଜିତ ସଭା-ମଞ୍ଚରେ ବିଶିଷ୍ଟ ସ୍ଥାନ ଅଧିକାର କରୁଥିଲେ, ସେହି ଶ୍ରୀ ଶରତ୍ କୁମାର କର ଆଜି ଆମ୍ଭମାନଙ୍କ ଭାଗ୍ୟବିଧାତା ରୂପେ ଅବତୀର୍ଣ୍ଣ । ସେ ମନ୍ତ୍ରୀ ଭାବରେ ଶପଥ ଗ୍ରହଣ କରିବାର ଅବ୍ୟବହିତ ପରେ ଶିକ୍ଷକମାନଙ୍କ ଅବୈଧ ଓ ଅପମାନ-ଜନକ ବହିଷ୍କାର ରୋକିବା ଲାଗି ଏବଂ ହକ୍ ଦରମା ଗଣ୍ଡାକ ଦେବାରେ ସମ୍ପାଦକମାନଙ୍କ ହଟଚମଟ ଉଦ୍ୟମର ବିଲୋପ ସକାଶେ ଶିକ୍ଷା-ସେକ୍ରେ-ଟେରୀଙ୍କ ଜରିଆରେ ନିଜର ଆନ୍ତରିକତା ପୂର୍ଣ୍ଣ ସହାନୁଭୂତିର ନିଦର୍ଶନ ରୂପେ ଯେଉଁ ଆଜ୍ଞା ପତ୍ର ପଠାଇଲେ, ତାହାହିଁ ୧୯ । ୫ । ୭୧ ର ଗୁରୁତ୍ୱ-ପୂର୍ଣ୍ଣ ସର୍କୁଲର ।

ବର୍ତ୍ତମାନ ଦେଖାଯାଉ, ଶିକ୍ଷାମନ୍ତ୍ରୀଙ୍କ ସହୃଦୟ ଅଭିଳାଷ ପୂରଣ କରିବା ଦିଗରେ କିଏ କି ପ୍ରକାର ପଦକ୍ଷେପ ନେଲେ । ସର୍କୁଲର ଶେଷ ପରିଚ୍ଛେଦରେ ଲେଖା ଅଛି—Copies of this letter have been sent to all Inspectors and D strict Inspectors, so that they assign appropriate priority to this item of work. ଏହା ସତ୍ତ୍ୱେ ପ୍ରାୟ ସବୁ ଡ଼ି.ଆଇ ଜୁଲାଇ ମାସ ଶେଷ ସପ୍ତାହରେ ଉପରୋକ୍ତ ସର୍କୁଲର ସବୁ ମ. ଇ. ସ୍କୁଲକୁ ପଠାଇଲେ । ଆଜି ୫ । ୯ । ୭୧ ତାରିଖ ଯୁଦ୍ଧା ଖବର ନେବାରେ ଜଣା ପଡ଼ୁଛି, ଭଦ୍ରକ, ପଦ୍ମପୁର, ପଞ୍ଚାମୁଣ୍ଡାଇ, ସୁନ୍ଦରଗଡ଼ ଓ ରାଉରକେଲା ଶିକ୍ଷା ଜିଲ୍ଲାର ସ୍କୁଲଗୁଡ଼ିକ ଏ ପର୍ଯ୍ୟନ୍ତ ସର୍କୁଲର ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ । ଆହୁରି କେତେକ ଶିକ୍ଷା ଜିଲାରେ ଏହିପରି ଅବସ୍ଥା ଘଟି ଥାଇପାରେ ।

ଡ଼. ଆଇ. ମାନେ ଧର୍ଚ୍ଚ୍ୟାଲଟିର ପ୍ରସ୍ତୁର ପାଇଁ ଦୀର୍ଘ ଦୁଇମାସ କାଳକ୍ଷେପଣ କରିବାର କାରଣ କ'ଣ ? ଯଦି ଗୁରୁତ୍ୱପୂର୍ଣ୍ଣ ପତ୍ର ପ୍ରତି ଏତେ ଭ୍ରୂକ୍ଷେପହୀନତା ପ୍ରକାଶ ପାଏ, ତେବେ ସାଧାରଣ ପତ୍ର ପଠାଇ-ବାରେ କେତେ ଆଳସ୍ୟ ଓ ଦାୟିତ୍ୱହୀନତା ପ୍ରକାଶ ପାଉ ନ ଥିବ । ଡ଼. ଆଇ. ଙ୍କ ଅଫିସ୍‌ରେ ରେଜିଷ୍ଟରରେ ସ୍କୁଲ ନାଁ ପୂରଣ କରାଯାଉଛି; ଅଥଚ ପତ୍ର ପଠାଯାଉ ନାହିଁ—ଏହା ତ ରାଜ୍ୟସାରା ଗୋଟାଏ ମାମୁଲି କଥା ହୋଇଗଲଣି । ଯଦି ସର୍କୁଲରଟି ଯଥାସମୟରେ ପ୍ରସ୍ତୁତ ହୋଇ-ଥାନ୍ତା, ତେବେ ଏ ବର୍ଷ ଯେତେ ଶିକ୍ଷକ ଛଟେଇ ହେଲେ ତାହାର ସଂଖ୍ୟା କମି ଯାଇଥାନ୍ତା ।

ଏଥିରୁ ପ୍ରମାଣିତ ହେଉଛି, ସର୍କୁଲରରେ ଲେଖାଥିବା ଶିକ୍ଷକ ଛଟେଇ ଓ ଚେକ୍ ଜରିଆରେ ଦରମା ପ୍ରାପ୍ତି କଥା ସବୁ ଡ଼. ଆଇ. ଙ୍କ ମନଃପୂତ ହୋଇ ନାହିଁ । କାରଣ ସ୍ୱରୂପ ଏ କଥା କୁହାଇ ପାରେ ଯେ, ଏହି ଦୁଇଟି ବିଷୟ କେତେକ ଦୁର୍ନୀତିପରାୟଣ ଡ଼. ଆଇ. ଙ୍କ ସ୍ୱାର୍ଥ ସାଧନ ପକ୍ଷରେ ଅନ୍ତରାୟ ସୃଷ୍ଟି କରିବାର ଆଶଙ୍କା ଅଛି । ବାଲେଶ୍ୱର-୧ ଶିକ୍ଷା ଜିଲ୍ଲା ଡ଼. ଆଇ. ଙ୍କ ଅଫିସର କିରାଣୀମାନେ ସର୍କୁଲର ପାଇବା ପରେ ଶିକ୍ଷକମାନଙ୍କୁ ଉପହାସ କରୁଥିବା କଥା ତ ବିଶ୍ୱସ୍ତ ସୂତ୍ରରୁ ଶୁଣି-ବାକୁ ମିଳିଲା ।

ଆହୁରି ଲକ୍ଷ୍ୟ କରିବାର କଥା, ବହିଷ୍କୃତ ଶିକ୍ଷକମାନଙ୍କ ଅଭିଯୋଗ ପତ୍ର ପାଇ ତଦନ୍ତ କରିବା ଓ ନଜର ନିଷ୍ପତ୍ତି ଦେବାରେ ଡ଼. ଆଇ. ମାନେ ଅବାଞ୍ଛନୀୟ ଅବହେଳା କରୁଥିବାର ଶୁଣାଯାଏ । ନିଷ୍ପତ୍ତି ସମ୍ପର୍କରେ ଶିକ୍ଷକମାନଙ୍କୁ ଅବହିତ କରାଯାଇ ଥିବାର ଆବଶ୍ୟକତା ଡ଼. ଆଇ. ମାନେ ବୁଝୁନ ଥିବା ଦୁଃଖର ବିଷୟ ।

ବ୍ୟାଙ୍କ ବା ଡାକ ଘରେ ସ୍କୁଲ ହିସାବ ଖୋଲିବା ସମ୍ବନ୍ଧରେ ସ୍କୁଲ ସମ୍ପାଦକମାନଙ୍କୁ ଦୃଢ଼ତାବ୍ୟଞ୍ଜକ ଭାଷାରେ କୌଣସି ଡ଼. ଆଇ. ଲେଖି ନାହାନ୍ତି ।

ବର୍ତ୍ତମାନ ସେକ୍ରେଟେରୀମାନଙ୍କ କଥା କହେ । ଶିକ୍ଷା-ସେକ୍ରେ-ଟେରୀଙ୍କ ସର୍କୁଲର ଏବଂ ତାହାକୁ ଅନୁସରଣ କରି ମୁଁ ଲେଖିଥିବା

୧୭।୬।୭୧ ତାରିଖର ନ ୮୧ ଦଫ ଓ ଖବର କାଗଜମାନଙ୍କରେ ମୋ ବିବୃତ୍ତି ସ୍କୁଲ ସମ୍ପାଦକମାନଙ୍କ ମଧ୍ୟରେ ଗୋଟାଏ ବଡ଼ ଧରଣର ହେଁଚେ ସୃଷ୍ଟି କରିଛି । ଶିକ୍ଷିତ ଓ ସାଧୁ ସଂପାଦକମାନେ ସର୍କୁଲରକୁ ସ୍ୱାଗତ କରି, ସ୍କୁଲ ଶିକ୍ଷକମାନଙ୍କ ଭାବୀ ଉନ୍ନତିର ପ୍ରତିଧ୍ୱନି ଶୁଣି ସନ୍ତୋଷ ଲାଭ କରୁଥିବା କେତେ ଅର୍ଦ୍ଧଶିକ୍ଷିତ, ଅଶିକ୍ଷିତ, ଜାଲ-ଜୁଆଚ୍ଚୋରି-ଦୁର୍ନୀତି-କୁଟନୀତି-ବିଶାରଦ, ଟାଉଟରି-ପ୍ରତାରଣା-ସର୍ବସ୍ୱ, ଠେଙ୍ଗାବାଡ଼ି-ହାତହତିଆର-ପରିଚାଳନାରେ ନିପୁଣ, ଶିକ୍ଷାନୁଷ୍ଠାନ ସଂଗଠନରେ ନିପଟ ଓଲୁ, ବିବେକ-ବିହୀନ, ପରିବାର-ପରିଜନ-କାନନ-କଣ୍ଠୀରବ ସେକ୍ରେଟାରୀମାନେ ନିଜକୁ ସରକାରଙ୍କ ଅପେକ୍ଷା ଅଧିକତର ଶକ୍ତିଶାଳୀ ମନେ କରି ସର୍କୁଲରକୁ ହସରେ ଉଡ଼ାଇ ଦେଇ କାର୍ଯ୍ୟ କରୁଛନ୍ତି ।

ଡି. ଆଇ. ଓ ଇନ୍‌ସ୍ପେକ୍ଟରମାନେ ବେସରକାରୀ ମ: ଇ: ସ୍କୁଲ ଓ ହାଇସ୍କୁଲ ପାଇଁ ନିଜର କର୍ତ୍ତବ୍ୟ ଅଜ୍ଞାତରେ ସୁଚାରୁରୂପେ ସମ୍ପାଦନା କରି ନ ଥିବାରୁ ଏହି ଶେଷୋକ୍ତ ସମ୍ପାଦକମାନଙ୍କର ବହପ ବଢ଼ି ଯାଇଛି ଏବଂ ସେମାନଙ୍କ ମନରେ "ଦେଖଇ ନେତ୍ର ଯାହା ଚଉଦିଗର, ସେ ସବୁର ଅଟଇ ମୁଁ ଅଧୀଶ୍ୱର" ଏହି ଭାବ ବଦ୍ଧମୂଳ ହୋଇ ଯାଇଛି । ସେମାନେ କହନ୍ତି ଆମ୍ଭେ ଶିକ୍ଷକ ନିଯୁକ୍ତ କରିଛୁ, ଆମେ ବାହାର କରି ଦେବୁ, ଡି. ଆଇ କିଏ କହିବାକୁ, ଡି. ପି. ଆଇ. କିଏ ଆମ ହାକିମ, ବ୍ରହ୍ମଗ୍ରହ ଆମର କଣ କରି ପକାଇବ ? ଇତ୍ୟାଦି । ସରକାର ସ୍କୁଲ ଚଳିବା ପାଇଁ ହଜାର ହଜାର ଟଙ୍କା ଦେବେ । 'ବିରାଟ ବାହୁବଳେ କୀଚକ ରାଜା' ପରି ସରକାରଙ୍କ ଟଙ୍କାରେ ବାହାଦୁରୀ ଦେଖାଇବା ପାଇଁ ଲାଜ ମାଡ଼େ ନାହିଁ ଏମାନଙ୍କୁ ।

ସେକ୍ରେଟେରୀ କୌଣସି ଶିକ୍ଷକ ବାହାର କରି ଦେଲେ ସେ ବିଚରା ସାହାଯ୍ୟ ପାଇଁ ଡି. ଆଇ. ବା ତାଙ୍କ ଉପର ହାକିମ ପାଖକୁ ଦୌଡ଼ନ୍ତି । ସେମାନେ ବି କହନ୍ତି—ବେସରକାରୀ ସ୍କୁଲରେ ଆମର କିଛି କରିବାର ନାହିଁ । ତୁମକୁ ଯିଏ ରଖିଛନ୍ତି, ସିଏ ବାହାର କରି ଦେବେ । ଏତିକରେ ହାକିମଙ୍କ କର୍ତ୍ତବ୍ୟ ସରିଯାଏ । ଯଦି ବା ସେ ସେକ୍ରେଟେରୀଙ୍କୁ ଶିକ୍ଷକଙ୍କ ଅନୁକୂଳରେ କିଛି ଲେଖନ୍ତି, ତେବେ ସେ ଉପରି-ଉକ୍ତ ପ୍ରକାରେ ଆଗେ କ୍ଷୁଦ୍ର ବକ୍ତୃତା ଦିଅନ୍ତି ।

ହାକମ ଯଦି ଲେଖନ୍ତେ ମୋର ନିର୍ଦ୍ଦେଶ ନ ମାନିଲେ ସ୍କୁଲର ଗ୍ରାଣ୍ଟ ବନ୍ଦ ହେବ ଏବଂ ପ୍ରକୃତରେ ଗ୍ରାଣ୍ଟ ବନ୍ଦ କରନ୍ତେ—ନିଜ ମନକୁ ବା ଡିରେକ୍ଟରଙ୍କ ଠାରୁ ଅନୁମତି ଗ୍ରହଣ କରି ହେଉ, ତେବେ ସେହି ଉଦ୍ଧତ ସେକ୍ରେଟେରୀମାନେ ଲଙ୍ଗୁଡ଼ଜାକି ହାକମଙ୍କ ଶରଣ ପଶନ୍ତେ । ଆଶ୍ଚର୍ଯ୍ୟର କଥା, ଅନେକ ସ୍ଥଳରେ ଡି: ଆଇ: ମାନେ ସେକ୍ରେଟେରୀଙ୍କଠାରୁ ଟଙ୍କା ଖାଇ ଶିକ୍ଷକଙ୍କ ସ୍ୱାର୍ଥ ଜଗୁ ନ ଥିବାର ମଧ୍ୟ ଦେଖାଯାଉଛି ।

ଦୀର୍ଘ କାଳର ଅଭ୍ୟାସରେ ଅଭ୍ୟସ୍ତ ଅସାଧୁ ସେକ୍ରେଟେରୀମାନେ ବର୍ତ୍ତମାନ ଶିକ୍ଷା ସେକ୍ରେଟେରୀଙ୍କ ସର୍କୁଲରକୁ ଗୁରୁତ୍ୱ ଦେଉ ନ ଥିବା ବସ୍ତୁସ୍ଥିର ବିଷୟ ନୁହେଁ । ତେଣୁ ସେମାନେ ମନ ଇଚ୍ଛା ଶିକ୍ଷକ ଛଟେଇ କରିବାରେ ଲଗି ପଡ଼ିଛନ୍ତି । ସେମାନେ ବର୍ତ୍ତମାନ ସୁଧା ଆଶା କରୁଛନ୍ତି— ଶିକ୍ଷା ସେକ୍ରେଟେରୀଙ୍କ ଧମକପୂର୍ଣ୍ଣ ସର୍କୁଲର ଗୋଟାଏ ଧୂଆଁବାଣ ଛଡ଼ା ଆଉ କିଛି ନୁହେଁ ।

ଚେକ ଜରିଆରେ ଦରମା ଦିଆଯିବା ଶୁଣି ସେମାନେ ଆତଙ୍କିତ ହୋଇ ପଡ଼ିଲେଣି । 'ବ୍ଲକସ୍, ଯଦି ନାସ୍ତି ଉପୁରି' ପରି ସେମାନଙ୍କର ଧାରଣା ହେଉଛି, ଗ୍ରାଣ୍ଟ ଓ ଉତ୍ତୃଟଙ୍କାରୁ ସାତମିତ ପଣି ନ ମିଳିଲେ କିଏ କାହିଁକି ସେକ୍ରେଟେରୀ ହେବ ? ତେଣୁ କିଏ କହୁଛନ୍ତି—ମୁଁ ବ୍ୟାଙ୍କରେ ହିସାବ ଖୋଲିବି ନାହିଁ । କିଏ କହୁଛନ୍ତି—ମାଷ୍ଟରମାନେ ଚୁକ୍ତି ଅନୁସାରେ ଦରମାରେ ରାଜି ନ ହେଲେ ମୁଁ ଚେକ୍ କାଟିବି ନାହିଁ । କାହାରି ମତରେ ଶିକ୍ଷକମାନଙ୍କ ଦରକାର ବେଳେ ଚେକ୍ କାଟିବାକୁ ରାଜି ନ ହେଲେ ସେମାନେ ବାଧ୍ୟ ହୋଇ କଳାପୋଟା ଦେବେ । କେହି କେହି ଶିକ୍ଷକମାନଙ୍କୁ ଜଣାଇ ଦେଲେଣି-—ତୁମେ ଯଦି ବ୍ଲକସ୍‌ରେ ରହିବାକୁ ଚାହଁ, ତେବେ କମ୍ ଦରମା ନେବ ବୋଲି ଆଗରୁ ବଣ୍ଡ ଲେଖି ଦିଅ । ଏହିପରି ନାନା କଥା । ଚେଲୁଣୀ ମୁଣ୍ଡରେ ତେଲ-ପସରା ରଖି ମନେ ମନେ ନାନା ପ୍ରଶ୍ନର ସମାଧାନ କରି ବାଟ ଚାଲୁଥିବା ବେଳେ ଗୋଟାଏ ପ୍ରଶ୍ନର 'ନାହିଁ' ବୋଲି ଉଚ୍ଚାରଣ କରି ମୁଣ୍ଡ ଟୁଙ୍ଗାରି ଦେବାରୁ ସବୁଯାକ ତେଲ ହଜାଇଥିବା କଥା ଲୋକ ମୁଖରୁ ଶୁଣାଯାଏ । ସେମିତି ସେ ଫଟେରୀ-ମାନେ ସରକାରଙ୍କ ଉଦ୍ଦେଶ୍ୟକୁ ପଣ୍ଡ କରି ଦେବା ଲଗି ଯେତେ ବାଲୁଆ-ଚକ୍କର କରୁଛନ୍ତି, ସେ ସବୁ ଶୂନ୍ୟରେ ମିଳେଇ ଯିବ ଏବଂ ଗ୍ରାଣ୍ଟ

ଟଙ୍କାକୁ ହାତରେ ଧରିବା ଓ ଆଖିରେ ଦେଖିବା ଯୋଗ ଜୁଟିବ ନାହିଁ । ସେମାନେ କାନରେ ଯାହା ଶୁଣିବେ କେବଳ ।

ସୁତରାଂ, ସମ୍ପାଦକମାନେ ବର୍ତ୍ତମାନ ଶିକ୍ଷା-ସେକ୍ରେଟେରୀଙ୍କ ସର୍କୁଲାରକୁ ପୂରାପୂରି ଅକାମି କରି ଦେବା ମତଲବରେ ଅଛନ୍ତି । ସରକାର କହୁଛନ୍ତି—ଆମ ନିର୍ଦ୍ଦେଶ ଅମାନ୍ୟ କଲେ ଦଣ୍ଡ ଦିଆଯିବ । ସମ୍ପାଦକମାନେ କହୁଛନ୍ତି—ତୁମେ ଡାଳେ ଡାଳେ ଗଲେ ଆମେ ପତ୍ରେ ପତ୍ରେ ଯିବୁଁ । ତୁମେ ଆମର କିଛି କରି ପାରିବ ନାହିଁ ।

ସମ୍ପାଦକମାନଙ୍କ ଏହି 'ଯୁଦ୍ଧଂ ଦେହି' ଡାକରାର ସମ୍ମୁଖୀନ ହେବାକୁ ସରକାର ସମ୍ପୂର୍ଣ୍ଣ ରୂପେ ପ୍ରସ୍ତୁତ ହୋଇ ଯିବା ଦରକାର । ତା ନ ହେଲେ ସରକାର ନିନ୍ଦିତ, ଅପଦସ୍ଥ ହେବେ, ତାଙ୍କର ମର୍ଯ୍ୟାଦା ନଷ୍ଟ ହେବ ଏବଂ ପରିଣାମରେ ଶିକ୍ଷକମାନଙ୍କ ଅସନ୍ତୋଷ-ଅନଳ ତୀବ୍ରତର ଭାବରେ ପ୍ରଜ୍ୱଳିତ ହୋଇ ସରକାରଙ୍କ ସତ୍ତା ଭସ୍ମୀଭୂତ କରି ଦେବ ।

## ● ଯାଜପୁର ଡ଼ି. ଆଇ. ଶ୍ରୀ ବାଞ୍ଛାନିଧି ମହାନ୍ତଙ୍କୁ ମୋର ପତ୍ର ଓ ତାଙ୍କ ଉତ୍ତର—

ନଂ ୫୮୮, ତା ୨୧ । ୭ । ୬୨ (ଜୁଲାଇ—୧୯୭୨)

ବିଷୟ—ଆପଣଙ୍କ ଅଫିସ ଆଗରେ ମୋର ୭।୮।୭୨ରୁ ଆମରଣ ଅନଶନ ସଂକଳ୍ପ ।

ମହାଶୟ,

ଏ ପର୍ଯ୍ୟନ୍ତ ରତନାଙ୍ଗ ଓ ଚନ୍ଦ୍ରଶେଖର ଇତ୍ୟାଦି ପରିଚାଳନା କମିଟିରେ କଳହ ଥିବା ସ୍କୁଲଗୁଡ଼ିକର ଶିକ୍ଷକମାନେ ଦରମା ପାଇଲେ ନାହିଁ । ଗତ ବର୍ଷର ବନ୍ୟା ଓ ବାତ୍ୟା ସଞ୍ଜାତ ବିପର୍ଯ୍ୟୟକୁ ଭୁଲି ନ ହେଉଣୁ ଏ ବର୍ଷର କରାଳ ବନ୍ୟା ଜାତିର ମେରୁଦଣ୍ଡକୁ ଭାଙ୍ଗିଦେବାକୁ ବସିଲଣି । ଉପରୋକ୍ତ ଶିକ୍ଷକମାନେ ବାର ଜାଗାରେ ବେଙ୍କିତ ହୋଇ କିପରି ଘୃଣ୍ୟ ଜୀବନଯାପନ କରୁଥିବେ, ତାହା ଯଦି ଆପଣ ଉପଲବ୍ଧି କରି ନ ପାରିଲେ—ରୋମ ସହର ଜଳିଗଲା ବେଳେ ସମ୍ରାଟ ନୀରୋଙ୍କ ବୀଣାବାଦନ ଭଳି ମନୋଗତି ଯଦି ଆପଣ ଦେଖାଇଲେ, ତେବେ ମୋତେ କହିବାକୁ ହେବ, ତଥାକଥିତ ଉଚ୍ଚ ଶିକ୍ଷା ଓ ଉଚ୍ଚ ପଦବୀ ମାତ୍ରମାନଙ୍କୁ କୁକୁରବୃତ୍ତିର ପ୍ରତୀକ ଛଡ଼ା ଆଉ କିଛି ନୁହେଁ ।

ଅଗଷ୍ଟରେ ମୋର ଲେଖାରେ ସୌଜନ୍ୟ ରହୁ ନାହିଁ ବୋଲି ସମାଲୋଚନା କରିଛନ୍ତି । ଯେଉଁ ଶିକ୍ଷକମାନଙ୍କର ଭାଗ୍ୟ-ଡୋର ଆପଣଙ୍କ ହାତରେ, ସେମାନଙ୍କ ଅଶ୍ରୁଳ ଆଖି ଓ ଶୁଷ୍କ ବଦନ ଯଦି ଆପଣଙ୍କ ଦାୟିତ୍ୱହୀନତା ଓ ନିର୍ଦ୍ଦୟତାର ପରିଚାୟକ ହୁଏ, ତେବେ ଆପଣ କେଉଁ ସାହସରେ ମୋ ଠାରୁ ସୌଜନ୍ୟ ଆଶା କରିବେ ?

ଉପରୋକ୍ତ ଶିକ୍ଷକମାନଙ୍କ ଦୁଃସହ ଦୁର୍ଗତିରେ ମୁଁ ଆପଣଙ୍କ ପରି ଆନନ୍ଦ ଲାଭ କରି ପାରିବି ନାହିଁ । ଆଜ ମୁଁ ଆପଣଙ୍କୁ ସାବଧାନ କରାଇ ଦେଉଛି—ଯେଉଁ ସବୁ ସ୍କୁଲର ଗ୍ରାଣ୍ଟ ବନ୍ଦ ଅଛି, ସେଠାରେ ଶିକ୍ଷକମାନଙ୍କ ପାଇଁ Direct payment ଲାଗି ଡିରେକ୍ଟରଙ୍କୁ ତୁରନ୍ତ ସୁପାରିସ୍ ନ କଲେ ମୁଁ ଆପଣଙ୍କ ଅଫିସ୍ ଆଗରେ ଆମରଣ ଅନଶନ ସଂକଳ୍ପରେ ବ୍ରତୀ ହେବି ।

ମୋର ଅନଶନ ୭ । ୮ । ୭୨ ରୁ ଆରମ୍ଭ ହେବ ।

ଆପଣଙ୍କର
**ବନମାଳୀ ବ୍ରହ୍ମଚାରୀ**

No. 2033/dt 26.7 72.

From.

Sri B. Mohanty, M.A., B.Ed., O. E. S.
District Inspector of Schools, Jajpur.

To

Sri Banamali Brambachari
The Organising Secretary
All Orissa Lower Secondary Teachers' Union.
Ref : Your letter No. 588 dt. 21.7.72

Sir,

I am surprised to see your letter cited above I equally realise like you about the pitiable condition of the teachers and have already moved the Director of Public Instruction (schools), Orissa for according permission for direct payment in this office letter No 895 dt. 8.7.72 and waiting for his orders. Whe

you are crying for two schools, I feel for many others and have written for direct payment to the teachers of eight schools including Chandra Sekhar M E. School, Krushnanagar and Ratlang M. E. School, to the Director of Public Instruction (S), Orissa. I may be wrong, but I feel you neither feel the limitation of others nor go through letters received from others and you get pleasure in writing letters using unwarranted words and hitting others. You might have realised the difficulties in solving problems during your attempt to solve the problem of Jamapara M. E School and you have also realised how you failed in your mission. How ever it has been solved by the undersigned through the problem solving techniques and scientific approach. Please also note that the problems of the teachers will never be solved by this type of approach. May I request you to read the book "How to win the friends and influence people" and change your attitude of approach. Coming to Ratlang M. E. School, I have also moved the Inspector of Schools, Cuttack-2 circle for approval of new president and members of he managing committee, and the amount of grant-in-aid will be released immediately after receipt of approval orders if there will be delay in getting orders from the Director of Public Instruction (S), Orissa for direct payment.

Thanking you,
Yours faithfully,
B. Mohanty
26. 7. 72
District Inspector of Schools, Jajpur

## ତାଙ୍କ ଚିଠିର ଉତ୍ତର ମୁଁ ନିମ୍ନ ପ୍ରକାରେ ଦେଲି

ବିଷୟ—ଆପଣଙ୍କ ୨୬।୭। ୭୨ ର ନଂ ୨୦୩୬ ପତ୍ର ।

ପ୍ରିୟ ମହାଶୟ,

ଆପଣଙ୍କର ଉପରୋକ୍ତ ପତ୍ର ପାଇଲି । ଆପଣ ୮ଟି ସ୍କୁଲର ଶିକ୍ଷକମାନଙ୍କୁ ସିଧା ସଳଖ ଦରମା ଦିଆଯିବା ଲାଗି ଡିରେକ୍ଟରଙ୍କୁ ସୁପାରିଶ କରିଥିବାରୁ ଅଶେଷ ଧନ୍ୟବାଦ ଦେଉଛି ।

ଆପଣଙ୍କ ୮।୭।୭୨ ର ନଂ ୧୮୯୫ ପତ୍ର ମୁଁ ପାଇ ନାହିଁ । ପାଇ-ଥିଲେ ଆପଣଙ୍କ ଅଫିସ ଆଗରେ ଆମରଣ ଅନଶନ କରିବ ବୋଲି ଜଣାଇ ନ ଥାନ୍ତି । ମୁଁ ରଭଲଙ୍ଗ ଓ ଚନ୍ଦ୍ରଶେଖର ଇତ୍ୟାଦି ଲେଖିଥିଲି, କେବଳ ଦୁଇଟି ସ୍କୁଲ ପାଇଁ ଲେଖି ନ ଥିଲି । ମୁଁ ୨୫।୬।୭୨ରେ "ସର୍କଲ ଇନ୍‌ସପେକ୍ଟର ଓ ଜିଲା ଇନ୍‌ସପେକ୍ଟରମାନଙ୍କୁ ସବିନୟ ଅନୁରୋଧ" ଶୀର୍ଷକ ଗୋଟିଏ ମୁଦ୍ରିତ ପତ୍ର ପଠାଇଥିଲି । ପୁଣି ୨୬।୬।୭୨ ତାରିଖର ନ ୨୫୩ ପତ୍ରରେ "ସିଧା ସଳଖ ଦରମା ଦେବା ବ୍ୟବସ୍ଥା" ବିଷୟ ଉଲ୍ଲେଖ କରିଥିଲି । ଏହି ପତ୍ରର ଶେଷ ପରିଚ୍ଛେଦରେ ଲେଖିଥିଲି—ଆଦର୍ଶ ଡି:ଆଇ: ରୂପେ, ଆଦର୍ଶ ଶିକ୍ଷକପ୍ରେମୀ ରୂପେ, ଆଦର୍ଶ ଅନ୍ୟାୟ—ଅସହିଷ୍ଣୁ ରୂପେ ଏବଂ ଆଦର୍ଶ ମାନବିକତାର ପ୍ରତୀକରୂପେ ଯାଜପୁରର ମୁଖ ଉଜ୍ଜ୍ୱଳ କଲେ ଆମ୍ଭେମାନେ ସୁଖୀ ହେବୁ ।

ମୋର ଉପରୋକ୍ତ ଦୁଇଟି ପତ୍ର ପାଇବାର ଏକ ସପ୍ତାହ ମଧ୍ୟରେ ଆପଣ ନିଜର କର୍ତ୍ତବ୍ୟ କରି ଥିବାରୁ ଅର୍ଥାତ୍ ଡିରେକ୍ଟରଙ୍କୁ ସୁପାରିସ୍ କରିଥିବାରୁ ମୁଁ ପ୍ରୀତ ଓ ବାଧିତ । ଆପଣଙ୍କ ୮।୭।୭୨ ତାରିଖର ପତ୍ର ମୁଁ ନ ପାଇ ପାରିବା ଯୋଗୁଁ, ଅଥବା ସମ୍ପୃକ୍ତ ସହକାରୀ ଭୁଲ ବଶତଃ ହେଉ ବା ଚାଞ୍ଚଲ୍ୟ ବଶତଃ ହେଉ ମୋ ପାଖକୁ ନ ପଠାଇବାରୁ ମୁଁ ବ୍ୟସ୍ତ ବିବ୍ରତ ହୋଇ ପଡ଼ିଲି ।

ଯମପଡ଼ା ସ୍କୁଲ ସମସ୍ୟା ଆପଣ ସମାଧାନ କରିଦେଲେ, ଆନନ୍ଦର କଥା । ମାତ୍ର ଭୂତପୂର୍ବ ସେକ୍ରେଟେରୀଙ୍କୁ ହଜାରେ ଟଙ୍କାରୁ ବେଶୀ ପୁରସ୍କାର ଦିଆଯିବା ଏବଂ ସେଥିପାଇଁ ଶିକ୍ଷକଙ୍କୁ ଶୋଷଣ କରାଯିବା ଅତି ଅନ୍ୟାୟ ହେଲା । ଶିକ୍ଷକମାନେ ପୁଣି ପୁନଃ ନିଯୁକ୍ତ ହୋଇ ପାରିଲେ

ନାହିଁ । ଆପଣ Direct paymentର ବ୍ୟବସ୍ଥା କରାଇଥିଲେ ଶିକ୍ଷକ-ମାନେ ବେଶୀ ପାଇଥାନ୍ତେ—ଭୂତପୂର୍ବ ସେକ୍ରେଟେରୀଙ୍କ ଧନଲିପ୍ସା ଧୂଳିରେ ମିଶିଥାନ୍ତା—ଶିକ୍ଷା ସେକ୍ରେଟେରୀଙ୍କ ୧୯।୫।୬୧ ଓ ୧୫।୫।୬୨ର ସର୍କୁଲରର ଅନୁସାରେ ଶିକ୍ଷକମାନେ ଗୃହକଷ୍ଟ ଭୋଗିଲେ ନ ଥାନ୍ତେ । ମୁଁ ଆପଣଙ୍କଠାରୁ ଆଇନର ଶାସନ ଆଶା କରୁଥିଲି, ମାତ୍ର ଆପଣଙ୍କ କାର୍ଯ୍ୟ ଏଥିର ମୋତେ ମର୍ମାହତ କଲା । ଆପଣଙ୍କ ନିଷ୍ପତ୍ତି ଅବୈଜ୍ଞାନିକ ଓ ଅବୈଧାନିକ ଦୋଷରେ ଦୂଷିତ ହୋଇ ପଡ଼ିଲା । ସମପଡ଼ା ନିଷ୍ପତ୍ତିରେ ଆପଣ ନିରପେକ୍ଷ ହୋଇ ନାହାନ୍ତି ଏବଂ ତାହା ନ ହେବାର କାରଣ ଆପଣଙ୍କ ବିଦ୍ୟାବୁଦ୍ଧିର ଅପାରଗତା ନୁହେଁ—ଆଉ କିଛି—ତାହା ନ କହିଲେ ଭଲ ।

ଉତଲଙ୍କ ସ୍କୁଲର ୩ ବର୍ଷର ଗ୍ରାଣ୍ଟ-ଇନ୍-ଏଡ୍ ପ୍ରାପ୍ୟ ଟ ୧୮୦୦୦-୦୦ ବୋଲି ଶୁଣିଲି । ପରିଚାଳନା କମିଟିର ପୁନର୍ଗଠନ ଉପରେ ଆପଣ ଯେତେ ଜୋର ଦେଲେ, ଶିକ୍ଷକମାନଙ୍କ ଦରମା ପ୍ରାପ୍ତି ବିଷୟରେ ସେତିକ ଜୋର ଦେଇଥିଲେ ଆପଣଙ୍କ ହୃଦୟବତ୍ତା ଓ ପରଦୁଃଖାନୁଭବ-ତାର ପରିଚୟ ମିଳିଥାନ୍ତା । କମିଟିର ପୁନର୍ଗଠନ ତ ବହୁଦିନରୁ ହୋଇ ଗଲାଣି । ତାହାକୁ ମଞ୍ଜୁର କରିବା ଦିଗରେ ସର୍କଲ ଇନ୍‌ସପେକ୍ଟରଙ୍କ ଉଦାସୀନତା କ୍ଷମଣୀୟ ନୁହେଁ କି ? ଶିକ୍ଷକମାନେ କଣ ଆପଣଙ୍କ ପାଖରେ ଚିତ୍କାର କରି ନାହାନ୍ତି ? ମୁଁ କଣ ଆପଣଙ୍କୁ ବାରମ୍ବାର କହି ନାହିଁ ? ମନ୍ତ୍ରୀ ଶ୍ରୀ ଶରତ୍ କରଙ୍କ ପାଖରେ ମୋର ଅନୁରୋଧ, ଇନ୍‌ସପେକ୍ଟରଙ୍କ ଜରିଆରେ ଆପଣଙ୍କ ପାଖରେ ପହଞ୍ଚି ନାହିଁ କି ? ଗୋଟାଏ ସ୍କୁଲର ଟ ୧୮୦୦୦-୦୦ ଆପଣଙ୍କ ପାଖରେ ଅଟକି ରହିବା, ମୁଁ ତ କହିବି, ଗୋଟାଏ ବିରାଟ ବିସ୍ମୟ ! ସେଥିପାଇଁ ଲେଖିଥିଲି, ଆପଣ ଶିକ୍ଷକମାନଙ୍କ ଦୁଃସହ ଦୁର୍ଗତିରେ ଆନନ୍ଦ ଲାଭ କରୁଛନ୍ତି ।

ଆପଣ ମୋତେ "How to win friends and influence People" ବହି ପଢ଼ିବାକୁ ଏବଂ ପ୍ରାର୍ଥନାର ପ୍ରଣାଳୀ (attitude of approach) ବଦଳାଇବାକୁ ପରାମର୍ଶ ଦେଇଛନ୍ତି । ଆପଣଙ୍କ ପରାମର୍ଶକୁ ମୁଁ ଅସମ୍ମାନ କରୁ ନାହିଁ । ମୁଁ ମୋ ଜୀବନର ବହୁ ପରୀକ୍ଷା (experiment) ରେ ଅଭ୍ୟସ୍ତ । ମୁଁ ୨୭ ବର୍ଷ ବୟସରେ ବିପତ୍ନୀକ

ହୋଇ, ଦୀର୍ଘକାଳର ପରିଗ୍ରହ ନ କରି ସେହିଦିନରୁ ବିଭିନ୍ନ ରୂପରେ ଦେଶ ଓ ଦେଶର ସେବା କରୁଛି । ଅସଂଖ୍ୟ ମହାପୁରୁଷ ଓ ମହାଜନଙ୍କ ପବିତ୍ର ଜୀବନ ଚରିତ କେବଳ ପଢ଼ି ନାହିଁ, ତହିଁରୁ ସାଧ୍ୟମତେ କିଛି କିଛି ନିଜ ଜୀବନରେ ଓ କାର୍ଯ୍ୟରେ ରୂପାୟିତ କରିବାକୁ ସାଧନା କରି ସଫଳ ହୋଇଛି । "କର୍ମ ଏବ ବ୍ରହ୍ମ" ଅର୍ଥାତ୍ ସତ୍‌କାର୍ଯ୍ୟ ମାଧ୍ୟମରେ ଭଗବାନଙ୍କୁ ଲାଭ କରିଯାଏ, ଏହାହିଁ ମୋର ଦର୍ଶନ । ସତ୍‌କାର୍ଯ୍ୟର ପ୍ରକାର ଓ ପରିସର ବଢ଼ାଇ ମୁଁ ଯେଉଁ ସବୁ ଜ୍ଞାନ ହାସଲ କରିଛି, ଗୀତା ଭାଗବତ ଧର୍ମଶାସ୍ତ୍ର ପଢ଼ି ସେତେ ଜ୍ଞାନ ପାଇଥାନ୍ତି କି ନାହିଁ ସନ୍ଦେହ । ମୁଁ ମୋ ଅଞ୍ଚଳରେ ନାନା ସାମାଜିକ ବିପ୍ଳବରେ ଅଗ୍ରଣୀ ହୋଇଛି—ଭାରତୀୟ ମୁକ୍ତି ଆନ୍ଦୋଳନରେ ୧୯୨୧ ରୁ ୧୯୪୭ ପର୍ଯ୍ୟନ୍ତ ନିଷ୍ଠାପର କର୍ମୀ ଭାବରେ କାମ କରିଛି—୧୯୪୨ରେ ମୋ ନାଁରେ ଓ୍ୱାରେଣ୍ଟ ପର୍ଯ୍ୟନ୍ତ ବାହାରିଥିଲା—ମୁଁ ଗୋଟିଏ ମଧ୍ୟ ଇଂରାଜୀ ସ୍କୁଲ ପ୍ରତିଷ୍ଠା କରି ତାକୁ ହାଇସ୍କୁଲ କରିଛି—୫ ବର୍ଷ ଗ୍ରାମପଞ୍ଚାୟତର ସରପଞ୍ଚ ହୋଇ ଗ୍ରାମୀଣ ବିକାଶରେ ମନପ୍ରାଣ ଢାଳି ଦେଇଛି—ଆଜି ଯାହା କରୁଛି, ତାହାର ଉଲ୍ଲେଖ ଅନାବଶ୍ୟକ । ସୁତରାଂ କପଟ ବନ୍ଧୁତା ରକ୍ଷା କରିବାକୁ ହୁଏ, କପଟ ଲୋକମାନଙ୍କୁ ପ୍ରତାରିତ କରିବାକୁ ହୁଏ, ସେ ସମ୍ପର୍କରେ ମୋର ଦୀର୍ଘ କାଳର ଅଜ୍ଞତାର ପ୍ରମାଣ ଉପରୋକ୍ତ କର୍ମ ତାଲିକାରୁ ମିଳିବ । ସଂସାର ଦାୟିତ୍ୱ ଗ୍ରହଣ ୧୬ ବର୍ଷ ହୋଇଗଲଣି । ଏଥିମଧ୍ୟରେ ମୁଁ ବହୁ ଶିକ୍ଷା ବିଭାଗୀୟ କର୍ତ୍ତୃପକ୍ଷଙ୍କ ସହିତ ମିଶିଛି । ସେମାନଙ୍କୁ ଆପଣଙ୍କ ପରାମର୍ଶ ଭଳି ନାନା ସମସ୍ୟାରେ ମଧୁର ଭାଷା ସହ ସବିନୟ ନିବେଦନ କରିଛି । ମାତ୍ର ଫଳତଃ ସଫଳତା ଲାଭ କରି ନାହିଁ । ତେଣୁ "କୃତାଞ୍ଜଳି-ପୁଟେ ନିବେଦନ"ର ପ୍ରଶ୍ନ ନାହିଁ । ଆଜିର ଅଧିକାଂଶ ଉଚ୍ଚ ଶିକ୍ଷିତ ଓ ଉଚ୍ଚ ପଦବୀ ଯୁକ୍ତ ବ୍ୟକ୍ତିଙ୍କ ଚରିତ୍ରରେ ଉଚ୍ଚ କୋଟୀର ମାନବିକତାର ସ୍ୱାକ୍ଷର ନାହିଁ, ଏହା ମୋର ବହୁ ଅଭିଜ୍ଞତା-ପ୍ରସୂତ ଉକ୍ତି ।

ଯେଉଁମାନେ ଆଳସ୍ୟ ଓ ଉଦାସୀନତାର ବଶବର୍ତ୍ତୀ ହୋଇ କର୍ତ୍ତବ୍ୟ କରୁ ନାହାନ୍ତି, ଦୁର୍ନୀତି କରୁଛନ୍ତି, ସ୍ୱାର୍ଥପାଇଁ ଆଶ୍ରିତଙ୍କୁ ପାଦରେ ଠେଲି ଦେଉଛନ୍ତି, ସେମାନଙ୍କ ବିରୁଦ୍ଧରେ ମୋ ଲେଖନୀ ଅବାରିତ ଭାବରେ ଚାଲିବ, ସେମାନଙ୍କ ଦୁର୍ନୀତିକୁ ପଦାରେ ପକାଇ ଦେବା ମୋର ପରମ ଓ ଚରମ କର୍ତ୍ତବ୍ୟ ହେବ । ଆପଣ କୁହନ୍ତୁ, ଆପଣଙ୍କ ୮।୬।୭୨

ତାଙ୍କଠାରୁ ସୁପାରିସ ଏପର୍ଯ୍ୟନ୍ତ ଉପରେଇରେ ମଞ୍ଜୁର କଲେ ନାହିଁ, ଏହା କଣ ସତ୍ୟ ହେବାର କଥା ? ଏହା କଣ କର୍ତ୍ତବ୍ୟ ପରାୟଣତାର ପରିଚୟକ ? ଏହା କଣ ଦୁଃଖୀର ଦୁଃଖ ପ୍ରତି ସମବେଦନାର ସୂଚକ ?

ମୁଁ କହିବାକୁ ଦ୍ୱିଧା କରିବ ନାହିଁ ଯେ, ଶାସକମାନଙ୍କ ନାଲି-ଫିତା କାରସାଦ ଜନିତ ଅରାଜକତା ପାଇଁ ଦେଶରେ ବିପ୍ଲବ ହେବ ଏବଂ ସେହି ବିପ୍ଲବର ଏକତମ କର୍ଣ୍ଣଧାର ରୂପେ ମୁଣ୍ଡ ଟେକିବାକୁ ମୁଁ ପ୍ରସ୍ତୁତ ହେଉଛି ।

ବିରକ୍ତ ହେବେ ନାହିଁ । ଶ୍ରୁତିସୁଖକର ନ ହେଲେ କ୍ଷମା ଦେବେ । "ବୁଭୁକ୍ଷିତ କିଂ ନ କରୋତି ପାପମ୍" ।

ଆପଣଙ୍କର
ଶ୍ରୀ ବନମାଳି ବ୍ରହ୍ମଚାରୀ

## ଶୃଣ୍ୱନ୍ତୁ ସର୍ବେ

### ● ଜିଲ୍ଲା ସ୍ତରୀୟ ସଂଘ ଗଠନ

(ଜାନୁଆରୀ—୧୯୭୧)

ଶିକ୍ଷକ ବନ୍ଧୁମାନେ, ଏପରି କେତେକ ସଂଘପ୍ରେମୀ ଭଦ୍ରବ୍ୟକ୍ତି ମତ ପ୍ରକାଶ କରୁଛନ୍ତି ଯେ, ହଜାର ହଜାର ଶିକ୍ଷକ ଥିବା ବିରାଟ ଭୂଖଣ୍ଡ-ପାଇଁ ଗୋଟିଏ ମାତ୍ର ପ୍ରାଦେଶିକ ଅନୁଷ୍ଠାନ କାର୍ଯ୍ୟ ନିର୍ବାହ କରିବା ସହଜ କଥା ନୁହେଁ । ପ୍ରତି ଜିଲ୍ଲାରେ ଜିଲ୍ଲା ସଂଘ ଗଠିତ ହେବା ଉଚିତ । ଏ କଥା ମୁଁ ବହୁଦିନରୁ ଚିନ୍ତା କରୁଛି ଏବଂ ସେହି ଉଦ୍ଦେଶ୍ୟରେ ପ୍ରତି ମଣ୍ଡଳରେ ସଂଘ ଗଢ଼ିବାପାଇଁ ଆହ୍ୱାନ ଦେଇ ଆସୁଛି । ମଣ୍ଡଳ ସଂଘ ସବୁ ପ୍ରତିଷ୍ଠିତ ହୋଇ ସାରିବା ପରେ ଜିଲ୍ଲାସଂଘ ପାଇଁ ମନଃସଂଯୋଗ କରିଥାନ୍ତି । ମାତ୍ର ଦୁର୍ଭାଗ୍ୟର ବିଷୟ, ଅବଧି ପ୍ରତି ମଣ୍ଡଳରେ ସଂଘ ସ୍ଥାପନ ସମ୍ପୂର୍ଣ୍ଣ ହେଲା ନାହିଁ । ଯେଉଁ କେତୋଟି ମଣ୍ଡଳ ସଂଘର ଶିଳାନ୍ୟାସ ଘଟିଛି, ତହିଁରୁ ଅଧିକାଂଶ ନିଷ୍କ୍ରିୟ ହୋଇ ପଡ଼ିଲେଣି । ଦୁଇ ତିନୋଟି ମଣ୍ଡଳ ସଂଘର ସେଠେଇସେଠେ ସାମୂହିକ ସ୍ୱାର୍ଥରକ୍ଷା କଥା

ଭୁଲିଯାଇ ବ୍ୟକ୍ତିଗତ ବା ସୀମିତ ଅଞ୍ଚଳର ସ୍ୱାର୍ଥଲାଗି କାର୍ଯ୍ୟ କରୁଥିବାର ଶୁଣାଯାଏ । ଏହା ବଡ଼ ନିନ୍ଦନୀୟ ଓ ଦୁର୍ଭାଗ୍ୟଜନକ ଘଟଣା । ପ୍ରାଦେଶିକ ସଙ୍ଘଠାରୁ ବିଚ୍ଛିନ୍ନ ହୋଇ ଗୋ-ଷ୍ପଦ ପରିମିତ ସଙ୍ଘ ମାଧ୍ୟମରେ ଶିକ୍ଷକ ସମ୍ପ୍ରଦାୟର ସ୍ୱାର୍ଥ ସାଧନ କରିବାର ଅଭିପ୍ରାୟ ଏକ ଉଦ୍ଭଟ କଳ୍ପନା ଛଡ଼ା ଆଉ କିଛି ନୁହେଁ ।

ସାଧାରଣତଃ, ଆମ୍ଭମାନଙ୍କୁ ମଣ୍ଡଳ ସଙ୍ଘ ଗଠନ ସଙ୍ଗେ ସଙ୍ଗେ ଜିଲ୍ଲାସ୍ତରୀୟ ସଙ୍ଘ ଗଠନ ପ୍ରତି ଦୃଷ୍ଟି ଦେବାକୁ ହେବ । ବର୍ତ୍ତମାନ ରାଜ୍ୟରେ ୪୦ଟି ଶିକ୍ଷା ଜିଲ୍ଲା ହେଲାଣି । ମଣ୍ଡଳଠାରୁ ବ୍ୟାପକ ଓ ରାଜନୈତିକ ଜିଲ୍ଲାରୁ କ୍ଷୁଦ୍ରତର ଶିକ୍ଷା-ଜିଲ୍ଲା ସ୍ତରୀୟ ସଙ୍ଘମାନ ଅଧିକତର କାର୍ଯ୍ୟଦକ୍ଷ ଓ ଶିକ୍ଷକ-ସ୍ୱାର୍ଥ-ସହାୟକ ହେବାର ଆଶା କରାଯାଏ । ଗତ ୨୯ । ୧୨ । ୭୦ ତାରିଖରେ ଅତାବିରା ମଧ୍ୟ ଇଂରାଜୀ ସ୍କୁଲ ପ୍ରଧାନ ଶିକ୍ଷକ ଶ୍ରୀ ମଙ୍ଗୁଳୁ ଚରଣ ପ୍ରଧାନଙ୍କ ପ୍ରଯତ୍ନରେ ବରଗଡ଼ ଶିକ୍ଷାଜିଲ୍ଲା ସଙ୍ଘ ଗଠିତ ହୋଇଯିବା ଅତ୍ୟନ୍ତ ଆନନ୍ଦର ବିଷୟ । ଏଇଟି ପ୍ରଥମ ଶିକ୍ଷା ଜିଲ୍ଲା ସଙ୍ଘ ଭାବରେ ପରିଚିତ ହେଲା । ମୁଁ ସେ ସଙ୍ଘର ସମ୍ମିଳନୀରେ ଉପସ୍ଥିତ ହୋଇ ଶିକ୍ଷକମାନଙ୍କର ଅଭୂତ ଉତ୍ସାହ ଲକ୍ଷ୍ୟ କଲି । ସେହି ସଙ୍ଘର କାର୍ଯ୍ୟକାରୀ କମିଟିର ସଭ୍ୟମାନେ ସମ୍ବଲପୁର ଜିଲ୍ଲାର ଅନ୍ୟ ଗୁରିଟି ଶିକ୍ଷା ଜିଲ୍ଲାରେ ସଙ୍ଘ ଗଠନର ଦାୟିତ୍ୱ ନେବାପାଇଁ ମୋତେ ପ୍ରତିଶ୍ରୁତି ଦେବା ପ୍ରଶଂସାର ବିଷୟ ।

ପ୍ରକୃତରେ ଜିଲ୍ଲା ସଙ୍ଘ ଅଭାବରୁ ଶିକ୍ଷକମାନଙ୍କର ସମସ୍ତ ସମସ୍ୟା କେନ୍ଦ୍ରୀଭୂତ ହୋଇ ଯାଉଛି । ଫଳତଃ ମୁଁ ଅକ୍ଳାନ୍ତ ପରିଶ୍ରମ କଲେ ହେଁ ସମସ୍ୟା ସମାଧାନ ମୋ ପକ୍ଷରେ ଅତ୍ୟନ୍ତ ଅସମ୍ଭବ ହୋଇପଡ଼ୁଛି । ପତ୍ରିକା ସମ୍ପାଦନ, ହିସାବପତ୍ର ରଖିବା, ସେଲ୍‌ଟାକ୍ସ ଓ ଇନ୍‌କମ୍-ଟାକ୍ସ ପାଇଁ ପ୍ରସ୍ତୁତି, ପ୍ରାପ୍ତ ଅଭିଯୋଗର ତଦନ୍ତ ପାଇଁ ସମ୍ପୃକ୍ତ ସ୍କୁଲକୁ ଯାଇ ସେକ୍ରେଟେରୀଙ୍କୁ ଭେଟିବା ଏବଂ ପ୍ରତିକାର ସମ୍ପର୍କରେ ବିଭାଗୀୟ କର୍ତ୍ତାମାନଙ୍କୁ ମୁଲାକାତ କରିବା, ଗୁରୁତ୍ୱପୂର୍ଣ୍ଣ ଚିଠି ଲେଖିବା, ଶିକ୍ଷକମାନଙ୍କ ବିଭିନ୍ନ ପ୍ରଶ୍ନର ଉତ୍ତର ଦେବା, ବିଭିନ୍ନ ମଣ୍ଡଳ ସଭାରେ ଯଥାସମ୍ଭବ ଯୋଗଦେବା, ପ୍ରଶ୍ନ ମୁଦ୍ରଣ ଓ ପ୍ରେରଣ ଇତ୍ୟାଦିର ତତ୍ତ୍ୱାବଧାନ କରିବା, ବାର୍ଷିକ ସାଧାରଣ ସଭାରେ ସମସ୍ତ ପ୍ରକାର

ଆୟୋଜନ କରିବା ଇତ୍ୟାଦି ଅନୈକ୍ଷିକ କାର୍ଯ୍ୟରେ ମୁଁ ଯେ ଅଣନିଃଶ୍ୱାସୀ ହୋଇ ପଡ଼ୁଛି, ଏହା ଅନ୍ତରଙ୍ଗିତ ବନ୍ଧୁ ବୋଲି ଧର୍ମସ୍ତେ ଉପଲବ୍ଧି କରି ପାରିବେ । ସତ କଥା କହିଲେ ଏବଂ ମୁଁ ଆତ୍ମ ପ୍ରଶଂସା କରୁଛି ବୋଲି କେହି ନ ଭାବିଲେ, ମୁଁ ହେଉଛି କାର୍ଯ୍ୟରେ ଦଂଶବାହୁ ଓ ଦଶଶିର । ଏ ପରିଣତ ବୟସରେ ଶରୀର ପ୍ରତି ଅତ୍ୟାଚାର କରି ମୁଁ କେତେ କାର୍ଯ୍ୟ ତୁଲାଇ ପାରିବ ? ତେଣୁ ମୋର ଅବ୍ୟାହତି, ଜିଲ୍ଲା ସଭାମାନ ଗଢ଼ି ଉଠୁ, କାର୍ଯ୍ୟ ବାଣ୍ଟି ହୋଇଯାଉ ଏବଂ ମୁଁ ନିଃଶ୍ୱାସ ମାରି ଗୁରୁତମ କାର୍ଯ୍ୟାନୁଷ୍ଠାନରେ ଓ ଅଧିକତମ ଶିକ୍ଷକ-ସ୍ୱାର୍ଥସାଧନା ଚିନ୍ତାରେ ବ୍ରତୀ ହୁଏ । କର୍ମୀମାନେ ସ୍ୱତଃପ୍ରବୃତ୍ତ ଭାବରେ ଆତ୍ମପ୍ରକାଶ କରି ମଣ୍ଡଳସଭା ଓ ଜିଲ୍ଲା ସଭା ଜରିଆରେ ଶିକ୍ଷକମାନଙ୍କୁ ଏକତାବଦ୍ଧ କରନ୍ତୁ ।

ମନ୍ତ୍ରିମଣ୍ଡଳ ଭାଙ୍ଗିଗଲା । ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକ ମଧ୍ୟ-ଇଂରାଜୀ ସ୍କୁଲଗୁଡ଼ିକର ପ୍ରାଥମିକୀକରଣ ପାଇଁ ଯେଉଁ ଯୋଜନା କରିଥିଲେ ଏବଂ ଯାହାର ରୂପାୟିତ ହେବାର ଠିକ୍ ସମ୍ଭାବନା ଥିଲା, ତାହା ବର୍ତ୍ତମାନ ଆକାଶରେ ମିଳାଇ ଗଲାପରି ମନେ ହୁଏ । ପ୍ରାଇମେରୀ ସ୍କୁଲ ଶିକ୍ଷକଙ୍କ ଦରମା ଓ ଭତ୍ତା ବଜାରଦର ହୁ ହୁ ବଢ଼ିଲା ପରି ବଢ଼ୁଛି । ସରକାରଙ୍କ ଅଭାବ ଘଟୁ ନାହିଁ । ଜମି ଉପରୁ ଖଜଣା ଛାଡ଼ି ଦିଆଗଲା, କୋଟି କୋଟି ଟଙ୍କା ସରକାରୀ ଭଣ୍ଡାରକୁ ଆସିଲା ନାହିଁ—ସେଥିରେ ସରକାର ଅଭାବର ସମ୍ମୁଖୀନ ହେଲେ ନାହିଁ । କେନ୍ଦୁପତ୍ର ଠିକାଦାରଙ୍କୁ ୫୦ ଲକ୍ଷଟଙ୍କା ରିହାତି ଦେବା ବେଳେ ଅଭାବର ପ୍ରଶ୍ନ ନ ଥିଲା । ଡେପୁଟି ଡିରେକ୍ଟର, ସହକାରୀ ଡିରେକ୍ଟର, ଇନସ୍ପେକ୍ଟର, ଜିଲ୍ଲା ଇନସ୍ପେକ୍ଟର ଓ ସବ୍‌ଇନସ୍ପେକ୍ଟରଙ୍କ ସଂଖ୍ୟା ବୃଦ୍ଧି ବେଳେ ଅଭାବ କଥା କେହି ଉଠାଇଲେ ନାହିଁ । ନୂଆ ନୂଆ ମାଇନର ସ୍କୁଲ, ହାଇସ୍କୁଲ ଓ କଲେଜ ଅବାଞ୍ଛିତ ଓ ଅନାବଶ୍ୟକ ଭାବରେ ମୁଣ୍ଡ ଟେକୁଥିଲେ ହେଁ ସେଗୁଡ଼ିକୁ ମଞ୍ଜୁରୀ ଦେବା ବେଳେ ଅଭାବ ଅନ୍ତରାୟ ହେଉ ନାହିଁ । ଏହିପରି ବହୁତ ଯୋଜନା ଅଭାବ ସତ୍ତ୍ୱେ କାର୍ଯ୍ୟକାରୀ କରାଯାଉଛି । ଅଥଚ ମଧ୍ୟ-ଇଂରାଜୀ ସ୍କୁଲ ଯାହାକି ପ୍ରାଥମିକ ଶିକ୍ଷାର ପ୍ରାଣକେନ୍ଦ୍ର, ଯାହାର ପରିଚାଳନା ନ ହିଁ-ନ ଥିବା କଳଙ୍କରେ କଳଙ୍କିତ, ଯାହାର ସର୍ବାଙ୍ଗ ନାନା ଦୁର୍ନୀତି ଓ ନାନା ବ୍ୟଭିଚାରରେ ଦୂଷିତ ତାହାର ପବିତ୍ର ବାତାବରଣର ପ୍ରତୀକ-ରୂପେ ପ୍ରାଥମିକୀକରଣ ପାଇଁ ଅର୍ଥର ଅଭାବ ଘଟୁଥିବା ବୁଝାଯିବା ପର୍ଯ୍ୟନ୍ତ

ଅଛନ୍ତି । ପରବର୍ତ୍ତୀ ମନ୍ତ୍ରିମଣ୍ଡଳ ଏହି ଅସ୍ୱଚ୍ଛର ହାତ୍ୱଦେଇ ଯୋଜନାକୁ ରଦ୍ଦ କରି ଦେବେ କି ଆମର ସବୁର ଐତିହାସିକ ବିକ୍ଷୋଭକୁ ସମର୍ଥନ ଜଣାଇଥିବା ରାଜନୈତିକ ନେତାମାନେ ଆମ ପ୍ରତି ପ୍ରସନ୍ନ ହେବେ, ତାହା ଜଣାପଡ଼ିବ ।

ମଧ୍ୟ-ଇଂରାଜୀ ସ୍କୁଲଗୁଡ଼ିକର ରୂପାନ୍ତରୀକରଣ ହେଉ ବା ନ ହେଉ, ଶିକ୍ଷକମାନଙ୍କ ପାଇଁ ସ୍ୱତନ୍ତ୍ରରେ ନିୟମିତ ବ୍ୟବସ୍ଥା ହୋଇଥିଲେ ଏବଂ ଏଡୁକେସନ ଆକ୍ଟର ସଂଶୋଧନ ଦ୍ୱାରା କରିବା ପାଇଁ ରୁଲ୍ ଓ ରେଗୁଲେସନ୍ ରଚିତ ଓ ବିଧାନ ସଭାରେ ଗୃହୀତ ହୋଇଥିଲେ ଶିକ୍ଷକ ସମ୍ପ୍ରଦାୟ ସର୍ବାଧିକ ସୁଖୀ ହୋଇଥାନ୍ତେ । ଦୈବ ଦୁର୍ଯୋଗକୁ ତାହା ମଧ୍ୟ 'ଆକାଶ କୁସୁମ' ହେଲା ।

ସମାଜରେ ଅସାଧୁତା କଲେରା ବେଗରେ ସଂକ୍ରମିତ ହେଉଛି । ତାହାର ଫଳରେ ମଧ୍ୟ-ଇଂରେଜୀ ସ୍କୁଲଗୁଡ଼ିକର ଶିକ୍ଷକମାନେ ନାନା ପ୍ରକାର ନିର୍ଯ୍ୟାତନାର ଶରବ୍ୟ ହେଉଛନ୍ତି । ମାଙ୍କଡ଼ ହାତରେ ଶାଳଗ୍ରାମ ପଡ଼ିଲେ ଯାହା ହୁଏ, ଅଶିକ୍ଷିତ, ଟିପ-ସର୍ବସ୍ୱ ଓ ଟାଉଟର—ପୁଙ୍ଗବ ସେକ୍ରେଟେରୀମାନେ ଯାହା କରୁଛନ୍ତି, ତାହା ଶୁଣି ଶୁଣି କାନ ବଧିର ହେଲାଣି । 'ଗୃହକର୍ତ୍ତା ଚାଳଗଛ ରୁଷି' ଏ ପ୍ରବଚନଟି ମଧ୍ୟ-ଇଂରାଜୀ ସ୍କୁଲ ଶିକ୍ଷକଙ୍କ ପ୍ରତି ସମ୍ପୂର୍ଣ୍ଣ ରୂପେ ପ୍ରଯୋଜ୍ୟ । ତାଲିମ ପ୍ରାପ୍ତ ଶିକ୍ଷକଙ୍କୁ ସହଜେ ନିକାଲି ହେବ ନାହିଁ ବୋଲି ସମସ୍ତେ ଜାଣୁଥିଲେ । ମାତ୍ର ଏ ବର୍ଷ ଦେଖା-ଗଲା, ସେମାନେ ବି ଅଣତାଲିମଙ୍କ ପରି ଛଟେଇ ହେଉଛନ୍ତି ।

କ'ଣ କରାଯିବ, ବର୍ତ୍ତମାନ ସବୁ ଶିକ୍ଷକ ଚିନ୍ତା କରୁଛନ୍ତି । ଗତ ୧୪ ବର୍ଷର ଅଭିଜ୍ଞତାରୁ ଦେଖାଗଲା, ବିଭିନ୍ନ ରାଜନୈତିକ ଦଳର ନେତା-ମାନେ ଯାହା କହନ୍ତି, ତାହା କରନ୍ତି ନାହିଁ । ସେମାନେ ନିଜର ସ୍ଥିତି ପାଇଁ, ସ୍ୱାର୍ଥପାଇଁ, କ୍ଷମତା ଲିପ୍ସା ପାଇଁ ଯେତେ ତତ୍ପର, ଯେତେ ବ୍ୟସ୍ତ, ସମାଜର ଅବହେଳିତ ସମ୍ପ୍ରଦାୟ ପାଇଁ ସେତେ ନୁହନ୍ତି । ବିଧାନସଭାର ବାହାର ଓ ଭିତର, ଏ ଦୁଇଟି ପରସ୍ପର ପ୍ରତି ସାମଞ୍ଜସ୍ୟ ନୁହେଁ । ବାହାରେ ଯେତେ ତୁମ୍ବି ତୋଫାନ କରି କୁହାଯାଏ, ଭିତରକୁ ଗଲେ ସେ ସବୁ ପାଶୋରି ଯାଏ । ଏଣୁ କାହାରି ଇଚ୍ଛାକୃତ ବା ଅନୁଗ୍ରହ

ଆଶୀର୍ବାଦ ଆମର କାମ୍ୟ ହେବା ଉଚିତ ନୁହେଁ । ଆମର ଦାବୀ ପୂରଣ ପାଇଁ ଆତ୍ମଶକ୍ତି ଆବଶ୍ୟକ । ପ୍ରେମ ସହରରେ ଦେନିକ ଭିତରେ ତିଆରି ହୋଇ ନାହିଁ । ଏ କଥାଟି ଆମର ଦିଗ୍‌ଦର୍ଶନ ହେବା ଉଚିତ । ଆମେ ବିକ୍ଷୋଭ ପଥରେ ଥରେ ଗୋଡ଼ ବଢ଼ାଇ ଥିଲୁଁ । ତାହା ଯଥେଷ୍ଟ ହେଲା ନାହିଁ । ନୂତନ ମନ୍ତ୍ରିମଣ୍ଡଳ ଗଠନ ପରେ ଆମକୁ ପୁଣି କୋସିସ୍ କରିବାକୁ ହେବ । ସଂକୀର୍ଣ୍ଣମନା ଶିକ୍ଷକଙ୍କର ଗୋଠ ଖଣ୍ଡିଆ ମାତ୍ର ଓ ମହତ୍ତର ସ୍ୱାର୍ଥପାଇଁ ଶକ୍ତି ଅନୁଯାୟୀ ଆର୍ଥିକ ସାହାଯ୍ୟ ଦେବାରେ କାର୍ପଣ୍ୟ ଆମ ବିକ୍ଷୋଭକୁ ମାଟି କରି ଦେଲା । ଆଗାମୀ ବିକ୍ଷୋଭ ଯେପରି ବ୍ୟାପକ ହେବ, ସେଥି-ପାଇଁ ଯେପରି ଅକୁଣ୍ଠିତ ଭାବରେ ଅର୍ଥ ସାହାଯ୍ୟ ମିଳିବ, ଶିକ୍ଷକମାନେ ପ୍ରସ୍ତୁତ ରୁହନ୍ତୁ ।

## ● ସଂଘର ଦଶ ବର୍ଷ ଓ ବିପ୍ଳବ ପାଇଁ ଆହ୍ୱାନ

(ଅପ୍ରେଲ—୧୯୬୭)

୧୯୫୭ ଆଦ୍ୟ ଜାନୁଆରୀରେ ଏହି ସଂଘ ଜୀବନ୍ୟାସ ପାଇଥିଲା । ତା ପରେ ଦୁଇ ତିନିବର୍ଷ ପରେ ସୁଦ୍ଧା କେତେକ ଶିକ୍ଷକ ଭାଇ ସଂଘ କିଛି କରୁ ନାହିଁ ବୋଲି ମୋତେ କହୁଥିଲେ । ଯେଉଁମାନେ ଏ କଥା କହୁଥିଲେ, ସେମାନେ ସଭ୍ୟ ଚାନ୍ଦା ଦେଉ ନଥିଲେ, ସଂଘ ମୁଦ୍ରିତ ପ୍ରଶ୍ନର ଗ୍ରାହକ ହେଉ ନ ଥିଲେ କିମ୍ବା ସଂଘ ପକ୍ଷରୁ ଆୟୋଜିତ ସଭା ସମିତିରେ ଯୋଗ ଦେଉ ନ ଥିଲେ । ମୁଁ ସେମାନଙ୍କ ଅଭିଯୋଗରେ ମର୍ମାହତ ହେଉଥିଲି ଏବଂ ସେମାନଙ୍କ ପ୍ରତି ମୋର ଏହି ଗୋଟିଏ ପ୍ରଶ୍ନ ଥିଲା—ଆପଣ ସାହାଯ୍ୟ ସହାନୁଭୂତି ପ୍ରକାଶ କରି ସଂଘକୁ ବଳିଷ୍ଠ କଲା ପରେ ଫଳ ପ୍ରାପ୍ତି ଆଶା କରିବେ, ନା ସଂଘ ଫଳ ଦେବା ପରେ ତାହାକୁ ଆପଣାର କରିବେ ?

ପ୍ରକୃତରେ ସେମାନଙ୍କ ଅଭିଯୋଗ ବଡ଼ ବିଚିତ୍ର ବୋଧ ହେଉ-ଥିଲା । ଏକିକ ଉତ୍କଳ ଉଦ୍ଦେଶ୍ୟରେ ପ୍ରତିଷ୍ଠିତ ସଂଘକୁ ସଙ୍ଗଠିତ କରିବା ପାଇଁ ଅନ୍ତ କମ୍‌ରେ ଦଶ ବର୍ଷ ଲାଗିଯିବ । ଏପରି ଅବସ୍ଥାରେ ମାତ୍ର ଦୁଇ ତିନି ବର୍ଷ ଭିତରେ ପୁଣି ସଂଘ ପ୍ରତି ଅସହଯୋଗ ମନୋଭାବ ପୋଷଣ କରି ଯେଉଁମାନେ ସଂଘ କିଛି କରୁ ନାହିଁ ବୋଲି କହୁଥିଲେ, ସେମାନଙ୍କ କଥା ବରଦାସ୍ତ କରିବା ଛଡ଼ା ମୋର ଅନ୍ୟ ଉପାୟ ନ ଥିଲା ।

ରାଜ୍ୟରେ ନାନା ଶ୍ରେଣୀର ମଧ୍ୟ ଇଂରାଜୀ ସ୍କୁଲମାନ ଅଛି । ସ୍ଥୂଳତଃ ସ୍କୁଲଗୁଡ଼ିକ ସରକାରୀ ଓ ବେସରକାରୀ ଏହି ଦୁଇଟି ପର୍ଯ୍ୟାୟର ଅନ୍ତର୍ଭୁକ୍ତ ହେଲେ ହେଁ ବେସରକାରୀ ମଧ୍ୟରେ ପୁଣି ଜିଲାବୋର୍ଡ଼ ପରିଚାଳିତ ଜିଲାବୋର୍ଡ଼ ସାହାଯ୍ୟ ପ୍ରାପ୍ତ, ଜିଲା ବୋର୍ଡ଼ରୁ ସାହାଯ୍ୟ ପାଉ ନ ଥିବା ଓ ବ୍ୟକ୍ତିଗତ (Proprietory) ଏ ପ୍ରକାର ବିଭିନ୍ନତା ଥିଲା । ସରକାରୀ ସ୍କୁଲଗୁଡ଼ିକ ମଧ୍ୟରେ କେତେକ A Type ଓ କେତେକ B. Type ଆଖ୍ୟାଧାରୀ ଥିଲେ । ସରକାରୀ ଓ ବେସରକାରୀ ଶିକ୍ଷକମାନଙ୍କ ସମସ୍ୟାରେ ସାମଞ୍ଜସ୍ୟ ନ ଥିଲା, ଏବେ ବି ନାହିଁ । ବେସରକାରୀ ଶିକ୍ଷକମାନେ ସ୍ଥାନ କାଳ ପାତ୍ର ଭେଦରେ ବିଭିନ୍ନ ସୁଖ ସୁବିଧା ଓ ଦୁଃଖ ଦୁର୍ଦ୍ଦଶା ଭୋଗୁଛନ୍ତି । "ମନୁଷ୍ୟ ଗୋଟିକେ ପ୍ରକୃତି ଗୋଟିଏ" ନ୍ୟାୟରେ କେଉଁ ଶିକ୍ଷକ ପରମ୍ପରାକୁ ଜାବୁଡ଼ି ଧରିବାକୁ ଭଲ ପାଉଛନ୍ତି ତ, ଆଉ କେହି ଧନକୁ ଆତ୍ମସମ୍ମାନଠାରୁ ଅପେକ୍ଷା ଉଚ୍ଚତର ସ୍ଥାନ ଦେଉଛନ୍ତି । ଅନ୍ୟ ଆଉ କାରଣ ହୋଇ ଇଚ୍ଛା ବିରୁଦ୍ଧରେ ଶିକ୍ଷକତାକୁ ଆଦରିଥିବା ଅନେକ ଶିକ୍ଷକ "ଚୋରକେ ପି' ଦଣ୍ଡେ ଜା" ନ୍ୟାୟରେ ବେକାରିଭିତ୍ତି ଘୁଞ୍ଚାଇ ଅନ୍ୟ ବୃତ୍ତି ପ୍ରତି ଉଦ୍‌ଗ୍ରୀବ ହୋଇ ରହିଁ ରହୁଛନ୍ତି । ଏହିସବୁ କାରଣରୁ ଶିକ୍ଷକତା ବୃତ୍ତି ଆସ୍ଥା ନ ଥିବା ଶିକ୍ଷକମାନେ ସଂଘ ପ୍ରତି ଆକୃଷ୍ଟ ହେବା ସହଜ ନୁହେଁ । ରାମକୃଷ୍ଣ ପରମହଂସଙ୍କ କଥାରେ "ବିଷ୍ଠା ପୋକ ବିଷ୍ଠାରେ ରହିବାକୁ ଭଲ ପାଏ" ନ୍ୟାୟରେ ଅନେକ ଶିକ୍ଷକ ଯେଉଁ ଅବସ୍ଥାରେ ଅଛନ୍ତି, ତାହା ଯେତେ ଖରାପ ହେଉ ପଛକେ ତହିଁରେ ହିଁ ମଜ୍ଜି ରହିଛନ୍ତି । ଏମାନଙ୍କର ସଂଘ ପ୍ରତି ବିଶ୍ୱାସ ନାହିଁ, ଅନୁରକ୍ତି ନାହିଁ, ଆନୁଗତ୍ୟ ନାହିଁ । ସଂଘ ପ୍ରତି ସ୍ନେହ ପ୍ରକାଶ କଲେ କାଳେ ମେନେଜିଂ କମିଟିର ସଭ୍ୟ-ମାନଙ୍କ ବିଷଦୃଷ୍ଟିରେ ପଡ଼ିବାକୁ ହେବ, ଏମିତି ଚିନ୍ତା କରୁଥିବା ଶିକ୍ଷକ ମଧ୍ୟ କମ୍ ନାହାନ୍ତି । ମେନେଜିଂ କମିଟି ଆଡ଼ୁ କୌଣସି ବିପଦର ସମ୍ଭାବନା ନ ଥିବା ଏବଂ ଆନନ୍ଦ ଓ ଶାନ୍ତିରେ କର୍ତ୍ତବ୍ୟ କରିବାକୁ ସୁଯୋଗ ମିଳୁଥିବା ସ୍କୁଲ ସବୁ ବି ଅଛି, ଯଦି ବା ଏ ପ୍ରକାର ସ୍କୁଲ ସଂଖ୍ୟା ମୁଷ୍ଟିମେୟ । ଏହି ଶିକ୍ଷକମାନେ ସ୍ୱାର୍ଥ କୈନ୍ଦ୍ରିକ ମନୋବୃତ୍ତିରେ ଚାଳିତ ହୋଇ ସେମାନଙ୍କର ସମଧର୍ମୀ, ଅତ୍ୟାଚାରିତ ଓ ଲାଞ୍ଛିତ ଶିକ୍ଷକ ଭାଇମାନଙ୍କ ପ୍ରତି ସହାନୁଭୂତିଶୀଳ ହୁଅନ୍ତି ନାହିଁ । ସରକାରୀ ଓ ଅର୍ଦ୍ଧ ସରକାରୀ ସ୍କୁଲର ଶିକ୍ଷକମାନେ ତ ଅପେକ୍ଷାକୃତ ସୁଖ ଶାନ୍ତିରେ ଥିବାରୁ ଏ ସଂଘ କେବଳ

ବେସରକାରୀ ଶିକ୍ଷକମାନଙ୍କ ପାଇଁ ଅଭିପ୍ରେତ ବଟୃଣ ଏଥିରୁ ଅଲଗା ରଖିବାକୁ ଉଚିତ ମନେ କରନ୍ତି । କେତେକ ସରକାରୀ ସ୍କୁଲର ପ୍ରଧାନ ଶିକ୍ଷକ ସ୍ୱେଚ୍ଛାପ୍ରବୃତ୍ତ ହୋଇ ସଭ୍ୟ ଚାନ୍ଦା ପଠାଇ ଦେଉଥିବା ସ୍ଥଳେ ଅନ୍ୟ କେତେକ କାଳେ ମୁଁ ଜୋର୍ କରି ସଭ୍ୟ ଚାନ୍ଦା ଆଦାୟ କରିବ ଓ ସେମାନଙ୍କର କିଛି କ୍ଷତି ହେବ, ଏଥିପାଇଁ ମୋତେ ତାଗିଦ୍ କରି ନେବାକୁ ମଧ୍ୟ ଭୁଲନ୍ତି ନାହିଁ ।

## ● ମୋର ଲକ୍ଷ୍ୟ ଓ ସାଧନା

ଶିକ୍ଷକମାନଙ୍କର ସରକାରୀ ବିଧାନ ଅନୁସାରେ ଶ୍ରେଣୀଗତ ବିଭେଦ ଓ ସ୍ୱକୃତିଦତ୍ତ ଚିନ୍ତାଧାରାରେ ଅସାମଞ୍ଜସ୍ୟ, ଏ ଦୁଇଟି ଉପରେ ଅଭେଦଭିତ୍ତିର ସ୍ତମ୍ଭ ଉତ୍ତୋଳନ କରିବା ସହଜ କଥା ନୁହେଁ । ତଥାପି ମୁଁ ଲାଗିଲି ସମସ୍ତଙ୍କୁ ସହଧର୍ମୀ କରିବା ପାଇଁ, ସମସ୍ତଙ୍କ ମଧ୍ୟରେ ଏକତାର ଶକ୍ତି ବଢ଼ାଇବା ପାଇଁ, ପରସ୍ପର ମଧ୍ୟରେ ଅଟଳ ଭ୍ରାତୃଭାବର ପ୍ରତିଷ୍ଠା ଲାଗି । କେହି ବିଶ୍ୱାସ କରନ୍ତୁ ବା ନ କରନ୍ତୁ, ମୁଁ ଭଗବାନଙ୍କୁ ସାକ୍ଷୀ ରଖି କହିବି, ଆଜକୁ ନ'ବର୍ଷ ଛ' ମାସ ହେଲା ମୁଁ ଅବିଶ୍ରାନ୍ତ ଭାବରେ ପାଗଳ ପରି ସଂଘର ସମୃଦ୍ଧି ପାଇଁ ଲାଗି ପଡ଼ିଛି । ମୋର ବାପ ନାହାଁନ୍ତି, ମା ନାହାଁନ୍ତି, ଭାଇଭଉଣୀ ନାହାଁନ୍ତି, ସ୍ତ୍ରୀ ନାହିଁ, ପୁଅ ନାହିଁ, ଏକମାତ୍ର କନ୍ୟା ମୋର କାର୍ଯ୍ୟବ୍ୟସ୍ତତା ଓ ପରାର୍ଥ-ପ୍ରବୃତ୍ତି ଯୋଗୁଁ ସମୁଚିତ ସ୍ନେହରୁ ବଞ୍ଚିତା । ମୁଁ ମୋ ଘରକୁ ଏକା । ଏହି ସାଂସାରିକ ନିଃସଙ୍ଗତା ଲାଗି ନିଖିଳ ଉତ୍କଳର ଶିକ୍ଷକ ସମାଜକୁ ମୁଁ ଆପଣାର ବୋଲି ଧରି ନେଇଛି ଏବଂ ସେମାନଙ୍କ ନିଷ୍ପ୍ରଭ ମୁଖମଣ୍ଡଳକୁ ପ୍ରଫୁଲ୍ଲ କରିବା ପାଇଁ, ସେମାନଙ୍କ ଅଧରରେ ହାସ୍ୟରେଖା ଫୁଟାଇବା ପାଇଁ, ସେମାନଙ୍କ ହୃଦୟକୁ ବେଦନାମୁକ୍ତ କରିବା ପାଇଁ ଓ ସେମାନଙ୍କୁ ସସମ୍ମାନରେ ସମାଜବାଦର ମାଧୁରୀ ଚଖାଇବା ପାଇଁ ସଂକଳ୍ପ କରିଛି । ଏହାଛଡ଼ା ମୋର ବ୍ୟକ୍ତିଗତ ସ୍ୱାର୍ଥ କିଛି ନାହିଁ—ସଂଘ ମାଧ୍ୟମରେ ସୌଭାଗ୍ୟର ପିରାମିଡ୍ ରଚନା ମୋ କଳ୍ପନାର ବାହାରେ । ନିଜକୁ ସଂଘର ସର୍ବମୟ କର୍ତ୍ତା ନ ବୋଲି ସେବକରୂପେ ପରିଚିତ ହେବାକୁ ଗୌରବ ବୋଧ କରେ ।

ଗତ ୯ ବର୍ଷ ଭିତରେ ବାର୍ଷିକ ଅଧିବେଶନ ଓ ଆଞ୍ଚଳିକ ସଭାମାନ ହୋଇଛି । ବର୍ଷକୁ ଦୁଇଥର ଲେଖାଏ ପ୍ରାଦେଶିକ କାର୍ଯ୍ୟକାରୀ କମିଟିର

ବୈଠକ କରିଛୁ । ଆହୂତ ଓ ଅନାହୂତ ଭାବରେ ବିଭିନ୍ନ ଅଞ୍ଚଳର ଅନେକ ସ୍କୁଲକୁ ଯାଇ ସଂଘର ବାର୍ତ୍ତା ପ୍ରଚାର କରିଛୁ । ବିଭିନ୍ନ ପ୍ରଚାରପତ୍ର (Pamphlet) ଓ ପତ୍ର ଜରିଆରେ ଶିକ୍ଷକମାନଙ୍କୁ ସଂଘ ପ୍ରତି ଆକୃଷ୍ଟ ହେବାକୁ ପ୍ରୟାସ କରିଛୁ । ସଂଘର ମର୍ଯ୍ୟାଦା ବୃଦ୍ଧି ତଥା ଶିକ୍ଷକମାନଙ୍କର ଜ୍ଞାନ ଗୌରବର ପରିଚୟ ଦେବାପାଇଁ ଓ ସେମାନଙ୍କ ଦୁଃଖ ଦୈନ୍ୟର ସମ୍ବାଦ ପରିବେଷଣ ମାଧ୍ୟମରେ କର୍ତ୍ତୃପକ୍ଷ ଓ ସର୍ବସାଧାରଣଙ୍କ ଚିନ୍ତା ରାଜ୍ୟରେ ଆଲୋଡ଼ନ ସୃଷ୍ଟି କରିବାକୁ "ଶିକ୍ଷକ-ଦର୍ପଣ" ପ୍ରକାଶ କରିଛୁ । ସଂଘର ଅର୍ଥ ସଂସ୍ଥାକୁ ବଳିଷ୍ଠ କରିବା ଲାଗି ସାମୟିକ ପରୀକ୍ଷା-ଗୁଡ଼ିକ ଉଦ୍ଦେଶ୍ୟରେ ପ୍ରଶ୍ନପତ୍ର ମୁଦ୍ରଣ ଓ ଛାତ୍ରୋପଯୋଗୀ କେତେ ଖଣ୍ଡ ପାଠ୍ୟ ପୁସ୍ତକର ପ୍ରକାଶରେ ମଧ୍ୟ ହାତ ଦେଇଛୁ । ଅବୈଧ ଭାବରେ କାର୍ଯ୍ୟଚ୍ୟୁତ ଶିକ୍ଷକଙ୍କୁ ପୁନଃନିଯୁକ୍ତ କରିବା ଲାଗି ଓ ବାକି ଦରମାରୁ ବଞ୍ଚିତ ଶିକ୍ଷକମାନଙ୍କ ପ୍ରାପ୍ୟ ଆଦାୟ ସକାଶେ ମୁଁ ଅବହେଳା କରି ନାହିଁ ।

କିନ୍ତୁ ଏ କଥା ଖୁବ୍ ସତ ଯେ, ସଂଘର ଅର୍ଥସଂସ୍ଥାକୁ ମଜଭୁତ କରିବା ଆମ୍ଭମାନଙ୍କର ଏକମାତ୍ର ଲକ୍ଷ୍ୟ ହେବା ଉଚିତ୍ ନୁହେଁ । ତାହା ସଙ୍ଗେ ସଙ୍ଗେ ମାନିବାକୁ ହେବ, ଆମ୍ଭମାନଙ୍କ ସର୍ବଶ୍ରେଷ୍ଠ ଲକ୍ଷ୍ୟ ସାଧନ ଦିଗରେ ଧନର ଆବଶ୍ୟକତା ମଧ୍ୟ ଅନିବାର୍ଯ୍ୟ ।

ସଂଘର ଆର୍ଥିକ ଦିଗ କଥା ଛାଡ଼ି ଦେଲେ ଶିକ୍ଷକମାନଙ୍କ ପକ୍ଷରେ ଯାହା ପରମ ଓ ଚରମ ଧ୍ୟେୟ ବା କାମ୍ୟ, ସେ ଦିଗରେ ଆମେ କେତେ ଆଗେଇଛୁ ତାହା ଭାବିଲେ ହତାଶ ହେବାକୁ ପଡ଼େ ।

ସମଗ୍ର ରାଜ୍ୟରେ ତିନି ହଜାରରୁ ଅଧିକ ମ: ଇ: ସ୍କୁଲ ଅଛି । ଏଥିରୁ ସରକାରୀ ସ୍କୁଲ ସଂଖ୍ୟା ପାଞ୍ଚଶରୁ କିଛି ବେଶୀ ହୋଇପାରେ । ସଂଘ ପ୍ରତି ସମର୍ଥନ ପ୍ରକାଶ କରୁଥିବା ସ୍କୁଲ ସଂଖ୍ୟା ୬୪ରୁ ଆରମ୍ଭ ହୋଇ ବର୍ତ୍ତମାନ ବାରଶହ ଯାଏ ହେଲଣି । ଦେଖା ଯାଉଛି ପ୍ରତି ବର୍ଷ ଥୋକେ ସଂଘରେ ମିଶୁଛନ୍ତି ତ କେତେକ ସଂଘ ତ୍ୟାଗ କରୁଛନ୍ତି । ଅବିଚ୍ଛିନ୍ନ ଭାବରେ ସଂଘ ପ୍ରତି ସ୍ନେହ ପ୍ରକାଶ କରି ଆସୁଥିବା ସ୍କୁଲ ମଧ୍ୟ ଅନେକ ଅଛନ୍ତି ଏବଂ ସେମାନଙ୍କ ପାଇଁ ମୁଁ ଗର୍ବ, ଗୌରବ ଓ ପରମାନନ୍ଦ ଅନୁଭବ କରୁଛି । ସଂଘ ବାହାରେ ଯେଉଁ ତେରଶହ ସ୍କୁଲ ରହିଲେ, ତାହା ମୋର ସାଙ୍ଗଠନିକ ଅକ୍ଷମତା ସୂଚାଇ ଦେଉଛି, କି ସେହି ସ୍କୁଲଗୁଡ଼ିକର ନିର୍ବୁଦ୍ଧିର

ମନୋବୃତ୍ତିର ସାକ୍ଷ୍ୟ ଦେଉଛୁ, ତାହା ସମସ୍ତେ ବିଚାର କରନ୍ତୁ । ଏପରି ଅବସ୍ଥା ଆମର ଏକମୁଖୀ ହୋଇ କାର୍ଯ୍ୟ କରିବାରେ ଅନ୍ତରାୟ ସୃଷ୍ଟି କରୁ ନାହିଁ କି ?

ବାର୍ଷିକ ସାଧାରଣ ସଭାରେ ଶତକଡ଼ା ସ୍କୁଲର ପ୍ରତିନିଧି ଯୋଗ ଦେଉ ନ ଥିବା ଆମର ଏକତା ଜ୍ଞାନକୁ ଉପହାସ କରୁ ନାହିଁ କି ?

ଆଞ୍ଚଳିକ ସଭାରେ ଅତି ନିକଟତମ ସ୍କୁଲରୁ କୌଣସି ଶିକ୍ଷକ ଯୋଗ ନ ଦେବା ଏବଂ ପ୍ରତି ସ୍କୁଲରୁ ଧର୍ମକୁ ଆଖିଠାର ମାରିବା ପରି ଜଣେ ଜଣେ ଶିକ୍ଷକ ଉପସ୍ଥିତ ହେବା ଆମ ସଙ୍ଘ ପକ୍ଷରେ ଲଜ୍ଜାର ବିଷୟ ନୁହେଁ କି ?

ଆମେ ପୁସ୍ତକ କାରବାରରେ ବଜାରଦର ସହ ସାମଞ୍ଜସ୍ୟ ରଖିଲେ ହେଁ ଏବଂ ଆମ ପୁସ୍ତକ ନିଶ୍ଚିତ ଭାବରେ ଅପେକ୍ଷାକୃତ ଉତ୍କୃଷ୍ଟ ହୋଇ ଥିଲେ ହେଁ ଯେଉଁ ସ୍କୁଲଗୁଡ଼ିକ ବ୍ୟକ୍ତିଗତ ଅନୁଷ୍ଠାନରୁ ପୁସ୍ତକ କିଣିବାରେ ଉତ୍ସାହ ଦେଖାଉଛନ୍ତି ଏବଂ ଶିକ୍ଷା ବିଭାଗୀୟ କାର୍ଯ୍ୟାଳୟରେ ନିଜକୁ କିରାଣିବାବୁଙ୍କ କଙ୍କରବତ୍ ଦେଖାଇ ହୋଇ ତାଙ୍କଠାରୁ ପୁସ୍ତକ କିଣି ତାଙ୍କୁ କୃତାର୍ଥ କରିବା ସଙ୍ଗେ ସଙ୍ଗେ ନିଜେ କୃତାର୍ଥ ହେଲେ ବୋଲି ଭାବୁଛନ୍ତି ଏବଂ କିରାଣିଙ୍କ ମୁଖ-ନିଃସୃତ ମୋ ବିରୁଦ୍ଧରେ କୁତ୍ସା ପ୍ରଚାରକୁ ବିନା ପ୍ରତି-ବାଦରେ ଶୁଣିବାକୁ ଶ୍ରେୟସ୍କର ମନେ କରୁଛନ୍ତି, ସେହି ଶିକ୍ଷକମାନଙ୍କୁ ଜୁହାର କରିବା ଛଡ଼ା ମୋର ଅନ୍ୟ ଗତି ନାହିଁ ।

ସଙ୍ଘ ପ୍ରକାଶିତ ପ୍ରଥମ ସଂସ୍କରଣର ବହି ମୁଁ ବାଧ୍ୟତାମୂଳକ ଭାବରେ ପୁସ୍ତକର ଗ୍ରାହକ ସ୍କୁଲକୁ ପଠାଇ ଥାଏ । ବହି ଖଣ୍ଡିକର ମୂଲ୍ୟ ଲାଇବ୍ରେରୀ ଫଣ୍ଡରୁ ଦିଆଯାଇ ପାରିବ । ଅନେକ ଶିକ୍ଷକ ମୋର ଏ ପ୍ରକାର କାର୍ଯ୍ୟର ପ୍ରତିବାଦ ବଡ଼ ଅସୁନ୍ଦର ଭାଷାରେ କରିଥାନ୍ତି । ଏହା କଣ ସଙ୍ଘ ପ୍ରତି ଅନୁରକ୍ତିର ଲକ୍ଷଣ ?

ସ୍କୁଲଟିଏ ପ୍ରତିଷ୍ଠା କଲେ ତହିଁରେ ଛାତ୍ର ଓ ଶିକ୍ଷକମାନଙ୍କର ତାଲିକା ବହି ପ୍ରସ୍ତୁତ ହୁଏ । ଗାଁରେ ନାଚ ବା ପୂଜା ହେଲେ ଚନ୍ଦା ଦାତାମାନଙ୍କର ତାଲିକା ତିଆରି କରାଯାଏ । ସେହିପରି ଆମର ରେଜେଷ୍ଟ୍ରୀ-ଭୁକ୍ତ ସଙ୍ଘ ପାଇଁ ସଭ୍ୟମାନଙ୍କ ତାଲିକା ବହି ନିତାନ୍ତ

ପ୍ରତ୍ୟୋଜନୀୟ । ମୁଁ ପ୍ରାୟ ତିନ ବର୍ଷ ହେଲା ପ୍ରତି ପରୀକ୍ଷା ସମୟରେ ଥରେ ଲେଖାଏଁ ନଅ ଥର ଶିକ୍ଷକମାନଙ୍କ ନାମ ଓ ଯୋଗ୍ୟତା ଜଣାଇବା ପାଇଁ ଆବେଦନ କରି ପାରିଲିଣି । ମାତ୍ର ହାୟ, ଅତି ଅଳ୍ପସଂଖ୍ୟକ ସ୍କୁଲ ମୋ ଅନୁରୋଧ ରକ୍ଷା କରିଛନ୍ତି । ସେହି ତାଲିକା ଛପାଇ ହାସ୍ୟାସ୍ପଦ ହେବା ଅପେକ୍ଷା ମୋଟେ ନ ଛପାଇ ଇଜ୍ଜତ ରଖିବା ବିଧେୟ ବୋଲି ସିଦ୍ଧାନ୍ତ କରିବାକୁ ବାଧ୍ୟ ହେଉଛି ।

ଅନେକ ପ୍ରାଥମିକ ସଂଘର କ୍ରିୟାକଳାପର ଉଦାହରଣ ଦେଇ ଆମ ସଂଘ କିଛି କରୁ ନାହିଁ ବୋଲି ଯୁକ୍ତ କରିଥାନ୍ତି । ମୁଁ ନିଶ୍ଚୟ ମାନିବି ଯେ, ଆମ ସଂଘ ଏ ପର୍ଯ୍ୟନ୍ତ ଆଖିଦୃଶିଆ କାମ କରିବାକୁ ସମର୍ଥ ହୋଇ ନାହିଁ । ପ୍ରାଥମିକ ସଂଘ ୨୦ ବର୍ଷର ଅନୁଷ୍ଠାନ ! ସରକାରୀ ଓ ବେସରକାରୀ ଭେଦରେ ଶ୍ରେଣୀ ବିଭାଗ ଥିଲେହେଁ ଉଭୟର ସ୍ୱାର୍ଥ ଓ ସୁବିଧାରେ ସାମଞ୍ଜସ୍ୟ ବେଶୀ । ସମସ୍ତେ ଏକାଶାସନାଧୀନ । ଶିକ୍ଷକତା ସେମାନଙ୍କର ଏକମାତ୍ର ଲକ୍ଷ୍ୟ । ନେତୃତ୍ୱକୁ ଅନୁସରଣ କରି ଚଳିବା ସେମାନଙ୍କର ବିଶିଷ୍ଟ ଗୁଣ ! ମାତ୍ର ନିମ୍ନମାଧ୍ୟମିକ ସ୍କୁଲଗୁଡ଼ିକର ସଂଖ୍ୟା ଯେତେ, ସେଗୁଡ଼ିକର ପରିଚାଳନା ପରିଷଦ ସେତୋଟି । ପ୍ରତ୍ୟେକ ପରିଷଦ ନିଜ ନିଜ ଯୋଗ୍ୟତା, ରୁଚି, ସଂସ୍କାର ଓ ମନୋବୃତ୍ତି ଅନୁଯାୟୀ ଶିକ୍ଷକମାନଙ୍କୁ ଶାସନ କରନ୍ତି । ଶିକ୍ଷକମାନେ ମଧ୍ୟ ନିଜକୁ ନିଜ ହାତରେ ଚଉଦପା ମନେ କରି ନେତୃତ୍ୱ ପଛରେ ଗୋଡ଼ାଇବାକୁ ପ୍ରୟାସୀ ହୁଅନ୍ତି ନାହିଁ । ପ୍ରାଥମିକ ଶିକ୍ଷକମାନଙ୍କର ଐକ୍ୟ ଓ ମୈତ୍ରୀ ବନ୍ଧନ ଉଚ୍ଚ କୋଟିର ! ଥରେ ପାଟନାରେ ଅଖିଳ ଭାରତ ପ୍ରାଥମିକ ସଭାରେ ଓଡ଼ିଶାର ତିନିଶହ ପ୍ରାଥମିକ ଶିକ୍ଷକ ଯୋଗ ଦେଇଥିଲେ ! ସେମାନଙ୍କ ଜିଲ୍ଲା ସ୍ତରରେ ଆହୂତ ସଭାରେ ଶହ ଶହ ଶିକ୍ଷକ ଯୋଗ ଦେଉଛନ୍ତି । ମାତ୍ର ନିମ୍ନ ମାଧ୍ୟମିକ ଶିକ୍ଷକମାନେ ସଭାରେ ଯୋଗ ଦେବାକୁ ଅନର୍ଥକ ମନେ କରୁଛନ୍ତି । ଏପରି ଅବସ୍ଥାରେ ଆମେ ପ୍ରାଥମିକ ସଂଘକୁ କେବଳ ପ୍ରଶଂସା କରିବାରେ ଆମ ଦୁଃଖ ଦୁର୍ଦ୍ଦଶାର ପ୍ରତିକାର ହେବ ନାହିଁ ।

ସଭ୍ୟଚାନ୍ଦା ଜଣେ ଶିକ୍ଷକର ବାର୍ଷିକ ଏକ ଟଙ୍କା ମାତ୍ର ! ଏହା ପୁଣି ପରୋକ୍ଷ ଭାବରେ ଆଦାୟ କରାଯାଏ ! ତଥାପି କେତେକ ଶିକ୍ଷକ ଭାଇ ଏହି ଚାନ୍ଦା ଆଦାୟ ନ କରିବାକୁ ତାଗିଦ୍ କରି ଲେଖିଥାନ୍ତି । ଏହି ଚାନ୍ଦା

ଆଦାୟରୁ ରକ୍ଷା ପାଇବା ଲାଗି କେତେକ ମଧ୍ୟ ସଂଘ ପ୍ରଶ୍ନ ନ ନେଇ ଅନ୍ୟ ବ୍ୟକ୍ତିଗତ ଅନୁଷ୍ଠାନରୁ କିଣିବା ଅନୁମାନ କରାଯାଏ ! ଅନ୍ୟ ଅନୁଷ୍ଠାନର ପ୍ରଶ୍ନ ଭଲ ହେଉ ନ ଥିବାର ଅନେକ ଶିକ୍ଷକ କହିଥାନ୍ତି ! ମୁଁ ମଧ୍ୟ ସେମାନଙ୍କ କଥାରେ ସତ୍ୟତା ଉପଲବ୍ଧି କରିଛି ! ଏପରି ସ୍ଥଳେ ଶିକ୍ଷକ ସମାଜ ଯଦି ଧୂଆମୂଳା ଅଧୂଆ ମୂଳାର ପାର୍ଥକ୍ୟ ନ ବୁଝିବେ ଏବଂ ଆମର ପ୍ରଶ୍ନ ମୂଲ୍ୟ ବଜାର ଦର ସହ ସମାନ ଥିଲେ ବି ଆମକୁ ନିରାଶ କରିବେ, ତେବେ ମୁଣ୍ଡରେ ହାତ ମାରିବା ଛଡ଼ା କଅଣ କରାଯିବ ?

ସଙ୍ଗଠନ ଦିଗରେ ମୁଁ କେତେ ଶକ୍ତି ନିୟୋଗ କରିଛି ଏବଂ ତହିଁରୁ ଅଧିକ କାହିଁକି କରି ପାରିଲି ନାହିଁ, ସେ ସମ୍ବନ୍ଧରେ ଏଠାରେ କୈଫିୟତ ଦେଲେ ଭଲ ହେବ । ୧୯୫୬ ମସିହାରୁ ୧୯୫୯ ପର୍ଯ୍ୟନ୍ତ ସଂଘର ସଭ୍ୟ ସଂଖ୍ୟା କମ୍ ଥିଲା ଏବଂ ଆୟ ମଧ୍ୟ ଜଣେ ସହକାରୀ ରଖିବା ପାଇଁ ଅନୁକୂଳ ନ ଥିଲା । ୧୯୬୦ ମସିହାରୁ ସଭ୍ୟ ସଂଖ୍ୟା କ୍ରମଶଃ ବଢ଼ିଲା ଏବଂ ପ୍ରତିବର୍ଷ ଦୁଇଟି ପରୀକ୍ଷା ପରିବର୍ତ୍ତେ ତିନୋଟି ପରୀକ୍ଷା ପାଇଁ ପ୍ରସ୍ତୁତ ହେବାକୁ ପଡ଼ିଲା । ଆଜି କାଲି ପରୀକ୍ଷା ବେଳେ ତିନିଜଣ ସହକାରୀ ରଖିବାକୁ ପଡ଼ୁଛି । ତଥାପି ମୋର କାର୍ଯ୍ୟ କମୁ ନାହିଁ । ଗୋଟିଏ ବର୍ଷର ହିସାବ ଦେଉଛି ! ଗତବର୍ଷ ତ୍ରୈମାସିକ ପରୀକ୍ଷାରେ ଟ ୧୪୫୭୬.୦୬, ଷାଣ୍ମାସିକ ପରୀକ୍ଷାରେ ଟ ୧୯୯୧୮.୫୬ ଓ ବାର୍ଷିକ ପରୀକ୍ଷାରେ ଟ୧୩୦୧୬.୩୬ର ଭି. ପି. ପଠାଯାଇଥିଲା । ପ୍ରାରମ୍ଭିକ ହିସାବ, ସାଫି ହିସାବ, ଅପ୍ରାପ୍ତ ଭି.ପି. ପାଇଁ ଡାକଘରେ ଅଭିଯୋଗପତ୍ର ଦାଖଲ, ସେଲ୍‌ଟାକ୍ସ ପାଇଁ ଅଡିଟେଡ୍ ହିସାବ, ପତ୍ରିକା ପାଇଁ ଆସିଥିବା ପ୍ରବନ୍ଧ ଓ କବିତାଗୁଡ଼ିକର ନିର୍ବାଚନ, ସଂଶୋଧନ, ପ୍ରୁଫ୍ ଦେଖା, ପତ୍ରିକା ପ୍ରେରଣ, ଶିକ୍ଷକମାନଙ୍କର ନାନା ପ୍ରକାର ପତ୍ରର ଉତ୍ତର ଦେବା, ଅବୈଧ ଭାବରେ ବିତାଡ଼ିତ ଶିକ୍ଷକମାନଙ୍କ ପୁନଃନିଯୁକ୍ତି ପାଇଁ ସମ୍ପୃକ୍ତ ସ୍କୁଲକୁ ଯିବା ଓ ବିଭାଗୀୟ କର୍ମକର୍ତ୍ତାଙ୍କୁ ଭେଟିବା, ଦରମା ବାକିଥିବା ଶିକ୍ଷକ-ମାନଙ୍କ ପାଇଁ ଯଥାକର୍ତ୍ତବ୍ୟ କରିବା ଇତ୍ୟାଦି ଅଶେଷ ପ୍ରକାର କାର୍ଯ୍ୟ ଅଛି । ସମସ୍ତଙ୍କୁ ଅସମ୍ଭବ ବୋଧ ହେଲେ ହେଁ ମୁଁ ଟିକେମାତ୍ର ଅତିରଞ୍ଜିତ ନ କରି କହିବି ଯେ, ସହକାରୀମାନେ ଥିଲେ ସୁଦ୍ଧା ମୁଁ କାର୍ଯ୍ୟାଳୟରେ ଥିବା ବେଳେ ସକାଳ ୭ଟାରୁ ରାତି ୧୨ଟା ପର୍ଯ୍ୟନ୍ତ ଅବିଶ୍ରାନ୍ତ ଭାବରେ ଖଟିଥାଏ ! ପରୀକ୍ଷା ସମୟରେ ତ ଅନେକ ସମୟରେ ରାତି ଦୁଇ ତିନିଟା

ପର୍ଯ୍ୟନ୍ତ ମୋ କଲମ ଚାଲେ ! ଅଗଷ୍ଟ ୧୫ ବେଳକୁ ତ୍ରୈମାସିକ ପରୀକ୍ଷାର କାମ ଆରମ୍ଭ ହୁଏ ! ତାହା ସରୁ ସରୁ ଷାଣ୍ମାସିକ ପରୀକ୍ଷା ଆସିଯାଏ ! ଏହି ଦୁଇଟି ପରୀକ୍ଷାର ହିସାବ କାମ ଚାଲିଥିବା ବେଳକୁ ବାର୍ଷିକ ପରୀକ୍ଷା ଉପସ୍ଥିତ ହୁଏ ! ଏଥିରୁ ବୁଝନ୍ତୁ, ପରୀକ୍ଷା ବ୍ୟାପାରରେ ମୋର କେତେ ସମୟ କଟି ଯାଉଛି ! ପୂର୍ଣ୍ଣ ସ୍ୱାଧୀନ ଭାବରେ ସବୁ କାମ କରିଯିବା ଭଳି ସହକାରୀ ମୋତେ ମିଳୁ ନାହାନ୍ତି ! ଏହିସବୁ କାରଣରୁ ସଙ୍ଗଠନ ଦିଗରେ ଅଧିକ ପରିମାଣରେ ମନ ପ୍ରାଣ ଦେବାକୁ ମୋତେ ସୁଯୋଗ ମିଳୁ ନାହିଁ ! ତେଣୁ ଯେଉଁମାନେ କହୁଛନ୍ତି, ମୁଁ ବ୍ୟବସାୟ କରୁଛି, ସଙ୍ଗଠନକୁ ବଳିଷ୍ଠ କରିବା ପାଇଁ କିଛି କରୁ ନାହିଁ, ତାହା କେତେକାଂଶରେ ସତ୍ୟ ବୋଲି ମୋତେ ମାନିବାକୁ ହେବ ।

ପ୍ରଶ୍ନ ବ୍ୟବସାୟ ଭଳି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଟି ମୋ ଦାୟିତ୍ୱରୁ ନ ଗଲେ ସଂଘ ପାଇଁ ପ୍ରଚାର ଓ ଶିକ୍ଷକମାନଙ୍କୁ ବିପ୍ଳବମୁଖୀ କରିବା ପାଇଁ ମୁଁ ସମର୍ଥ ହୋଇ ପାରିବି ନାହିଁ ! ଏହା ମୁଁ ବେଶ୍ ବୁଝି ପାରୁଛି ଏବଂ ଜଣେ ନିଷ୍ଠାପର, ପରିଶ୍ରମୀ ଓ ବୁଦ୍ଧିମାନ ସହକାରୀ ପାଇବା ପାଇଁ ଚେଷ୍ଟା କରି ଆସୁଛି ! ମାତ୍ର ମୋର ଉଦ୍ୟମ ସଫଳ ହେଉ ନାହିଁ ।

ଆମେ କାର୍ଯ୍ୟକାରୀ ସମିତିର ପ୍ରତିନିଧି ଦଳ ବିଭିନ୍ନ ସମୟରେ ମାନ୍ୟବର ମୁଖ୍ୟମନ୍ତ୍ରୀ, ଶିକ୍ଷା ବିଭାଗର ମନ୍ତ୍ରୀ ଓ ଶିକ୍ଷା ବିଭାଗର ଡିରେକ୍ଟର ଓ ଜଏଣ୍ଟ ଡିରେକ୍ଟର ଇତ୍ୟାଦିଙ୍କ ସହ ସାକ୍ଷାତ କରି ଆମ୍ଭମାନଙ୍କର ଅଭିଯୋଗ ଓ ତାହାର ପ୍ରତିକାର ସମ୍ବନ୍ଧରେ ଆଲୋଚନା କରିଛୁ, ଆଶା ବାଣୀ ଶୁଣିବାକୁ ପାଇଛୁ, ମାତ୍ର ଫଳତଃ ତିନି ଚାରୋଟି ଦାବିକୁ ଛାଡ଼ି ଦେଲେ ଅନ୍ୟ ଦାବିଗୁଡ଼ିକ ଉପେକ୍ଷିତ ହୋଇଛି । ଜଣେ କବି ଗାଇଥିଲେ—'କହ କେଉଁ ଜାତି ପାଇଛି ମୁକତି କରି ହାରି ହୁରି ଗୁହାରି ?'

ଦରଖାସ୍ତର ମୂଲ୍ୟ ନାହିଁ, ଦେଖା ସାକ୍ଷାତରେ ମୁକ୍ତି ନାହିଁ । ଏକ ପ୍ରଚଣ୍ଡ ଆତ୍ମପ୍ରତ୍ୟୟ, ବଳିଷ୍ଠ ଆତ୍ମନିର୍ଭରଶୀଳତା ଓ ଅଟଳ ସହତି ବଳରେ କେବଳ ଆମେ ଆମର ସ୍ୱାର୍ଥ ହାସଲ କରିବାକୁ ସମର୍ଥ ହୋଇ ପାରିବା ।

ସଂଘର ଦଶ ବର୍ଷର କାର୍ଯ୍ୟକଳାପ ତଥା ଶିକ୍ଷକମାନଙ୍କର ସଂଘପ୍ରତି ସ୍ୱାଭାବିକ ବିତୃଷ୍ଣା ଓ ଅନାସକ୍ତି ସମ୍ବନ୍ଧରେ ସଂକ୍ଷେପରେ କିଛି ଲେଖାଗଲା । ଏହା ବୋଲି ଶିକ୍ଷକମାନଙ୍କୁ ଦୋଷ ଦେଇ ସଂଘର ମହାଲକ୍ଷ୍ୟ ସାଧନରୁ ଓହରି ଯିବା ପାଇଁ ଚିନ୍ତା କରୁ ନାହିଁ । ଯେଉଁ ଉଦ୍ଦେଶ୍ୟରେ ସଂଘ ଗଢ଼ିଥିଲି, ସେହି ଉଦ୍ଦେଶ୍ୟ ଏ ଯାବତ୍ ଉଜ୍ଜ୍ୱଳ ଅକ୍ଷରରେ ମୋ ହୃଦୟରେ ଲିପିବଦ୍ଧ ହୋଇ ରହିଛି । ତେଣୁ ଗତ ନଅଟି ବର୍ଷ ଯେପରି କଟିଲା, ଏ ବର୍ଷଠାରୁ ସେହି ଗତାନୁଗତିକତା ତ୍ୟାଗ କରିବାକୁ ପଡ଼ିବ । ଆମେ ନିମ୍ନ ମାଧ୍ୟମିକ ଶିକ୍ଷକମାନେ ସମସ୍ତେ ପୁଞ୍ଜୀଭୂତ ଅଭାବ, ଅବହେଳା ଓ ନୈଃସ୍ୱତାକୁ ବରଦାସ୍ତ କରି ଭାଗ୍ୟକୁ ଆଦରି କୌଣସି ପ୍ରକାରେ ଦାନ୍ତ ନିକୁଟି ପଡ଼ି ରହିବା ନା ନିଜର ଅବସ୍ଥାକୁ ସୁଧାରିବା ପାଇଁ ବୈଧାନିକ ପନ୍ଥାରେ ଏକ ବିପ୍ଳବ ଆଣିବା ଲାଗି ବଦ୍ଧପରିକର ହେବା, ଏହି ଦୁଇଟିରୁ କୌଣସି ଗୋଟିଏ ବାଛି ନେବାକୁ ପଡ଼ିବ । ଦେଶ ସ୍ୱାଧୀନ ହେଲା । ଆମେ ଆଶା କରିଥିଲୁଁ, ଲୋକପ୍ରିୟ ସରକାର ନୂତନ ଦୃଷ୍ଟିକୋଣରୁ ଚିର ଅବହେଳିତ ଶିକ୍ଷକ ସମ୍ପ୍ରଦାୟର ସମସ୍ୟା ବିଚାର କରିବେ । ମାତ୍ର ସରକାର ସ୍ୱତଃପ୍ରବୃତ୍ତ ହୋଇ ନିଜ ଆଡ଼ୁ କିଛି କରୁ ନ ଥିବାରୁ ଆମର ଦାୟିତ୍ୱ ତେର ବଢ଼ି ଯାଇଛି ।

ଆମର ନ୍ୟାଯ୍ୟ ଦାବି ହାସଲ ପାଇଁ ଆମକୁ କ୍ଳୀବତା ପରିହାର କରି ସଚେତନ ହେବାକୁ ପଡ଼ିବ । କାହାରି ଅନୁଗ୍ରହ ଉପରେ ଆମେ ନିର୍ଭର କରିବା ନାହିଁ । ଯେ କୌଣସି ସରକାର ହେଉନା କାହିଁକି ଆମେ ଶୋଇ ରହିଲେ ଯେ ସୁବିଚାର ପାଇବା, ପାଟିଫିଟାଣ ନ କଲେ ଯେ ପୂର୍ଣ୍ଣକାମ ହେବା, ଏ କଥା ଅଜ୍ଞ ସୁଦ୍ଧା କହିବ ନାହିଁ । "ନହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ ।" ପୁଅ ନ କାନ୍ଦିଲେ ମା ଖାଦ୍ୟ ଦିଏନା । ପ୍ରକୃତିର ଏହି ଶାଶ୍ୱତ ସତ୍ୟ ଅନ୍ୟଥା ହେବାର ନୁହେଁ । ଆମକୁ ମଣିଷ ପରି ବଞ୍ଚି ରହିବାକୁ ହେଲେ ଖୁବ୍ତାର ଭୃତ୍ୟ ନ ହୋଇ ପୌରୁଷର ପୂଜାରୀ ହେବାକୁ ପଡ଼ିବ । କଠୋର ପରିଶ୍ରମ ଓ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟର ଉପଯୁକ୍ତ ମୂଲ୍ୟ ପାଇବାକୁ ହେଲେ ଆମକୁ ବିପ୍ଳବୀ ହେବାକୁ ପଡ଼ିବ । ସରକାର କି ସର୍ବସାଧାରଣ ଆମ ଦୁଃଖ କଥା ଭଲ ରୂପେ ଜାଣି ନାହାନ୍ତି । ସମସ୍ତଙ୍କୁ ଆମ ଦୈନ୍ୟର ଦାରୁଣ ଚିତ୍ର ଦେଖାଇବାକୁ ପଡ଼ିବ ।

ଆମେ କିପରି ଋଣ ଲାଗି ମହାଜନ ଦ୍ୱାରରେ ଗୋଡ଼ ଘଷି ଦାନ୍ତ ନିକୁଟି ଠିଆ ହେଉଁ, ଆଜି ଆମର ହକ୍ ପାଉଣା ବୋଧହୁଏ ଆମକୁ ସଞ୍ଚୟଶୀଳ କରିବା ଲାଗି କିପରି ସରକାରୀ ଟ୍ରେଜେରୀରେ ମାସ ମାସ ଧରି ଶୋଇ ରହେ । ଆମେ କିପରି କଚେରୀ ପିଅନଠାରୁ କମ୍ ଦରମା ପାଉଁ, ମାତ୍ର କଲମ-ଚଷା କିରାଣୀଠାରୁ ବେଶୀ ଘର୍ମାକ୍ତ ହୋଇ ଖଟୁ । ଆମ ଲାଗି କେତେ ଧଳା ହାତୀ ପୋଷା ଯାନ୍ତି, ଆଜି ସେମାନଙ୍କ ହୃଦୟହୀନ ବ୍ୟବହାରରେ ଆମ ମୁହଁ କେମିତି କଳା ପଡ଼ିଯାଏ । ଏହି ସବୁ ସୃଷ୍ଟିଛଡ଼ା କାର୍ଯ୍ୟକଳାପର କରୁଣ ସଙ୍ଗୀତ ଶୁଣିବାକୁ ପଡ଼ିବ । ସମସ୍ତେ ଜାଣନ୍ତୁ— ଆମେ ମୃତ ନୋହୁ, ଜୀବିତ; ଆମେ ବୋକା ନୋହୁ ଆମର ବିବେକ ଅଛି । ଆମ ନିସ୍ପୃହାଶୀଳତା ଆମ ନୀରସ ହୃଦୟର ସ୍ୱତଃସ୍ଫୂର୍ତ୍ତ ଅଭିବ୍ୟକ୍ତି ହେଉ । ଯଦି ମେଦିନୀ ପୃଷ୍ଠରୁ ମାନବିକତା ଲୋପ ପାଇ ନ ଥାଏ, ତାହା ହେଲେ ଆମର ମର୍ମାନ୍ତିକ ଅବସ୍ଥା ନିଶ୍ଚୟ ନୈତିକ ଛାପ ପକାଇବ ।

ଆମ ଶୋଚନୀୟ ଅବସ୍ଥାର ଅବସାନ ଲାଗି ଦୃଢ଼ ସଂହତି ଦରକାର । କାହାରି ବ୍ୟକ୍ତିଗତ ଚେଷ୍ଟାରେ ବିରାଟ ଶିକ୍ଷକ ସମ୍ପ୍ରଦାୟ ତପ୍ତ ବୈତରଣୀ ପାରି ହୋଇ ପାରିବେ ନାହିଁ । ଲୋଡ଼ା ସମୂହ ସଙ୍ଗଠନ । ଦୁଃଖମୟ ଜୀବନର ଅବସାନ ଲାଗି ଯେତିକି ସକ୍ରିୟତା ଆବଶ୍ୟକ, ତାହା ଅଧିକାଂଶ ଶିକ୍ଷକମାନଙ୍କର ନାହିଁ ବୋଲି କହିଲେ ଭୁଲ୍ ହେବ ନାହିଁ । ଅନେକ ହୁଏ ତ ସମ୍ମିଳନୀର ସାଫଲ୍ୟରେ ସନ୍ଦେହ ପୋଷଣ କରୁଛନ୍ତି । କେତେକ ଅହେତୁକ ଭୟ ହେତୁ ଅଭିଯୋଗ କରିବାକୁ ଅରାଜି । ଏପରି କେତେକ ଶିକ୍ଷକ ଅଛନ୍ତି, ଯେଉଁମାନେ କି 'ଗୋରୁମୁଣ୍ଡ ଥାପି କପା ତୋଳୁଛନ୍ତି' ଅର୍ଥାତ୍ ଶିକ୍ଷକତାର ଅନ୍ତରାଳରେ ଅନ୍ୟ ବୃତ୍ତିର ସନ୍ଧାନ କରୁଥିବାରୁ ସମ୍ମିଳନୀ ପ୍ରତି ନିଃସ୍ପୃହ । ଶରୀରରେ ଉଷ୍ମ ରକ୍ତ ପ୍ରବାହିତ ହେଉ ନ ଥିବା ଏବଂ ପରାଙ୍ଗପୁଷ୍ଟ ଉଦ୍ଭିଦ ପରି ଅନ୍ୟର ଅର୍ଜିତ ସଫଳତାରୁ ଫାଇଦା ଉଠାଇବାକୁ ମତଲବ ରଖିଥିବା, ଅର୍ଥାତ୍ ଅନ୍ୟ ଭାଷାରେ 'ଧରି ମାଛ ନା ଛୁଇଁବି ପାଣି' ମନୋବୃତ୍ତିର ଶିକ୍ଷକ ମଧ୍ୟ ଅଛନ୍ତି ଆମ ଭିତରେ । ଯାହା ହେଉ, ମୁଁ ସବୁ ଶ୍ରେଣୀର ଶିକ୍ଷକ ଭାଇଙ୍କୁ ହାତ ଯୋଡ଼ି ନିବେଦନ କରୁଛି, ହୃଦୟର

ସମସ୍ତ ଦୁର୍ବଳତା ତ୍ୟାଗକରି ସମୂହ ସ୍ୱାର୍ଥପାଇଁ ମନ ପ୍ରାଣ ଢାଳି ନ ଦେଲେ ଆମେ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବା ନାହିଁ । ଆମେ ଯଦି ନିଷ୍କ୍ରିୟ ହେଉଁ, ଆସର ଦାୟାଦମାନେ ଆମ ଆଳସ୍ୟ ଓ ଜଡ଼ତାର ତୀବ୍ର ସମାଲୋଚନା କରିବେ । ଆମର ସାଧନା ନିଶ୍ଚୟ ଫଳବତୀ ହେବ । ଯଦି ନ ହୁଏ ଆମେ କେତେ ଜଣ ବୃଦ୍ଧଙ୍କ ଜୀବନ କାଳ ଭିତରେ, ତେବେ ବର୍ତ୍ତମାନ ଓ ପରବର୍ତ୍ତୀ ଯୁବକମାନେ ଆମ ଭୂମିକାରୁ ନିଶ୍ଚୟ ଯଥେଷ୍ଟ ଉପକୃତ ହେବ । ଆଶାବାଦୀ ହେବାକୁ ପଡ଼ିବ । ମନେ ରଖିବାକୁ ହେବ Rome was not built in a day. ଆମେ ଦୁଃଖ ଜଣାଇ ପ୍ରତିକାର ଲୋଡ଼ିବାକୁ ଯଦି ଭୟ କରିବା, ତେବେ ଆମର ବଞ୍ଚିବାର ଅଧିକାର ନାହିଁ ।

ଆମ୍ଭମାନଙ୍କର ନିଜ ପ୍ରତି ଓ ନିଜର ଭବିଷ୍ୟତ ପ୍ରତି ଚରମ ନିଶ୍ଚେଷ୍ଟତା ଓ ଉଦାସୀନତା ହିଁ ଆମର ସବୁ ପ୍ରକାର ଅବନତିର କାରଣ ହୋଇଅଛି । ଗୌରବାବହ ଶିକ୍ଷକ ଜୀବନର ପରିପ୍ରତିଷ୍ଠା ପାଇଁ ଆମକୁ ସଙ୍ଗତି ପ୍ରତି ଆସ୍ଥାବାନ୍ ହେବାକୁ ପଡ଼ିବ ଓ ନୈରାଶ୍ୟକୁ ପାଦରେ ଠେଲି ଦେଇ ବୈପ୍ଳବିକ ମନୋଭାବ ଓ ଚିନ୍ତାର ଆଶ୍ରୟ ନେବାକୁ ପଡ଼ିବ । ଅସାରତା ଉପରେ ଅଶ୍ରୁବର୍ଷଣ କଲେ ଆମର ଅବସ୍ଥା ବଦଳିବ ନାହିଁ । ପ୍ରାଥମିକ ଶିକ୍ଷକମାନଙ୍କର ସଫଳ ବିପ୍ଳବ ଆମର ପଥ ପ୍ରଦର୍ଶକ ହେବା ଉଚିତ । ସେମାନେ ସେମାନଙ୍କ ସଙ୍ଗଠନକୁ ସର୍ବାଙ୍ଗସୁନ୍ଦର କରି ଫାଇଦା ଉଠାଉଥିବା ବେଳେ ଆମେ ଜଳକା ହୋଇ ରହିବା ନିତାନ୍ତ ନିନ୍ଦାର କଥା । ଏକତାର ଶକ୍ତି, ଦୃଢ଼ ପ୍ରତିଜ୍ଞାର ଫଳ, ଅନ୍ୟାୟର ପ୍ରତିକାର କଲେ ସଙ୍ଗଠିତ ଉଦ୍ୟମ ଓ ସଙ୍ଘବଦ୍ଧତାରେ ଆମ୍ଭମାନଙ୍କୁ ଅବହିତ ଓ ସଚେତନ ହେବାକୁ ପଡ଼ିବ । ମହତ୍ ଉଦ୍ଦେଶ୍ୟ ସାଧନା ପାଇଁ ଯେଉଁ ଶୃଙ୍ଖଳାଜ୍ଞାନ ଓ କର୍ମତତ୍ପରତା ଆବଶ୍ୟକ, ତାହା ଶିଖିବାକୁ ହେବ । ସମୂହ ସ୍ୱାର୍ଥଲାଗି ଯେଉଁ ଆନ୍ତରିକତା, ନିଷ୍ଠା, ଧୈର୍ଯ୍ୟ, ଆକୁଳ ଆକାଂକ୍ଷା ଓ ଉତ୍ତରଳ ଉନ୍ମାଦନା ଦରକାର, ତାହା ଆହରଣ କରିବାକୁ ପଡ଼ିବ । ନିଜର ଦୁରବସ୍ଥା ଲାଗି ପରକୁ ଦାୟୀ କରିବା ପୂର୍ବରୁ ନିଜଠାରେ ଯେଉଁ ଦୂଷଣୀୟ ଦୁର୍ବଳତା ଅଛି, ତାହାର ଦୂରୀକରଣ ଲାଗି ନିରବଚ୍ଛିନ୍ନ ପ୍ରଯତ୍ନ

କରିବା ଉଚିତ । ତାହାହେଲେ ଯାଇଁ ଆମେ ଆମର ପ୍ରାଚୀନ ଐତିହ୍ୟର ପୁନରୁଦ୍ଧାର କରି ପାରିବା ।

ତେଣୁ ବନ୍ଧୁଗଣ, ଜାଗି ଉଠନ୍ତୁ । କର୍ମଯୋଗୀ ବିବେକାନନ୍ଦଙ୍କର "ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ନିବୋଧତ" ସ୍ମରଣ କରନ୍ତୁ । ଏହି ସଙ୍ଗଠନକୁ ଦୃଢ଼ୀଭୂତ ଓ ଫଳପ୍ରସୂ କରିବା ପାଇଁ ଆପଣମାନେ ଶପଥ ଗ୍ରହଣ କରନ୍ତୁ ଏବଂ ସଂଘର ପତାକା ତଳେ ବିଶ୍ୱସ୍ତ ଭାବରେ ସମବେତ ହୁଅନ୍ତୁ ।

## ବିପ୍ଳବର ଅବଶ୍ୟକତା (ଜୁନ ୧୯୭୭)

ସମାଜରେ ଅସାମାଜିକ କ୍ରିୟାକଳାପ ଓ ଶାସନ କଳରେ ଦୁର୍ନୀତି, ଲାଞ୍ଚ, ମିଛ ଓ ବିଶୃଙ୍ଖଳା-ବିଭ୍ରାଟର ଅବସାନ ଲାଗି ବିପ୍ଳବ ଦରକାର । ଇତିହାସରୁ ଜଣାଯାଏ, ଯୁଗ ଯୁଗେ ବ୍ୟକ୍ତିତ୍ୱର ବିରୁଦ୍ଧରେ ବିପ୍ଳବ ମୁଣ୍ଡ ଟେକି ଉଠିଛି ଏବଂ ପରିଣାମରେ ଜାତୀୟ ଦାବୀ ବା ସ୍ୱାର୍ଥ ସାଧିତ ହୋଇଛି । ବିପ୍ଳବ ହିଁ ଜୀବନର ପରିବର୍ତ୍ତକ, ଉନ୍ନତି-ବିଧାୟକ ଓ ଅତ୍ୟାଚାରିତ ମାନବ ଗୋଷ୍ଠୀର ସୁଖ ଶାନ୍ତି ପ୍ରଦାୟକ । ଜମିଦାର ଓ ପ୍ରଜା, ମହାଜନ ଓ ଖାତକ, ପୁଞ୍ଜିପତି ଓ ଶ୍ରମିକ, ସବଳ ଓ ଦୁର୍ବଳ—ଏହି ବିପରୀତଧର୍ମୀ ଶ୍ରେଣୀମାନଙ୍କ ମଧ୍ୟରେ ସଂଘର୍ଷ ଲାଗିବା ଯେମିତି ସ୍ୱାଭାବିକ, ବିପ୍ଳବ ମାଧ୍ୟମରେ ଜୀବନ ସଂଗ୍ରାମରେ ଜୟୀ ହେବା ସେମିତି ଅବଶ୍ୟମ୍ଭାବୀ । ଯେ ଯେତେ ସ୍ୱାର୍ଥ ସାଧନ କରିବାକୁ ଅଭିଳାଷ ରଖିଥାଏ, ଯେତେ ହାସଲ ନ ହୋଇପାରେ ମାତ୍ର ନିଷ୍ଠାପରତାର ପ୍ରଶ୍ନ ନାହିଁ । ଥରକର ଚେଷ୍ଟାରେ ଲକ୍ଷ୍ୟ ଲାଭ କରିବା ଅସମ୍ଭବ ହୋଇପାରେ ମାତ୍ର ସେ ଚେଷ୍ଟାର ବିଳୟ ନାହିଁ । ବିଫଳତା ହିଁ ସିଦ୍ଧିଦାୟୀ ହୁଏ । ନିଶ୍ଚେଷ୍ଟତା ମନୁଷ୍ୟ ଜୀବନର ଗୋଟିଏ ମହାବ୍ୟାଧି । ମନୁଷ୍ୟ ଥରେ କ୍ରିୟାଶୀଳତା ପ୍ରତି ଆସକ୍ତ ହେଲେ ତାହାର ସେ ଆସକ୍ତି ଉତ୍ତରୋତ୍ତର ବୃଦ୍ଧିପାଏ ଏବଂ ଶତ ବାଧା ବିଘ୍ନ ପାଇଲେ ହେଁ ମଉଳି ନ ଯାଇ ପୁଷ୍ଟି ଲାଭ କରେ । ଦୁନିଆରେ ଯାହା କିଛି ଘଟିଛି ଓ ଘଟୁଛି, ଯାହାସବୁ ହୋଇଛି ବା ହେଉଛି, ପ୍ରତ୍ୟେକର ମୂଳରେ ଅଧ୍ୟବସାୟ ବା ବାରମ୍ବାର ଚେଷ୍ଟାର ସ୍ୱାକ୍ଷର ରହିଛି ।

ଶିକ୍ଷକ ସମାଜର ଭାଗ୍ୟ ଚିରକାଳ ଅନ୍ଧାରରେ । ଇଂରେଜ ରାଜତ୍ୱରେ ସରକାରଙ୍କ ବିଭିନ୍ନ ବିଭାଗରେ କାର୍ଯ୍ୟ କରୁଥିବା କର୍ମୀ ଓ ଶିକ୍ଷା ବିଭାଗରେ କାର୍ଯ୍ୟ କରୁଥିବା ଶିକ୍ଷକ, ଏହି ଉଭୟ ମଧ୍ୟରେ ସମଯୋଗ୍ୟତାର ମୂଲ୍ୟାଙ୍କନ ସମାନ ନ ଥିଲା । ଜଣେ ଅଣ ଶିକ୍ଷକ ଯେତେ ଦରମା ପାଉଥିଲା, ଅନ୍ୟାନ୍ୟ ସ୍ୱାର୍ଥ ସୁବିଧା ଯେପରି ଉପଭୋଗ କରୁଥିଲା, ତାହା ଶିକ୍ଷକ ଜୀବନରେ ସ୍ୱପ୍ନପରି ଥିଲା । ଦେଶ ସ୍ୱାଧୀନ ହେବା ପରେ ବିଶେଷତଃ ସ୍ୱାଧୀନତାର ଊନବିଂଶ ବାର୍ଷିକ ଉତ୍ସବର ଉଦ୍‌ଯାପନ ପରେ ଶିକ୍ଷକ ଯେଉଁ ତିମିରେ ସେହି ତିମିରେ । ଲୋକପ୍ରିୟ ଜାତୀୟ ସରକାର ଶିକ୍ଷକର ଗୁରୁ ଦାୟିତ୍ୱ ସ୍ୱୀକାର କରୁଛନ୍ତି, ମାତ୍ର ତାହାର ସୁଖ ସ୍ୱାଚ୍ଛନ୍ଦର ବ୍ୟବସ୍ଥା କରୁ ନ ଥିବାରୁ ସେହି ସ୍ୱୀକୃତିର ମୂଲ୍ୟ କିଛି ରହୁ ନାହିଁ । ଗଣତାନ୍ତ୍ରିକ ସମାଜବାଦ ସରକାରଙ୍କ ମୂଳ ନୀତି ହେଲେହେଁ ଶିକ୍ଷକ ବେଳକୁ ସେ ନୀତି ପ୍ରଯୋଜ୍ୟ ହେଉ ନାହିଁ । ଦୁନିଆ ବଦଳିଲା, ଏକନାୟକତନ୍ତ୍ର ଓ ରାଜତନ୍ତ୍ରର ସମାଧି ଘଟି ଗଣତନ୍ତ୍ରର ଜୟ-ଜୟକାର ଶୁଭିଲା । ପ୍ରାକ୍-ସ୍ୱାଧୀନତା ବେଳର ପାଞ୍ଚ ଟଙ୍କାର ମୂଲ୍ୟ ବର୍ତ୍ତମାନ ପଚିଶ ଟଙ୍କା ସହ ସମାନ ହେଲା, ସାଂସାରିକ ଜୀବ ଶିକ୍ଷକର ଦୈନନ୍ଦିନ ସ୍ପୃହା ଓ ଆବଶ୍ୟକତା ସମସ୍ତଙ୍କ ସହ ସମାନ ତାଳରେ ଆତ୍ମ-ପ୍ରକାଶ କରିବା ସ୍ୱାଭାବିକ ହୋଇ ପଡ଼ିଲା । ତଥାପି ଆମ ସରକାର ସବୁ କଥାକୁ ଆଖି ବୁଜିଦେଇ କେବଳ ଶିକ୍ଷକର ଶୁଖିଲା ପ୍ରଶଂସା କରି ତାହାକୁ ସନ୍ତୁଷ୍ଟ ରଖିବାକୁ ପ୍ରୟାସ କରୁଛନ୍ତି । ଅଥଚ ଶିକ୍ଷକ ଦେଖୁଛି ପ୍ରଶଂସାରେ ତାହାର ପେଟ ପୂରୁ ନାହିଁ । ପ୍ରଶଂସାରେ ତାହାର ପରିବାର ବର୍ଗଙ୍କର ନିମ୍ନତମ ଆବଶ୍ୟକତା ମେଣ୍ଟୁ ନାହିଁ । ପ୍ରଶଂସାରେ ତାହାର ସାମାଜିକ ମର୍ଯ୍ୟାଦା ରକ୍ଷା କରି ହେଉ ନାହିଁ । ସରକାରଙ୍କ ବଡ଼ ବଡ଼ ଯୋଜନା ଆଖି ପିଛୁଳାକେ ମୂର୍ତ୍ତିମନ୍ତ ହୋଇ ଯାଉଛି । ସବୁ ବିଭାଗରେ ପାଣିପରି ଟଙ୍କା ଖରଚ ହେଉଛି, ଅଥଚ ଶିକ୍ଷକକୁ କୁହାଯାଉଛି ସରକାରଙ୍କ ଟଙ୍କା ଅଭାବ । ଯେମିତି କି ଶିକ୍ଷକ ବାପୁଡ଼ା ଦେଶ ସେବା କରୁ ନାହାନ୍ତି । ସରକାରଙ୍କ ବିଗ୍ରହ-ବିଭ୍ରାଟ ଆଉ ସହ୍ୟ ହେବାର ନୁହେଁ । ଶିକ୍ଷା ବିଭାଗ ପ୍ରତି ସରକାରଙ୍କ ବୈମାତୃକ ବ୍ୟବହାର ଆଉ ସହ୍ୟ ହେବାର ନୁହେଁ । ପରମ୍ପରର ପଥରୋଧ କରିବାକୁ ହେବ—ତୋଷାମୋଦକତାର ଗଳା ଚିପି ଦେବାକୁ ହେବ । କେମିତି ହେବ ? ଅନୁନୟ ବିନୟ କରି ନୁହେ—କାଳ

କଲମର ସଦ୍‌ବ୍ୟବହାର କରି ନୁହେଁ—ଦେଖା ସାକ୍ଷାତରେ ଖୋସାମଦ କରି ନୁହେଁ । କାର୍ଯ୍ୟ ହାସଲ କରିବାକୁ ହେବ ବିପ୍ଳବ ହାରା । ଯେଉଁ ବିପ୍ଳବ ଲେକ୍‌ଚରର୍‌ମାନେ କରି ପାରୁଛନ୍ତି, ଯେଉଁ ବିପ୍ଳବ କଳକାରଖାନାରେ ଶ୍ରମିକମାନେ କରନ୍ତି, ଯେଉଁ ବିପ୍ଳବ ଗ୍ଲଡ଼ ସମାଜ କରି ଦେଖାଇ ଦେଲେ, ଯେଉଁ ବିପ୍ଳବ ଉତ୍ତମ ପ୍ରଦେଶରେ ସରକାରୀ କର୍ମଚାରୀମାନେ ଏବେ କଲେ, ଯେଉଁ ବିପ୍ଳବ ସ୍ୱର୍ଣ୍ଣଶିଳ୍ପୀମାନେ କଲେ, ଏବେ କଟକରୁ ମଦ ଦୋକାନ ପୁଣି ସମ୍ପଦ୍ ଭବନରୁ ସିନେମା ଉଠାଇବାକୁ ବିପ୍ଳବ ହୋଇଗଲା । ଦେଶର ବୁଦ୍ଧିଜୀବୀମାନେ ଶିକ୍ଷକମାନଙ୍କ କାରଖାନାର ଶ୍ରମିକ ଭଳି ଅନଶନ ଧର୍ମଘଟ କରିବା ସୁନ୍ଦର ନୁହେଁ ବୋଲି କହୁଛନ୍ତି । ଆମେ ବି ସ୍ୱୀକାର କରୁଛୁ ସୁନ୍ଦର ନୁହେଁ । କିନ୍ତୁ "ବୁଭୂକ୍ଷିତଂ କିଂ ନ କରୋତି ପାପମ୍ ।" ଆମେ ବିପ୍ଳବ କରିବାକୁ ବାଧ୍ୟ ହେଉଛୁ । ଆମର ପେଟ ଆମକୁ ବାଧ୍ୟ କରୁଛି—ଆମ ପରିବାର ବର୍ଗଙ୍କ ଅଶ୍ରୁଳ ଆଖି, ବିଷଣ୍ଣ ବଦନମଣ୍ଡଳ ଆମକୁ ବାଧ୍ୟ କରୁଛି—ଆମର ନିର୍ଯ୍ୟାତିତ ଜୀବନଧାରା ଆମକୁ ବିବ୍ରତ କରୁଛି । ଆମେ ପେଟ ପୋଷିବା ପାଇଁ ଶିକ୍ଷକତା କରୁଛୁ । ଆମେ ସନ୍ନ୍ୟାସୀ ନୋହୁ—ଆମେ ଗୃହୀ । ତଥାପି ଆମେ କହୁଛୁ, ବୈଦିକ କାଳରେ ଶିକ୍ଷକ ସମ୍ପ୍ରଦାୟର ଯେଉଁ ଐତିହ୍ୟ ଥିଲା, ଯେଉଁଥି ପାଇଁ ସମାଜରେ ଶିକ୍ଷକର ମାନମର୍ଯ୍ୟାଦା ଶୀର୍ଷସ୍ଥାନୀୟ ଥିଲା, ସେହି ଐତିହ୍ୟର ମୂଳୋତ୍ପାଟନ କରିବାକୁ ଆମେ ଇଚ୍ଛୁକ ନୋହୁ । ଏହା ବୋଲି ଅନ୍ୟ ବିଭାଗର କର୍ମଚାରୀ ଓ ଶିକ୍ଷକମାନଙ୍କ ମଧ୍ୟରେ ଆକାଶ-ପାତାଳ ଫରକ୍ ରହିବ, ଆମେ ତାହା ବରଦାସ୍ତ କରି ପାରିବୁ ନାହିଁ ।

## ● ବିପ୍ଳବ ପାଇଁ ପ୍ରସ୍ତୁତ

ଯେ କୌଣସି କାର୍ଯ୍ୟ କରିବା ପୂର୍ବରୁ ସୁଚିନ୍ତିତ ପ୍ରସ୍ତୁତି ଆବଶ୍ୟକ । ଅପ୍ରସ୍ତୁତ ବ୍ୟକ୍ତି ପଦେ ପଦେ ହଇରାଣ ହୁଏ । ସରକାରଙ୍କ ବଧିରତା, ନିର୍ଲିପ୍ତତା ଓ ଶିକ୍ଷକ ସମାଜ ପ୍ରତି ଉଦାସୀନତା ବିରୁଦ୍ଧରେ ଅଭିଯାନ ଚଳାଇବାକୁ ହେଲେ ଆମେ ବଳଶାଳୀ, ନିର୍ଭୀକ ଓ ଦୃଢ଼ଚେତା ହେବା ଦରକାର । ହଜାର ହଜାର ଶିକ୍ଷକ ଏକତା ମନ୍ତ୍ରରେ ଦୀକ୍ଷିତ ହୋଇ ନେତୃତ୍ୱକୁ ଅନୁସରଣ କରିବା ବିଧେୟ । ଯେଉଁମାନେ ମନରେ କେବେ ବିପ୍ଳବ ଚିନ୍ତା କରି ନାହାନ୍ତି, ସେମାନଙ୍କୁ ଏ ଶବ୍ଦ ପ୍ରଥମେ ଭୀତିପ୍ରଦ ହୋଇ

ପାରେ । ମାତ୍ର ଥରେ ଭୟ ଛୁଟିଗଲେ ଗଲା । ତେଣିକି ସାହସରେ ହୃଦ ଭରିଯାଏ । ଭାରତର ମୁକ୍ତି ପାଇଁ କେତେ ଜେଲ ଗଲେ ଓ କେତେ ଫାଶୀ ଖୁଣ୍ଟରେ ଲଟକଲେ ଓ କେତେ ଜରିମାନା ଦେଇ ସର୍ବସ୍ୱାନ୍ତ ହେଲେ । ତଥାପି ଇଂରେଜ ସରକାର ଲୋକଙ୍କୁ ଭୟଭୀତ କରି ପାରିଲେ ନାହିଁ । ସୁତରାଂ ଭୟ ନକରି ସାହସ ସହକାରେ ବିପ୍ଳବର ପନ୍ଥା ଅନୁସରଣୀୟ । ଏଥିରେ କାଲୁର ପ୍ରଶ୍ନ ନାହିଁ ।

---



ବାମରୁ ଡାହାଣକୁ : ଦଣ୍ଡାୟମାନ—ନେତାଜୀ, ଇତଶ୍ରୀ, ଲଲ୍ଲଜୀ, ମଞ୍ଜୁଶ୍ରୀ ।
ଆସୀନ—ଗୌରହର, କମଳା, ବ୍ରହ୍ମବସ୍ୱ, ଶୋଭନା, ବାପୁଜୀ ।

# ଘର କଥା

ମୋର ବାପା ଶ୍ରୀଚରଣ ପଣ୍ଡା ମାଟ୍ରିକ୍ୟୁଲେଶ ଅବଧାନଙ୍କ ପାଖରେ ସେ କାଳରେ ପ୍ରଚଳିତ ଶିକ୍ଷା ପାଇଥିଲେ ଏବଂ ନିଜର ଗୃହଅଣା ଅଂଶରେ ଧର୍ମସଂକାଶ୍ଚ ଚଳାଉଥିଲେ । ସେ ପିଲା ଦିନେ ପିତୃ-ମାତୃ-ହୀନ ହୋଇ ଥିଲେ ଏବଂ ତାଙ୍କର ମାତୁଳଙ୍କ ସାହାଯ୍ୟରେ ମଣିଷ ହୋଇଥିଲେ । ୪୫ ବର୍ଷ ବୟସରେ ସାନ୍ନିପାତିକ ଜ୍ୱରରେ ତାଙ୍କର ପରଲୋକ ଘଟିଥିଲା । ମୁଁ ଶୁଣିଛି, ସେ ବଡ଼ ଦୟାଳୁ ଥିଲେ ଏବଂ ଦରିଦ୍ରଙ୍କୁ ସାହାଯ୍ୟ କରିବାକୁ ଯାଇଁ ନିଜର ଆର୍ଥିକ ଅବସ୍ଥାର ଅବନତି ଘଟାଇଥିଲେ । ମୃତ୍ୟୁର ତିନି ଚାରିଦିନ ପୂର୍ବରୁ ସେ ମୋତେ ପାଖରେ ବସାଇ, ନିଜେ କରିଥିବା ଋଣ ଓ ସେ ଅନ୍ୟଙ୍କୁ ଦେଇଥିବା ଋଣର ତାଲିକା କରାଇଥିଲେ । ମୁଁ ସେତେ-ବେଳେ ପଞ୍ଚମ ଶ୍ରେଣୀରେ ପଢ଼ୁଥିଲି । ବାପାଙ୍କ ମୃତ୍ୟୁପରେ ମୁଁ ମାମୁଙ୍କ ସାହାଯ୍ୟରେ ଆମ ଋଣ ପରିଶୋଧ କରିଥିଲି, ମାତ୍ର ଆମର ଯାହାଙ୍କଠାରୁ ପାଇବାର ଥିଲା, ସେମାନେ ଠକାଇ ଦେଇଥିଲେ ।

ଏ ସମ୍ପର୍କରେ ମୋର ତିନୋଟି କଥା ମନେ ଅଛି । ବାପା ଘରେ ଗୋଟିଏ ତେଜରତି ଦୋକାନ କରିଥିଲେ ଓ ପ୍ରତି ହାଟ ପାଳିକୁ ଗୁଡ଼ଜଳ ବିକିବା ପାଇଁ ନେଉଥିଲେ । ଜଣେ ଗୁଡ଼ ବେପାରୀର ଆମଠାରେ ପନ୍ଦର ଟଙ୍କା ଥିବାର ବାପା ତାଲିକା କରାଇଥିଲେ । ବାପା ମରିଯିବା ପରେ ଗୁଡ଼ ବେପାରୀ ଆମ ଘରକୁ ଆସିଲେ ଏବଂ ମୋର ସାବତ-ମା ଟଙ୍କା ଦେବାର ଗୋଟାଏ ଦିନ ତାଙ୍କୁ ଶୁଣାଇ ଦେଲେ । ନିର୍ଦ୍ଦିଷ୍ଟ ଦିନ ମୁଁ ଟଙ୍କା ଧରି ବେପାରୀ ଘରେ ପହଞ୍ଚିଲି । ସେ ମୋଠାରୁ ଟଙ୍କା ନେଇ ପାଞ୍ଚ ଟଙ୍କା ଫେରାଇ ଦେଲେ ଏବଂ କହିଲେ —"ମୋର କେତେ ଜଣଙ୍କଠାରେ କେତେ ଟଙ୍କା ବୁଡ଼ିଛି । ତୁମେ ଯାଚିକରି ଟଙ୍କା ଦେଉଚ । ଏପରି ଲୋକ ମୋ ଜୀବନରେ ଦେଖି ନାହିଁ । ତେଣୁ ଖୁସି ହୋଇ ପାଞ୍ଚ ଟଙ୍କା ଛାଡ଼ି ଦେଉଛି ।"

ଖଣ୍ଡୋସାହି ଗ୍ରାମର ଶ୍ରୀ କ୍ଷେତ୍ରମୋହନ ଚକ୍ରବର୍ତ୍ତୀଙ୍କର ଆମଠାରେ ଶହେ ଟଙ୍କା ଥିଲା । ସୁଧ ହିସାବ କଲେ ଆଉ ଶହେ ହେବ । ବଡ଼ ମାମୁଁ କିଛି ଜମି ବର୍ଷକ ପାଇଁ ଦଖଲ କରିବାକୁ ଦେଇ କାହାରିଠାରୁ ଶହେ ଟଙ୍କା ଆଣିଲେ ଓ ମୋତେ ସଙ୍ଗରେ ନେଇ ମହାଜନଙ୍କ ଘରକୁ ଗଲେ । ମୁଁ ମହାଜନଙ୍କୁ ସେହି ଟଙ୍କା ବଢ଼େଇ ଦେଇ ଆଉ ଦେଇ ପାରିବା ନାହିଁ ବୋଲି କହିଲି ଓ କଇଁ କଇଁ ହୋଇ କାନ୍ଦିଲି । ଶ୍ରୀ ଚକ୍ରବର୍ତ୍ତୀ ମୋତେ ସାନ୍ତ୍ୱନା ଦେଇ ସେହି ଟଙ୍କାରେ ସନ୍ତୁଷ୍ଟ ହେଲେ । ସୁଧ ଦାବି କଲେ ନାହିଁ ।

ଦାନପୁର ଗ୍ରାମର ଶ୍ରୀ ପଦ୍ମଚରଣ ମିଶ୍ର ଜଣେ ବଡ଼ ମହାଜନ ଥିଲେ । ବଡ଼ ମାମୁଁ ଆମର କିଛି ଜମି ବନ୍ଧକ କରାଇ ଟଙ୍କା ଧରି ମୋତେ ସଙ୍ଗରେ ନେଇ ତାଙ୍କ ଘରକୁ ଗଲେ । ତାଙ୍କର ଅସଲ ସୁଧ ମିଶି କେତେ ହେଲା, ମୋର ମନେ ନାହିଁ । ବଡ଼ ମାମୁଁ କହିଲେ, "ଭଣଜା ମାଇନର ପଢ଼ୁଛି । ତାକୁ କିରାସିନ ତେଲ କିଣିବା ପାଇଁ କିଛି ଛାଡ଼ିଦିଅ ।" ମହାଜନ ଏତେ ଦୟାଳୁ ଯେ, ତାଙ୍କର ହିସାବରେ ଯେତିକ ରେଜା ଥିଲା ଅର୍ଥାତ୍ ବାରଣା ଛପାହି ଛାଡ଼ି ଦେବାକୁ କହିଲେ । ମାମୁଁ ତାହା ଶୁଣି ତାଙ୍କର ହିସାବ ଅନୁଯାୟୀ ଯାହା ହେଲା ଦେଇ ଦେଲେ । ମହାଜନ ବି ସେଇଆ ଗୃହୁଁ ଥିଲେ । ବାରଣା ଛ ପାହି କଥା ଆନୁମାନିକ ନୁହେ । ମୁଁ ସେହି ଦିନରୁ ତାକୁ ମୁଖସ୍ଥ ରଖିଛି ।

ମୁକୁନ୍ଦପୁର ମହାଜନ ମାଗୁଣି ନାୟକଙ୍କର ଆମଠାରୁ ପ୍ରାୟ ଶହେ ଟଙ୍କା ପାଇବାର ଥିଲା । ସେ ଦୟାଳୁ ପ୍ରକୃତିର ଲୋକ ଥିଲେ । ଆମ ବାଡ଼ିରେ ଗୋଟାଏ ବଡ଼ ଆମ୍ବଗଛ ଥିଲା । ତାହା ପଚିଶ ଟଙ୍କାରେ ବିକ୍ରୀ କରାଗଲା । ମାମୁଁ ମୋତେ ସଙ୍ଗରେ ନେଇ ତାଙ୍କ ପାଖକୁ ଗଲେ । ମୁଁ ମହାଜନଙ୍କ ହାତ ଧରି ପକାଇ କାନ୍ଦ କାନ୍ଦ ହୋଇ କହିଲି, "ଆଉ ଦେଇ ପାରିବ ନାହିଁ । ମୋତେ ଖଲାସ୍ କରି ଦିଅନ୍ତୁ ।" ମହାଜନ ମୋର କରୁଣ କଥାରେ ତରଳି ଗଲେ ଏବଂ ସେହି ଦିନଠାରୁ ମୁଁ ତାଙ୍କୁ ମଉସା ବୋଲି ସମ୍ବୋଧନ କରୁଥିଲି ।

ମୁଁ ୧୯୨୨ ମସିହାରେ ବିବାହ କଲି ଓ ୧୯୨୫ ମସିହାରେ ମୋର ପୁନର୍ବିବାହ ହେଲା । ସ୍ତ୍ରୀ ଲକ୍ଷ୍ମୀ ଅଳ୍ପଦିନ ପରେ ହଷ୍ଟିରିଆ ବା

ଯୋକ୍ଷାପସ୍ମାର ରୋଗରେ ଆକ୍ରାନ୍ତ ହେବାରୁ ଅଧିକାଂଶ କାଳ ପିତୃ—ସଦନରେ ରହୁଥିଲା । କାରଣ ତାହାର ସେବା ଶୁଶ୍ରୂଷା କରିପାରିବା ମୋ ଦ୍ୱାରା ବା ମୋ ଘରେ ଅସମ୍ଭବ ଥିଲା । ସେ ୧୯୩୨ ମସିହା ମାର୍ଚ୍ଚ ମାସରେ ସାତ ଦିନର କନ୍ୟାଟିକୁ ଛାଡ଼ି ଦେଇ ଧନୁଷ୍ଟଂକାର ରୋଗରେ ପ୍ରାଣତ୍ୟାଗ କଲା ।ସୁତରାଂ ଏହି ସାତ ବର୍ଷର ଗାର୍ହସ୍ଥ୍ୟ ଜୀବନ ମୋ ପକ୍ଷରେ ଶାନ୍ତିମୟ ନ ଥିଲା ।

ଆମ ଘର ପାଖରେ ଗୌରୀ ନାମରେ ବିଧବା ବ୍ରାହ୍ମଣୀର ଘର ଥିଲା । ତାହାର ସ୍ୱାମୀ ପୂଜକ ଯାଜୀ ବ୍ୟବସାୟ କରୁଥିଲେ । ମେଦିନୀପୁରଠାରେ ତାଙ୍କର ଅକାଳ ବିୟୋଗ ଘଟିଯିବାରୁ ଗୌରୀ ଅସହାୟ ହୋଇ ପଡ଼ିଲା । ଘରବାଡ଼ି ଜମି ତିନିଗୁଣ୍ଠ ଛଡ଼ା ଆଉ ତାହାର କିଛି ନ ଥିଲା । ସେ ପେଟ ପୋଷିବା ପାଇଁ ଧାନକୁଟା ବୃତ୍ତି ମୁଖ୍ୟ ଭାବରେ ଗ୍ରହଣ କରିଥିଲା । ତା ଛଡ଼ା ଗାଁ ବାଲା ତାକୁ ଗୋଟିଏ ଚକ ଜଗିବାକୁ ଦେଉଥିଲେ । ଧାନ ଓ ମୁଗ ଫସଲ ବେଳେ ଗୋରୁ ଗାଈଙ୍କ କବଳରୁ ଫସଲକୁ ରକ୍ଷା କରିବା ପାଇଁ ସେ ଜଗି ରହୁଥିଲା ଓ ଫସଲ ଅମଳ ସମୟରେ ମୂଲ ବାବଦକୁ କିଛି ପାଉଥିଲା । ମୋ ପିଲାଦିନେ ଗାଁର ଗରିବ ଲୋକମାନେ ଧାନ କଟା ପରେ ମାର୍ଣ୍ଣାଘାଇ ଇତ୍ୟାଦି ତଳମାଳ ଅଞ୍ଚଳକୁ ଧାନ କାଟି ଯାଉଥିଲେ । କାରଣ ସେ ଅଞ୍ଚଳରେ ଧାନକଟା ଡେରିରେ ହୁଏ । ଗୌରୀ ମଧ୍ୟ ଧାନ କାଟିବାକୁ ଯାଇ ଏ ବାବଦରେ ଆୟ କରୁଥିଲା ।

ଥରେ ଦାନପୁର ଗ୍ରାମର ଜଣେ ଧନୀ ବ୍ୟକ୍ତି ଧାନକୁଟା ସରିବା ପରେ ଗୌରୀକୁ ଅଇଣ୍ଠା ବାସନ ମାଜିବାକୁ କହିବାରୁ ସେ ସେ କଥା ବାପାଙ୍କୁ ଜଣାଇଲା । ସେ ବାପାଙ୍କ ମାଇଁର ଭଉଣୀ ଥିଲା । ତେଣୁ ବାପା ଦାନପୁର ଗ୍ରାମର ସେହି ଲୋକ ଘରକୁ ନ ଯିବା ପାଇଁ ପରାମର୍ଶ ଦେଲେ ।

ଅଳ୍ପ ଦିନ ପରେ ବାପା ବିପତ୍ନୀକ ହେଲେ । ମୁଁ ଓ ମୋର ବଡ଼ ଭଉଣୀ ବିନୋଦିନୀ ଖୁବ୍ ସାନ ଥିବାରୁ ଗୌରୀ ଆମ୍ଭମାନଙ୍କୁ ବଞ୍ଚାଇବା ପାଇଁ ଆମ ଘରକୁ ଆସିଲା । ଆମେ ତାକୁ 'ମା' ବୋଲି ଡାକିଲୁ । ମୋର ହୋସ୍ ହେବା ପରେ ତାହାର ମୋଠାରେ ଯେଉଁ ସ୍ନେହର ପରିଚୟ ପାଇଲି, ତାହା ଭାଷାରେ ପ୍ରକାଶ କରି ହେବ ନାହିଁ ।

୧୯୩୨ ରୁ ୧୯୩୬ ମସିହା ପର୍ଯ୍ୟନ୍ତ ମୋର ମା, ସାବତ ମା ଓ କନ୍ୟା ମୋର ବାସଗୃହରେ ରହୁଥିଲେ । କନ୍ୟାର ପଢ଼ାପଢ଼ିର ସୁବିଧା ପାଇଁ ମୁଁ ୧୯୩୬ ମସିହାରେ ମା ଓ ଝିଅକୁ ସ୍କୁଲ ପାଖରେ ଥିବା ମୋ ଘରକୁ ନେଇ ଆସିଲି । ସେହି ଦିନଠାରୁ ୧୯୪୭ ମସିହା ପର୍ଯ୍ୟନ୍ତ ମା ତୋଷାଇ କରୁଥିଲା । ସେତେବେଳକୁ ତାଙ୍କୁ ଅଶୀ ବର୍ଷ ହେବ । ମୁଁ ଜଣେ ପୂଜାରୀ ରଖିବା ପାଇଁ ଯେତେ ଥର କହିଛି, ମା କରାଇ ଦେଇ ନାହିଁ ।

୧୯୪୭ ମସିହାରେ ମା ମରିଗଲା । ତାହାର ଶୁଦ୍ଧିକ୍ରିୟା କପରି କରିବି ବୋଲି ବହୁତ ଚିନ୍ତା କଲି । ଯିଏ ବଞ୍ଚିବା ପାଇଁ ଜୀବନରେ ବହୁତ କସରତ କରିଛି, ଯେଉଁ ସମାଜରେ ଅସହାୟ ବିଧବାର ପ୍ରତିପୋଷଣ ପାଇଁ କେହି ଚିନ୍ତା କଲେ ନାହିଁ, ଆମ ଘରେ ସ୍ଥାନ ପାଇ ନ ଥିଲେ ଜୀବନର ଶେଷ ଦଶାରେ ସେ କି ଦୁଃଖ ଭୋଗିଥାନ୍ତା—ଏହି କଥା ସବୁ ମନକୁ ଆଣି ସିଦ୍ଧାନ୍ତ କଲି ଯେ, ସେହି ସମାଜର ଲୋକମାନଙ୍କୁ ଡାକି ଭୂରି ଭୋଜନ ଦେବାରେ ସାର୍ଥକତା କିଛି ନାହିଁ । ବରଂ ତା ନାମରେ କୌଣସି କୀର୍ତ୍ତି କରିଦେବି । ଏହି କଥା ବନ୍ଧୁମାନଙ୍କୁ କହନ୍ତେ କେହି ମୋ ପ୍ରସ୍ତାବକୁ ସ୍ୱାଗତ କଲେ ନାହିଁ । ତେଣୁ ମତ ପରିବର୍ତ୍ତନ କରି ସାମାଜିକ ବିଧି ବ୍ୟବସ୍ଥାକୁ ଆଦରିଲି । ତାହାର ଶୁଦ୍ଧିକ୍ରିୟାର ବିଭିନ୍ନ ଗ୍ରାମର ବହୁ ଲୋକ ଭୂରି ଭୋଜନରେ ଆପ୍ୟାୟିତ ହୋଇଥିଲେ ।

ମୋତେ ଯେଉଁଦିନ ସେ ନୂଆ କରି କୋଳରେ ଧରିଲା, ସେଦିନ ତାହାର ଦୁଃଖ ଅମାନିଶିର ଅବସାନ ଘଟିଥିଲା ଏବଂ ମୋତେ ଛାଡ଼ି ସେ ଇହଧାମରୁ ବିଦାୟ ନେବାବେଳେ ମୁଁ ତାହା ପ୍ରତି ମୋର ଚରମ ଓ ପରମ କୃତଜ୍ଞତା ଅର୍ପଣ କରିଥିଲି । ଅତି ପର ଅତି ଆପଣାର ହେବା ସୃଷ୍ଟିର ବୈଚିତ୍ର୍ୟ ।

ମୋର ସାବତ-ମା'ଙ୍କ ଅସ୍ନେହ ମୁଁ ଭୂରି ଭୂରି ଅନୁଭବ କରିଛି । ସେଥିପାଇଁ ସ୍ତ୍ରୀର ମୃତ୍ୟୁ ସମ୍ବନ୍ଧରେ ଭବିଷ୍ୟଦ୍ ବାଣୀ ଶୁଣିଲା ଦିନ ସ୍ପଷ୍ଟ ପ୍ରତିଜ୍ଞା କରିଥିଲି ଯେ, ଯଦି ସେ ସନ୍ତାନ ଛାଡ଼ି ଚାଲିଯାଏ, ତେବେ ମୁଁ ତାହାକୁ ସାବତ-ମା'ର ଅତ୍ୟାଚାର ଭୋଗିବାକୁ ଦେବି ନାହିଁ ।

ପରେ ବୁଝିଲି, ସାବତ-ମା'ଙ୍କର ସେହି ଅସ୍ନେହ ଅନ୍ତରାଳରେ ମୋ ଜୀବନର ପରମ ସୌଭାଗ୍ୟ କପରି ଲୁକ୍କାୟିତ ଥିଲା । କୈକେୟୀଙ୍କ

ଯୋଗୁଁ ସମାପ୍ତ ରଚିତ ହେଲା—ରାମ ଯୁଗେ ଯୁଗେ ଦେବତା ପରି ପୂଜା ପାଇଲେ । ସେହିପରି ମୋର ସାବତ-ମା'ଙ୍କ ଯୋଗୁଁ **"ଜଣେ ଶିକ୍ଷକର ନିଜ କଥା"** ସମ୍ଭବ ହୋଇଛି ଏବଂ ପାଦଚାପପୂର୍ଣ୍ଣ ସଂସାରରେ ମୁଁ ଦିବ୍ୟ ଜୀବନ ଲାଭ କଲି ପରି ମନେ କରୁଛି । ତେଣୁ ଆଜି ସାବତ-ମା' ମୋର ପରମ ପୂଜ୍ୟା, ମୋର ଜୀବନ ଗଠନରେ ତାଙ୍କର ଅବଦାନର ତୁଳନା ନାହିଁ । ତାଙ୍କର ସ୍ମୃତି ଅବିସ୍ମରଣୀୟ ।

ତାଙ୍କର ନାମ ଶୋଭନା । ବର୍ତ୍ତମାନ ବୟସ ୮୦ ହେବ ।

ମୋର କନ୍ୟା କମଳାକୁମାରୀ ଠିକ୍ ସାତ ଦିନରେ ମା'କୁ ହରାଇଲା । ମୋର ମା ଓ ସାବତ-ମା'ଙ୍କ ଉପରେ କନ୍ୟାର ଦାୟିତ୍ୱ ଦେଇ ମୁଁ ସ୍କୁଲ କାମରେ ମାତିଲି । ଘରଟି ସ୍କୁଲ ପାଖରୁ ଡାକେ ବାଟ ହେଲେହେଁ ଯିବାକୁ ସମୟ ପାଏନା । କେବଳ ରବିବାର ଦିନ ଯାଇ କନ୍ୟାଟିକୁ ଦେଖିଆସେ ।

ଝିଅକୁ ଶିଶୁ ଶ୍ରେଣୀରେ ନାମ ଲେଖାଇ ଦେବାପରେ ତାହା ଉପରେ ଦୃଷ୍ଟି ରଖିବା ଲାଗି ମୁଁ ମୋର ମା ଓ ଝିଅକୁ ଆଣି ପାଖରେ ରଖିଲି । ସ୍କୁଲର ଅତି ପାଖରେ ମୋର ଖଣ୍ଡିଏ ଘର ଥିଲା ।

କମଳା ନିମ୍ନପ୍ରାଥମିକ ବୃତ୍ତି ପରୀକ୍ଷାକୁ ଯିବାର ଠିକ୍ ହେଲା । ପରୀକ୍ଷାର କିଛି ଦିନ ପୂର୍ବରୁ ମୁଁ ସକାଳେ ଘଣ୍ଟାଏ କରି ତାହାର ପଢା ଦେଖିବାରେ ଲାଗିଲି । ଦିନେ ତାକୁ ବାପାଙ୍କ ପାଖକୁ ଚିଠିଏ ପତ୍ର ଲେଖି-ବାକୁ କହିଲି । ସେ କଲମଟି ଧରି ତଳକୁ ମୁହଁ ପୋତି ବସି ରହିଲା, କିନ୍ତୁ ଲେଖିଲା ନାହିଁ । ମୁଁ ବିସ୍ମିତ ହେଲି ଯେ, ଯାକୁ କାହିଁକି ମନୋଭାବ କରିଗଲା । ମୁଁ କୌଣସି ପ୍ରକାରେ ଜାଣିପାରିଲି ଯେ, ତାକୁ ପ୍ରଥମେ 'ବାପା, ମୋର ପ୍ରଣାମ ଗ୍ରହଣ କରିବେ' ଏଇ କଥା ଲେଖିବାକୁ ପଡ଼ିବ । ସେ ପାଞ୍ଚ ବର୍ଷର ହେବା ପର୍ଯ୍ୟନ୍ତ ମୋତେ ବାପା ବୋଲି ଡାକିବାର ସୁଯୋଗ ପାଇ ନାହିଁ । ତେଣୁ ବାପା ଶବ୍ଦ ଲେଖି ପତ୍ର ଲେଖା ଆରମ୍ଭ କରିବାକୁ ତାକୁ ଲାଜ ମାଡୁଛି । ତାହାର ଏହି ଦୁର୍ବଳତା ଦୂର କରିବା ପାଇଁ ତାକୁ କହିଲି—"ତୁ ଯେଉଁଦିନ କହିବୁ, ବାପା ଆସ ଖାଇବ, ସେହିଦିନ ମୁଁ ଘରକୁ ଖାଇବାକୁ ଯିବି, ନଚେତ୍ ନୁହେଁ ।"

ମୁଁ ମୋର କଥା ଲେଖି ଶ୍ରାଦ୍ଧଦିନ ପର୍ଯ୍ୟନ୍ତ ଘରକୁ ଖାଇବାକୁ ନ ଯାଇ ହଷ୍ଟେଲରେ ଖାଇଲି । ମା ସେତେ କହିଲା, ମୁଁ ଶୁଣିଲି ନାହିଁ । ପଞ୍ଚମ ଦିନ ଝିଅ ଆସି ମୋତେ ବାପା ସମ୍ବୋଧନ କରି ଖାଇବାକୁ ଡାକିବାରୁ ମୁଁ ଗଲି ।

ନାନା ଘଟଣାରେ ଝିଅର ଚରିତ୍ର ଗଠନ ଦିଗରେ ମୁଁ ଏହିପରି ଦୃଢ଼ତା ପ୍ରକାଶ କରିଛି । ସେ ମା-ହେଉଣ୍ଡ ବୋଲି ମୋର ଅନ୍ତର ଭିତରେ ତା ପ୍ରତି ଯଥେଷ୍ଟ ସ୍ନେହ ଥିଲେ ବି ମୁଁ ଆବଶ୍ୟକ ସମୟରେ ନିର୍ମମ ଭାବରେ କଠୋର ହୋଇଛି ।

ସେ ହୋହଲ ହାଇସ୍କୁଲରେ ଦୁଇ ବର୍ଷ ପଢ଼ିବା ପରେ ମୋର ମା' ମରିଯିବାରୁ ତାକୁ କଟକରେ ରେଭେନ୍‌ସା ବାଳିକା ବିଦ୍ୟାଳୟରେ ପଢ଼ାଇଲି । ସେ ୨ୟ ଶ୍ରେଣୀରେ ମାଟ୍ରିକ ପାସ୍ କଲା ଓ ଶୈଳବାଳା ମହିଳା କଲେଜରୁ ଆଇ: ଏ: ପାସ୍ କରିବା ପରେ ୧୯୫୦ ମସିହାରେ ତାହାର ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ମୋର ଜାମାତା ଶ୍ରୀ ଗୌରହରି ସାମନ୍ତରାୟ ଜଣେ ଡେପୁଟୀ କଲେକ୍ଟର । ଶିକ୍ଷାବିଭାଗର ପୂର୍ବତନ ଡିରେକ୍ଟର ଶ୍ରୀ ବଂଶୀଧର ସାମନ୍ତରାୟଙ୍କ ଖୁଡ଼ୁତା ପୁଅ ଭାଇ ।

ମୋର ବଡ଼ ନାତି ଭବାନୀ ପ୍ରସାଦ (ବାପୁଣୀ) ଓ ବଡ଼ ନାତୁଣୀ ମଞ୍ଜୁଶ୍ରୀ, ଉଭୟେ ମାଟ୍ରିକ୍ ପରୀକ୍ଷାରେ ୧ମ ଶ୍ରେଣୀରେ ପାସ୍ କରି ସରକାରୀ ବୃତ୍ତି ପାଇଥିଲେ । ଉପାଧି ପରୀକ୍ଷାରେ ଯଥାକ୍ରମେ ଇଂରାଜୀ ଓ ପ୍ରାଣୀବିଜ୍ଞାନରେ ୨ୟ ଶ୍ରେଣୀ ଅନର୍ସ ସହ ଉତ୍ତୀର୍ଣ୍ଣ ହୋଇ ଉପାଧ୍ୟୁତ୍ତର ଶ୍ରେଣୀରେ ନାମ ଲେଖାଇଛନ୍ତି । ମଝିଆଁ ନାତି ଜଗଦୀଶ ପ୍ରସାଦ (କେଟାଜୀ) ମାଟ୍ରିକ୍ ପରୀକ୍ଷାରେ ବୃତ୍ତି ଲାଭ କରି ଥିଲା । ସେ ପ୍ରଥମ ଶ୍ରେଣୀରେ ଆଇ. ଏସ୍‌ସି. ପାସ୍ କରି ବର୍ତ୍ତମାନ ଖଡ଼ଗପୁରରେ Indian Institute of Technologyରେ Electrical Engineering ପଢ଼ୁଛି । ସାନ ନାତି (ଲାଲୁ) ମାଟ୍ରିକ୍ ପରୀକ୍ଷାରେ ବୃତ୍ତି ଲାଭକରି ବର୍ତ୍ତମାନ ଆଇ. ଏସ୍. ସି. ପଢ଼ୁଛି । ସାନ ନାତୁଣୀ ଇତିଶ୍ରୀ ଦଶମ ଶ୍ରେଣୀରେ ଅଧ୍ୟୟନ କରୁଛି ।

ସମାଜରେ ପ୍ରତ୍ୟେକ ଗୃହସ୍ଥର ବୈବାହିକ ବନ୍ଧୁ ଓ ସୂର୍ଯ୍ୟ-ବନ୍ଧୁ, ଏହି ଦୁଇ ପ୍ରକାର ବନ୍ଧୁ ଥାନ୍ତି । ବିବାହ ବ୍ରତ ଇତ୍ୟାଦି ଉତ୍ସବରେ ବନ୍ଧୁ ଘରକୁ ଗୁଆ ପଠାଯାଏ ଏବଂ ବନ୍ଧୁ ଘରୁ ଭାର ବା ବେଭାର ମିଳେ ।

ପନପର୍ବବା, ଦୁଧ ଦହି ଓ ମାଛ ଘରରୁ ପଠାଯାଏ । ବେଶୀର କହିଲେ ନଗଦ ଟଙ୍କାକୁ ବୁଝାଏ । ସାଧାରଣତଃ ଦେଖାଯାଏ, ଘର ବା ବେଶୀର ଆଖି ଦୃଶିଆ ନ ହେଲେ ଦୁଇ ବନ୍ଧୁଙ୍କ ମଧ୍ୟରେ ମତାନ୍ତର ଘଟେ । ସେ ଦୁହେଁ ନାମକୁ ମାତ୍ର ବନ୍ଧୁ ଥିଲେହେଁ ବନ୍ଧୁତାର ଆନନ୍ଦ ଉପଭୋଗ କରି ପାରନ୍ତି ନାହିଁ । ମୋର ପୂର୍ବ-ବନ୍ଧୁମାନେ ଦରିଦ୍ର ଥିବାରୁ ମୋର କନ୍ୟାର ବିବାହ ବେଳକୁ ସେମାନଙ୍କ ଘରକୁ ଗୁଆ ପଠାଇ ନିମନ୍ତ୍ରଣ କରିବା ସଙ୍ଗେ ସଙ୍ଗେ ଅନୁରୋଧ କରିଥିଲି ଯେ, କେହି ଘର ବା ବେଶୀର ପଠାଇବେ ନାହିଁ । ମାତ୍ର ମୋ ଘରେ ପାଦ ପକାଇ, ଲୁଗା ପିନ୍ଧି, ଶାଗ ଭାତ ଖାଇ ବର-କନ୍ୟାକୁ ଆଶୀର୍ବାଦ କରିବେ । ତାହାହିଁ ହୋଇଥିଲା । ଦରିଦ୍ର ବନ୍ଧୁଠାରୁ କିଛି ପାଇବାର ଆଶା ନ ରଖି ତାହାକୁ ସାହାଯ୍ୟ କରିବା ଉଚିତ ବୋଲି ମୁଁ ଚିନ୍ତା କରୁଥିଲି ।

ମୋର ବୈବାହିକ ବନ୍ଧୁମାନଙ୍କର ସ୍ୱାର୍ଥଜନିତ ସଙ୍କୀର୍ଣ୍ଣତା ମୋ ପକ୍ଷରେ ଅସହ୍ୟ ହେବାରୁ ମୁଁ ସେମାନଙ୍କୁ ଗୁଆପକା ବନ୍ଧୁ ତାଲିକାରୁ କାଟି ଦେବାକୁ ବାଧ୍ୟ ହୋଇଥିଲି ଏବଂ ଉପରୋକ୍ତ ଦୁଇ ପ୍ରକାର ବନ୍ଧୁଙ୍କ ଅପେକ୍ଷା କୌଣସି ସମ୍ପର୍କ ନ ଥିବା ବନ୍ଧୁ ଅଧିକତର ମଙ୍ଗଳାକାଂକ୍ଷୀ ବୋଲି ମନେ କରୁଥିଲି । ମୁଁ ମୋର ୭୦ ବର୍ଷ ବୟସରେ ଏପ୍ରକାର ସିଦ୍ଧାନ୍ତ କରି ମୁଁ ଯେ କିଛିଦିନ ପର୍ଯ୍ୟନ୍ତ ମାନସିକ ସନ୍ତାପରେ କାଳ କାଟିଥିଲି, ଏହା ସ୍ୱୀକାର କରିବାକୁ ହେବ ।

---

# ମୋର ଜୟନ୍ତୀ

ବିଶିଷ୍ଟ ବ୍ୟକ୍ତିମାନଙ୍କର ଜନ୍ମଦିବସରେ ଜୟନ୍ତୀ ଉତ୍ସବ ପାଳନ କରିଯିବା ପ୍ରାୟ ୫୦ ବର୍ଷ ତଳେ ନ ଥିଲା । ଏବେ ଏପରି ଉତ୍ସବ ହେଉଛି । କବି, ଲେଖକ, ଦେଶହିତୈଷୀ, ସମାଜସେବୀ ଇତ୍ୟାଦି, ଯେଉଁମାନଙ୍କ ଯୋଗୁଁ ଦେଶ ଓ ଜାତିର ବିପୁଳ ହିତ ସାଧିତ ହୁଏ, ସେମାନଙ୍କୁ ବର୍ଷକେ ଥରେ ସ୍ମରଣ କରାଯିବା ଗୁଣଗ୍ରାହିତାର ପରିଚାୟକ । ସେମାନଙ୍କ ସ୍ମରଣ ଓ ଗୁଣକୀର୍ତ୍ତନରେ ଦେଶର ନାଗରିକ ବୃନ୍ଦ ପ୍ରଭାବିତ ହେବା, ସେମାନଙ୍କୁ ଅନୁସରଣ କରି ଜୀବନର ଗତିପଥ ନିରୂପଣ କରିବା ସମସ୍ତଙ୍କ ପକ୍ଷରେ ସମ୍ଭବ ନ ହେଲେ ହେଁ ମୁଷ୍ଟିମେୟ କେତେ ଜଣ ଯେ ନବଜୀବନ ଲାଭ କରିବେ, ଏଥିରେ ସନ୍ଦେହ ନାହିଁ । ସମାଜରେ ପୂଜ୍ୟ-ପୂଜାର ଅଭାବ ପରିଲକ୍ଷିତ ହେଉଥିବା ବେଳେ ଯେଉଁ କେତେ ଜଣ ଜୟନ୍ତୀ ମାଧ୍ୟମରେ ସଂପୃକ୍ତ ବ୍ୟକ୍ତିଙ୍କ ପ୍ରତି କୃତଜ୍ଞତା ପ୍ରକାଶର ମନୋବୃତ୍ତି ସୃଷ୍ଟି କରନ୍ତି, ସେମାନେ ନିଶ୍ଚୟ ଧନ୍ୟବାଦାର୍ହ ।

୧୯୭୩ ମସିହାରେ କଟକର କେତେକ ସାହିତ୍ୟିକ ବନ୍ଧୁ ମୋର ୭୯ତମ ଜୟନ୍ତୀ ପାଳନ ପାଇଁ ଉତ୍ସାହ ପ୍ରକାଶ କଲେ । ଯେଉଁମାନେ ଉଦ୍ୟମ କଲେ, ସେମାନେ ଅବଶ୍ୟ ମୋର କର୍ମବହୁଳ ଜୀବନ ସମ୍ପର୍କରେ ବିଶେଷ ଭାବରେ ଅବଗତ ଥିଲେ । ଶିଶୁ ସାହିତ୍ୟରେ ରାଷ୍ଟ୍ରପତି ପୁରସ୍କାର ଓ ରାଜ୍ୟସ୍ତରୀୟ ପୁରସ୍କାର ପାଇବା, ଯୌବନରୁ ବିପର୍ଯ୍ୟକ ରୂପେ ସମାଜ-ମଙ୍ଗଳରେ ବ୍ରତୀ ହେବା, ନିମ୍ନ ମାଧ୍ୟମିକ ଓ ମାଧ୍ୟମିକ ସ୍କୁଲ ପ୍ରତିଷ୍ଠା କରିବା, ସମାଜରୁ କୁସଂସ୍କାର ଦୂରୀକରଣ ଦିଗରେ କେତେକ କାର୍ଯ୍ୟ କରିବା ଏବଂ ଶିକ୍ଷକ ସମାଜର କଲ୍ୟାଣ କଳ୍ପେ ନିମ୍ନମାଧ୍ୟମିକ ସଂଘ ପ୍ରତିଷ୍ଠା କରିବା, ଶିକ୍ଷକ ମହାସଂଘର ସଭାପତି ହେବା ପାଇଁ ସବୁ ଶିକ୍ଷକଙ୍କର ମୋ ପ୍ରତି ଆସ୍ଥା ଥିବା—ଏହି ସବୁ କାର୍ଯ୍ୟ କଳାପ ସେହି ସାହିତ୍ୟିକମାନେ ନିଶ୍ଚୟ ବିଚାରକୁ ନେଇଥିବେ ।

ଜୟନ୍ତୀ କମିଟି ଗଠିତ ହେଲା । 'ସଂସାର' ସମ୍ପାଦକ ଶ୍ରୀ ରାମକୃଷ୍ଣ ନନ୍ଦ ଏବଂ ଶ୍ରୀ ଚୈତନ୍ୟ କୁମାର ସାହୁ ସେହି କମିଟିର ଯଥାକ୍ରମେ ସଭାପତି ଓ ସମ୍ପାଦକ ହୋଇ ଜୟନ୍ତୀର ସଫଳତା ପାଇଁ ଲାଗିପଡ଼ିଲେ ।

ତାଙ୍କ ଆହ୍ୱାନରେ ନିମ୍ନ-ମାଧ୍ୟମିକ ସଂଘର ତତ୍‌କାଳୀନ ସଭାପତି ଶ୍ରୀ ହରିଶ୍ଚନ୍ଦ୍ର ଦେ ଓ ସାଧାରଣ ସମ୍ପାଦକ ଶ୍ରୀ ଦାଶରଥି ନାୟକ ସମଗ୍ର ରାଜ୍ୟର ନିମ୍ନମାଧ୍ୟମିକ ଶିକ୍ଷକବୃନ୍ଦଙ୍କୁ ଆର୍ଥିକ ସାହାଯ୍ୟ ଲେଡ଼ିଲେ ଓ ସଂଘର ଅର୍ଥ ସଞ୍ଚୟରୁ କିଛି ଟଙ୍କା ଜୟନ୍ତୀ ପାଇଁ ମଞ୍ଜୁର କଲେ ।

କଟକ ସହରର ଜନତା ରଙ୍ଗମଞ୍ଚରେ ଉତ୍ସବର ଆୟୋଜନ ହେଲା । ସର୍ବଶ୍ରୀ ସଦାଶିବ ମିଶ୍ର, ଶ୍ରୀରାମଚନ୍ଦ୍ର ଦାଶ, କୁଞ୍ଜ ବିହାରୀ ଦାଶ, ଶ୍ରୀହର୍ଷ ମିଶ୍ର, ଶତ୍ରୁଘ୍ନ ନାଥ, ରବିନାରାୟଣ ମହାପାତ୍ର, ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ, ଅବନୀକୁମାର ବରାଳଙ୍କ ସମେତ ବିଭିନ୍ନ ଅଞ୍ଚଳର ଶିକ୍ଷକ ବୃନ୍ଦ ସମବେତ ହୋଇ ମୋ ପ୍ରତି ଶୁଭେଚ୍ଛା ପ୍ରକାଶ କରିଥିଲେ । ସାଂସ୍କୃତିକ କାର୍ଯ୍ୟକ୍ରମ ମଧ୍ୟ ସମସ୍ତଙ୍କ ପକ୍ଷରେ ସନ୍ତୋଷ ଜନକ ହୋଇଥିଲା । ମୋତେ ପ୍ରଦତ୍ତ ସମ୍ବର୍ଦ୍ଧନା ପତ୍ରରେ ମୋର ପ୍ରଶଂସା ଶୁଣି ଏବଂ ବିଭିନ୍ନ ଶିକ୍ଷକ ସଂଘ ପ୍ରଦତ୍ତ ଅସଂଖ୍ୟ ପୁଷ୍ପହାର ଗ୍ରହଣ କରି ମୁଁ ଆନନ୍ଦରେ ଅଭିଭୂତ ହୋଇଯାଇଥିଲି ।

୧୯୭୪ ମସିହାରେ ମୋର ଜନ୍ମସ୍ଥାନ ଦୋହଲରେ ଏବଂ ମୋ ପ୍ରତିଷ୍ଠିତ ଦୋହଲ ମଡ଼େଲ ହାଇସ୍କୁଲର ପ୍ରାଙ୍ଗଣରେ ୭୦ ତମ ଜୟନ୍ତୀ ଉତ୍ସବ ଅନୁଷ୍ଠିତ ହୋଇଥିଲା । ମୋ କର୍ମ ଭୂମିର ଜନସାଧାରଣଙ୍କ ଉଦ୍ୟମରେ ଏହା ମଧ୍ୟ ସାଫଲ୍ୟ ମଣ୍ଡିତ ହୋଇଥିଲା । ସର୍ବଶ୍ରୀ ଶ୍ରୀହର୍ଷ ମିଶ୍ର, ଡକ୍ଟର କେଶବ ଚନ୍ଦ୍ର ସାହୁ, ସରଳା ଦେବୀ, ପଣ୍ଡିତ ପ୍ରବୋଧ କୁମାର ମିଶ୍ର ଓ ବିଧାନସଭା ସଦସ୍ୟ ଭାଗବତ ପ୍ରସାଦ ମହାନ୍ତିଙ୍କ ଉପସ୍ଥିତିରେ ବହୁ ସଂଖ୍ୟକ ପୁରୁଷ, ସ୍ତ୍ରୀ, ବାଳକ ବାଳିକା ମୋ ପ୍ରତି ସ୍ନେହ ଭକ୍ତି ପ୍ରକାଶ କରିଥିଲେ ।

ଏ ବର୍ଷ ୮।୧୨।୭୪ ତାରିଖରେ ବର୍ମ୍ମୁ ମଙ୍ଗରାଜପୁର ମ. ଇ. ସ୍କୁଲର ଶିକ୍ଷକ ଶ୍ରୀ ଅନନ୍ତ ଚରଣ ବେହେରାଙ୍କ ଉଦ୍ୟମରେ ଧର୍ମଶାଳା ବ୍ଲକର ଶିକ୍ଷକମାନେ ସେହି ସ୍କୁଲରେ ମୋତେ ସମ୍ବର୍ଦ୍ଧନା ଜଣାଇଥିଲେ । ମଧୁପୁର ହାଇସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ବୈକୁଣ୍ଠ ନାଥ ରଥ ଓ ମୁରାରିପୁର

ଗୋପାଳଜୀଉ ହାଇସ୍କୁଲର ପ୍ରଧାନ ଶିକ୍ଷକ ରାଜକିଶୋର ପାତ୍ରୀ ନିମ୍ନମାଧ୍ୟମିକ ସଂଘର ସାଧାରଣ ସମ୍ପାଦକ ଶ୍ରୀ ଦାଶରଥି ନାୟକ ଓ ଡୋଳପୁର ଶିକ୍ଷାଞ୍ଚଳ ସଂଘର ସମ୍ପାଦକ ଶ୍ରୀ ନିତ୍ୟାନନ୍ଦ ସାହାଣୀ ସର୍ବସାଧାରଣଙ୍କୁ ଭାଷଣ ଦେଇଥିଲେ ।

୧୯୭୫ ମସିହାରେ ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପରେ ମୋର ୭୧ ତମ ଜୟନ୍ତୀ ୫ । ୧୨ । ୭୫ରେ ରାଜନୈତିକ ପୁରୀ ଜିଲ୍ଲା ଅର୍ଥାତ୍ ପୁରୀ, ଭୁବନେଶ୍ୱର, ନୟାଗଡ଼ ଓ ଖୋରଧା ଶିକ୍ଷା ଜିଲ୍ଲାଗୁଡ଼ିକର ଶିକ୍ଷକମାନେ ପାଳନ କରିଥିଲେ । ସର୍ବଶ୍ରୀ ରାଜକିଶୋର ରାୟ, ବାଙ୍କ ବିହାରୀ ଦାସ, ଡକ୍ଟର କେଶବ ଚନ୍ଦ୍ର ସାହୁ, ଡକ୍ଟର ଗୋକୁଳଗୋବିନ୍ଦ ଶାସ୍ତ୍ରୀ, ଡକ୍ଟର ବେଣୁଧର ପ୍ରଧାନ, ବିଧାନ ସଭା ସଦସ୍ୟ ବିପିନ ବିହାରୀ ଦାଶଙ୍କ ଉପସ୍ଥିତିରେ ଏହି ଉତ୍ସବଟି ସ୍ମରଣୀୟ ହୋଇ ପାରିଥିଲା । ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ ଓ କଇଁଚ ଜନତା ମ. ଇ. ସ୍କୁଲର ପ୍ରଧାନ ଶିକ୍ଷକ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଯଥାକ୍ରମେ ସଭାପତି ଓ ସମ୍ପାଦକ ଭାବରେ ଦାୟିତ୍ୱ ବହନ କରିଥିଲେ ।

ସାଂସ୍କୃତିକ କାର୍ଯ୍ୟକ୍ରମରେ ମୋ ଚରିତ୍ରର କେତେକ ଘଟଣାର ରୂପାୟନ ପ୍ରଦର୍ଶିତ ହୋଇଥିଲା । କଟକର କଳାକାରମାନେ ସେଗୁଡ଼ିକର ଅଭିନୟ କରାଇଥିଲେ । କୁଦଆରୀ ମ. ଇ. ସ୍କୁଲର ଛାତ୍ରମାନେ ମୋ ଜୀବନ କାହାଣୀକୁ ପାଲା ଆକାରରେ ଗାୟନ କରିଥିଲେ ।

୨୨ । ୧୧ । ୭୫ ତାରିଖରେ ନେଉଳପୁର ମ. ଇ. ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ କ୍ଷେତ୍ରବାସୀ ବାରିକ ଅଣ୍ଡିଆ ମ: ଇ: ସ୍କୁଲରେ ମୋତେ ସମ୍ବର୍ଦ୍ଧନା ଜଣାଇବା ପାଇଁ ଧର୍ମଶାଳା ବ୍ଲକର ଶିକ୍ଷକମାନଙ୍କୁ ସମବେତ କରାଇଥିଲେ । ସର୍ବଶ୍ରୀ ବାଙ୍କବିହାରୀ ଦାସ, ନିମ୍ନ-ମାଧ୍ୟମିକ ସଂଘର ଯୁଗ୍ମ ସମ୍ପାଦକ ରାଜକିଶୋର ଭୁଜବଳ, ସାଧାରଣ ସମ୍ପାଦକ ଦାଶରଥି ନାୟକ, ମଧୁପୁର ହାଇସ୍କୁଲ ଓ ମୁରାରିପୁର ଗୋପାଳଜୀଉ ହାଇସ୍କୁଲର ପ୍ରଧାନ ଶିକ୍ଷକମାନେ ଶ୍ରୀ ବୈକୁଣ୍ଠନାଥ ରଥ ଓ ରାଜକିଶୋର ପାତ୍ରୀ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀଙ୍କ ସଭାପତିତ୍ୱରେ ଜୟନ୍ତୀ ସଭା ଅଳଂକୃତ କରିଥିଲେ ।

---

# ଶିଷ୍ୟବର୍ଗଙ୍କ ଲେଖାରୁ

Phone No. [illegible]

THE SERVANTS OF INDIA SOCIETY

Members
L. N. Sahu, B.A., M.L.A.
[illegible]

BUXIBAZAR,
CUTTACK-1 (Orissa)

Ref. No. ____________

Dated 16.5. 1954

Sri Banamali Brahmachari is known to me for very many years. His scholarship in the field of Oriya literature is known to me too. He is an able and cheerful writer. His capacity for building of things into patience and diligence also I know. In fact, I have seen with my own eyes, how he laboured day & night, starved, prayed, and sacrificed everything for the building of the Dolobi M.E. School which is now a High School. He is dear to me as a good soul.

Lakshminarayan Sahu

Sri Banamali Brahmachari is known to me for very many years. His scolarship in the field of Oriya literature is known to me too. He is an able and chaste writer. His capacity for building up things into patience and diligence also I know. In fact, I have seen with my own eyes, how he laboured day and night, slaved, prayed and sacrificed everything for the building up of the Dohali M. E. School which is now a High School. He is dear to me as a good soul.

**Lakshmi Narayan Sahu**

**Sri S. Natb, Esqr. M. A. (Lond.)**

*Organiser of Basic Education, Orissa*

*Angul, the 21st April, 1954*

I have great pleasure in saying that Sri Banamali Brahmachari of Dohali is widely known for his selfless service in the cause of education He is a man of unassuming nature—tbe type of plain living and high thinking always devoted to social reforms and education. His untiring efforts for the establishment of the Dohali High School is a case in point. Any one who talks to him or comes in touch with him cannot but be impressed with the high idealism of his life. He is really an asset to every institution to which he is attached, or the village where he lives His missionary spirit and painstaking habits are simply exemplary.

May god grant him long life.

**Sd./S. Nath**

*Organiser of Basic Education, Orissa*

Dr M. Mansinha, M A., Ph. D. (Durham).
*Principal, Gangadhar Meher College*
*Sambalpur, the 7th April, 1954.*

This is to certify that I have had the pleasure of knowing Sree Banamali Brahmachari for a long time. He is a trained teacher and has taken up teaching with a missionary spirit, carying little for material gains. I wish this state of Orissa had atleast one such teacher in each school if not more, so that the younger generation could naturally grow up with the impression that atleast some of the precepts preached about in schools and outside could be easily lived upto in spite of poor circumstances, to the great god of the Country, the peeple and themselves.

**Sd./-M. Mansinha**
*Principal*

**Sukanta Rao, M. Sc. (Cal), Dip-in-Ed (Bristol)**

*District Inspector of Schools, Cuttack*

This is to certify that Sri Banamali Brahmachari is very well known to me for over twenty years. He was the teacher-founder of Dohali M. E. School now raised to the status of Dohali Model High School. His sterling character has earned for him the title of Brahmachari. His amiable behaviour has endeared him to many like my humble self. He hastdynamic personality and is even ready to help others. He has sacrificed his all for the good of the country He is a model teacher. I feel sure he will be an acquisition to any institution.

*Kaligali* **Sukanta Rao**

*Cuttack-2* *1-5-54*

# ସମ୍ମାନାର୍ହ ଶିକ୍ଷକ

ଶ୍ରୀ ବନମାଳୀ ବ୍ରହ୍ମଗ୍ରଣ୍ଠ ଗତ କେତେବର୍ଷ ହେଲା ଶିକ୍ଷକମାନଙ୍କ ସଂଗଠନ ଓ ସେମାନଙ୍କ ଆପତ୍ତି ଅଭିଯୋଗମାନ କର୍ତ୍ତୃପକ୍ଷଙ୍କ ଠାରେ ଉତ୍ଥାପନ କାର୍ଯ୍ୟରେ ନିଜକୁ ପୂର୍ଣ୍ଣଭାବରେ ନିୟୋଗ କରିଛନ୍ତି । ସେ ନିଜର ଜୀବନର ଅଭିଳାଷକୁ ଶିକ୍ଷକ ସାଧାରଣଙ୍କ ସେବାରେ ଲଗାଇଛନ୍ତି । ଏହା ସର୍ବସ୍ୱୀକୃତ ଯେ, ସମାଜରେ ଶିକ୍ଷକମାନଙ୍କର ଯେପରି ସମ୍ମାନିତ ସ୍ଥାନ ପାଇବାର କଥା, ସେମାନେ ପାଉ ନାହାନ୍ତି । ଏଥିପାଇଁ ଧ୍ରୁବ ତ ଶିକ୍ଷକମାନଙ୍କର କେଉଁଠି ତ୍ରୁଟି ହେଉଛି । ମୋର ମନେହୁଏ, ସେମାନେ ନିଜର ଆର୍ଥିକ ଉନ୍ନତି ଦିଗରେ ଯେପରି ଆଗ୍ରହୀ, ସମ୍ମାନର ସମ୍ପର୍କ ସବୁ କ୍ଷେତ୍ରରେ ନ ଥାଏ । ଅର୍ଥ ସମ୍ମାନ ଆଣି ଦିଏ, ଏହା ଏକ ପ୍ରଚଳିତ ଭ୍ରାନ୍ତ ଧାରଣା । ଏ ଧାରଣା ଶିକ୍ଷକମାନଙ୍କ ମନରୁ ଦୂର କରିବା ପାଇଁ ଶ୍ରୀ ବନମାଳୀ ବ୍ରହ୍ମଗ୍ରଣ୍ଠ ଆପ୍ରାଣ ଉଦ୍ୟମ କରି ଆସୁଛନ୍ତି । ଶିକ୍ଷକମାନେ ଅବହେଳିତ ନ ହେଉନ୍ତୁ, ଏହା ହିଁ ହେଲା ବ୍ରହ୍ମଗ୍ରଣ୍ଠଙ୍କ ସଂଗଠନର ମୂଳମନ୍ତ୍ର । ଏହାଙ୍କ ଉଦ୍ୟମରେ ଶିକ୍ଷକ ସମାଜ ଅନୁପ୍ରାଣିତ ହୁଅନ୍ତୁ, ଏହି କାମନା କରି ଶ୍ରୀ ବ୍ରହ୍ମଗ୍ରଣ୍ଠଙ୍କୁ ଶୁଭେଚ୍ଛା ଜ୍ଞାପନ କରୁଛି ।

**ଡଃ. ହରେକୃଷ୍ଣ ମହତାବ**

## ପୂଜ୍ୟ ପୂଜା

ସେବା-ତ୍ୟାଗ-ବଳେନ ଶୁଦ୍ଧ ପୁରୁଷ !
ପ୍ରୀତିପ୍ରଦାଂ ଭାରତୀଂ,
ଶଶ୍ୱତ୍ତେ ଶିବଦାଂ ପ୍ରଭାବ-ମହତୀଂ
ଲୋକ ସ୍ମରତ୍ୟାଦରାତ୍ ।
ଶିକ୍ଷା-ଦୀକ୍ଷିତ-ଶିକ୍ଷିତାଃ
ତବଖିଳାଃ ଛାତ୍ରାଃ ଗୁଣଗ୍ରାହିତାଃ
ସନ୍ମାର୍ଗଂ ସୁଭଗଞ୍ଚ ଯାନ୍ତି ନଅନ୍ତଂ ।
ତ୍ୱତ୍କୀର୍ତ୍ତିବର୍ତ୍ତିପ୍ରଭାଃ ।

ତବୈବ ସେବା ମହତୀ ମନୋହର
ବିଶାଳ ଚିନ୍ତା ଶୁଭ କର୍ମଣି ସ୍ଥିତଂ,
ଗରୀୟସୀ ଶିଷ୍ଟ-ସମାଜ-ଭାବନା
ତ୍ୱମେବ ଶଶ୍ୱଦ୍ ବରଣୀୟ ଉତ୍କଳେ ।

ଶ୍ରୀ ପ୍ରବୋଧ କୁମାର ମିଶ୍ର

## ଶୁଭାଶୀର୍ବାଦ

ସ୍ୱାଧୀନୋତ୍କଳ ରାଷ୍ଟ୍ରଶିକ୍ଷକ ମହାସଂଘ ମହାନାୟକଃ
ସ୍ରଷ୍ଟା ଶିକ୍ଷକ ଦର୍ପଣସ୍ୟ ସଦନେ ପ୍ରାଜ୍ଞଃ ସଦାଭାସ୍ୱରଃ
ବାଳାନାଂ ମନୋରଞ୍ଜନେ ସୁଲେଖକଃ କାଳଃଧିପୂର୍ଣାଂପରମ୍
ତ୍ରାତା ଶିକ୍ଷକରକ୍ଷକୋ ହି ସତତଂ ହେ ନାୟକ ! ଦୀବ୍ୟତାମ୍ ।

ପଣ୍ଡିତ ବଂଶୀଧର ଆଚାର୍ଯ୍ୟ
ପଞ୍ଚାମୁଣ୍ଡାଇ
( ଉପସଭାପତି, କଟକ ଜିଲ୍ଲା ମାଧ୍ୟମିକ ଶିକ୍ଷକସଂଘ)

---

# ଏତିକି ମୁଁ ମନାସୁଛି ଦୂରୁ

ହେ ବରେଣ୍ୟ କର୍ମବୀର, ହେ ନିଷ୍ଠକ ସାଧକ ସତ୍ତମ,
ପଲ୍ଲୀର ଅଖ୍ୟାତ କୋଣେ ଜନମିଲ କେଉଁ ଶୁଭକ୍ଷଣେ,
ଶିକ୍ଷକର ସଖା ସାଜ ଆଜୀବନ କରୁଛ ସଂଗ୍ରାମ,
ଧନ୍ୟ ଏ ଉତ୍କଳ ଭୂମି କୋଳେ ଧରି ତୁମପରି ଜଣେ ।
ସାଧନାର ଆଦ୍ୟ ଭୂମି ଦୋହଲରେ ବିଦ୍ୟାପୀଠ ଗଢ଼ି
ଶିକ୍ଷାର ଦିହୁଡ଼ି ଜାଳି ଦୂର କଲ ଅଜ୍ଞାନ-ତିମିର,
ତୁମରି ନିର୍ମଳ ସ୍ନେହ, ଉପଦେଶ, ଆଦର୍ଶରେ ବଢ଼ି
ଲକ୍ଷ୍ୟପଥେ ଚୂଲଛନ୍ତି ଶିଷ୍ୟ ତବ ଉଚ୍ଚ କରି ଶିର ।
ତେଜୋମୟୀ ବାଣୀ ତବ, ଶକ୍ତିଶାଳୀ ଲେଖନୀର ଭାଷା
ଦୋହଲ-ଦେହଳୀ ଡେଇଁ ପ୍ରସାରିଲେ ତବ ଶୁଭ୍ର ଯଶ,
ଶିକ୍ଷକ ସମାଜେ ତୁମେ ଜଗାଇଲ ଦେଇ ନୂଆ ଆଶା,
ଉଦ୍‌ଯୋଗର ଜୟବାନା ଉଡ଼ାଇଲ ଆହେ ନିରଳସ ।
ଯେଦିନ ବାଜିଲା କାନେ ମହାତ୍ମାର ମୁକ୍ତି-ଆବାହନୀ,
ସେଦିନୁ ସ୍ୱଦେଶ-ହିତେ ହେଲ ତୁମେ ଖଦି-ବସ୍ତ୍ରଧାରୀ
ଅନ୍ୟାୟର ପ୍ରତିରୋଧ ଜୀବନର ବ୍ରତରୂପେ ମଣି
ସାଜିଲ ସୈନିକ ତୁମେ ତ୍ୟାଗବୀର ଆହେ ବ୍ରହ୍ମଚାରୀ ।
ଶିକ୍ଷାର ସରଣୀ ପରେ କୀର୍ତ୍ତି ତବ ରହୁ ଅମଳିନ,
ଜୀବନର ପାନ୍ଥାପଥ ହେଉ ତବ ସୁଖମୟ, ଗୁରୁ,
ନ୍ୟାୟର ବିମଳ ତେଜେ ଅବଗାହି ହୋଇପାର ଲୀନ,
ଆଜ ଏହି ଶୁଭଦିନେ ଏତିକି ମୁଁ ମନାସୁଛି ଦୂରୁ ।

**ଶ୍ରୀ ରାମକୃଷ୍ଣ ନନ୍ଦ**
ସମ୍ପାଦକ, 'ମୀନାବଜାର'
କଟକ

# ବନମାଳୀ ବ୍ରହ୍ମଚାରୀ—
# ଏକ ଚଳନ୍ତି ଅନୁଷ୍ଠାନ

ସାଧାରଣ ମନୁଷ୍ୟ ଜନ୍ମ ହୁଏ, ବଢ଼େ, ନିଜର ଦେହ, ଦେହର ସମ୍ପୃକ୍ତ ସ୍ତ୍ରୀ-ପୁତ୍ର-କନ୍ୟା ପ୍ରତିପୋଷଣ କରେ, ସେମାନଙ୍କ ଲାଗି ବିଷୟ ସମ୍ପତ୍ତି ଆୟ କରେ, ବୃଦ୍ଧି କରେ, ରକ୍ଷା କରେ; ଦିନେ ସେ ଜଗତରୁ ବିଦାୟ ନିଏ । ଏହି ସାଧାରଣ ଜନତା ମଧ୍ୟରେ ଏପରି ଜଣେ ଅଧେ ଅସାଧାରଣ ବ୍ୟକ୍ତି ମଧ୍ୟ ବାହାର ଦୃଷ୍ଟିରେ ସମସ୍ତଙ୍କ ପରି ସାଧାରଣ ଜୀବନ ଅତିବାହିତ କରନ୍ତି । ଯଥା ସମୟରେ ଜଗତରୁ ବିଦାୟ ନିଅନ୍ତି । କିନ୍ତୁ ସେମାନଙ୍କର ରୁଚି, ଚିନ୍ତାଧାରା ଓ କାର୍ଯ୍ୟାବଳୀ ସେମାନଙ୍କୁ ଅନ୍ୟମାନଙ୍କ ଠାରୁ ଅଲଗା ଭାବରେ ଜଗତରେ ପରିଚିତ କରାଏ । କେବଳ ନିଜେ ଭଲ ଖାଇବା, ଭଲରେ ରହିବା—ଏ ଚିନ୍ତା ତାଙ୍କର ଥାଏ ନା, ସମସ୍ତେ ଯେପରି ଭଲରେ ଖାଇବେ, ରହିବେ, ଭଲ ମଣିଷ ହେବେ—ଏପରି ଚିନ୍ତା ତାଙ୍କର ସ୍ୱାଭାବିକ ଆଚରଣରେ ପ୍ରକାଶ ପାଏ । ସାଧାରଣ ବୁଦ୍ଧିରେ ସେମାନେ ଏକ ପ୍ରକାର ବେ-ହିସାବୀ । ହିସାବ କରି ମାପିଚୁପି, ଲାଭ- ଲୋକସାନ ଅଟକଳ କରି କାର୍ଯ୍ୟ କରିବା ତାଙ୍କ ପକ୍ଷରେ ସମ୍ଭବ ହୁଏ ନା । ସେମାନେ ଅମଡ଼ା ମାଡ଼ନ୍ତି, ଅବାଟରେ ବାଟ ଫିଟାନ୍ତି, ନିଜ ଗୋଡ଼ରେ କଣ୍ଟା ଫୁଟାଇ ରକ୍ତ ଝରାନ୍ତି, ଅପରକୁ ଚାଲିବାର ସୁବିଧା ଦିଅନ୍ତି । ସେମାନେ ମାଡ଼ ଖାଆନ୍ତି, ମାଡ଼ ଦେବାକୁ ସମୟ ସେମାନଙ୍କର ନାହିଁ । ନିନ୍ଦା ଗଞ୍ଜଣା ସହନ୍ତି, କିନ୍ତୁ ଅପରକୁ ନିନ୍ଦା କରିବାର ଅବସର ସେମାନଙ୍କର ନ ଥାଏ । କ୍ଷତ ସହନ୍ତି, କିନ୍ତୁ କ୍ଷତ, କରିବାର ପ୍ରବୃତ୍ତି ସେମାନଙ୍କର ଆସେନା । ସେମାନେ ଗଢ଼ନ୍ତି, ଗଢ଼ା ଜିନିଷ ଭାଙ୍ଗନ୍ତି ନାହିଁ—କେହି ଗଢ଼ିବାରେ ବାଧା ଦେଲେ ଆଉ ଜାଗାରେ ବସନ୍ତି, ପୁଣି ସେଠି ମଧ୍ୟ ଗଢ଼ନ୍ତି । ତିନ୍ତି ସ୍ୱର୍ଗକୁ ଗଲେ ଧ୍ୟାନ

କୁଟେ—ସେମାନେ ସେହିଁଠିକ ଆଣନ୍ତି ଗଢ଼ି ଗୁଲନ୍ତ । ଗଢ଼ିବାଟା ସେମାନଙ୍କର ଧର୍ମ । ସୃଷ୍ଟିରେ ଆନନ୍ଦ ହିଁ ସେମାନଙ୍କର ସତ୍ତା; ସୃଷ୍ଟି ସେମାନଙ୍କର ଧର୍ମ । ଏହିପରି ଜଣେ ସ୍ରଷ୍ଟା କ୍ଷଣଜନ୍ମା ପୁରୁଷ ଆମର ବନମାଳୀ ବ୍ରହ୍ମଚାରୀ ।

ବ୍ରହ୍ମଚାରୀ ନାମ ଶୁଣି କେହି ଭାବିବେ ନାହିଁ ଯେ ସେ ଆବାଳ୍ୟ ବ୍ରହ୍ମଚାରୀ । ବିବାହ ସେ କରିଥିଲେ । ଏକମାତ୍ର କନ୍ୟାର ପିତୃତ୍ୱ ଗୌରବରେ ସେ ଗୌରବାନ୍ୱିତ । ଅଥଚ ସେ ବ୍ରହ୍ମଚାରୀ । ଏହା ଏକ ମହା ବିରୋଧାଭାସ । ସବୁ କାର୍ଯ୍ୟ ତାଙ୍କର ସେଇଆ । ସେ ଏକ ବିରୋଧାଭାସର ସମନ୍ୱୟ ।

ମାତ୍ର ୨୭ ବର୍ଷ ବୟସରେ ପତ୍ନୀ ବିୟୋଗ ଘଟିଲା; ଏକମାତ୍ର କନ୍ୟାକୁ ତାଙ୍କ କୋଳରେ ଥୋଇ ମଙ୍ଗ ସାଧ୍ୱୀ ଇହଜଗତରୁ ବିଦାୟ ନେଲେ । ଇଚ୍ଛା କରିଥିଲେ ଆଉଥରେ ବିବାହ କରି ସେ ପଞ୍ଚପୁତ୍ରର ଜନକ ହୋଇ ଥାଆନ୍ତେ, କିନ୍ତୁ ସନ୍ତାନ ସ୍ନେହ ତାଙ୍କର ଅତ୍ୟନ୍ତ ବେଶୀ । ଶତ ସହସ୍ର ସନ୍ତାନର ଜ୍ଞାନଦାତା ପିତା ହେବାର ବ୍ୟକ୍ତି ମାତ୍ର ଗୋଟିଏ ଦୁଇଟି ପୁତ୍ରରେ ସନ୍ତୁଷ୍ଟ ହେବେ କିପରି ! କଠୋର-ତ୍ୟାଗପୂତ ବ୍ରହ୍ମଚର୍ଯ୍ୟ-ବ୍ରତ ଗ୍ରହଣ କଲେ ସେ ପୂର୍ଣ୍ଣଯୌବନରେ ।

ଆରମ୍ଭ ହେଲା ଦୋହଲ ମାଇନର ସ୍କୁଲ । ମଶାଣୀ ପଡ଼ିଆରୁ ହାଡ଼, ବାଉଁଶ, ମାଟି ହାଣ୍ଡି ଗୋଟେଇ ସ୍କୁଲଘର ତିଆରି ହେଲା । ପୂର୍ବରେ କେନ୍ଦ୍ରାପଡ଼ା, ପଶ୍ଚିମରେ ଅସୁରେଶ୍ୱର—ଦୀର୍ଘ ବାର ମାଇଲ ମଧ୍ୟରେ ଦୋହଲ ହେଲା ପ୍ରଥମ ମାଇନର ସ୍କୁଲ । ସେ ଅଞ୍ଚଳରେ ଗ୍ରାମେ ଗ୍ରାମେ ଘରେ ଘରେ ଆଲୋଚନା—ବନମାଳୀ ପଣ୍ଡିତେ ମାଇନର ସ୍କୁଲ ବସେଇଛନ୍ତି । ମୁଁ ସେତେବେଳେ ବହୁଗ୍ରାମ ମାଇନର ସ୍କୁଲରୁ ବୃତ୍ତି ପାଇ କଟକରେ ପଢ଼ୁଥାଏ । ଛୁଟିରେ ଗ୍ରାମକୁ ଆସେ ସମସ୍ତଙ୍କ ମୁହଁରେ ଶୁଣେ ବନମାଳୀ ପଣ୍ଡିତଙ୍କ ପ୍ରଶଂସା । କେମିତି ଥରେ ତାଙ୍କୁ ଦେଖିବି—ଏ ଇଚ୍ଛା ଦିନୁ ଦିନ ବଢ଼ୁଥାଏ । ଗ୍ରୀଷ୍ମ ଛୁଟିରେ ଦିନେ ଉପରଓଳି ଦୋହଲ ସ୍କୁଲରେ ପହଞ୍ଚିଲି । ସ୍କୁଲର ଦକ୍ଷିଣ ପଟ ରାସ୍ତା ଉପରେ ଦୋକାନ ଘରଟିଏ, ବାରଣ୍ଡାରେ ବେଞ୍ଚ ଖଣ୍ଡେ ପଡ଼ିଥାଏ, ବ୍ରହ୍ମଚାରୀଜୀ ବସି ଥାଆନ୍ତି, ଉଜ୍ଜ୍ୱଳ ସୁନାର ରଙ୍ଗ, ପ୍ରଶସ୍ତ ଲଲାଟ, ଜ୍ୟୋତିଃପୂର୍ଣ୍ଣ ମୁଖଶ୍ରୀ, ଦେଖି ଆପେଁ ଆପେଁ ମୁଣ୍ଡ ନଇଁଗଲା । ପଦଧୂଳି ନେବା ମାତ୍ରେ ହାତ ଧରି ଉଠାଇ ପାଖରେ

ବସାଇଲେ । ମୋ ନାମ ସେ ଆଗରୁ ଶୁଣିଥିଲେ, ପରେ ମୋତେ ନେଇ କାହିଁ ସ୍ନେହ କରି ବହୁ ଉତ୍ସାହପୂର୍ଣ୍ଣ ଉପଦେଶ ଦେଲେ । ମନେ ହେଲା ଜଣେ ଦିବ୍ୟ ମହାପୁରୁଷଙ୍କ ଦର୍ଶନ ପାଇଲି । ସେ ତେଜୋଦୀପ୍ତ ମୁଖମଣ୍ଡଳ ଆଜି ବି ଅମ୍ଳାନ ରହିଛି । ଜୀବନରେ କେତେ ଝଡ଼ ଝଞ୍ଜା, କେତେ ନିନ୍ଦା ଅପବାଦ, କେତେ ନିର୍ଯ୍ୟାତନା ସେ ଭୋଗିଛନ୍ତି । କିନ୍ତୁ ଦିନକ ପାଇଁ ତାଙ୍କୁ ବିମର୍ଷ, କ୍ରୁଦ୍ଧ ଉତ୍ତେଜିତ କେହି ଦେଖି ନାହାନ୍ତି—ଶୁଖିଲା ମୁହଁ ତାଙ୍କର କେହି ଦେଖି ନାହାନ୍ତି ।

ଦୀର୍ଘ ୧୫।୨୦ ବର୍ଷ ପରେ କଲିକତାରେ ଥିବା ସମୟରେ ଛୁଟିରେ ଦୁଇ ତିନି ଦିନ ପାଇଁ ଗ୍ରାମକୁ ଆସେ । ଥରେ ଶୁଣିଲି, ବନମାଳୀ ବ୍ରହ୍ମଚାରୀ ଆଉ ଦୋହଲୀ ସ୍କୁଲରେ ନାହାନ୍ତି । ଏହି ଭିତରେ ସ୍କୁଲର ଅନେକ ଉନ୍ନତି ହୋଇଛି, ଅନେକ ଛାତ୍ର କୃତିତ୍ୱ ଅର୍ଜନ କରି ଜୀବନରେ ବଡ଼ ହେଲେଣି । ଅନେକ ବ୍ୟକ୍ତି ସ୍କୁଲର କର୍ମକର୍ତ୍ତା ହେଲେଣି । ବନମାଳୀ ବ୍ରହ୍ମଚାରୀଙ୍କର ପ୍ରୟୋଜନ ସରି ଯାଇଛି । ଏଣିକି ସେ ଅବାଞ୍ଛିତ ବ୍ୟକ୍ତି; ତାଙ୍କୁ କୌଣସି ମତେ ସ୍କୁଲରୁ ଦୂରେଇ ଦେବାକୁ ହେବ । ସହଜ ଉପାୟ—ଲୋକ ମତେଇବାର ସସ୍ତା ଦୁର୍ନାମ—ଅର୍ଥ ତୋଷରପାତ । ଖୁବ୍ ମୁଖ ରୋଚକ ଅପବାଦ । କାଉ କାନ ନେଇଗଲା ଶୁଣି ଠେଙ୍ଗା ଧରି କାଉ ପଛରେ ଦୌଡ଼ନ୍ତି, କାନରେ ହାତ ଦେଇ ଦେଖିବାର ଧୈର୍ଯ୍ୟ ନ ଥାଏ । ବ୍ରହ୍ମଚାରୀ ଦୁଃଖରେ ବିଦାୟ ନେଇଛନ୍ତି । ଘର ସଜାଡ଼ିବାର—ଦାନା ଯୋଗାଡ଼ର ସମୟ ତ ପାଇ ନାହାନ୍ତି—ସ୍କୁଲ ଥିଲା ତାଙ୍କର ସ୍ୱପ୍ନ, ସେବା, ଭଗବାନ, ସବୁ । ଆଉ କଥା ଚିନ୍ତା କରିବାର ବେଳ କାହିଁ ! ଏଣୁ ୮୦ ଟଙ୍କାରେ ଗଣ୍ଡେ ଚାକିରି ଯୋଗାଡ଼ କରି କଟକରେ ରହୁଛନ୍ତି ଶୁଣିଲି । କୃତଘ୍ନତା ଯେ ସମାଜକୁ ଏତେ ଦୂର ଅନ୍ଧ କରିପାରେ, ଭାବିଲେ ମନରେ ଅବସାଦ ଆସେ । ଶୁଣିଛି, ଲୋକେ କହନ୍ତି, ସ୍କୁଲର ତ ସବୁ ହେଲା, ଗୃହୋପକରଣ ବସ୍ତ୍ରାଟିଏ ନ ହେଲେ ତ ଚଳିବ ନାହିଁ । ଏଣୁ ବସ୍ତ୍ରା ପାଇଁ ସେ ନିଜର ଜମି ବଦଳ ମଧ୍ୟ ଦେବାକୁ ପଛେଇ ନାହାନ୍ତି । ତଥାପି ମଧ୍ୟ ଜଣେ ବଳ ହେଲେ ନାହିଁ ଜମି ଛାଡ଼ିବା ପାଇଁ । ଶେଷରେ ବ୍ରହ୍ମଚାରୀ ଦିନେ ସନ୍ଧ୍ୟାବେଳେ ତାଙ୍କ ଗୋଡ଼ତଳେ ଲମ୍ବ ହୋଇ ପଡ଼ି ରହିଥିଲେ ଏବଂ ଜମି ଆଦାୟ କରିଥିଲେ । ଏପରି ବ୍ୟକ୍ତି ମଧ୍ୟ ଯେପରି ଅବାଞ୍ଛିତ ହୋଇଗଲେ !

ମୂଳରୁ କହୁଛି, ଡିକି ସ୍ୱର୍ଗକୁ ଗଲେ ବି ଧାନ କୁଟେ । ସୃଷ୍ଟି ଯାହାର ବିନାଶ, ଗଢ଼ିବା ଯାହାର ନିଶା, ସେ ଚୁପ୍‌ଚାପ୍ ମୁଠାଏ ଖାଇ ଖଣ୍ଡେ ପିନ୍ଧି ଘର କୋଣରେ ବସି ପାରିବ କିପରି ?

ବ୍ରହ୍ମଚାରିଣୀ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଗଢ଼ି ଚାଲିଲେ । ଏଥି ମଧ୍ୟରେ ମୁଁ କଟକ ରେଭେନ୍‌ସା କଲେଜକୁ ଆସିଲିଣି । ତାଙ୍କ ପଢ଼ିଲା ପ୍ରାୟ ଅଶି ହଜାର ଟଙ୍କା ବ୍ୟୟରେ ନବ ନିର୍ମିତ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଭବନର ଉଦ୍‌ଘାଟନ ଉତ୍ସବରେ କିଛି କହିବା ପାଇଁ । ଏହି ବ୍ୟକ୍ତି ମାତ୍ର କେତୋଟି ବର୍ଷ ତଳେ ମାତ୍ର ଅଶି ଟଙ୍କାର ଖଣ୍ଡେ ଚେକଟି ନେଇ କଟକରେ ବାସ କରିବାକୁ ଆରମ୍ଭ କରିଥିଲେ । କେତୋଟି ଲୋକ ଏମିତି ପାରନ୍ତି ବା କରନ୍ତି !

ଦୋହଲ ସ୍କୁଲ ରହିଛି, ରହିବ; ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ଭବନ ରହିଛି, ରହିବ; ବନମାଳୀ ବ୍ରହ୍ମଚାରୀଙ୍କର ପୁତ୍ର ପୌତ୍ର କେହି ଏଥିରୁ ବିଶେଷ ଉପକୃତ ହୋଇନାହାନ୍ତି, ବା ହେବେ—ଏପରି ସମ୍ଭାବନା ମଧ୍ୟ ନାହିଁ । ବ୍ରହ୍ମଚାରିଣୀ ଏଥିରୁ କିଛି ନେଇ ନାହାନ୍ତି ବା ସାଙ୍ଗରେ ମଧ୍ୟ ନେଇଯିବେ ନାହିଁ; ସବୁ ଏଇଠାରେ ଥିବ—ଅନ୍ୟମାନଙ୍କ ପାଇଁ । ତଥାପି ' ମଣିମନ୍ତ୍ର ମଧ୍ୟରେ ପିପୀଲିକା ପର୍ଯ୍ୟନ୍ତ ଛିଦ୍ରମ୍"—ଏ ବି ଏକ ବିସ୍ମୟକର ବିରୋଧାଭାସ । ଲୋକ ଚରିତ୍ର ଅତି ବିଚିତ୍ର !

ବ୍ରହ୍ମଚାରିଣୀଙ୍କର ପ୍ରତିଭା ବହୁମୁଖୀ । ଶିଶୁ ସାହିତ୍ୟକ ଭାବରେ ମଧ୍ୟ ସେ ଯଥେଷ୍ଟ ସୁନାମ ଅର୍ଜ୍ଜନ କରିଛନ୍ତି । ଏତେ କର୍ମବ୍ୟସ୍ତତା ମଧ୍ୟରେ ଲେଖଣୀ ତାଙ୍କର ନିରଳସ । ଶିକ୍ଷକ ସଂଘର ମାସିକ ମୁଖପତ୍ର 'ଶିକ୍ଷକ-ଦର୍ପଣ'ର ଜନ୍ମ ଓ ସମୃଦ୍ଧି ମୂଳରେ ତାଙ୍କର ପ୍ରେରଣା ଓ ସାଧନା ।

ଶିକ୍ଷକ ଜଣେ କେଉଁଠି ନିର୍ଯ୍ୟାତିତ ବା କର୍ତ୍ତୃପକ୍ଷଙ୍କ ଅବିଚାରର ଶିକାର ହୋଇ ଦୁଃଖରେ ମ୍ରିୟମାଣ ହେଲେ ବ୍ରହ୍ମଚାରିଣୀ ହିଁ ତାଙ୍କର ଭରସାର ସ୍ଥଳ । ଏପରି ଶିକ୍ଷକ ବନ୍ଧୁ କେତେ ଜଣ ଅଛନ୍ତି ?

କେତେ ମେଧାବୀ ଦରିଦ୍ର ଛାତ୍ର, ଯେଉଁମାନଙ୍କର ପ୍ରତିଭା ପୁଷ୍ପ କଢ଼ରୁ ଶୁଖି ଝରି ପଡ଼ି ଥାଆନ୍ତା; ବ୍ରହ୍ମଚାରିଣୀଙ୍କ ସାହାଯ୍ୟରେ ସେମାନେ ଆଜି ସୁଶିକ୍ଷିତ, ସୁପ୍ରତିଷ୍ଠିତ, ଧନୀ, ମାନୀ, ସମ୍ଭ୍ରାନ୍ତ । ତାଙ୍କର ପ୍ରତିଷ୍ଠାନ

ଗଢ଼ିବା ଗଣନା କରିହେବ; କିନ୍ତୁ ଯେତେ ଜୀବନକୁ ସେ ସରସ ସୁନ୍ଦର କରି ଗଢ଼ି ଛନ୍ତି, ତାହାର ସଂଖ୍ୟା କିଏ ରଖିଛି ? ଆଜି ତାଙ୍କର ଷଷ୍ଠ ଜନ୍ମ ତିଥିରେ କେବଳ ଏତିକ ମାତ୍ର କାମନା—

"ମାଟିର ପ୍ରଦୀପ ସମ
ବଳଇଲେ ଯେ ସ୍ନିଗ୍ଧ କିରଣ,
ସହସ୍ର ଜୀବନ ଦୀପେ
ଶୋଭେ ତାହା ତବ ଅବଦାନ ।
ଅଲଭ୍ୟ ଆଲୋକ ଶିଖା
ଲଭ୍ୟୁ ତବ ଭାରତୀ ଶାଶ୍ୱତ,
ହେ ସୁଧୀ ଜୀବନ ସାଧି
ଭୁଞ୍ଜ ତୁମେ ଶତେକ ଶରତ ॥

ଡଃ ଦୋଳଗୋବିନ୍ଦ ଶାସ୍ତ୍ରୀ
ଅଧ୍ୟାପକ
ସାମନ୍ତ ଚନ୍ଦ୍ରଶେଖର କଲେଜ
ପୁରୀ

---

# ସାଧକ ବନମାଳୀ ବ୍ରହ୍ମଚାରୀ

ବନମାଳୀ ବାବୁଙ୍କର ବ୍ରହ୍ମଚାରୀ ସଂଜ୍ଞା ତାଙ୍କର ପାରିବାରିକ କି ଆତ୍ମକୃତ, ଏ ବିଷୟରେ ମୋତେ ବହୁ ଲୋକ ପ୍ରଶ୍ନ ପଚାରିଛନ୍ତି । ମୋର ଅନୁସନ୍ଧିତ୍ସୁ ମନରେ ମଧ୍ୟ ସେହି ପ୍ରଶ୍ନ ଉଦିତ ହୋଇଥିଲା । ବନମାଳୀ ବାବୁ କହନ୍ତି—ତାଙ୍କର କୌଳିକ ସଂଜ୍ଞା ଥିଲା 'ପଣ୍ଡା' । ପଞ୍ଚବିଂଶତିତମ ବର୍ଷ ବୟସରେ ବିପତ୍ନୀକ ହେବାରୁ ସେ ଦ୍ୱିତୀୟ ଦାରପରିଗ୍ରହ ନ କରି ସଂସାର ପ୍ରତି ବୀତସ୍ପୃହ ହୋଇ ପଡ଼ିଲେ ଏବଂ ବ୍ରହ୍ମଚର୍ଯ୍ୟର ଜୀବନ ଯାପନ କଲେ । ଯେଉଁମାନେ ଏକଥା ଜାଣିଲେ, ସେମାନେ ଚିଠିପତ୍ରରେ 'ବ୍ରହ୍ମଚାରୀ ବନମାଳୀ ପଣ୍ଡା' ବ୍ୟବହାର କଲେ । ଏହାପରେ କିଛି ଦିନ ଗଲା ପରେ ବନମାଳୀ ବାବୁ 'ପଣ୍ଡା' ଶବ୍ଦଟିକୁ ଲୋପ କରି ତା ବଦଳରେ ବ୍ରହ୍ମଚାରୀ ଶବ୍ଦଟି ବ୍ୟବହାର କଲେ ।

ତାଙ୍କ ସହିତ ମୋର ବିଗତ ଅଠାଇଶି ବର୍ଷର ସାହଚର୍ଯ୍ୟ ଯୋଗୁଁ ତାଙ୍କର ଦୈନନ୍ଦିନ ଜୀବନଧାରା ସମ୍ପର୍କରେ ମୁଁ ବିଶେଷ ଭାବରେ ଅବହିତ ଏବଂ ତାଙ୍କର ବ୍ରହ୍ମଚାରୀ ଜୀବନର ବାସ୍ତବତାକୁ ମୁଁ ନାନା ଭାବରେ ଉପଲବ୍ଧି କରିପାରିଛି । ଜଣେ ସନ୍ନ୍ୟାସୀ ଅପେକ୍ଷା ଅଧିକ ସମ୍ମାନ ମୁଁ ତାଙ୍କୁ ଦିଏ । ସମସ୍ତ ପ୍ରକାର ବିଳାସ ବ୍ୟସନ, ପ୍ରଲୋଭନ ଏବଂ ଆଧୁନିକ ଜୀବନର ଆଗ୍ରହ ବ୍ୟବହାର ଓ ପାରିବାରିକ ସଂସ୍ରବଠାରୁ ଦୂରରେ ରହି ଜଣେ ସନ୍ନ୍ୟାସୀ ଭଗବାନଙ୍କୁ କଠୋର ସାଧନା କରେ । କିନ୍ତୁ ବନମାଳୀ ବାବୁ ଆମରି ଭିତରେ ଏବଂ କନ୍ୟା ଓ ନାତିନାତୁଣୀଙ୍କ ମଧ୍ୟରେ ଜୀବନ ଅତିବାହିତ କରନ୍ତି । ଆଧୁନିକ ଆଗ୍ରହର ବ୍ୟବହାର ମଧ୍ୟରେ ଥାଇ ସୁଦ୍ଧା ସେ ବିଳାସ ବ୍ୟସନ ପ୍ରତି ବୀତସ୍ପୃହ । ସେ ଗୁଆ ଖାଆନ୍ତି, ପାନ ଚୋବାନ୍ତି, ସମୟେ ସମୟେ କେହି ସିଗାରେଟ୍ ଟିଏ ଦେଲେ ତାହାର ମଧ୍ୟ ସଦ୍

ବ୍ୟବହାର କରନ୍ତି । ଚଳଚ୍ଚିତ୍ର ଜଗତ୍‌ଠାରୁ ଦୂରରେ ରହି ମଧ୍ୟ କୌଣସି ବନ୍ଧୁଙ୍କ ଏକାନ୍ତ ଅନୁରୋଧ ଏଡ଼ି ନ ପାରି ତାହା ସମୟେ ସମୟେ ଉପଭୋଗ କରିଥାନ୍ତି । ବିଚିତ୍ର ତାଙ୍କର ଚରିତ୍ର ।

ଅନେକ ସମୟରେ ସେ କହନ୍ତି—ଶ୍ରୀମାଙ୍କ ଆଶୀର୍ବାଦ ସମ୍ବଳିତ ହସ୍ତଲିପିକୁ ଚକିଆ ତଳେ ରଖି ସମସ୍ତ ପ୍ରକାର ଅନ୍ୟାୟ ଓ ଦୁର୍ନୀତିରେ ଅଭ୍ୟସ୍ତ ହୋଇ ହସ୍ତ ଓ ମସ୍ତିଷ୍କକୁ କଳଙ୍କିତ କରିବା କେଉଁ ବୁଦ୍ଧିମାନ୍‌ର କାର୍ଯ୍ୟ ?

ସନ୍ନ୍ୟାସୀ ପରି ଆସନରେ ବସି ଭଗବାନଙ୍କୁ ଆରାଧନା କରିବାର କେହି କେବେ ତାଙ୍କୁ ଦେଖିନାହିଁ । କିନ୍ତୁ ବାସ୍ତବରେ ସେ ସତ୍ ପୂଜକ । ଗାନ୍ଧୀଜୀଙ୍କ ଭାଷାରେ 'ଭଗବାନ୍ ହିଁ କର୍ତ୍ତବ୍ୟ ଏବଂ କର୍ତ୍ତବ୍ୟ ହିଁ ଭଗବାନ' । ଏହା ହିଁ ତାଙ୍କର ଜୀବନ ଦର୍ଶନ । ବ୍ରହ୍ମଗୃସ୍ଥ ଅତି ମାତ୍ରାରେ କର୍ତ୍ତବ୍ୟ ପରାୟଣ ଏବଂ ଭଗବତ୍-ସୃଷ୍ଟ ପ୍ରତ୍ୟେକ ଜୀବ ପ୍ରତି ସେ ସ୍ନେହଶୀଳ ।

ଜଣେ ଶିକ୍ଷକ ଭାବରେ ଦୋହଳ ସହଯୋଗ ମଧ୍ୟ-ଇଂରାଜୀ ସ୍କୁଲ ପ୍ରତିଷ୍ଠା କରିବା ଓ ତାହାକୁ ପୁଣି ଦୋହଳ ମଡେଲ ହାଇସ୍କୁଲରେ ପରିଣତ କରିବା ପାଇଁ ସେ ଯେଉଁ ତ୍ୟାଗ କରିଥିଲେ, ତାହାର ଇୟତ୍ତା ନାହିଁ । ତାହା ଛଡ଼ା ସର୍ବସାଧାରଣ ସେଥିପାଇଁ ଅଳ୍ପ ବହୁତେ ଯେଉଁ ଦାନ କରିଥିଲେ, ତହିଁରେ ତାଙ୍କର ପ୍ରେରଣା ନିହିତ ଥିଲା । ସ୍କୁଲଟିକୁ ଆଦର୍ଶ ସ୍ଥାନୀୟ କରିବା ପାଇଁ ତାଙ୍କର ବଳବତ୍ତର କାମନା ରୂପାୟିତ ହୋଇ ପାରିଲା ନାହିଁ । ବର୍ତ୍ତମାନର ସାମାଜିକ ଆଭିମୁଖ୍ୟ ସେଥିରୁ ପ୍ରତି ବର୍ଷ କେବଳ କେତୋଟି ମାଟ୍ରିକ୍ୟୁଲେଟ୍ ସୃଷ୍ଟି କରିବାରେ ସହାୟକ ହୋଇଛି ।

ଦୋହଳ ସହଯୋଗ ମଧ୍ୟ-ଇଂରାଜୀ ବିଦ୍ୟାଳୟର ମାତୃଭାଷା ଶିକ୍ଷକ ଭାବରେ ସେ ଓଡ଼ିଆ ସାହିତ୍ୟ ଓ ଗଣିତ ପଢ଼ାଉଥିଲେ ହେଁ ଅନ୍ୟ ସକଳ ବିଷୟରେ ତାଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । ଅବସର ସମୟରେ ସେ ଅନ୍ୟ ଶିକ୍ଷକମାନଙ୍କ ସହିତ ଇଂରାଜୀ ବିତର୍କରେ ଅଂଶ ଗ୍ରହଣ କରି ଇଂରାଜୀ ଭାଷାରେ ଉତ୍ତମ ଜ୍ଞାନ ଆହରଣ କରିପାରୁଥିଲେ । ଓଡ଼ିଆ, ବଙ୍ଗଳା ଓ ଇଂରାଜୀ ଭାଷାର ବିଭିନ୍ନ ପୁସ୍ତକ ଏବଂ ପତ୍ର ପତ୍ରିକା

ସେ ନିୟମିତ ଭାବରେ ପଢ଼ୁଥିଲେ, ଯାହାର ଫଳରେ ସେ ଅନେକ ପାଠ୍ୟ ପୁସ୍ତକ, ଶିଶୁ ସାହିତ୍ୟ ଇତ୍ୟାଦି ପ୍ରଣୟନରେ ସମର୍ଥ ହୋଇଛନ୍ତି । ତାଙ୍କର ଦୁଇ ଖଣ୍ଡ ଶିଶୁ ସାହିତ୍ୟ 'ହୁକେ ହୋ' ଓ 'ବନର ମନ କଥା' ଯଥାକ୍ରମେ ରାଷ୍ଟ୍ରପତି ଓ ରାଜ୍ୟସରକାରଙ୍କ ଦ୍ୱାରା ପୁରସ୍କୃତ ହୋଇଛି । ଏହାଛଡ଼ା 'ଗୁଣ ଦର୍ପଣ', 'କଏ କେମିତି', 'ଗୁରୁ ଚରିତ' 'ଚରିତ ଓ ଚରିତ', ଓ 'ଭକ୍ତ ଓ ଭଗବାନ' ଲେଖି ସେ ଶିଶୁ ଓ କିଶୋରମାନଙ୍କ ମଧ୍ୟରେ ଅତି ପ୍ରିୟ ହୋଇ ପାରିଛନ୍ତି । ଛଅ ସାତ ବର୍ଷର ଶିଶୁ 'ହୁକେ ହୋ' ବହି ଖଣ୍ଡିକ ପଢ଼ି ପାରିବାକୁ ସମର୍ଥ ନ ହେଲେହେଁ, ଅନ୍ୟ କେହି ଜଣେ ପଢ଼ିଲେ, ସେ ତାହା ମନୋଯୋଗ ସହକାରେ ଶୁଣି ଆନନ୍ଦରେ ଅଭିଭୂତ ହେବାର ମୁଁ ଲକ୍ଷ୍ୟ କରିଛି ।

ତାଙ୍କଠାରେ ଜଣେ ଜନନାୟକର ସମସ୍ତ ଗୁଣ ପରିପୂର୍ଣ୍ଣ । ପ୍ରତ୍ୟକ୍ଷ ରାଜନୀତିରେ ଅଂଶ ଗ୍ରହଣ କରିଥିଲେ ସେ ଜଣେ ଉତ୍ତମ ବ୍ୟବସ୍ଥାପକ ହୋଇ ପାରିଥାନ୍ତେ । ଯାହାହେଉ, ସେ ନିଜେ ଶିକ୍ଷକ ସଂଘ ଗଠନ କରି ଦେଶସେବା ପଥରେ ଅଗ୍ରସର ହୋଇଛନ୍ତି । ରୋଗୀ ଜାଣେ ରୋଗର ଯନ୍ତ୍ରଣା । ସେ ପୂର୍ବେ ଏକାଧିକ ଘରୋଇ ବିଦ୍ୟାଳୟରେ ଶିକ୍ଷକତା କରି ଶିକ୍ଷକ ସମାଜର ସୁଖ ଦୁଃଖ ବେଶ୍ ହୃଦୟଙ୍ଗମ କରିପାରିଛନ୍ତି । ପରିଚାଳନା ସମିତି ତଥା ବିଭାଗୀୟ କର୍ମକର୍ତ୍ତାଙ୍କ ଦ୍ୱାରା ଅନ୍ୟାୟ ଭାବରେ ଲାଞ୍ଛିତ ଶିକ୍ଷକ ପାଖରେ ସେ ସାହସର ସହିତ ଦଣ୍ଡାୟମାନ ହେବାକୁ ଚରମ ଓ ପରମ କର୍ତ୍ତବ୍ୟ ବୋଲି ମନେ କରନ୍ତି ।

୭୮ ବର୍ଷ ବୟସରେ ଦୀର୍ଘ ପଥ ପାଦରେ ଚାଲି, ସାତ ଦୁଇ ଘଣ୍ଟା ପର୍ଯ୍ୟନ୍ତ କାର୍ଯ୍ୟରତ ରହି, ସେ ତାଙ୍କ ଶକ୍ତିମତ୍ତାର ପରିଚୟ ଦେବା ସଙ୍ଗେ ସଙ୍ଗେ ଯୁବକମାନଙ୍କ ଚିତ୍ତରେ ଭୟର ଚମକ ସୃଷ୍ଟି କରନ୍ତି । ନିଜର ଫାଇଲ୍ କାମ, କେତେକ ଚିଠିର ଉତ୍ତର ନିଜେ ଲେଖିବା ସହଯୋଗୀ-ମାନଙ୍କୁ ଲେଖିବା ପାଇଁ କେତେକ ଉତ୍ତର ଡାକି ଦେବା, ସଂଘର ହିସାବ ଟିକନିଖି ଦେଖିବା, ଶିକ୍ଷକ ଦର୍ପଣ ପାଇଁ ଲେଖିବା, ପ୍ରାପ୍ତ କବିତା ଓ ପ୍ରବନ୍ଧାଦି ସଂଶୋଧନ କରିବା ଓ ପ୍ରୁଫ୍ ଦେଖିବା ଏବଂ ନିଜର ବହି ଲେଖିବା ଇତ୍ୟାଦି ନାନା କାର୍ଯ୍ୟରେ ସେ ଯେଉଁ ଅକ୍ଳାନ୍ତ ଶ୍ରମର ପରିଚୟ ଦିଅନ୍ତି, ତାହା ଅନୁକରଣୀୟ ।

ବ୍ରହ୍ମଚାରୀ ବଡ଼ ଦୟାଶୀଳ ବ୍ୟକ୍ତି । ରାସ୍ତା କଡ଼ରେ ବୁଲା କୁକୁରର ଯନ୍ତ୍ରଣା ଦେଖିଲେ ବି ସେ ଅଧୀର ହୋଇ ପଡ଼ନ୍ତି । ଅନେକ ଗରିବ ଛାତ୍ର ତାଙ୍କର ଅକୁଣ୍ଠିତ ଦାନରେ ନିଜକୁ ସମାଜର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ କରି ପାରିଛନ୍ତି । ଅସ୍ପୃଶ୍ୟପରିସ୍ପୃଷ୍ଟ କେତେକ ବ୍ୟକ୍ତିଙ୍କୁ ସେ ଘୃଣା ନ କରି ଆନନ୍ଦରେ ସ୍ୱାଗତ କରିଥିବା ମୁଁ ଦେଖିଛି । ସେ ଶତ୍ରୁକୁ ସୁଦ୍ଧା ତାହାର ବିପଦରେ ସାହାଯ୍ୟ କରିଥାନ୍ତି ।

ସେ ନିଜକୁ ନିଜେ ଗଢ଼ିଛନ୍ତି । ଆଶ୍ଚର୍ଯ୍ୟଜନକ ଭାବରେ ସ୍ୱାବଲମ୍ବନଶୀଳ ହୋଇ ତାଙ୍କର କେତେକ ସହପାଠୀ ଜୀବନରେ ସୁପ୍ରତିଷ୍ଠିତ ଥିଲେ ହେଁ ସ୍ୱାର୍ଥ ପାଇଁ ସେ କେବେ ହେଲେ କାହାରି ଦ୍ୱାରସ୍ଥ ହୋଇ ନାହାନ୍ତି । ବରଂ ଅନ୍ୟମାନଙ୍କୁ ସାହାଯ୍ୟ କରିବାକୁ ସେ ସେମାନଙ୍କୁ ପ୍ରବର୍ତ୍ତାଇଛନ୍ତି । ତାଙ୍କ ଠାରୁ ଅନେକ ଲୋକ ଧାର ସୂତ୍ରେ ଅର୍ଥ ନେଇ ତାଙ୍କୁ ପ୍ରତାରିତ କରିଥିଲେ ହେଁ ସେ ସେଥିପାଇଁ ବ୍ୟଥିତ ହୋଇ ନାହାନ୍ତି । ସେ ନିଃସ୍ୱାର୍ଥ, ସାଧୁ ଓ ଚରିତ୍ରବାନ୍ । ଆଜିର ନୈରାଶ୍ୟବାଦୀ ଯୁବଗୋଷ୍ଠୀ ସେମାନଙ୍କ ସ୍ୱକୀୟ ଚରିତ୍ର ଓ ଭବିଷ୍ୟତ୍ ଗଠନ ପାଇଁ ବନମାଳୀ ବାବୁଙ୍କ ପନ୍ଥାଙ୍କ ଅନୁସରଣ କରିବା ଉଚିତ ।

ସେ ସମସ୍ତ ଐହିକ ସୁଖ ସମ୍ଭୋଗ ପରିତ୍ୟାଗ କରିଛନ୍ତି । କେହି ପ୍ରତାରଣା ବା ବିଶ୍ୱାସଘାତକତା କଲେ ସେଥିପାଇଁ ସେ ଅସନ୍ତୋଷ ପ୍ରକାଶ କରିବାର ଦେଖାଯାଇ ନାହିଁ । ସେ ନିର୍ବିକାର ଚିତ୍ତରେ ଘାସ ଉପରେ ଅଥବା ତୁଳୀ-ତଳ୍ପ ଉପରେ ଶୋଇ ପାରନ୍ତି । ସନ୍ତୋଷରେ ଅମୃହର୍ଷ ହେବା କିମ୍ବା ଅସନ୍ତୋଷରେ ମ୍ରିୟମାଣ ହେବା ତାଙ୍କର ପ୍ରକୃତିସୁଲଭ ନୁହେଁ । "ଦୁଃଖେଷୁ ଅନୁଦ୍‌ବିଗ୍ନମନା ସୁଖେଷୁ ବିଗତସ୍ପୃହଃ"—ଏହି ଗୀତୋକ୍ତ ବଚନର ସେ ପ୍ରତୀକ । ସୁଖ ଦୁଃଖ ତାଙ୍କ ପାଖରେ ସମାନ ।

କୌଣସି ବ୍ୟକ୍ତି ତାଙ୍କର ଆତିଥ୍ୟ ଗ୍ରହଣ କଲେ ସେ ଦ୍ୱିଧାହୀନ ଭାବରେ ନିଜର ମଶାରି ଖଣ୍ଡିକ ଅତିଥିଙ୍କୁ ଦେଇ ମଶା-ସମାକୀର୍ଣ୍ଣ କଟକ ସହରରେ ଅନାବୃତ ଭାବରେ ଶୋଇ ପାରନ୍ତି । ଯେମନ୍ତ କି ମଶା ଓ ଓଡ଼ଶ ଦଂଶନରେ ତାଙ୍କ ଦେହ ବଧିର ।

ସେ ଏକାଧାରରେ ସନ୍ନ୍ୟାସୀ, ଦେଶପ୍ରେମୀ, ଜନନାୟକ, ବାଗ୍ମୀ, ଲେଖକ, ଶିକ୍ଷକ ଏବଂ ସର୍ବୋପରି ଜଣେ ଉଚ୍ଚ କୋଟିର ସଙ୍ଗଠକ ।

ତାଙ୍କର ପାଣ୍ଡିତ୍ୟ ଶକ୍ତିର ତୁଳନା ନାହିଁ । ଭଗବାନ୍ କରନ୍ତୁ, ସେ ଦୀର୍ଘ ଜୀବନ ଲାଭ କରି ଦେଶର ଭବିଷ୍ୟତ ନାଗରିକମାନଙ୍କୁ ସୁପଥର ସନ୍ଧାନ ଦିଅନ୍ତୁ ।

ପରିଶେଷରେ ଜୟନ୍ତୀ ସମିତିପକ୍ଷରୁ ସ୍ମରଣିକା ପ୍ରକାଶ ପାଇଁ ଯେଉଁ ଆନ୍ତରିକ ଉଦ୍ୟମ ହୋଇଛି, ସେଥିପାଇଁ ଏହି ସମିତିର ସମସ୍ତ ସଭ୍ୟଙ୍କୁ ଧନ୍ୟବାଦ ଦେଉଛି । ଏ ପ୍ରବନ୍ଧଟି ଲେଖି ମୁଁ ଆଶା କରୁଛି ଯେ, ଏ ଯୁଗର ଯୁବଗୋଷ୍ଠୀ ବନମାଳୀ ବାବୁଙ୍କ ବିବିଧ ସଦ୍‌ଗୁଣର ଅଧିକାରୀ ହେବାକୁ ଚେଷ୍ଟା କରିବେ ଏବଂ ତାଙ୍କର ଜୀବଦ୍ଦଶାରେ ତାଙ୍କୁ ପ୍ରତ୍ୟକ୍ଷ ଭାବେ ଦେଖି ଦେଶକୁ ଉନ୍ନତି ପଥରେ ଆଗେଇ ନେବାକୁ ଚେଷ୍ଟିତ ହେବେ ।

**ଶ୍ରୀ ଗୋବିନ୍ଦ ଚନ୍ଦ୍ର ସାମଲ**

ପ୍ରଧାନ ଶିକ୍ଷକ
ନନ୍ଦକିଶୋର ବିଦ୍ୟାମନ୍ଦିର
କଟକ

---

# ମୁଁ ତାଙ୍କୁ ଯେପରି ଜାଣିଛି

'ମୁଁ ତାଙ୍କୁ ଯେପରି ଜାଣିଛି' ଏହି ଶିରୋନାମାରେ ଋଷି ପ୍ରତିମ ପୂଜ୍ୟ ବ୍ରହ୍ମର୍ଷିଙ୍କ ସମ୍ପର୍କରେ କିଛି ଲେଖିବାକୁ ଯିବା ବେଳେ ଏହାକୁ ଏକ ଦୁଃସାହସିକ ପଦକ୍ଷେପ ବୋଲି ମୁଁ ବିଚାରୁଛି । ଦୁଃସାହସିକ ବୋଲି ଏଇଥିପାଇଁ କହୁଛି ଯେ ମହାସାଗରର ଗଭୀରତା, ମହାଶୂନ୍ୟର ବିସ୍ତୃତି ଓ ମହାଶୃଙ୍ଗର ଉଚ୍ଚତାକୁ ମାପିବାପାଇଁ ଯେଉଁ ମାପକାଠିର ଆବଶ୍ୟକତା ରହିଛି, ସେପରି ଏକ ମାପକାଠି ସହିତ ମୁଁ ନିଜେ ପ୍ରସ୍ତୁତ କି ନା ତାହା ହିଁ ମୋ ମନର ପ୍ରଶ୍ନ । ମାତ୍ର ମୋ ମନରେ ଏତିକି ମାତ୍ର ସାନ୍ତ୍ୱନା ଯେ, କୌଣସି ଏକ ଦୁଃସାହସିକ ବ୍ୟକ୍ତିଙ୍କୁ ତଉଲିବାକୁ ଯିବା ବେଳେ କିଛିଟା ଦୁଃସାହସିକତା କରିବାକୁ ହିଁ ପଡ଼ିବ ।

ବ୍ରହ୍ମର୍ଷିଙ୍କ ସହିତ ମୋର ପ୍ରଥମ ସମ୍ପର୍କ ସ୍ଥାପିତ ହୁଏ ଚିଠିପତ୍ର ମାଧ୍ୟମରେ ୧୯୭୫ ମସିହାରେ । ୧୯୭୫ ଜୁଲାଇ ସଂଖ୍ୟା 'ଅସନ୍ତା କାଲି'ରେ କଞ୍ଚା ହାତର ମୋର ପ୍ରଥମ ଗପଟା ପ୍ରକାଶ ପାଇଲା ପରେ ଦ୍ୱିତୀୟ ଗପ 'ଘର ଓ ବାହାର' 'ଶିକ୍ଷକ ଦର୍ପଣ'ରେ ପ୍ରକାଶ ନିମିତ୍ତ ମୁଁ ପ୍ରେରଣ କରେ । ଗପଟି ପଠାଇବାର ମାତ୍ର ସାତ ଆଠଦିନ ମଧ୍ୟରେ ଗୋଟିଏ ଦିନ ଯେଉଁଦିନ ବ୍ରହ୍ମର୍ଷିଙ୍କର ମୋ ନିକଟକୁ ପ୍ରଥମ ଚିଠିଟି ପଢ଼ିବାର ସୁଯୋଗ ମୋତେ ମିଳେ, ସେଦିନଟି ଆଜି ବି ମୋ ପକ୍ଷରେ ଅବିସ୍ମରଣୀୟ । ଚିଠି ତ ନୁହେଁ, ସୃଜନୀ ଶକ୍ତିକୁ ଜାଗ୍ରତ କରାଇବା ଦିଗରେ ଯେପରି ଗୁଡ଼ାଏ ଅକୃତ୍ରିମ ପ୍ରେରଣା, ଅଯାଚିତ କରୁଣା ଏବଂ ହସ୍ତାକ୍ଷର ପ୍ରତି ଦୃଷ୍ଟି ଦେବା ଦିଗରେ ଗୁଡ଼ାଏ ଦରଦ ପରାମର୍ଶର ଅସରନ୍ତି ଧାର ।

ତା' ପରେ ସମୟକ୍ରମେ ବ୍ରହ୍ମର୍ଷିଙ୍କୁ ବହୁ ଭାବରେ ବୁଝିବାର ସୁଯୋଗ ଆସେ, ଯେଉଁ ସୁଯୋଗ ବ୍ରହ୍ମର୍ଷିଙ୍କ ଜୟନ୍ତୀ ସ୍ମରଣିକା ପାଇଁ କିଛିଟା ଲେଖିବାର ଦାବୀ ରଖେ ।

ଆଜିର ଏ ଉଚମାନ ସମାଜ ବ୍ୟବସ୍ଥା ଏବଂ ଦୂଷିତ ମୂଲ୍ୟବୋଧର ବିଷାକ୍ତ ବାୟୁ ମଣ୍ଡଳ ମଧ୍ୟରେ ଡୋଟିଏ ଗୋଟିଏ 'ବ୍ୟତିକ୍ରମ' ଜନ୍ମ ନେବାର ପ୍ରବୃତ୍ତି ଯେ ଏ ଯାବତ୍ ରହି ଆସିଛି, ତାହାହିଁ ବୋଧହୁଏ ମାନବ ସମାଜ ପକ୍ଷରେ ସବୁଠାରୁ ବଡ଼ ଆଶାର କଥା ଓ ବ୍ରହ୍ମଗୃହୀ ନିଜେ ଯେହିପରି ଏକ ବ୍ୟତିକ୍ରମର ନମୁନା । ଖାଣ୍ଟି ଦେଖି ମିଶ୍ର ନ ଥିବା ଏ ଭେଜାଲ ସର୍ବସ୍ୱ ସମାଜରେ ବିଶେଷଣ ସବୁ ଯେପରି ଇଜ୍ଜତ ହରାଇ ବସିଛନ୍ତି, କୌଣସି କଳୁଷିତ ବିଶେଷଣ ମାଧ୍ୟମରେ ବ୍ରହ୍ମଗୃହୀଙ୍କ ଗୁଣଗାନ କରିଗଲେ ତାଙ୍କ ପ୍ରତି ଅମର୍ଯ୍ୟାଦା ହେବାର ଯଥେଷ୍ଟ ଆଶଙ୍କା ରହିଛି । ଅନ୍ୟ କଥାରେ ବ୍ରହ୍ମଗୃହୀ ସେସବୁ ବିଶେଷଣଠାରୁ ଆଶାତୀତ ଊର୍ଦ୍ଧ୍ୱରେ ।

ବ୍ରହ୍ମଗୃହୀଙ୍କ ସହିତ ମୋର ଆତ୍ମିକ ପରିଚୟ ପ୍ରାୟ ତିର୍ଣ୍ଣ ଦଶ ବର୍ଷର । ଏହି ଦୀର୍ଘ ମଧ୍ୟରେ ତାଙ୍କ ମହତ୍ ଓ ଉଦାର ଚରିତ୍ରର ଯେଉଁ ସବୁ ନଜିର ମୋ ନଜରକୁ ଆସିଛି, ସେଥିରେ କେବଳ ମୁଁ କାହିଁକି ଯେ କୌଣସି ଗୁଣଗ୍ରାହୀ ବ୍ୟକ୍ତି ଅଭିଭୂତ ହେବା ସ୍ୱାଭାବିକ । ଜୟନ୍ତୀ ସମିତିର ସମ୍ପାଦକଙ୍କ ଭାଷାରେ ଯଥାର୍ଥରେ ତାଙ୍କର ଉଚ୍ଚକୋଟୀର ବ୍ୟକ୍ତିତ୍ୱ, ଅଲୌକିକ ପ୍ରତିଭା, ଦୃଢ଼ ମନୋବଳ, କଠୋର ଅଧ୍ୟବସାୟ, ଦୟାର୍ଦ୍ର-ହୃଦୟ, ବିସ୍ମୟକର ଦାନଶୀଳତା, ନିର୍ଭୁର ସ୍ପଷ୍ଟବାଦିତା, ନିଷ୍ଠାପର କର୍ତ୍ତବ୍ୟବୋଧ ଏବଂ ଘୋର ନିଃସ୍ୱାର୍ଥ ଦେଶାତ୍ମବୋଧ ଶିକ୍ଷକ ସମାଜର ଗର୍ବ ଓ ଗୌରବର ବିଷୟ । ଓଡ଼ିଶାର ନିମ୍ନ ମାଧ୍ୟମିକ ଶିକ୍ଷା ଓ ଶିକ୍ଷକ ସମାଜ ବ୍ରହ୍ମଗୃହୀଙ୍କ ସୁଦୃଢ଼ ନେତୃତ୍ୱ ଲାଭର ସୌଭାଗ୍ୟ ପାଇ ନ ଥିଲେ ଏହାର ଗତି କ'ଣ ଯେ ହୋଇଥାନ୍ତା ଭବିଷ୍ୟତ ତା'ର ପ୍ରମାଣ ଦେବ । ତାଙ୍କ ଚରିତ୍ରର ସକଳ ମହାନୀୟତା କପଟ ତୁଚ୍ଛା ବାକ୍‌ଗୁମ୍ଫନ ଠାରୁ ଊର୍ଦ୍ଧ୍ୱରେ ରହି ନିର୍ଭୁର ସତ୍ୟର ଉପେକ୍ଷା ରଖେ, ତାଙ୍କ ସମ୍ପର୍କରେ ଆସି ନ ଥିବା ବ୍ୟକ୍ତିଙ୍କୁ କାହାଣୀ ପରି ମନେ ହୋଇପାରେ । ତାଙ୍କୁ, ତାଙ୍କର ବ୍ୟକ୍ତିତ୍ୱକୁ, ତାଙ୍କ କାର୍ଯ୍ୟବିଚକ୍ଷଣତାକୁ ଓ ତାଙ୍କର ପ୍ରାଣାଧିକ ପ୍ରିୟ ସଂଘ ପରିଚାଳନାକୁ ଯିଏ ନିଜ ଆଖିରେ ନ ଦେଖିଛି, ସେପରି ଗୋଟିଏ ବ୍ୟକ୍ତି ଓ ତା'ର କାର୍ଯ୍ୟକୁ ଅନ୍ତତଃ ଥରେ ମାତ୍ର ନିଜ ଆଖିରେ ଦେଖିବା ପାଇଁ ଏ ଲେଖକ ସେମାନଙ୍କୁ ଅନୁରୋଧ କରେ ।

ସାରା ଭାରତରେ ଆଜି ଏପରି ଗୋଟିଏ ଦୃଷ୍ଟାନ୍ତ ଅଛି କି ନାହିଁ ଏ ଲେଖକ ଜାଣେନା, ଯେ କି ସମୟକୁ ଏତେ ବେଶୀ ମର୍ଯ୍ୟାଦା ଦିଏ ।

ଯେଉଁ ଦେଶର ଲୋକସମାଜକୁ ଦେଖି ଜଣେ ବୈଦେଶିକ ଅତ୍ୟନ୍ତ ବିସ୍ମିତ ଭାବରେ ମନ୍ତବ୍ୟ କରନ୍ତି ଯେ ପୃଥିବୀରେ ଏପରି ଗୋଟିଏ ଦେଶ ଅଛି ଯେଉଁ ଦେଶର ଲୋକେ ଦିନରେ ମଧ୍ୟ ଶୋଇ ରହନ୍ତି, ସେପରି ଗୋଟିଏ ଦେଶରେ ରାତିରେ ମଧ୍ୟ ନ ଶୋଇ କର୍ମରତ ରହୁଥିବା ଗୋଟିଏ ବ୍ୟକ୍ତି ଯେ ଅଦ୍ୱିତୀୟ ନ ହେବ, ଏକଥା କିଏ କହିବ ? ଏ ଲେଖକ ନିଜ ଆଖିରେ ବର୍ଷ ବର୍ଷ ଧରି ଦେଖିଛି ଏବଂ ଏବେ ମଧ୍ୟ ଦେଖୁଛି ୭୯ ବର୍ଷ ବୟସରେ ପଦାର୍ପଣ କରିବାକୁ ଯାଉଥିବା ବ୍ରହ୍ମଗୁରୁ ନାମକ ସେହି ବୃଦ୍ଧ ଜଣଙ୍କ ପ୍ରସିଦ୍ଧ ସେକ୍‌ସପିଅରଙ୍କର "ମୁଁ ବୃଥାରେ ସମୟ ନଷ୍ଟ କରି ଦେଇଥିଲି, ଆଜି ସମୟ ମୋତେ ନଷ୍ଟ କରି ଦେଉଛି" କଥାକୁ କିପରି ଅନ୍ତରର ମର୍ଯ୍ୟାଦା ଦେଇଛନ୍ତି ଓ ପୁଣ୍ୟାତ୍ମା ଗୋପବନ୍ଧୁଙ୍କର "ମଣିଷ ଜୀବନ ନୁହଇ କେବଳ ବର୍ଷ ମାସ ଦିନ ଦଣ୍ଡ, କର୍ମେ ଜୀଏ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ"—ଅକ୍ଷୟ ବାଣୀକୁ କିପରି ଅକ୍ଷରେ ଅକ୍ଷରେ ପାଳନ କରି ଚାଲିଛନ୍ତି । ପ୍ରତ୍ୟହ ପ୍ରଭାତର ନିତ୍ୟକର୍ମ ପରଠାରୁ ଖାଇବା ସମୟ ବ୍ୟତୀତ ପ୍ରତିଟି ମୁହୂର୍ତ୍ତକୁ କାମରେ ଲଗାଇ ରାତି ୧୨ଟା ବେଳେ ବିଛଣାକୁ ଯିବା ଓ ଠିକ୍ ରାତି ଦୁଇଟା ବେଳକୁ ନିଦରୁ ଉଠି ଲାଇବ୍ରେରୀରେ ସମ୍ବାଦପତ୍ର ଏବଂ ଅନ୍ୟାନ୍ୟ ପତ୍ର ପତ୍ରିକା ପଢ଼ିବା ଅଭ୍ୟାସର ବ୍ୟତିକ୍ରମ କ୍ୱଚିତ୍ ହିଁ ଏଠି ହୋଇପାରେ । ଏହା କ'ଣ ଏକ ଅଲୌକିକ ବ୍ୟକ୍ତିତ୍ୱ ବା କଠୋର ସାଧକ ବିନା ଅନ୍ୟ କାହାରି ଦ୍ୱାରା ସମ୍ଭବ ?

ବ୍ରହ୍ମଗୁରୁଙ୍କର ଜନ୍ମରୁ ସଂଘ ପ୍ରୀତିରୁ ବିଭିନ୍ନ ସଂଘ ଓ ସଂଗଠନ ଗୁଡ଼ିକର ଅଗ୍ରଣୀମାନଙ୍କର ଯେଉଁ ସବୁ ମୂଲ୍ୟବାନ କଥା ଶିଖିବାର ଅଛି, ତା'ର ସମସ୍ତ ଦୃଷ୍ଟାନ୍ତ ଦେଇ ବସିଲେ କେବଳ ତାହାହିଁ ଏକ ବିରାଟ ଗ୍ରନ୍ଥ ହେବ । ଅନ୍ତତଃ ଗୋଟିଏ ଯୋଡ଼ିଏ ଦୃଷ୍ଟାନ୍ତ ଦେବାର ମୋହକୁ ଏ ଲେଖକ ଉପେକ୍ଷା କରି ପାରୁ ନାହିଁ । ଦିନରାତି ମିଶାଇ ୧୮ । ୨୦ ଘଣ୍ଟା ଅକ୍ଳାନ୍ତ ପରିଶ୍ରମ କରୁଥିବା ଏହି ତ୍ୟାଗୀ ପୁରୁଷଙ୍କର ଖାଦ୍ୟ ଯେ କୌଣସି ସାଧାରଣ ଲୋକର ଖାଦ୍ୟ ଠାରୁ ଉତ୍କୃଷ୍ଟ ନୁହେଁ ଓ ପୋଷାକ ବୋଇଲେ ଦୁଇ ହାଳ ( କେବେ କେବେ ଏକ ହାଳ ) ମୋଟା ଖଦଡ଼ର ଧୋତି ଓ କାମିଜ । ତାହାକୁ ପୁଣି ବହୁ ସମୟରେ ମରାମତି କରି ଚଳାଯାଏ । ପ୍ରତିଟି କାର୍ଯ୍ୟ ଓ ଚିନ୍ତାରେ ସଂଘ ପାଣ୍ଠିର ପ୍ରୟୋଜନୀୟ ସଦ୍‌ବିନିଯୋଗ । ଥରକର ଘଟଣା ; ସ୍କୁଲଗୁଡ଼ିକର ବାର୍ଷିକ ପରୀକ୍ଷା ସମୟ । ସଂଘ କର୍ମଚାରୀମାନଙ୍କ

ସମେତ ନିଜେ ବ୍ରହ୍ମଗୁରୁଙ୍କର ଦିନରାତି ବିଶ୍ରାମହୀନ ପରିଶ୍ରମ । ପ୍ରତିଦିନ ପ୍ରଶ୍ନ ପତ୍ରର ଶହ ଶହ ପ୍ୟାକେଟ୍ ପ୍ରସ୍ତୁତ ହୋଇ ତାଙ୍କୁ ପଠାଯିବାର ଧାରା । ଦିନେ ଏହିପରି ଯୋଡ଼ିଏ ପ୍ୟାକେଟ୍ ଠିକଣା ଭୁଲ ହେତୁ ଫେରି ଆସିଲା । ସେଦିନ ବ୍ରହ୍ମଗୁରୁଙ୍କୁ ଆଉ ସମ୍ଭାଳେ କିଏ ? ପ୍ରଶ୍ନ ପାଇ ନ ଥିବା ସ୍କୁଲ ଯୋଡ଼ିକର ଅସୁବିଧା ଓ ଠିକଣା ଭୁଲ ହେତୁ ଅନାବଶ୍ୟକ ଖର୍ଚ୍ଚ ବିଷୟରେ ସେ ଯେପରି ବ୍ୟସ୍ତ ହେଲେ, ତାହା ଭାଷାରେ ପ୍ରକାଶ କରିହେବ ନାହିଁ । ସେଥିପାଇଁ ଜଣେ ସ୍ୱତନ୍ତ୍ର ଲୋକ ଦ୍ୱାରା ସମ୍ପୃକ୍ତ ସ୍କୁଲକୁ ପ୍ରଶ୍ନ ପଠାଗଲା । ମାତ୍ର ଜଣେ କର୍ମଚାରୀଙ୍କ ତ୍ରୁଟି ହେତୁ ଭି. ପି. ପି. ଫେରିବା ଓ ସ୍ୱତନ୍ତ୍ର ଭାବରେ ପ୍ରଶ୍ନ ପଠାଯିବା ଦ୍ୱାରା ଯେଉଁ ଅଧିକା ଖର୍ଚ୍ଚ ହେଲା, ତାହା କେଉଁ ବାବଦରେ ମଞ୍ଜୁରୀ ହେବ, ତା'ର କୌଣସି ସଠିକ୍ ଯୁକ୍ତି ସେ ପାଇଲେ ନାହିଁ । ଶେଷରେ କ୍ଷୋଭର ସହିତ ହେଲେ ବି ଠିକଣା ଲେଖା ଦାୟିତ୍ୱରେ ଥିବା ସ୍ୱଳ୍ପବେତନଭୋଗୀ କର୍ମଚାରୀଙ୍କ ଦରମାରୁ ସେତିକି ଟଙ୍କା କାଟିବା ହିଁ ଦୟାବାନ ବ୍ରହ୍ମଗୁରୁଙ୍କ ପକ୍ଷରେ ଥିଲା ଏକମାତ୍ର ଚିନ୍ତା । ଏହା ନିଷ୍ଠୁର ସଂଘପ୍ରୀତି ନୁହେଁ ତ ଆଉ କ'ଣ ?

କୌଣସି କାର୍ଯ୍ୟରେ କିଛି ଭୁଲଭ୍ରାନ୍ତି ନ ରହିବା ଦିଗରେ ସେ ନିଜେ ଯେପରି ସଚେତନ, ପ୍ରତ୍ୟେକ ଶିକ୍ଷକଙ୍କୁ ଜଣେ ମାର୍ଜିତ ବ୍ୟକ୍ତିତ୍ୱ ସମ୍ପନ୍ନ ଭାବରେ ଦେଖିବାରେ ତାଙ୍କର ଆଗ୍ରହ ଓ ଯତ୍ନ ମଧ୍ୟ ତତୋଽଧିକ । ସବୁ ବ୍ୟାପାରରେ ପ୍ରତ୍ୟହ ଆସୁଥିବା ଶହ ଶହ ଚିଠିରୁ ସେ ନିଜେ କୌଣସିଟିକୁ ପଢ଼ି ନଥିବା ଓ ତାଙ୍କ ଠାରୁ କୌଣସି ଚିଠିର ଉତ୍ତର ନ ମିଳି ଥିବାର ଦୃଷ୍ଟାନ୍ତ ବୋଧହୁଏ ମିଳିବ ନି । ଶିକ୍ଷକମାନଙ୍କ ଠାରୁ ଆସୁଥିବା କୌଣସି ଚିଠିରେ ତ୍ରୁଟିପୂର୍ଣ୍ଣ ବାକ୍ୟ ଗଠନ ବା ବର୍ଣ୍ଣାଶୁଦ୍ଧି ତାଙ୍କ ନଜରକୁ ଆସିଲେ ଭବିଷ୍ୟତକୁ ସାବଧାନ ହେବା ମର୍ମରେ ଅତ୍ୟନ୍ତ କଠୋର ଭାଷାରେ ସମ୍ପୃକ୍ତ ଶିକ୍ଷକ ବ୍ରହ୍ମଗୁରୁଙ୍କ ଠାରୁ ଖଣ୍ଡିଏ ଚିଠି ସେ ନ ପାଇବ, ଏପରି କଥା ବୋଧହୁଏ ନାହିଁ । ନିଜେ କିଛି ଲେଖିବାବେଳେ ବାକ୍ୟ ଗଠନ ବା ଉପଯୁକ୍ତ ଶବ୍ଦ ପ୍ରୟୋଗକୁ ନେଇ ତାଙ୍କର ସାମାନ୍ୟ ସନ୍ଦେହ ହେଲେ ଲେଖା ବନ୍ଦ କରି ସେ ଛାତ୍ରସୁଲଭ ମନୋବୃତ୍ତିରେ Dictionary ବା Grammar ଖୋଜିବା ଏବଂ ଏପରି କି ତାଙ୍କ ନିକଟରେ ଉପସ୍ଥିତ ଥିବା ଶିକ୍ଷିତ ବ୍ୟକ୍ତିମାନଙ୍କୁ ଠିକ୍‌ଟା କ'ଣ ବୋଲି ଜିଜ୍ଞାସା କରି ବ୍ୟସ୍ତ କରି ପକାଇବାଟା ତାଙ୍କ ପକ୍ଷରେ ଏକ ମାମୁଲି କଥା ।

କେବଳ ଶିକ୍ଷକର ନୁହେଁ, ଏ ଦେଶରେ ଶିକ୍ଷାର ଉନ୍ନତି ପାଇଁ ତାଙ୍କ ପ୍ରାଣରେ ଯେଉଁ ଘୋର ବ୍ୟାକୁଳତା ରହିଛି, ତା'ର ବର୍ଣ୍ଣନା ଦେବା ପାଇଁ ଏ ଲେଖକ ଭାଷାର ଦାରିଦ୍ର୍ୟ ଅନୁଭବ କରେ । ଚକୁଳିଆ ପଣ୍ଡା ଧର୍ମୀ ଏ ଦେଶର ଶିକ୍ଷା ମଠାଧୀଶ ରାଜନୈତିକ ନେତାମାନଙ୍କର ଶିକ୍ଷା ଓ ଶିକ୍ଷକ ସମସ୍ୟା ସମ୍ପର୍କୀୟ ହାସ୍ୟାସ୍ପଦ ଆଦର୍ଶ ବକ୍ତବ୍ୟ ଓ ଉପଦେଶ ବାଣୀକୁ ରୁକ୍ଷ ବାସ୍ତବବାଦୀ ଦୃଷ୍ଟିକୋଣରୁ ବ୍ରହ୍ମଋଷିଙ୍କ ସହିତ ନାନା ଭାବରେ ଆଲୋଚନା କରିବାର ସୁଯୋଗ ଏ ଲେଖକକୁ ମିଳିଛି । ସକଳ ଅନୁଚିତ ଏବଂ ଅନ୍ୟାୟ କାର୍ଯ୍ୟ ଓ ଚକ୍ରାନ୍ତରେ ସଦା ସର୍ବଦା ଲିପ୍ତଥିବା ରାଜନୈତିକ ଭଣ୍ଡ ତପସ୍ୱୀ ଓ ଅମଲାତନ୍ତ୍ରର ଛଦ୍ମଧାରୀ ବଡ଼ ପଣ୍ଡାମାନେ ଶିକ୍ଷକ ଓ ଶିକ୍ଷାନୁଷ୍ଠାନ ଆଦର୍ଶପୂର୍ଣ୍ଣ ହେବା ଉଚିତ ବୋଲି ଉପଦେଶ ବାଣୀ ଶୁଣାଇବାଟା ଜୀବନରେ ଥରେ ମାତ୍ର କଣିକାଏ ତଣ୍ଡୁଳ ବା କଉଡ଼ାଟାଏ କଉଡ଼ି ଦାନ କରିବାର ଦୃଷ୍ଟାନ୍ତ ସୃଷ୍ଟି କରି ନ ଥିବା ଚକୁଳିଆ ପଣ୍ଡାର ଗ୍ରାମ ଗ୍ରାମ ଦେଶ ଦେଶ ବୁଲି ଦାନର ମାହାତ୍ମ୍ୟ ସମ୍ପର୍କରେ ଉଚ୍ଚ କଣ୍ଠରେ ରଡ଼ି କରିବା ସହିତ ସମାନ ନୁହେଁ ତ କ'ଣ ? ଅନାବଶ୍ୟକ ଭାବରେ ବକ୍ତୃତା ଓ ବିବୃତ୍ତିଗୁଡ଼ିକରେ ଉଚିତ ଶବ୍ଦର ଗୁଡ଼ାଏ ଭିଡ଼ କରାଇଲେ ଶ୍ରମ ଓ ଶକ୍ତିର ଅପଚୟ ଛଡ଼ା ଆଉ ଅଧିକ କ'ଣ ଆଶା କରାଯାଇ ପାରେ ? ଏବେ ବି ଅମଲାତାନ୍ତ୍ରିକ ଦୁରାଗ୍ରହ ଓ ପରିକଳ୍ପନା ସମିତିର ଦୌରାତ୍ମ୍ୟ ଭିତରେ ଶିକ୍ଷକର ଅନ୍ତରାତ୍ମା ହାହା ହାହା ଡାକ ଛାଡ଼ୁଛି । ଶିକ୍ଷକର ନ୍ୟାଯ୍ୟ ସ୍ୱାର୍ଥ ସମ୍ପର୍କିତ ବିଭାଗୀୟ କାର୍ଯ୍ୟରେ ଏପରି କି ଶିକ୍ଷା ବିଭାଗୀୟ କାର୍ଯ୍ୟାଳୟଗୁଡ଼ିକରେ ତାକୁ ଉଦ୍ଦେଶ୍ୟମୂଳକ ଭାବରେ ଅଯଥା ହଇରାଣ କରାଯାଇ ତା'ଠାରୁ ଉତ୍କୋଚ ଆଦାୟ କରିବା ପାଇଁ ଅମଲା ଓ ଚପରାଶୀ ପର୍ଯ୍ୟନ୍ତ ଏବେ ବି ଝାଳି ବସିଛନ୍ତି । ଶିକ୍ଷା କ୍ଷେତ୍ରରେ ଏହି ଅମଲାତାନ୍ତ୍ରିକ ଷଡ଼ଯନ୍ତ୍ର ଓ କୁଧି ତ ପରମ୍ପରା ବିରୁଦ୍ଧରେ ବ୍ରହ୍ମଋଷିଙ୍କର କଟୁ ସମାଲୋଚନା ରୂପକ ତୀକ୍ଷ୍ଣ ଖଡ଼୍ଗ ଉତ୍ତୋଳନ ଏ ଦେଶର କଳଙ୍କମୟ ଶିକ୍ଷା ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ଅଧ୍ୟାୟ ଭାବରେ ଲିପିବଦ୍ଧ ହୋଇ ରହିବ ।

ଶିକ୍ଷା ଓ ଶିକ୍ଷକ ସମସ୍ୟା ସଙ୍ଗେ ସଙ୍ଗେ ଏ ଜାତିର ସାହିତ୍ୟ ଓ ସାହିତ୍ୟିକମାନଙ୍କର ଦୁର୍ଦ୍ଦଶା ଓ ଦୁର୍ଗତି ବିଷୟରେ ବ୍ରହ୍ମଋଷି ଅବହିତ ଓ ସେ ଦିଗରେ କିଛିଟା ଶକ୍ତି ବିନିଯୋଗ କରିବାରେ ତାଙ୍କର ଆଗ୍ରହ ଅକୁଣ୍ଠ । ଦୁଃସ୍ଥ ସାହିତ୍ୟିକମାନଙ୍କୁ ସାହାଯ୍ୟ କରିବା ଏବଂ ନୂତନ ସାହିତ୍ୟ

ସୃଷ୍ଟିକୁ ଉତ୍ସାହିତ କରିବା ତାଙ୍କ ଜୀବନର ଅନ୍ୟତମ ଲକ୍ଷ୍ୟ । ଶିଶୁ ପ୍ରତିଷ୍ଠାତା ଭବରେ ନିଜେ ଖ୍ୟାତି ଅର୍ଜନ କରିବା ସଙ୍ଗେ ସଙ୍ଗେ 'ଶିକ୍ଷକ ଦର୍ପଣ' ମାଧ୍ୟମରେ ଶିକ୍ଷକର ସୃଜନ ପ୍ରତିଭାକୁ ଜାଗ୍ରତ କରାଇବାରେ ତାଙ୍କର ଉଦ୍ୟମ ଶିକ୍ଷକ ସମାଜ ପାଇଁ ଏକ ମହାନ ଅବଦାନ । ପ୍ରକାଶନର ଦାୟିତ୍ୱ ନେଇ ଅବହେଳିତ ପ୍ରତିଭାମାନଙ୍କୁ ଲୋକଲୋଚନକୁ ଆଣିବାରେ ବ୍ରହ୍ମବାବୁ ମୁକ୍ତହସ୍ତ । 'ଶ୍ରେଷ୍ଠଗଳ୍ପ ଆଜ ଓ କାଲିର' ଗଳ୍ପ ସଂକଳନ ପ୍ରକାଶନ ଦିଗରେ ଏ ଲେଖକ ନିଜେ ତାଙ୍କର ଦ୍ୱାରସ୍ଥ ହୋଇ ଅକୁଣ୍ଠ ସାହାଯ୍ୟ ପାଇଛି ।

ଅଧିକନ୍ତୁ ଅସହାୟ ବା ବିପଦ ଗ୍ରସ୍ତ ବ୍ୟକ୍ତିକୁ ଆର୍ଥିକ ସହାୟତା ଦେବା ବ୍ରହ୍ମବାବୁଙ୍କ ଚରିତ୍ରର ଏକ ଦୁର୍ବଳତା । ମାତ୍ର ଧାର ସୂତ୍ରରେ ସାହାଯ୍ୟ ପାଇଥିବା ବ୍ୟକ୍ତି ଟଙ୍କା ଫେରାଇବା ପାଇଁ କଥା ଦେଇଥିବା ନିର୍ଦ୍ଦିଷ୍ଟ ସମୟରେ ଖିଲାପ କଲେ ସେ କିପରି କ୍ଷୁବ୍ଧ ହୁଅନ୍ତି, ତା'ର ଏକ ଦୃଷ୍ଟାନ୍ତ ନ ଦେଇ ରହି ପାରୁ ନାହିଁ । ଲେଖକର ଜଣେ ବନ୍ଧୁ ( ଯେ କି ବ୍ରହ୍ମବାବୁଙ୍କ ନିକଟରେ ପରିଚିତ ) ଥରେ ଅସୁବିଧାରେ ପଡ଼ି ଧାର ସୂତ୍ରରେ ତାଙ୍କ ଠାରୁ କିଛି ଟଙ୍କା ଆଣିବା ଓ ନିର୍ଦ୍ଦିଷ୍ଟ ତାରିଖରେ ଟଙ୍କା ନ ଦେବା ଫଳରେ ବ୍ରହ୍ମବାବୁଙ୍କ ଠାରୁ ଯେଉଁ ଚିଠି ପାଇଥିଲେ, ସେ ଚିଠିଟିର ବାକ୍ୟ ଯୋଡ଼ିକ ହେଉଛି, "ତମେ ଯାହାଠାରୁ ଉପକାର ପାଇବ, ତାକୁ ଅସୁବିଧାରେ ପକାଇବା କ'ଣ ତମର ଶିକ୍ଷା ? ଶୁଝିବାର ଶକ୍ତି ନ ଥିଲେ କାହାରିଠାରୁ ଧାର କରିବାର ଅଧିକାର ତୁମର ନାହିଁ ବୋଲି ଭୁଲି ଗଲେ କିପରି ଚଳିବ ?" ଏହି ପ୍ରସଙ୍ଗରେ ଉଲ୍ଲେଖ କରିବା ଆବଶ୍ୟକ ମନେ କରେ ଯେ, ଟଙ୍କା ଫେରି ପାଇବା ଇଚ୍ଛା ସଙ୍ଗେ ସଙ୍ଗେ ଏ ଦୁନିଆର ପ୍ରତ୍ୟେକ ବ୍ୟକ୍ତିଠାରେ ସଚ୍ଚୋଟ ପଣିଆ ଦେଖିବାରେ ତାଙ୍କ ଅନ୍ତରର ବ୍ୟାକୁଳତା ହିଁ ଅଧିକ ସୁସ୍ପଷ୍ଟ ଏବଂ ଏହା ମଧ୍ୟ ତାଙ୍କ ଚରିତ୍ର ସମ୍ପର୍କରେ ଏ ଲେଖକର ନିଜସ୍ୱ ଅନୁଧ୍ୟାନ ଓ ତାଙ୍କ ଚରିତ୍ରର ଅନ୍ୟାନ୍ୟ ବହୁ ଶିକ୍ଷଣୀୟ କଥା ମଧ୍ୟରୁ ଲେଖକ ପକ୍ଷରେ ଏହା ମଧ୍ୟ ଏକ କଠୋର ଶିକ୍ଷା ।

ଏହି ଲେଖାଟିର ପରିସର ମଧ୍ୟରେ ବ୍ରହ୍ମବାବୁଙ୍କ ମହତ୍ ଚରିତ୍ରର ସମସ୍ତ ଶିକ୍ଷଣୀୟ ଦିଗକୁ ଆଲୋଚନା କରିବା ତ ଦୂରର କଥା, ସ୍ପର୍ଶ କରିବା ମଧ୍ୟ ସମ୍ଭବ ନୁହେଁ । ସଂକ୍ଷେପରେ ତାଙ୍କ ସମ୍ପର୍କରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ବ୍ରହ୍ମବାବୁ ଜଣେ ଶିକ୍ଷକ ପରି ଶିକ୍ଷକ, ଗୁରୁ ପରି ଗୁରୁ,

ସଙ୍ଗଠକ ପରେ ସଙ୍ଗଠକ, ସାହିତ୍ୟିକ ପରେ ସାହିତ୍ୟିକ, ସମାଜସେବୀ ପରେ ସମାଜସେବୀ ଏବଂ ସର୍ବୋପରେ ଜଣେ ମଣିଷ ପରେ ମଣିଷ ।

ସମାନ ଆକୃତି ବିଶିଷ୍ଟ ଗୁଡ଼ାଏ ନିର୍ଦ୍ଦିଷ୍ଟ ଧରଣର ଜୀବଙ୍କୁ ମଣିଷ ବୋଲି କୁହାଯାଇ ଥିବାର ପ୍ରଚଳିତ ବିଶ୍ୱାସ ହେତୁ ସମସ୍ତେ ମଣିଷ ପରି ଦେଖା ଯାଉଥିବା ଏ ଜାନୁଆରି-ପ୍ରଧାନ ସମାଜରେ ସଠିକ୍ ମଣିଷପଣିଆର ଦୀକ୍ଷା ଗ୍ରହଣ ସୁଯୋଗରୁ ଈଶ୍ୱର ଏ ଜାତିକୁ ଶୀଘ୍ର ବଞ୍ଚିତ ନ କରନ୍ତୁ, ବ୍ରହ୍ମବିଦ୍‌ଙ୍କର ୭୪ ତମ ଜୟନ୍ତୀ ଅବସରରେ ଏହା ହିଁ ଏ ଲେଖକର ଈଶ୍ୱରଙ୍କ ଠାରେ ପ୍ରାର୍ଥନା ।

ଶ୍ରୀ ମଦନ ମୋହନ ପଣ୍ଡା
ଗୋପବନ୍ଧୁ ନଗର
ଦଶରଥପୁର
ବାଲେଶ୍ୱର

# ମୋ ଦୃଷ୍ଟିରେ
# ଶିକ୍ଷାବିତ୍ ବ୍ରହ୍ମଚାରୀ

ତାଙ୍କ ସହ କେତୋଟି ଦିନ ମୋର ଅତି ନିବିଡ଼ ଭାବରେ କଟିଥିଲା । ପାଖାପାଖି ବର୍ଷେ ବା ତହିଁରୁ କିଞ୍ଚିତ୍ ଅଧିକ । ସେତେବେଳେ ଶିକ୍ଷା ବିଭାଗରେ ଶ୍ରୀ ବନମାଳୀ ବ୍ରହ୍ମଚାରୀ ଖୁବ୍ ଚହଳ ପକାଇଲେ । ଏବେ ବି ସେ ଯେପରି ଶିକ୍ଷା ବିଭାଗୀୟ କର୍ତ୍ତୃପକ୍ଷ ଓ ଅଧିକାରୀମାନଙ୍କର ଏକ ବିଭୀଷିକା ଥିଲେ । ବେକ୍ଠୋକ୍ କଥା କହୁଥିବାରୁ ତାଙ୍କୁ ଭିତର ମନରେ କେହି ସୁଖ ପାଉ ନ ଥିଲେ । ହସିହସି ଦି'ପଦ କଥା କହି, ଗୁହା କୋକାକୋଲା ଦେଇ ସବୁ କରିଦେବାର ମିଥ୍ୟା ପ୍ରତିଶ୍ରୁତି ଭିତରେ ତାଙ୍କୁ କୌଣସିମତେ ବିଦା କରିଦେବା ପାଇଁ କର୍ମକର୍ତ୍ତାମାନେ ତତ୍ପର । ଭିତର ମନରେ ନିଶ୍ଚୟ ଏଇ ବ୍ୟକ୍ତିଟିର ସେମାନେ ଅଶୁଭ କାମନା କରୁଥିବେ । ସତେ ଯେପରି ସେ ତାଙ୍କ ବ୍ୟକ୍ତିଗତ ଅଧିକାର ଓ ଖିଆଲର ରାଜ୍ୟ ଭିତରକୁ ପଶି ଆସି ଅଯଥା ହସ୍ତକ୍ଷେପ କରୁଛନ୍ତି । ସେମାନେ ହାକିମ (ବ୍ରିଟିଶ ସରକାର-କାଳୀନ ମନୋବୃତ୍ତି ଅନୁଯାୟୀ) । ସେମାନେ ଯାହା କରିବେ ସେଥିରେ ପ୍ରଶ୍ନ କରିବାର, ଦୁର୍ଯୁକ୍ତି କରିବାର ଅଧିକାର ଅନ୍ୟ କାହାର ନାହିଁ । ନିଜର ଦାବୀ ଜଣାଇବାର ବା ହାସଲ କରିବାର ସାମ୍ବିଧାନିକ ଅଧିକାର ସେଠାରେ ଖାଲି ଗୋଟାଏ ଅଳୀକ ସମ୍ଭାବନା ମାତ୍ର । ଶ୍ରୀ ବନମାଳୀ ବ୍ରହ୍ମଚାରୀ କିନ୍ତୁ ସେତେବେଳେ ବହୁ ଅସହାୟ ଶିକ୍ଷକ ଓ ଶିକ୍ଷାନୁଷ୍ଠାନର ସମସ୍ୟା ନେଇ କର୍ତ୍ତୃପକ୍ଷଙ୍କ ପାଖରେ ଦଣ୍ଡାୟମାନ । ଧର୍ମପ୍ରତି ପ୍ରବଳ ନିଷ୍ଠା, କର୍ମସମ୍ପାଦନା ପାଇଁ ପ୍ରବଳ ଝୁଙ୍କ୍, ଏକାଦିକ୍ରମେ ବର୍ଷ ବର୍ଷ ଧରି ଗୋଟିଏ ଗୋଟିଏ ସମସ୍ୟାକୁ ପାହାଚ ପାହାଚ କରି ସଫଳତା ପର୍ଯ୍ୟନ୍ତ ଆଗେଇ ନେବାରେ ତାଙ୍କର ଅଦମ୍ୟ ପ୍ରଚେଷ୍ଟା ଓ ଅସୀମ ଧୈର୍ଯ୍ୟ ଲକ୍ଷ୍ୟ କରିବାର କଥା । ଶ୍ରୀ ବ୍ରହ୍ମଚାରୀ ତାଙ୍କ ସଂଘର୍ଷପୂର୍ଣ୍ଣ ଜୀବନର ଏହିପରି କାହାଣୀଗୁଡ଼ିକୁ ମୋତେ ବରାବର

ଶୁଣାନ୍ତି । ଅମୁକ ସର୍କଲ ଶିକ୍ଷାବିଭାଗ ଇନସ୍‌ପେକ୍ଟର ଅମୁକ ଅମୁକ ଶିକ୍ଷକଙ୍କଠାରୁ ଲାଞ୍ଚ ନେଇ ବି ତାଙ୍କୁ ବଦଳିତ ଦଦ୍‌ଗଞ୍ଜ କରୁଛନ୍ତି । ଅମୁକ ମ୍ୟାନେଜିଙ୍ଗ୍ କମିଟିର ଅନ୍ୟାୟ କାର୍ଯ୍ୟକୁ ଇନସ୍‌ପେକ୍ଟର ରାଜନୈତିକ ସ୍ତରରେ ସମର୍ଥନ କରୁଛନ୍ତି । ଅମୁକ ଇନସ୍‌ପେକ୍ଟରଙ୍କ ଘରକୁ ସବୁ ଅରୁଆ ଚାଉଳ, ଘିଅ, ମାଛ ବୁହାଯାଉଛି । ଅମୁକ ଇନସ୍‌ପେକ୍ଟର ଜଣେ ଶିକ୍ଷୟିତ୍ରୀଙ୍କୁ ବାରବାର ଘରକୁ ଡାକୁଛନ୍ତି—ଛି, ସାଧାରଣ ଲୋକଙ୍କ ଭିତରେ ପେଉଁ ଗୁଜବ ମୁଁ ଶୁଣି ଶୁଣି ଓ ଶିକ୍ଷା ବ୍ୟବସ୍ଥାର ଏହି ଦୟନୀୟ ରୂପଟିକୁ ଦେଖି ଦେଖି ଅନ୍ତରରେ ବ୍ୟଥିତ ହୁଏ । କଣ ଏହାର ପ୍ରତିକାର ? କପରି ଏ ଦୁଷ୍କୃତିରୁ ଏ ସମାଜ ନିଷ୍କୃତି ପାଇବ ? ଶ୍ରୀ ବ୍ରହ୍ମବ୍ରତ ମୋତେ ବାରବାର କୁହନ୍ତି "ସ୍ୱାଭାବିକ ଭାବରେ ନ୍ୟାୟ ନ ମିଳିଲେ କୋର୍ଟ କଚେରୀକୁ ଯିବାକୁ ହେବ । ମନ୍ତ୍ରୀଙ୍କୁ ଜଣାଇଲୁ । ଗଣତାନ୍ତ୍ରିକ ବ୍ୟବସ୍ଥାରେ ଏତେ ସହଜରେ ଅନ୍ୟାୟର ପ୍ରତିରୋଧ କରି ହେବ କି ? ଦିବାଲୋକରେ ପ୍ରତ୍ୟକ୍ଷ ଭାବରେ ଜଣେ ମର୍ଡ଼ର କରି ବି କୋର୍ଟରେ ଅନ୍ୟପକ୍ଷ ନେଇ ସଫେଇ ଦେବାର ଅଛି । କଣ କରିବା ? ମୁଁ ଏ ମାସର ଶିକ୍ଷକ ଦର୍ପଣରେ ସବୁକଥା ଖୋଲି ଖୋଲି ଲେଖିଦେବି । ଜନତା ଜନାର୍ଦ୍ଦନ ବିଚାର କରନ୍ତୁ । କୌଣସି ବ୍ୟକ୍ତି ପାଇଁ ଯେତେ ବି ଦଳୀୟ ସମର୍ଥନ ମିଳିଲେ ବି ଜନତା ଆଖିରେ ସେ ନିଶ୍ଚିତ ଭାବେ ତିରସ୍କୃତ ହେବ" । ଶ୍ରୀ ବ୍ରହ୍ମବ୍ରତ ବାରବାର କୁହନ୍ତି "ବ୍ୟକ୍ତିହୀନ ଶିକ୍ଷକ ଓ ପ୍ରଶାସକ ଉଭୟେ ଏ ସମାଜର ବଡ଼ ଶତ୍ରୁ । ଏମାନଙ୍କ ବିରୁଦ୍ଧରେ ସେ ବାରବାର ସଂଗ୍ରାମ କରିବ ।"

ମୁଁ ବର୍ଷେରୁ ଊର୍ଦ୍ଧ୍ୱ ତାଙ୍କ ସହିତ ଖାଇବା ପିଇବା ଠାରୁ ଉଠିବା ଯାଏ ସବୁରେ ଭୁକ୍ତଭୋଗୀ । ମେସ୍‌ରେ କମ୍ୟୁନିଟି ଲାଇଫ୍‌ଠାରୁ ଅନେକ ସଭା ସମିତିରେ ଶିକ୍ଷା ସଂସ୍କାରର ବାର୍ତ୍ତା ପହଞ୍ଚାଇବା ଯାଏ ମୁଁ କିଛି ଘଟଣାରେ ତାଙ୍କ ବ୍ୟକ୍ତିତ୍ୱ ସଂପର୍କରେ ଆସିଚି । ବ୍ରହ୍ମବ୍ରତଙ୍କ ଜୀବନର ନିରାଡ଼ମ୍ବର ନିରଳସ କର୍ମତତ୍ପରତା ନ ଦେଖିଲେ କେହି ବିଶ୍ୱାସ କରି ପାରିବେନି । ବର୍ଷରେ ତିନି ଥର ନିମ୍ନ ମାଧ୍ୟମିକ ଶ୍ରେଣୀର ପରୀକ୍ଷା ହୁଏ । ଏଥିପାଇଁ ଆଦର୍ଶ ପ୍ରଶ୍ନପତ୍ର ଯୋଗେଇ ଦେବା ଦାୟିତ୍ୱ ସଂଘର । ଶ୍ରୀ ବ୍ରହ୍ମବ୍ରତ ଏଇ ଦିନମାନଙ୍କରେ ଏତେ ବ୍ୟସ୍ତ ରହନ୍ତି ଯେ ରାତିରେ ଚାରି ଘଣ୍ଟା ବି ଶୋଇବାକୁ ବେଳ ପାଆନ୍ତିନି । ଏହି କାର୍ଯ୍ୟକୁ କେବଳ ବ୍ୟବସାୟ ଦୃଷ୍ଟିରୁ ନୁହେଁ, ବିଶ୍ୱାସ ଓ ଦାୟିତ୍ୱ ଦୃଷ୍ଟିରୁ ତାଙ୍କୁ ନିର୍ବାହ କରିବାକୁ ହୁଏ ।

ପ୍ରଶ୍ନପତ୍ରରେ ସମ୍ପୂର୍ଣ୍ଣ ଗୋପନୀୟତା ଅନୁସରଣ କରିବାକୁ ହେବ । ନଚେତ୍ ଛାତ୍ରମାନଙ୍କର ହେବ ପ୍ରଭୂତ କ୍ଷତି । ଆଗରୁ ନିଜ ନିଜ ଦାୟିତ୍ୱରେ ପ୍ରଶ୍ନ ତିଆରି ଓ ମୁଦ୍ରଣରେ ସ୍କୁଲମାନଙ୍କରେ ଗୋପନୀୟତା ରହୁ ନ ଥିଲା । ସଙ୍ଘ ଅନ୍ତର୍ଭୁକ୍ତ ସମସ୍ତ ସ୍କୁଲ ଏହି ପ୍ରଣାଳୀର ଉପାଦେୟତା ଅନୁଭବ କରୁଥିବାରୁ ବର୍ଷ ବର୍ଷ ଧରି ଅପ୍ରତିହତ ଭାବରେ ଶ୍ରୀ ବ୍ରହ୍ମଚାରୀ ଏହି ଦାୟିତ୍ୱ ସମ୍ପନ୍ନ କରି ଆସୁଛନ୍ତି । ଅନେକଙ୍କ ଆଖିରେ ଏହା ଏକ ବ୍ୟବସାୟ ହୋଇପାରେ; ମୋ ଆଖିରେ ଏହା ଏକ ଯଜ୍ଞ କର୍ମ । କାରଣ ଏହି ସଂସ୍ଥାରେ ଏକାଧିକ ଛାତ୍ର ଓ ବେକାର ଯୁବକ କର୍ମ ନିର୍ବାହର ସୁଯୋଗ ପା'ନ୍ତି । କୌଣସି ସରକାରୀ ସଂସ୍ଥାରେ ନିଯୁକ୍ତି ପାଇବା ପର୍ଯ୍ୟନ୍ତ ସେମାନଙ୍କ ପାଇଁ ଏହା ଏକ ତାଲିମ୍-ସମୟ ଭାବରେ ଗ୍ରହଣ କରାଯାଇ ପାରେ । ବିଶେଷ କଥା ହେଲା, ସଙ୍ଘ ତରଫରୁ ଯେଉଁ ବିରାଟ ପ୍ରାସାଦ କଟକରେ ନିର୍ମିତ ହୋଇଛି, ତାହା କଟକକୁ ଆସୁଥିବା ବହୁ ଶିକ୍ଷକଙ୍କୁ ଏହି ଜନଗହଳି ସହରରେ ଆଶ୍ରୟ ଦେଇ ଆସୁଅଛି । ଏସବୁ ଯେ ଶ୍ରୀ ବ୍ରହ୍ମଚାରୀଙ୍କର ଅନବରତ ଚେଷ୍ଟା ଓ ଶ୍ରମର ଫଳ—ଏକଥା ଅତି ସ୍ପଷ୍ଟ ଭାବେ କୁହାଯାଇ ପାରେ ।

ଏଣିକି ଟିକିଏ ବ୍ୟକ୍ତିଗତ କଥା କୁହେଁ । ବ୍ରହ୍ମଚାରୀ ନାମ ଶୁଣି କେହି ହୁଏତ ଭାବୁଥିବେ ସେ ଅବିବାହିତ କିମ୍ବା ସନ୍ନ୍ୟାସୀ । ପ୍ରକୃତରେ ତା' ନ ହେଲେ ବି ବହୁକାଳରୁ ମୃତଦାର ହୋଇ ସେ ବ୍ରହ୍ମଚର୍ଯ୍ୟର ଜୀବନ ଯାପନ କରି ଆସୁଛନ୍ତି । ମୁଁ ତାଙ୍କ ସହିତ ରହିବାର ଦେଢ଼ବର୍ଷ ମଧ୍ୟରେ କେବେ କୌଣସି ନାରୀ ସମ୍ପର୍କୀୟ ଆଲୋଚନା ଶୁଣି ନାହିଁ । ସେ ପୁଣି ଗୋଟିଏ ଅର୍ଥରେ ସନ୍ନ୍ୟାସୀ—ନିଜର ନିଷ୍ଠାପର କର୍ତ୍ତବ୍ୟରେ ଓ ଲକ୍ଷ୍ୟରେ । ନିଜର ଗ୍ରାମ ଓ ଘର କଥା ଯେ ସେ ନ ଭାବନ୍ତି—ତା ନୁହେଁ । କିନ୍ତୁ ସଙ୍ଘ ଘର ଅନ୍ୟ କୌଣସି ପାର୍ଥିବ ଜଞ୍ଜାଳ ତାଙ୍କୁ ଏତେ ବେଶୀ ଆସକ୍ତ କରି ରଖି ପାରିଅଛି ବୋଲି ମୋର ମନେହୁଏ ନାହିଁ । ପୁଣି ଶିକ୍ଷା ଓ ଶିକ୍ଷକଙ୍କୁ ଏକ ନିର୍ଦ୍ଦିଷ୍ଟ ଦେଶପ୍ରାଣିତ ଲକ୍ଷ୍ୟରେ ଗଢ଼ିବାର ରାସ୍ତାରେ ସେ ସନ୍ନ୍ୟାସୀ । ସେଥିପାଇଁ ପୁସ୍ତକ ପ୍ରକାଶନ, ପତ୍ରିକା ପ୍ରକାଶନ ଠାରୁ ମଝିରେ ମଝିରେ ସରକାରଙ୍କୁ ଶ୍ୱେତ ପତ୍ର (White bulletin) ଦେବା ପର୍ଯ୍ୟନ୍ତ ତାଙ୍କ କାମରେ ମୁଁ ଯେଉଁ ଏକନିଷ୍ଠତା ଉପଲବ୍‌ଧି କରିଚି, ତାହା ପ୍ରକୃତରେ ଅନୁକରଣୀୟ ।

ଅନେକଙ୍କ ଧାରଣା ହୋଇପାରେ 'ଶିକ୍ଷକ ମହାସଙ୍ଘ' ଗୋଟିଏ ପ୍ରଚାର-ସର୍ବସ୍ୱ ସଂସ୍ଥା । ଏଥିରେ କେତେଜଣ ଶିକ୍ଷକ ଓ ସଂଗଠକ ନିଜର

ନେତୃତ୍ୱକୁ ବିସ୍ତାର କରିବା ପାଇଁ କେବଳ ସୁଯୋଗ ମାତ୍ର ପାଆନ୍ତି । ଶିକ୍ଷକମାନଙ୍କର କିଛି ହୁଏ ନାହିଁ । ଏହା ଏକ ପ୍ରମାଦପୂର୍ଣ୍ଣ ଭ୍ରାନ୍ତ ଧାରଣା । ଶ୍ରୀ ବ୍ରହ୍ମବୃନ୍ଦ ଏଇ ସଂସ୍ଥାର ସଭାପତି—ଯଦିଓ ଏଥିରେ ବେସରକାରୀ କଲେଜ ଓ ମାଧ୍ୟମିକ ସ୍କୁଲଗୁଡ଼ିକ ଅନ୍ତର୍ଭୁକ୍ତ । ଏହି ଦାୟିତ୍ୱର ଗୁରୁତ୍ୱ ଯେ ସେ ଅନୁଭବ କରିଛି—ଏଥିରେ ଅନ୍ତତଃ ମୁଁ ନିଶ୍ଚିତ । ଆମ ଦେଶରେ ଶିକ୍ଷା ବ୍ୟବସ୍ଥା ଯେଉଁପରି ବହୁଧାବିଭକ୍ତ—ସେଠି ଅସମାନତା ଓ ଅସାମଞ୍ଜସ୍ୟ ଅଧିକ ରହିବା ସ୍ୱାଭାବିକ । ଭାରତର ବିଭିନ୍ନ ପ୍ରାଦେଶିକ ଶିକ୍ଷା ବ୍ୟବସ୍ଥାରେ ବହୁ ଅସାମଞ୍ଜସ୍ୟ ସ୍ପଷ୍ଟତଃ ରହିଛି । କେଉଁଠି ସରକାରୀ ଓ ବେସରକାରୀ ଶିକ୍ଷକମାନେ ସମାନ ହାରରେ ବେତନ ଓ ସୁବିଧା ସୁଯୋଗ ପାଉଛନ୍ତି ତ କେଉଁଠି ଆକାଶ ପାତାଳ ପ୍ରଭେଦ ବି ରହିଛି । ଏକା ପାଠ ପଢ଼ିଥିବା ଓ ପଢ଼ାଉଥିବା ଦାୟିତ୍ୱ ପାଇଁ ପୁଣି ବିଶ୍ୱବିଦ୍ୟାଳୟ ଓ ସରକାରୀ ତଥା ବେସରକାରୀ କଲେଜ ଶିକ୍ଷା ସର୍ତ୍ତ ତଥା ବେତନ ହାରରେ ବହୁ ବିଭିନ୍ନତା ରହିଛି । ସଂଘ ଏହି ବିଭିନ୍ନତାର ଉଚ୍ଛେଦ ପାଇଁ ଲଢ଼ି ଆସୁଅଛି । କାହିଁକି ଏ ବିଭିନ୍ନତା ? ଏହା କଣ ଏକ ସୁସ୍ଥ ଶିକ୍ଷା ପ୍ରଣାଳୀ ଓ ଶିକ୍ଷାନୀତିର ପରିଚୟ ? ମୋର ଯେପରି ମନେହୁଏ ଏହି ବିଭିନ୍ନତା ପାଇଁ ଆଜି ଶିକ୍ଷକ ସଂପ୍ରଦାୟ ଭିତରେ ସମନ୍ୱୟ ସ୍ଥାପିତ ହୋଇ ପାରୁନାହିଁ । ନିଜ ନିଜ ପ୍ରତି ଭରସା ମଧ୍ୟ ଆସୁନାହିଁ । ମହାସଂଘର ଦାୟିତ୍ୱ ତେଣୁ ଅପରିସୀମ । ଶ୍ରୀ ବ୍ରହ୍ମବୃନ୍ଦ ଏଇ ଦାୟିତ୍ୱର ପୃଷ୍ଠ ଭୂମିରେ ନିଜ କର୍ତ୍ତବ୍ୟ ଏପର୍ଯ୍ୟନ୍ତ ତୁଲେଇ ଆସିଛନ୍ତି ।

ଆଜି ଶ୍ରୀ ବ୍ରହ୍ମବୃନ୍ଦଙ୍କ ଜୟନ୍ତୀ ଉତ୍ସବ ପାଇଁ ଏ ଯେ ଆୟୋଜନ, ଏହା ଆମ ଦେଶରେ ପୂଜ୍ୟ ପୂଜାର ଭୂମିକାକୁ ଅଧିକ ଦୃଢ଼ କରିବ, ଏଥିରେ ସନ୍ଦେହ ନାହିଁ । ଏହି ଜୟନ୍ତୀ ଉତ୍ସବ ଉପଲକ୍ଷେ ପ୍ରକାଶ ପାଉଥିବା ସ୍ମରଣିକା ତାଙ୍କ ଜୀବନର ବହୁ ବିଶିଷ୍ଟ ସତ୍ତାକୁ ଉନ୍ମୋଚନ କରିବ ଏବଂ ଶିକ୍ଷକ ସମାଜକୁ ଅନୁପ୍ରାଣିତ କରିବ—ଏ ଭରସା ଅନ୍ତତଃ ମୋର ଅଛି । କିମଧିକମ୍ ?

ଶ୍ରୀ ନିତ୍ୟାନନ୍ଦ ଶତପଥୀ
ଅଧ୍ୟାପକ, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀବିହାର ।

# ସାଧନା ଓ ସିଦ୍ଧି

୧୯୨୮-୨୯ ମସିହାର କଥା । ଆଜକାଲି ଯେପରି ପ୍ରତି ଏକ ମାଇଲରେ ଗୋଟିଏ ମି. ଇ. ସ୍କୁଲ ଓ ଦୁଇ ତିନି ମାଇଲରେ ଗୋଟିଏ ହାଇସ୍କୁଲ ଅଛି, ସେତେବେଳେ ଏହା ଥିଲା ସ୍ୱପ୍ନ । କୁଜଙ୍ଗ-କେନ୍ଦ୍ରାପଡ଼ା ଓ କେନ୍ଦ୍ରାପଡ଼ା—କଟକ ମଧ୍ୟରେ ଏହି ଦୁଇଟି ମାତ୍ର ହାଇସ୍କୁଲ । ସମଗ୍ର କଟକ ଜିଲ୍ଲାରେ ମ. ଇ. ସ୍କୁଲ ସଂଖ୍ୟା ଥିଲା ୩୦ରୁ କମ୍ । ସେହି ସମୟରେ ମୁଁ ମୋର ଘରଠାରୁ ପ୍ରାୟ ୨ ମାଇଲ ଦୂରବର୍ତ୍ତୀ ଦୋହଲ ଉ: ପ୍ରା: ବିଦ୍ୟାଳୟରେ ଅଧ୍ୟୟନ କରୁଥାଏ । ସ୍କୁଲର ପ୍ରଧାନ ଶିକ୍ଷକ ଥା'ନ୍ତି ସ୍ୱର୍ଗତ ଚନ୍ଦ୍ରଧର ଦାଶ । ଏକ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ହେଲେ ହେଁ ଆଖପାଖ ୧୦-୧୫ ଖଣ୍ଡ ଗ୍ରାମରେ ତାଙ୍କର ବିଶେଷ ଖ୍ୟାତି ଥାଏ ଏବଂ ସେ ଅଞ୍ଚଳରେ ଶିକ୍ଷିତ ଲୋକେ ଅନେକ ସମୟରେ ବିଭିନ୍ନ ବିଷୟରେ ତାଙ୍କ ସହିତ ପରାମର୍ଶ କରିବା ପାଇଁ ଦୋହଲ ଉ: ପ୍ରା: ସ୍କୁଲକୁ ଆସନ୍ତି ।

ସେହି ଆଗନ୍ତୁକମାନଙ୍କ ମଧ୍ୟରେ ଥିଲେ ଜଣେ ଦୀର୍ଘକାୟ ଗୌରବର୍ଣ୍ଣ ଯୁବକ । ତାଙ୍କର ଦୀପ୍ତ ପ୍ରସନ୍ନ ମୁଖମଣ୍ଡଳ, ପ୍ରଗଳଭ ବଚନ ଗୁମ୍ଫନ ଓ ଯୁକ୍ତିର ଦୃଢ଼ତା ଆମର ଶିଶୁ ପ୍ରାଣକୁ ବିଶେଷ ଆକର୍ଷଣ କରୁଥିଲା । ସେ ହେଉଛନ୍ତି ବନମାଳୀ ପଣ୍ଡିତ, କାନପୁର ମେଟ୍‌କାଫ ନିମ୍ନ ମାଧ୍ୟମିକ ବିଦ୍ୟାଳୟର ଜଣେ ସହକାରୀ ଶିକ୍ଷକ । ଶୁଣିଲୁ ସେ ଦୋହଲରେ ଏକ ମଧ୍ୟଇଂରାଜୀ ସ୍କୁଲ ପ୍ରତିଷ୍ଠା ପାଇଁ ଉଦ୍ୟମ ଚଳାଇଛନ୍ତି । ବ୍ୟକ୍ତିଗତ ଉଦ୍ୟମରେ ବିଦ୍ୟାଳୟ ପ୍ରତିଷ୍ଠା ନୂଆ କଥା ନୁହେଁ । ଆମ ଦେଶର ଅଧିକାଂଶ ସ୍କୁଲ, କଲେଜ, ବଦାନ୍ୟ, ଉଦ୍ୟମଶୀଳ ବ୍ୟକ୍ତି ବିଶେଷଙ୍କ ଦ୍ୱାରା ହିଁ ପ୍ରତିଷ୍ଠିତ ହୋଇଅଛି । କିନ୍ତୁ ବନମାଳୀ ପଣ୍ଡିତ ଥିଲେ ନିଃସ୍ୱ । ନଥିଲା ତାଙ୍କର ଧନ ସମ୍ପଦ, ପଦ ପଦବୀ ଅଥବା ପ୍ରଭୁତ୍ୱ ପ୍ରତିପତ୍ତି । ହେଲେ, ହୃଦୟରେ ଥିଲା ତାଙ୍କର ଅସୀମ ସାହସ, ପ୍ରାଣରେ ଅନନ୍ତ ଉତ୍ସାହ ଓ ଅନ୍ତରରେ ଅଟଳ

ପ୍ରତିଜ୍ଞା । ଏଭଳି ସମ୍ବଳ କରି ବନମାଳୀ ପଣ୍ଡିତେ କର୍ମ ସମୁଦ୍ରରେ ଝାମ୍ପ ଦେଲେ । ନାଉରୀ ନଦୀ ବକ୍ଷରେ ତାର ନୌକା ମେଲି ଦେବା ପୂର୍ବରୁ ଖରସ୍ରୋ ଖୁଣ୍ଟ ଅଥବା ବୃକ୍ଷରେ ନୌକାକୁ ବାନ୍ଧିରଖିଥିବା ରଜ୍ଜୁକୁ ଛିନ୍ନ କରିଦେବା ପରି ପଣ୍ଡିତେ ତାଙ୍କର ଉପାର୍ଜନ ଓ ପରିବାର ପୋଷଣରେ ଏକମାତ୍ର ପନ୍ଥା ଶିକ୍ଷକତାକୁ ବିସର୍ଜନ ଦେଇ ନିଜକୁ ସର୍ବତୋଭାବରେ ବିଦ୍ୟାଳୟ ପ୍ରତିଷ୍ଠା କାର୍ଯ୍ୟରେ ଉତ୍ସର୍ଗ କରିଦେଲେ । ଏଣିକି ଶୟନ, ସ୍ୱପନ ଓ ଜାଗରଣରେ ବିଦ୍ୟାଳୟ ହେଲା ତାଙ୍କର ଜପ, ତପ, ଧ୍ୟାନ, ଧାରଣା ସବୁ । ଜୀବନର ପ୍ରତି ମୁହୂର୍ତ୍ତ ଓ ଦେହର ପ୍ରତି ଶୋଣିତ ବିନ୍ଦୁ ଅକୁଣ୍ଠ ହୃଦୟରେ ସେ ବିଦ୍ୟାଳୟ ପାଇଁ ଦାନ କରିଛନ୍ତି । ସେ ମୂଲିଆ ହୋଇ ବାଉଁଶ କାଟିଛନ୍ତି, ଇଟା ବୋହିଛନ୍ତି, ପୂଝାରୀ ହୋଇ ଭୋଜେଇ କରି ପିଲାଙ୍କୁ ଖୁଆଇଛନ୍ତି ! ବିଦ୍ୟାଳୟ କକ୍ଷରେ ଶିକ୍ଷକ ହୋଇ ପାଠ ପଢ଼ାଇଛନ୍ତି । ପ୍ରଧାନ ଶିକ୍ଷକ ହୋଇ ସ୍କୁଲ ପ୍ରଶାସନର ଦାୟିତ୍ୱ ସମ୍ପୂର୍ଣ୍ଣ କରିଛନ୍ତି ଏବଂ ପରିଚାଳକ ହୋଇ ବିଦ୍ୟାଳୟର ପରିଚାଳନା କରିଛନ୍ତି । ଏଥିପାଇଁ ତାଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଛି, ବହୁ ନିର୍ଯ୍ୟାତନା ଭୋଗ କରିବାକୁ ହୋଇଛି ଏବଂ କଠୋର ବ୍ୟଙ୍ଗ ବିଦ୍ରୂପର ଶରବ୍ୟ ହେବାକୁ ମଧ୍ୟ ପଡ଼ିଛି ।

ହେଲେ ସାଧକ ବନମାଳୀ ଏ ସକଳ ପ୍ରତିବନ୍ଧକ ସମ୍ମୁଖରେ ମସ୍ତକ ନତ କରିନାହାନ୍ତି । ଶେଷରେ ତାଙ୍କର ଜୟ ହୋଇଛି । ନିଃସ୍ୱ ଓ ସମ୍ବଳହୀନ ହୋଇ ମଧ୍ୟ ସେ ନିଜର ଦୃଢ଼ ମନୋବଳ, ଅଟଳ ପ୍ରତିଜ୍ଞା ଓ ଅସାଧାରଣ ସଂଗଠନ ଶକ୍ତି ବଳରେ ଦୋହଲରେ ଏକ ମ. ଇ. ସ୍କୁଲ ପ୍ରତିଷ୍ଠାରେ ସଫଳ ହୋଇଅଛନ୍ତି । କେବଳ ସେତିକି ନୁହେଁ, ଦୀର୍ଘ ୧୨ ବର୍ଷ କାଳ ସରକାରଙ୍କ ଠାରୁ କୌଣସି ଆର୍ଥିକ ସାହାଯ୍ୟ ନ ପାଇ ସେ ଯେ ବିଦ୍ୟାଳୟଟିକୁ ବଞ୍ଚାଇ ରଖିଥିଲେ ତାହା ନୁହେଁ, ଏହାକୁ ପ୍ରଗତିଶୀଳ, ଅଗ୍ରଗାମୀ, ଆଦର୍ଶ ବିଦ୍ୟାଳୟ ରୂପେ ପ୍ରତିଷ୍ଠିତ କରିବାରେ ସମର୍ଥ ହୋଇଛନ୍ତି । ସେ ଏହାକୁ କର୍ମାଭିମୁଖୀ କରିବା ପାଇଁ ବହୁ ଉଦ୍ୟମ କରିଛନ୍ତି ।

ଏକ ଦୀପଶିଖା ଅନ୍ୟ ଦୀପ ଶିଖାକୁ ପ୍ରଜ୍ୱଳିତ କଲପରି ବନମାଳୀ ପଣ୍ଡିତେ ଆମ ସେ ଅଞ୍ଚଳରେ ଶିକ୍ଷାର ଯେଉଁ ନୂତନ ବହ୍ନି ଜଳାଇଲେ,

ତାହା ଏକ ନବୀନ ଚେତନା ଓ ନୂତନ ଜାଗରଣ ସୃଷ୍ଟି କଲା ଏବଂ ତାଙ୍କର ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ବହୁ ଲୋକ ଦୋହଲାର ଚତୁର୍ଦ୍ଦିଗରେ ବିଦ୍ୟାଳୟମାନ ପ୍ରତିଷ୍ଠା କଲେ । ଦୋହଲାରେ ଏକ ମ. ଇ. ସ୍କୁଲ ସ୍ଥାପନରେ ସନ୍ତୁଷ୍ଟ ନ ହୋଇ ପଣ୍ଡିତେ ଏହାକୁ ଏକ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ପରିଣତ କରିବା ପାଇଁ ଲାଗି ପଡ଼ିଲେ । ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା ବହୁ ବ୍ୟୟସାପେକ୍ଷ ହେଲେହେଁ ପଣ୍ଡିତ ମହାଶୟଙ୍କ ଜନପ୍ରିୟତା, ଅକ୍ଳାନ୍ତ ଶ୍ରମ ଓ ଅପୂର୍ବ କର୍ମକୁଶଳତା ତାଙ୍କର ଏ ସ୍ୱପ୍ନକୁ ଅଚିରେ ସଫଳ କଲା । ପଣ୍ଡିତ ମହାଶୟଙ୍କର ତ୍ୟାଗ ଓ ସାଧନାର ମୂର୍ତ୍ତି ବିଗ୍ରହ ରୂପେ ଏ ଅନୁଷ୍ଠାନ ଉତ୍ତରୋତ୍ତର ଉନ୍ନତିର ପଥରେ ଅଗ୍ରସର ହୋଇ ଏବେ ତାହା ଆମ ସେ ଅଞ୍ଚଳରେ ବିଶେଷ ଖ୍ୟାତିର ଅଗ୍ରାଧିକାରୀ ହୋଇପାରିଛି ।

ବନମାଳୀ ପଣ୍ଡିତେ ବହୁକାଳ ପର୍ଯ୍ୟନ୍ତ ଦୋହଲା ଉଚ୍ଚ ଇଂରାଜୀ ବିଦ୍ୟାଳୟର ସର୍ବମୟ କର୍ତ୍ତା ହୋଇ ରହିବା ସଙ୍ଗେ ସଙ୍ଗେ ତାଙ୍କର ବହୁମୁଖୀ କର୍ମ ପ୍ରଚେଷ୍ଟା ଦ୍ୱାରା ନାନା ଭାବରେ ସେ ଅଞ୍ଚଳର ସେବାରେ ନିଜକୁ ନିୟୋଜିତ କଲେ । କେତେକ ଅନିବାର୍ଯ୍ୟ କାରଣରୁ ୧୯୪୯ରେ ତାଙ୍କୁ ଦୋହଲା ସ୍କୁଲ ଛାଡ଼ିବାକୁ ପଡ଼ିଲା । ଦୋହଲା ଛାଡ଼ି ସେ କୋଠପଦା ମ. ଇ. ସ୍କୁଲରେ ଶିକ୍ଷକତା ଗ୍ରହଣ କଲେ ଏବଂ ସେହିଠାରୁ ଆରମ୍ଭ ହେଲା ତାଙ୍କ ସାଧନାମୟ ଜୀବନର ଦ୍ୱିତୀୟ ପର୍ଯ୍ୟାୟ । ଦୋହଲାର ସୀମିତ ପରିସର ମଧ୍ୟରେ ଯେଉଁ ପ୍ରତିଭା ଉନ୍ମେଷିତ ହୋଇଥିଲା, ତାହା ସେହିଠାରୁ ଏକ ବୃହତ୍ତର ପରିପ୍ରେକ୍ଷୀରେ ପରିପୂର୍ଣ୍ଣ ବିକାଶ ନିମିତ୍ତ ସୁଯୋଗ ଲାଭ କଲା ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଏଥିପୂର୍ବରୁ ନିମ୍ନ ମାଧ୍ୟମିକ ବିଦ୍ୟାଳୟ ସମୂହର ଶିକ୍ଷକଗଣ ଅତ୍ୟନ୍ତ ଅବହେଳିତ, ଏକାନ୍ତ ଦୀନହୀନ ଜୀବନ ଯାପନ କରୁଥିଲେ । ସେମାନଙ୍କ ମଧ୍ୟରେ ଏକତା ଓ ସଂହତି ନ ଥିଲା । ସେମାନଙ୍କ ହାରି ଗୁହାରି ଶୁଣିବା ପାଇଁ ଓ କର୍ତ୍ତୃପକ୍ଷଙ୍କଠାରେ ସେମାନଙ୍କର ଦାବୀ ଉପସ୍ଥାପିତ କରିବା ପାଇଁ ରାଜ୍ୟରେ କୌଣସି ଅନୁଷ୍ଠାନ ନ ଥିଲା । ସେମାନେ ଯେ ରାଜ୍ୟର ଶିକ୍ଷା ଅବସ୍ଥାର ଏକ ଅପରିହାର୍ଯ୍ୟ ଓ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ-ଏହା ସ୍ୱୀକୃତ ହେଉ ନ ଥିଲା ।

ବିଦ୍ୟାଳୟର ସ୍ଥାନୀୟ କର୍ତ୍ତୃପକ୍ଷ ଓ ପରିଚାଳନା ସମିତିମାନଙ୍କ ଦ୍ୱାରା ସେମାନେ ନାନା ଭାବରେ ଲାଞ୍ଛିତ, ଅପମାନିତ ଓ ଶୋଷିତ ହେଉଥିଲେ । ସେମାନଙ୍କର ଏ ପ୍ରକାର ଦୁର୍ଦ୍ଦଶା ଓ ଦୁର୍ଭାଗ୍ୟର କେତେକ ଦୃଷ୍ଟାନ୍ତ ବନମାଳୀ ପଣ୍ଡିତଙ୍କ ଦୃଷ୍ଟିକୁ ଆସିଲା । ସେମାନଙ୍କର ଦୟନୀୟ ଅବସ୍ଥା ତାଙ୍କର ହୃଦୟକୁ ଘୋର ଭାବରେ ଆଲୋଡ଼ିତ କଲା । ସେ ଭାବିଲେ, ଶିକ୍ଷକ ସମାଜର ଏହି ଅବହେଳିତ ଶ୍ରେଣୀ ପ୍ରତି ତାଙ୍କର କିଛି କରିବାର ଅଛି । ସେ ଜାଣିଥିଲେ, ଏହା ସହଜସାଧ୍ୟ ବ୍ୟାପାର ନୁହେଁ । ପୁଣି ଏଥିରେ ବହୁ ପ୍ରତିବନ୍ଧକ ରହିଛି । କିନ୍ତୁ ପ୍ରତିବନ୍ଧକ ତ ତାଙ୍କ ଜୀବନର ଚିର ସହଚର । ନିଜର ସମସ୍ତ ଶକ୍ତି ଠୁଳ କରି ବୀର ବିକ୍ରମରେ ପୁଣି ଥରେ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘ ପ୍ରତିଷ୍ଠା କାର୍ଯ୍ୟରେ ନିଜକୁ ଉତ୍ସର୍ଗ କରିଦେଲେ । ତାଙ୍କର ଅସାଧାରଣ ସଂଗଠନ ଶକ୍ତି ଓ ତ୍ୟାଗ ବଳରେ ସେ ଏହାକୁ ଏକ ସକ୍ରିୟ ଓ ଶକ୍ତିଶାଳୀ ଅନୁଷ୍ଠାନ କରି ଗଢ଼ିବାରେ ଅଚିରେ ସମର୍ଥ ହେଲେ ।

ନିମ୍ନ ମାଧ୍ୟମିକ ଶିକ୍ଷକମାନଙ୍କର ଯୁକ୍ତିଯୁକ୍ତ ଦାବୀ ସମୂହ ବିଭାଗୀୟ ଅଧିକାରୀ ଓ କର୍ତ୍ତାମାନଙ୍କର ସମ୍ମୁଖରେ ଉପସ୍ଥାପିତ କରି ସେମାନଙ୍କର ଦୁଃଖ ଦୁର୍ଦ୍ଦଶା ଲାଘବ କରିବାରେ ଏ ଅନୁଷ୍ଠାନ ବହୁ ପରିମାଣରେ ସଫଳ ହୋଇଅଛି । ଗୁରୁ କଲ୍ୟାଣ ଓ ଶିକ୍ଷାର ମାନବୃଦ୍ଧି ନିମିତ୍ତ ଏହି ସଂଘ ଏକ ପତ୍ରିକା ପ୍ରକାଶ କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବହୁ ଫଳପ୍ରଦ ପଦକ୍ଷେପ-ମାନ ଗ୍ରହଣ କରିଅଛି । ଏହା ସମ୍ଭବ ହୋଇ ପାରିଛି କେବଳ ବନମାଳୀ ପଣ୍ଡିତଙ୍କର ଏକନିଷ୍ଠ ସାଧନା, ଜ୍ୱଳନ୍ତ ତ୍ୟାଗ ଓ ଅପୂର୍ବ କର୍ମକୁଶଳତା ହେତୁ । ଓଡ଼ିଶାର ଶିକ୍ଷକ ସଂଘ ଇତିହାସରେ ବନମାଳୀ ପଣ୍ଡିତଙ୍କ ନାମ ଯେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ, ଏଥିରେ ସନ୍ଦେହର ଅବକାଶ ନାହିଁ । ଧନ ସମ୍ପଦ, କୁଳାଭିମାନ ଓ ପ୍ରଭୁତ୍ୱ ପ୍ରତିପତ୍ତି ନ ଥାଇ ଏକ ନିଃସ୍ୱ ଦରିଦ୍ର ବ୍ୟକ୍ତି ନିଜର ସାଧନା, ତ୍ୟାଗ ଓ କର୍ତ୍ତବ୍ୟ ନିଷ୍ଠା ବଳରେ କ'ଣ କରିପାରେ, ତାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ବନମାଳୀ ପଣ୍ଡିତେ । ଉତ୍କଳର ଶିକ୍ଷକ ସମାଜ ତାଙ୍କୁ ଉତ୍କଳ ଶିକ୍ଷକ ମହାସଂଘର ସଭାପତି ରୂପେ ନିର୍ବାଚିତ କରି ତାଙ୍କ ପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିଛନ୍ତି ।

ନିଜର ସାଧନା ବଳରେ ନିମ୍ନ ମାଧ୍ୟମିକ ବିଦ୍ୟାଳୟର ଜଣେ ସାମାନ୍ୟ ସହକାରୀ ଶିକ୍ଷକ ପଦରୁ ଉଠି ସେ ଆଜି ଉତ୍କଳ ଶିକ୍ଷକ

ମହାସାଗର ସଙ୍କୁଚିତ ହୋଇ ପାରିଛନ୍ତି । ଏହା ଏ ଦେଶର ଯୁବକମାନଙ୍କୁ ନୈରାଶ୍ୟର ଘନ ଅନ୍ଧକାର ମଧ୍ୟରେ ଯେ ଆଶାର ଆଲୋକ ଦେଖାଇବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ମୋ ବିଶ୍ବାସରେ ତାଙ୍କର ତ୍ୟାଗ, ସାଧନା ଓ ପ୍ରତିଭା ପ୍ରତି ସତ୍‌କାର୍ଯ୍ୟତ ସମ୍ମାନ ପ୍ରଦର୍ଶନ କରାଯିବ, ଯଦି ତାଙ୍କର ସାଧନାପୀଠ ଦୋହଳ ଉଚ୍ଚ ଇଂରାଜୀ ବିଦ୍ୟାଳୟକୁ 'ବନମାଳୀ ବ୍ରହ୍ମଋଷି ବିଦ୍ୟାପୀଠ' ନାମରେ ନାମିତ କରାଯାଏ ।

ସରକାର ଏ ଦିଗରେ ବିହିତ ପଦକ୍ଷେପ ଗ୍ରହଣ କଲେ ଏହା ହେବ ଯେ ଅଞ୍ଚଳର ଶତ ଶତ ଅଧିବାସୀଙ୍କର ପ୍ରତିଭା ପ୍ରତି ବିନୀତ ଶ୍ରଦ୍ଧାଞ୍ଜଳି ।

ଶ୍ରୀ ସର୍ବେଶ୍ୱର ଦାଶ
ଅବସରପ୍ରାପ୍ତ ଅଧ୍ୟକ୍ଷ
ଅନୁଗୁଳ ଟ୍ରେନିଂ କଲେଜ

# ବନମାଳୀ ବ୍ରହ୍ମଚାରୀ ଜିନ୍ଦାବାଦ

କେମିତି ଏକ ଲଜ୍ଜାବୋଧ ଘେରିଯାଉଛି, କଲମ କାଗଜ ଧରି ଲେଖି ବସିଲା ବେଳକୁ । ଭୟଙ୍କର ଅସ୍ୱସ୍ତି ଲାଗୁଛି । କାରଣ, ମୋତେ ଲାଗୁଛି, ବନମାଳୀ ବାବୁଙ୍କ ବିଷୟରେ ଲେଖିବା ଯାହା, ମୁଁ ମୋର ନିଜର ଅତି ଆପଣାର, ନିଜ ପରିବାରର କୌଣସି ବ୍ୟକ୍ତିଙ୍କ ବିଷୟରେ ଲେଖିବା ସେଇଆ । ନିଜ ବିଷୟରେ ଲେଖିବା ଭଳି...ବନମାଳୀ ବାବୁ ଆଉ ମୁଁ; ସଙ୍ଗଠନ ଓ ଲଢ଼େଇ ଭିତରେ ପରସ୍ପରର ଏତେ ଆପଣାର ହୋଇଯାଇଛୁ, ଏତେ ନିବିଡ଼ ଭାବରେ ଏକାତ୍ମ ହୋଇଯାଇଛୁ ଯେ, ତାଙ୍କୁ ନିଜଠାରୁ ଅଲଗା କରି ଦୂରରୁ ଦେଖିବା ଓ ତାଙ୍କ ବିଷୟରେ ମୋର ମତାମତ ଦେବା, ସତରେ ଅସମ୍ଭବ । ବେଶ ଏକ ପରିସ୍ଥିତି !

କିନ୍ତୁ ଏକଥା ମଧ୍ୟ ସତ ଯେ, ବନମାଳୀ ବ୍ରହ୍ମଚାରୀଙ୍କୁ ଏତେ ଘନିଷ୍ଠ, ଏତେ ନିବିଡ଼ ଭାବରେ ମୁଁ ଓ ମୋଭଳି ଆଉ ଜଣେ ଦୁଇଜଣଙ୍କ ବ୍ୟତୀତ, ତାଙ୍କ ନିଜର ପରିବାରର ଲୋକେ ମଧ୍ୟ ଜାଣି ନ ଥିବେ ।

ଏଣୁ ଅଗତ୍ୟା ମୋତେ ଏ ଦୁର୍ବହ ଭାର ବହନ କରିବାକୁ ହିଁ ପଡ଼ିବ ।

ସ୍ନେହୀ ବ୍ରହ୍ମଚାରୀଙ୍କୁ ଓଡ଼ିଶାର ଅନେକେ ଦେଖିଥିବେ—ଜାଣିଥିବେ । କିନ୍ତୁ ଶିଶୁ ଭଳି ସରଳ, ପୁଣି ସିଂହ ଭଳି ନିରଙ୍କୁଶ ବ୍ରହ୍ମଚାରୀଙ୍କୁ ଖୁବ୍ କମ୍ ଲୋକ ଜାଣିଥିବେ । ବନମାଳୀ ବାବୁ ସତରେ ତାଙ୍କର ଏ ଅଠଷଠୀ ବର୍ଷ ବୟସ ପୂର୍ତ୍ତି ସମୟରେ, ଶିଶୁର ଅନାବିଳ ସରଳତା ଧରି, ସମସ୍ତ ଲୌକିକ ସଙ୍କୋଚ ଓ ଲଜ୍ଜାର ଉପରେ ରହି, ବାଟରେ ଘାଟରେ ଯେଉଁଠି ହେଲେ ପ୍ରଶ୍ନ କରି ପାରନ୍ତି, "ପ୍ରଦତ୍ତ ରାଶିକୁ ଦେଡ଼ଗୁଣ ବଢ଼ାଇ ଅଙ୍କ କର ବୋଲି ଯେଉଁ ପ୍ରଶ୍ନ ପଡ଼ିଥାଏ, ତାହା କିପରି ହେବ ? ଅବା, 'ବର୍ମାସେଲ୍'ର 'ସେଲ୍' ଶବ୍ଦର ଅର୍ଥ କଣ ? ପୁଣି କେତେବେଳେ ପ୍ରମିନେଣ୍ଟ ଓ ଏମିନେଣ୍ଟ

ଶଢ ଭିତରେ ବ୍ୟବହାରଗତ ପାର୍ଥକ୍ୟ କ'ଣ ?" ଇତ୍ୟାଦି । ପୁଣି ସେଇ ବନମାଳୀ ବାବୁ ଦୁର୍ନୀତିଗ୍ରସ୍ତ ଅଫିସରଙ୍କ ଉପରେ ତାଙ୍କର ଅଫିସରେ ଚଡ଼ଉକରି, ତାଙ୍କୁ ଛୁରି ଭୁଷିବାକୁ ଲୋକ ପଠାଇବେ କମ୍ବା ସେ ଅଫିସରକୁ ଯିଏ ଥାପ୍ପୋଡ଼ ମାରିବ, ତାକୁ ଦୁଇଶହ ଟଙ୍କା ପୁରସ୍କାର ଦେବେ ବୋଲି ଖୋଲଖୋଲ ଭାବରେ ଓ ସାଧାରଣ ସଭାରେ ଭାଷଣ ଦେଇପାରନ୍ତି । ଏ ବ୍ରହ୍ମଗୃଶ ନରଙ୍କୁଶ ଓ ପ୍ରଚଣ୍ଡ...... ।

ସାଙ୍ଗଠନିକ କାମରେ, ସଭା-ସମିତିରେ ଯୋଗଦେବା ପାଇଁ, ଆମେ ଓଡ଼ିଶାର କନ୍ଦବକନ୍ଦ, କୋଣ ଅନୁକୋଣ, ଯେପରି ପାଦଆରେ କୁଣ୍ଡାଇଲୁ ଭଳି କୁଣ୍ଡାଉଛୁ, ମୋର ଧାରଣା କୌଣସି ରାଜନୈତିକ ଦଳ ବୋଧହୁଏ ଏତେ ସଭା ସମିତିକୁ ଯାଉ ନ ଥିବେ । ରାତି ରାତି ଧରି ବନିଦ୍ର ରହି, ଝରାତରାରେ ଅଖାଦ୍ୟ ଖାଇ ବା ଉପାସରେ ରହି ବୁଲିବୁଲି, ଆମ୍ଭେମାନେ ଯେଉଁମାନେ ତାଙ୍କଠାରୁ କନିଷ୍ଠ ଓ ଯୁବକ-ବିବେକାନନ୍ଦ, କୈଳାସବାବୁ, ଆଦି ବରକ୍ତ ହେଉଛୁ, ଅତିଷ୍ଠ ହୋଇଛୁ ଏବଂ ବେଳେବେଳେ ଶ୍ରାନ୍ତ-କ୍ଲାନ୍ତ ହୋଇ ଥକ ଯାଉଛୁ । ମୋ ଜାଣିବାରେ ବନମାଳୀ ବାବୁଙ୍କୁ କେବେ ଥକି ଯିବାର ଦେଖିନାହିଁ—ରହିଯିବାର ଦେଖିନାହିଁ । ଉଦ୍ଦାମ ଯୁବ ସୁଲଭ ଚଞ୍ଚଳତାରେ, ଆମ ସମସ୍ତଙ୍କୁ ପରାସ୍ତ କରି ସେ ଆଗେଇ ଯାଆନ୍ତି ! ଅନେକ ସ୍ଥଳରେ ଭାଷଣ ପ୍ରସଙ୍ଗରେ, ବିବେକାନନ୍ଦ ତାଙ୍କ ବିଷୟରେ କହନ୍ତି,— "ଆପଣମାନଙ୍କ ଆଗରେ ଇଏ ଅଠସ୍ତରୀ ବର୍ଷର ତରୁଣ ଯୁବକ...... ।" ଆମ ଭିତରେ କଥା ପଡ଼େ ଅନେକ ସମୟରେ ଏ ମେଧ୍ ରାତ, ଅଖାଦ୍ୟ ଖାଇ, ବନମାଳୀବାବୁ ପରିବାରର ସ୍ୱାଚ୍ଛନ୍ଦ୍ୟ ଭିତରେ ରହିଥିବା ଆମମାନଙ୍କୁ ପରାଜିତ କରିବାକୁ ଏ ଉଚ୍ଛଳ ପ୍ରାଣୋଚ୍ଛ୍ୱାସ ପାଉଛନ୍ତି କେଉଁଠୁ ? ଥଳକୂଳ ପାଉ ନାହିଁ ।

ଆଦୌ ସଙ୍କୋଚ ନ କରି କୌଣସି ବିଷୟରେ ନିଜର ଅଜ୍ଞତା ପ୍ରକାଶ ଓ ସେ ବିଷୟରେ ଜାଣିବାର ଉଦଗ୍ର ଆବେଗ ବନମାଳୀ ବାବୁଙ୍କ ବ୍ୟତୀତ ଦ୍ୱିତୀୟ କୌଣସି ବ୍ୟକ୍ତିଙ୍କୁ ମୁଁ ଜାଣିନାହିଁ—ଲକ୍ଷ୍ମୀନାରାୟଣ ସାହୁଙ୍କ ପରେ । ଆମେ ସମସ୍ତେ ଗୋଟିଏ ସୀମିତ ଗଣ୍ଡି ଭିତରେ ଆବଦ୍ଧ ରହି, ନିଜକୁ ନିଜେ ମୁଦ୍ରି ଦେଉଛୁ । ବନମାଳୀ ବାବୁ ଏ ବୟସରେ ବି ନିଜକୁ ଖୋଲି ରଖିଛନ୍ତି । ସେମିତି କୌଣସି ଦ୍ୱିଧା ନ କରି, ଆଜି କାହାର

ଭୁଲ୍ ହୋଇଥିଲେ ସଂଶୋଧନ କରିଦେବା, ସୁଧାରି ଦେବାର ପ୍ରୟାସ ମଧ୍ୟ ତାଙ୍କ ଛଡ଼ା ଆଜ କାହାଠାରେ ଦେଖିନାହିଁ । ମୋତେ ବନମାଳୀବାବୁ ସ୍ନେହ କରନ୍ତି, ଶ୍ରଦ୍ଧା କରନ୍ତି, ସମ୍ମାନ ମଧ୍ୟ କରନ୍ତି । ଏକଥା ଆମକୁ ଜାଣିଥିବା ଯେ କୌଣସି ଲୋକ ଜାଣେ । ଏସବୁ ସତ୍ତ୍ୱେ, ମୋର ବର୍ଣ୍ଣାଶୁଦ୍ଧି ସଂଶୋଧନ କରି, ବନମାଳୀ ବାବୁ ଅନେକ ସମୟରେ ମୋତେ ଖୋଲା-ଖୋଲି ଭାବରେ କହିବା ଆମ ସଙ୍ଗଠନର ସମସ୍ତେ ଜାଣନ୍ତି । ମୁଁ ଓଡ଼ିଆ ବିଭାଗର ଅଧ୍ୟାପକ ସାହିତ୍ୟିକ, ହେଲେ ମଧ୍ୟ, ଏଇ ସେଦିନ ବନମାଳୀ ବାବୁ, ସଭିଁଙ୍କ ଆଗରେ ମୋତେ କହିଲେ, 'ଶିକ୍ଷୟିତ୍ରୀ' ହେବ ନାହିଁ— ହେବ "ଶିକ୍ଷୟିତ୍ରୀ" । ସାଧାରଣ ଭାବରେ ଆମେ ଚଳଣୀରେ 'ଶିକ୍ଷୟିତ୍ରୀ' ବୋଲି ଲେଖୁଁ । ଏଇ ତ୍ରୁଟି ପାଇଁ, ମୁଁ ଏ ଦୁଇଟି ଯାକ ଛାଡ଼ି ଏବେ 'ଶିକ୍ଷିକା' ବୋଲି ଲେଖୁଛି ।

ମୁଁ ସତରେ ବେଳେ ବେଳେ ଭାବେ, ଲୋକଟା ଭିତରେ ଏତେ ବେଶୀ 'ଯୌବନ', ଏତେ ବେଶୀ 'ଚଞ୍ଚଳତା' ରହିଲା କେମିତି ? ସବୁବେଳେ ଆମେ କୁହାକୁହି ହେଉ, ବନମାଳୀ ବାବୁଙ୍କ ବୟସରେ ପହଞ୍ଚିଲେ, ଆମେ ଏତକ କର୍ମଠ ରହିପାରିବା ତ ?

କେଉଁ ଦୂର ଦୂରାନ୍ତରୁ କୋରାପୁଟ କ ବାଇରଙ୍ଗପୁରରୁ ରାତିରେ ଫେରିଲାବେଳେ, ଆମେ ଧୁମାଇ ପଡ଼ିଲେ, ବନମାଳୀ ବାବୁ ହସ ଗପ, ମଜା ଗପ ଆରମ୍ଭ କରନ୍ତି । ସେତେବେଳେ ଆନନ୍ଦ ତାଙ୍କର ବନ୍ଧବାଡ଼ ମାନେ ନାହିଁ । ହସି ହସି ବେଦମ୍ ହେଉ ଆମେ । ଆମେ କହୁ—ସେ ଜିଦ୍ ଧରନ୍ତି । ହସି ହସି କୋଡରା ହୁଅନ୍ତି ।

ବେଳେ ବେଳେ ବନମାଳୀ ବାବୁ ଏତେ ସ୍ପଷ୍ଟବାଦୀ ଓ ଅପ୍ରିୟ ସତ୍ୟବାଦୀ ଯେ ସଂଗଠନ ଭିତରେ ଆମେ ହଇରାଣରେ ପଡ଼ୁ । କୌଣସି ଗୋଟିଏ ବିଷୟରେ ବା ବ୍ୟକ୍ତି ସମ୍ପର୍କରେ, ଅତି ଗୋପନୀୟ ବିଷୟ ଜାଣିଥିଲେ, ଆମେ ତାଙ୍କୁ ଭରସି କହୁନା—କାରଣ, ବନମାଳୀ ବାବୁ ଆଦୌ ନ ଲୁଚାଇ, ସେକଥା ପରିଷ୍କାର ଦେବେ ଓ ଅଡୁଆରେ ପକାଇବେ । କୌଣସି ଜଣେ ଶିକ୍ଷକ ବହିଷ୍କୃତ ହେବା ପରେ, ତାଙ୍କ ସଂପର୍କରେ ଅନୁସନ୍ଧାନ ଓ ତାଙ୍କ ସଂପର୍କରେ ଦାବୀ ଉପାସ୍ଥାପିତ କଲାବେଳେ, ଆଉ କେତେ ଜଣ ଶିକ୍ଷୟିତ୍ରୀ ଆମକୁ ତାଙ୍କ ଚରିତ୍ର ଦୋଷ ସମ୍ପର୍କରେ ଜଣାଇଲେ

ଓ ମୁଁ କେଇଜଣ ଲୋକଙ୍କଠାରୁ ଶୁଣି ବନମାଳୀ ବାବୁଙ୍କ ଆଗରେ କହୁଥିଲି । ସେ ଶିକ୍ଷକଙ୍କୁ ଦେଖିବା ମାତ୍ରେ, ଆଗପଛ ନ ବିଚାରି ଆମ ସମସ୍ତଙ୍କୁ ପ୍ରମ୍ଭିତ କରି ବନମାଳୀ ବାବୁ ସ୍ପଷ୍ଟ ଭାବରେ ଦେଉଥିଲେ—"ତମର ବୟସ ଅଳ୍ପ । ସତ ସତ କହିଲ, ତମର ଚରିତ୍ର ଦୋଷ ଅଛି କି ନାହିଁ ?" କାହାକୁ ପଚାରନ୍ତି—ସତ କହିଲ, ତମେ ଟଙ୍କା ତୋଷରପାତ କରିଛ କି ନାହିଁ ?

ବହୁ ବର୍ଷ ତଳେ ତାଙ୍କ ସମ୍ପର୍କରେ ଘନିଷ୍ଠ ଭାବରେ ନ ଆସିଥିଲି ବେଳେ, ଗୁଡ଼ିଏ ଇତର ଲୋକଙ୍କ ଯୋଗୁ ମୋର ଧାରଣା ଥିଲା ବନମାଳୀ ବାବୁ ପ୍ରଣ୍ଣ ବ୍ୟବସାୟୀ ଓ ଶିକ୍ଷକ ସଙ୍ଗଠନ ତାଙ୍କର ଏକ ଅସ୍ତ୍ର—ବ୍ୟବସାୟ ପରିଚାଳନା ପାଇଁ । ଯେତିକ ଅଭିଜ୍ଞତାରେ ଆଣୁଛି, ମୋର ଧାରଣା କେବଳ ବଦଳି ଯାଇନାହିଁ—ମୁଁ ଯେତିକ ଆଗ୍ରହ ଓ ବିସ୍ମୟ ନେଇ ତାଙ୍କୁ ଦେଖିଛି···ଦେଖୁଛି । ତାଙ୍କର କାର୍ପଣ୍ୟ, କୁବେରର କାର୍ପଣ୍ୟ—ଆବଶ୍ୟକ ପଡ଼ିଲେ ସମସ୍ତ ଉଜାଡ଼ି ଦେଇ ଅଜାଡ଼ି ଦେବାକୁ ତିଆରି ସେ—ମାତ୍ର ବିଳାସିତା କରିବାକୁ ଗୋଟିଏ ପଇସା ମଧ୍ୟ ନାହିଁ ।

ଓଡ଼ିଶାରେ ଅନେକ ସଙ୍ଗଠନ ସହିତ ସମ୍ପୃକ୍ତ ମୁଁ । କିନ୍ତୁ ବନମାଳୀ ବ୍ରହ୍ମଚାରୀଙ୍କ ଭଳି କୌଣସି ଗୋଟିଏ ହେଲେ ବ୍ୟକ୍ତି ମୁଁ ଦେଖିନାହିଁ, ଯିଏ ସଙ୍ଗଠନ ସହିତ ସମ୍ପୂର୍ଣ୍ଣ ଏକାତ୍ମ ! କେବଳ ଏକାତ୍ମ ନୁହେଁ; ସଙ୍ଗଠନ ସହିତ ବ୍ରହ୍ମଚାରୀ କୌଣସି ଏକ ବିନ୍ଦୁରେ ଏକାକାର ହୋଇ ଯାଇଛନ୍ତି ! ସଙ୍ଗଠନ ବ୍ୟତୀତ ବନମାଳୀ ବାବୁଙ୍କ ଅସ୍ତିତ୍ୱ ନାହିଁ ! ବନମାଳୀବାବୁଙ୍କ ବ୍ୟତୀତ ସଙ୍ଗଠନର ମଧ୍ୟ ଅସ୍ତିତ୍ୱ ନାହିଁ । ସେ ତାଙ୍କର ହାତଗଢ଼ା ଶିକ୍ଷକ-ସଦନରେ ରୁହନ୍ତି । ସେଇ ମେସ୍‌ରେ ଯାହା ମିଳିଲା ଖାଆନ୍ତି । ସଙ୍ଗଠନ ବ୍ୟତୀତ ତାଙ୍କର ଦ୍ୱିତୀୟ କୌଣସି କାମ ନାହିଁ । ବ୍ୟକ୍ତିଗତ ବୋଲି କୌଣସି ଜୀବନ ବନମାଳୀ ବ୍ରହ୍ମଚାରୀଙ୍କର ନାହିଁ । ନିଜ ପାଇଁ ସତେ ଯେମିତି ସେ ବଞ୍ଚି ନାହାନ୍ତି—ବଞ୍ଚିଛନ୍ତି ଶିକ୍ଷକ ସଙ୍ଗଠନ ପାଇଁ ! ଏଇ ଜୀବନ ଭିତରେ ବନମାଳୀ ବାବୁ ନିଜେ ଏକ ଅନୁଷ୍ଠାନରେ ପରିଣତ ହୋଇ-ଯାଇଛନ୍ତି । ଏକ ଚଳମାନ ଜୀବନ୍ତ ଅନୁଷ୍ଠାନ !

ହେଙ୍କାନାଳ କଟକରେ ଶିକ୍ଷକମାନଙ୍କର ସଂଗ୍ରାମୀ ଶୋଭାଯାତ୍ରା ଚାଲିଥାଏ । ପୁଲିସମାନେ ଆଜି କେଇଜଣ ଶିକ୍ଷକ ବନ୍ଧୁ ବିପୁଳ ଉନ୍ମାଦନାରେ

ସ୍ଲୋଗାନ ଦେଉଥାନ୍ତି, "ଲଢ଼େଇ···ଲଢ଼େଇ···ଲଢ଼େଇ ଚାହୁଁ··· । ଲଢ଼େଇ କରି ବଞ୍ଚିବା ଚାହୁଁ ।" ଆଉ "ଛଟେଇ ହେଲେ ଲଢ଼େଇ ହେବ— ଲଢ଼େଇ ହେବ···ନିଆଁ ଜଳିବ ।"

ଆଗରେ ୭୮ ବର୍ଷର ତରୁଣ ବନମାଳୀ ବାବୁ ଛତାଖଣ୍ଡେ ହାତରେ ଝୁଲାଇ ଝୁଲାଇ ଚାଲୁଥାନ୍ତି, ସମାନ ଉନ୍ମାଦନାର ସହିତ ତାଳ ପକାଇ । କହୁଥାନ୍ତି ମୋତେ, ସେଇ ସ୍ଲୋଗାନଟା ଦେବାକୁ କୁହ, 'ଲଢ଼େଇ ହେବ – ନିଆଁ ଜଳିବ'— । "ଘରରେ ନିଆଁ ଜାଳି ନ ଦେଲେ, କିଛି ହେବ ନାହିଁ" ।

କେବେ ବନମାଳୀ ବାବୁ 'ନିର୍ଭୀକ ଶିକ୍ଷକ' ଥିଲେ । ଅନ୍ୟାୟର ପ୍ରତିବାଦ କରୁଥିଲେ । ପ୍ରତିରୋଧ ପାଇଁ ହୁଏତ ସାହସ କୁଳାଉ ନ ଥିଲା ଶିକ୍ଷକ ସମାଜର । ଅଣସ୍ତରୀ ମସିହାଠାରୁ ବନମାଳୀବାବୁଙ୍କ ପାଇଁ 'ସଂଗ୍ରାମ' ଦାବୀ ପୂରଣ ସକାଶେ ଏକ ଅସ୍ତ୍ର କେବଳ ନୁହେଁ ସଂଗ୍ରାମ···ଅବିଚଳିତ, ଧାରାବାହିକ, ଲଗାତର ସଂଗ୍ରାମ ତାଙ୍କ ଜୀବନର ମାର୍ଗ । ଜୀବନର ବ୍ରତ । ଲଢ଼େଇ ବିନା ଜୀବନ ନାହିଁ, ଏକଥା ସେ ନିଜ ଅଭିଜ୍ଞତାରୁ ବୁଝିଛନ୍ତି ।

ସେଥିପାଇଁ ଆମେ 'ଧାରଣା' ପାଇଁ ପ୍ରସ୍ତାବ ଦେଲେ, ସେ 'ଘେରାଉ' ପାଇଁ ଡାକରା ଦିଅନ୍ତି । ଆମେ 'ଘେରାଉ ଯାଏ' ଗଲେ ସେ 'ଜେଲଭରୋ' ବୋଲି ଆଉ ପାଦେ ଆଗେଇ ଯାଆନ୍ତି ।

ଜୀବନ ସାୟାହ୍ନରେ, କୌଣସି ଉପହାର-ଉପଢୌକନ କିମ୍ବା ପୁରସ୍କାର, ସାମାଜିକ ସମ୍ମାନ ବା କୌଣସି କଥାକୁ ଅପେକ୍ଷା ନ କରି, ଅବିଚଳିତ ଭାବରେ ଅନ୍ୟ ପାଇଁ ନିଜକୁ ଉଜାଡ଼ି କରି ନିଃଶେଷ କରିଦେବା କେବଳ ବନମାଳୀ ବ୍ରହ୍ମଚାରୀଙ୍କ ଦ୍ୱାରା ହିଁ ସମ୍ଭବ । ବିଶେଷ କରି ବିଭିନ୍ନ ଦ୍ୱନ୍ଦରେ ଆଚ୍ଛନ୍ନ ଏ ବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ।

ମୋ ଜାଣତରେ ବନମାଳୀ ବାବୁ ଭଗବାନଙ୍କୁ ଡାକିବା, ପୂଜା କରିବା, ମନ୍ଦିରକୁ ଯିବା ମୁଁ କେବେ ଦେଖିନାହିଁ । ସେ ସ୍ପଷ୍ଟ ମନା କରି ଦିଅନ୍ତି ଏଥିପାଇଁ । ଦୃଢ଼ ଆତ୍ମପ୍ରତ୍ୟୟ ସହିତ କର୍ମବାଦ ହିଁ ତାଙ୍କ ଜୀବନର ବ୍ରତ, ଆଦର୍ଶ । ନିଜ କର୍ମ ହିଁ ଭଗବାନ । ସେଇଥି ପାଇଁ ସେ ଆଜୀବନ କର୍ମ କରିଯିବାର ସଂକଳ୍ପ ନେଇ ହିଁ ବଞ୍ଚିଛନ୍ତି ।

ତାଙ୍କର ସରଳତା, ନିଷ୍କପଟତା, ସାଧୁତା, ସତ୍ୟବାଦିତା ଓ ମିତବାଦିତା ସମ୍ପର୍କରେ ବିନେଇ କହିବାର ପ୍ରୟୋଜନ ନାହିଁ । କାରଣ ସେଥିପାଇଁ କାହାର ସାର୍ଟିଫିକେଟ ତାଙ୍କର ଲୋଡ଼ା ନାହିଁ, କି ମୋର ମଧ୍ୟ ସେଥିପାଇଁ ଆସ୍ପର୍ଦ୍ଧା ନାହିଁ ।

ଓଡ଼ିଶାର ସଦ୍ୟ-ଜାଗ୍ରତ ସଂଗ୍ରାମୀ ଶିକ୍ଷକ-ସମାଜର ଚଳମାନ ଅନୁଷ୍ଠାନ, ମାନବିକତା ଓ ସ୍ନେହ-ଶ୍ରଦ୍ଧାର ଅକୃତ୍ରିମ ପ୍ରକାଶ, ନିରାଡ଼ମ୍ବର ଜୀବନ ଓ ନିଷ୍କଳୁଷ ପ୍ରାଣର ଅଧିକାରୀ, ବନମାଳୀ ବ୍ରହ୍ମଚାରୀ ନିଜେ ନିଜର କେବଳ ତୁଳନା ନୁହନ୍ତି ନିଜେ ହିଁ ନିଜର ପରିଚୟ ।

ତାଙ୍କୁ ସବୁଠୁ ବେଶୀ ଜାଣିଲେ ବି, ତାଙ୍କ ସମ୍ପର୍କରେ ଲେଖିବା ସମ୍ଭବ ନୁହେଁ ।

ତାଙ୍କର ଅଶୀତିତମ ବର୍ଷପୂର୍ତ୍ତି ଉପଲକ୍ଷେ ମୋର ଆନ୍ତରିକ ଅଭିନନ୍ଦନ ଜଣାଉଛି ଓ ମୋର ଅନ୍ତରର ଗଭୀରତମ ପ୍ରଦେଶରୁ ଶ୍ରଦ୍ଧା ଓ ଭକ୍ତି ଜଣାଇ କାମନା କରୁଛି—'ଜୀବିତୁଂ ଶରଦ ଶତମ୍,···ଯୁଗ ଯୁଗ ଜୀଓ ବନମାଳୀ ବ୍ରହ୍ମଚାରୀ'···ବନମାଳୀ ବ୍ରହ୍ମଚାରୀ ଜିନ୍ଦାବାଦ୍ ।

**ଶ୍ରୀ ଅବନୀ କୁମାର ବରାଳ**
**ଅଧ୍ୟାପକ**
**ପ୍ରାଣନାଥ ମହାବିଦ୍ୟାଳୟ**
**ଖୋର୍ଦ୍ଧା, ପୁରୀ**

# ଓଡ଼ିଶାର ଶିକ୍ଷକ ଆନ୍ଦୋଳନର
# ମହାରଥୀ
# ଶ୍ରୀଯୁକ୍ତ ବ୍ରହ୍ମଚାରୀ

୧୯୭୫ ମସିହା ମଇ ମାସ । ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଂଘର ବାର୍ଷିକ ସମ୍ମିଳନୀ ଅନୁଷ୍ଠିତ ହେଉଥାଏ ଯାଜପୁର ସହରରେ ।

ମଇ ମାସର ଉତ୍ତପ୍ତ ରୌଦ୍ରାନ୍ତ, ସେ ଏକ ମଞ୍ଜୁଳ ସାୟାହ୍ନ । ଆକାଶରେ ମେଘ ମହ୍ଲାର । ଧରଣୀ ବୁକୁରେ ମୌସୁମୀ ବର୍ଷା ଆଗମନୀର ସୁସ୍ପଷ୍ଟ ସଙ୍କେତ ।

ମୁଁ ସମ୍ମିଳନୀ ମଣ୍ଡପ ମଧ୍ୟକୁ ପ୍ରବେଶ କରି ଦେଖିଲି ମଞ୍ଚ ଉପରେ ସମାସୀନ ସମ୍ମାନୀୟ ଅତିଥିବୃନ୍ଦ । ସ୍ୱାଗତ ଅଭିଭାଷଣ ପାଠ କରୁଛନ୍ତି ଜଣେ ବୟସ୍କ ବ୍ୟକ୍ତି । ଉଦାତ୍ତ କଣ୍ଠ, ଭାଷାରେ ଅସମ୍ଭବ ପ୍ରକାର ବାଗ୍ମିତା, ମୁହଁରେ ଅସ୍ୱାଭାବିକ ଦୃଢ଼ତା, ଆଖି ଦୁଇଟିରେ ବର୍ତ୍ତମାନର ଅନ୍ଧକାରମୟ ଗହ୍ୱରରୁ ଅରୁଣିମ ଭବିଷ୍ୟତକୁ ଉଦ୍ଧାର କରିବାର ନିର୍ଭୀକ ପ୍ରତିଜ୍ଞା ।

ମୁଁ ସ୍ତମ୍ଭୀଭୂତ ହେଲି । ବିମୁଗ୍ଧ ମନରେ ଭାଷଣଟି ସମ୍ପୂର୍ଣ୍ଣ ଶୁଣି ସାରିବା ପରେ ପ୍ରକୃତିସ୍ଥ ହେଲି । ଜଣେ ଶିକ୍ଷକ ବନ୍ଧୁଙ୍କୁ ପଚାରି ବୁଝିଲି, ସେ ହେଉଛନ୍ତି ଶ୍ରୀ ବନମାଳୀ ବ୍ରହ୍ମଚାରୀ ।

"ଶିକ୍ଷକ ଦର୍ପଣ"ରୁ ଓ ବିଭିନ୍ନ ପତ୍ରପତ୍ରିକା ଓ ସମ୍ବାଦପତ୍ର-ମାନଙ୍କରୁ ଶ୍ରୀଯୁକ୍ତ ବ୍ରହ୍ମଚାରୀଙ୍କ ଲେଖାମାନ ପଢ଼ି, ତାଙ୍କର ଆଗ୍ନେୟ ଆହ୍ୱାନ ଶୁଣି ମୋର ତରୁଣ ପ୍ରାଣ ଭାବବିଭୋର ହୋଇ ଉଠିଥିଲା । ମୁଁ ସଂଘ ତଥା ଶ୍ରୀଯୁକ୍ତ ବ୍ରହ୍ମଚାରୀ—ଉଭୟଙ୍କ ଆଡ଼କୁ ଆକୃଷ୍ଟ ହୋଇଥିଲି । ଚିଠିପତ୍ର ଆଦାନ ପ୍ରଦାନ ମାଧ୍ୟମରେ ମୁଁ ବ୍ରହ୍ମଚାରୀଙ୍କ ଦରଦୀ ଓ ସ୍ନେହୀ ହୃଦୟର ସନ୍ଧାନ ମଧ୍ୟ ପାଇଥିଲି । ମୋଟ ଉପରେ ମୁଁ ବ୍ରହ୍ମଚାରୀଙ୍କୁ ଜାଣିଥିଲି,

ଚହ୍ନିଥିଲି—ତାଙ୍କ ଲେଖା ଭିତରୁ । ତାଙ୍କ ସାହିତ୍ୟିକ କୃତିଭିତରୁ ସେଦିନ କିନ୍ତୁ ସ୍ୱଦେହରେ ଦେଖି ଭାରି ଖୁସି ଲାଗିଲା । ମନରେ ଆବେଗ ଆନନ୍ଦର ଢେଉ ଖେଳିଗଲା ।

ସେଇଠାରୁ ବ୍ରହ୍ମଷ୍ଟିଙ୍କୁ ଚହ୍ନିଲି । ସେହି ସମ୍ମିଳନୀରେ ମୁଁ ନିଖିଳ ଉତ୍କଳ ନିମ୍ନ ମାଧ୍ୟମିକ ଶିକ୍ଷକ ସଙ୍ଘର କାର୍ଯ୍ୟକାରୀ ସମିତିର ସଭ୍ୟ ରୂପେ ନିର୍ବାଚିତ ହେଲି । ଫଳରେ ବ୍ରହ୍ମଷ୍ଟିଙ୍କ ଆହୁରି ଘନିଷ୍ଠ ସମ୍ପର୍କରେ ଆସିଲି—ତାଙ୍କୁ ଅଧ୍ୟୟନ କରିବାର, ଆହୁରି ଅଧିକ ଚହ୍ନିବାର ଓ ଜାଣିବାର ସୁଯୋଗ ପାଇଲି । ବର୍ଷଟିଏ କାର୍ଯ୍ୟକାରୀ ସମିତିର ସଭ୍ୟ ରୂପେ ମୁଁ ଦେଖିଛି, ଅନୁଭବ କରିଛି, ଶିକ୍ଷକମାନଙ୍କ ପ୍ରତି ବ୍ରହ୍ମଷ୍ଟିଙ୍କର କି ଅପୂରନ୍ତ ସ୍ନେହ ! କି ଅସୀମ ଦରଦ ! ଘରୋଇ ବିଦ୍ୟାଳୟର ଦୁଃସ୍ଥ, ବିପନ୍ନ ଶିକ୍ଷକମାନଙ୍କୁ ସାହାଯ୍ୟ କରିବା ପାଇଁ ତାଙ୍କ ପ୍ରାଣ ଭିତରେ ପୂରି ରହିଥାଏ ଅଶେଷ ଆବେଗ ଆଉ ଉତ୍କଣ୍ଠା । ଶିକ୍ଷକ ସମାଜର ଦୁଃଖ ବିମୋଚନ ପାଇଁ ତାଙ୍କର କି ତ୍ୟାଗ, କି ନିଷ୍ଠା, କି ଅକ୍ଳାନ୍ତ ସାଧନା !

ମୁଁ ୧୯୭୭ ମସିହାରେ ଉତ୍କଳମଣି ମଧ୍ୟ ବିଦ୍ୟାଳୟରୁ ବହିଷ୍କୃତ ହେବା ପରେ ଶ୍ରୀଯୁକ୍ତ ବ୍ରହ୍ମଷ୍ଟିଙ୍କର ଏହି ମହାନ, ଉଦାର ଗୁଣ ସମୂହର ପରିଚୟ ପାଇବାକୁ ଅଧିକ ପରିମାଣରେ ସମର୍ଥ ହେଲି । ମୁଁ ଯେବେ ଯାଇଛି, ସେ ଦ୍ୱିଧାହୀନ ଚିତ୍ତରେ ସାହାଯ୍ୟ କରିଛନ୍ତି—ଆଶ୍ୱାସନା ଦେଇଛନ୍ତି ମୋର ଅନନ୍ୟସାଧାରଣ ଦୟନୀୟ, ଦୁର୍ଗତ ଅବସ୍ଥାକୁ, ସେ ନିଜର ପରି ଅନୁଭବ କରିଛନ୍ତି ।

ଦୀର୍ଘ ତିନି ବର୍ଷ କାଳ ମୋ ଦୁଃଖମୟ ଜୀବନର ଜଞ୍ଜାଳ ଭିତରେ ମୁଁ ପେଷି ହୋଇଗଲି । ପ୍ରତିଟି ମୁହୂର୍ତ୍ତ ଜୀବନ ସଂଗ୍ରାମରେ ବ୍ୟସ୍ତ ରହି ମୁଁ ଆଉ ସଙ୍ଘ ଓ ଶ୍ରୀଯୁକ୍ତ ବ୍ରହ୍ମଷ୍ଟିଙ୍କ ସହ ସମ୍ପର୍କ ରକ୍ଷା କରି ପାରିଲିନି ।

୧୯୭୯ର ଐତିହାସିକ ଶିକ୍ଷକ ଆନ୍ଦୋଳନ ପାଇଁ ମିଳିତ ଶିକ୍ଷକ କ୍ରିୟାନୁଷ୍ଠାନ କମିଟି ଗଠିତ ହେଲା । ମୁଁ ଓଡ଼ିଶା ମାଧ୍ୟମିକ ଶିକ୍ଷକ ସଙ୍ଘ କାର୍ଯ୍ୟକାରୀ ସମିତି ସଭ୍ୟ ରୂପେ କ୍ରିୟାନୁଷ୍ଠାନ କମିଟିରେ ସଭ୍ୟ ହେଲି । ପୁଣି ଥରେ ଶ୍ରୀଯୁକ୍ତ ବ୍ରହ୍ମଷ୍ଟିଙ୍କ ଉତ୍ତୁଙ୍ଗ ବ୍ୟକ୍ତିତ୍ୱର ନିବିଡ଼ ସାନ୍ନିଧ୍ୟଲାଭ କରିବାର ସୁଯୋଗ ଆସିଲା ।

ଆନ୍ଦୋଳନର ପରିପ୍ରେକ୍ଷୀରେ ମୁଁ ଦେଖିଛି—ଶ୍ରୀ ବ୍ରହ୍ମବୃକ୍ଷଙ୍କ ମନର ପ୍ରତିଜ୍ଞା, ପ୍ରାଣର ଉନ୍ମାଦନା, ଚିନ୍ତାର ଦୃଢ଼ତା, ସବୁ ଠିକ୍ ପୂର୍ବ ପରି ଅତୁଟ ରହିଛି । ବୟସର ବୃଦ୍ଧି ତା' ଉପରେ କୌଣସି ପ୍ରଭାବ ବିସ୍ତାର କରିପାରିନି ।

ସେ ବୃଦ୍ଧ ବୟସରେ କୋରାପୁଟର କନ୍ଧମାଳଠାରୁ ବାଲେଶ୍ୱରର ଗାଇବଣିଆ ପର୍ଯ୍ୟନ୍ତ ଦିନ ରାତି ବୁଲି ସଭାରେ ଭାଷଣ ଦିଅନ୍ତି । ଜଣେ ତରୁଣର ଉନ୍ମାଦନା ନେଇ ଯେ ଶିକ୍ଷକ ସମାଜ ଭିତରେ ଭରି ଦିଅନ୍ତି ଅସୀମ ଉତ୍ସାହ ଓ ପ୍ରେରଣା ।

୧୯୭୯ର ଆନ୍ଦୋଳନ ଚାଲିଥାଏ । ପର୍ଶ ଦିନ ୪ର ଧାରଣା । କାର୍ଯ୍ୟ ବନ୍ଦ ଆନ୍ଦୋଳନ ଚାଲିବା ପରେ ମଧ୍ୟ ସରକାରଙ୍କର କୁମ୍ଭକର୍ଣ୍ଣ ନିଦ୍ରାର ଅବସାନ ହେଉ ନ ଥାଏ । ତେଣୁ ନିଷ୍ପତ୍ତି ହେଲା ଆନ୍ଦୋଳନର ଆଉ ଏକ ନୂତନ ପର୍ଯ୍ୟାୟ ଆରମ୍ଭ କରିବାକୁ ହେବ ।

୧୯୭୯ ସେପ୍ଟେମ୍ବର ୨୮ ତାରିଖ । ଶିକ୍ଷକମାନଙ୍କ ଦାବୀ ପୂରଣ ହେବା ପର୍ଯ୍ୟନ୍ତ ଅଙ୍ଗେଶ୍ୱରପଡ଼ା ହାଇସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ଭଗବାନ ଦାସ ଅନଶନ କରିବେ । ଆମେ ସମସ୍ତେ ଶିକ୍ଷା ମନ୍ତ୍ରୀଙ୍କ ସରକାରୀ ବାସଭବନ ଆଗରେ ଭଗବାନ ବାବୁଙ୍କୁ ଅନଶନରେ ବସାଇ ଦେଲୁ । ସେଦିନର ସେ ପରିବେଶ ଅସ୍ୱାଭାବିକ ଭାବରେ ଗମ୍ଭୀର—କାହାରି ମୁହଁରେ ଭାଷା ନାହିଁ । ଶ୍ରୀ ବ୍ରହ୍ମବୃକ୍ଷ ସମସ୍ତଙ୍କ ଉଦ୍ଦେଶ୍ୟରେ କହି ଉଠିଲେ—"ଏ ସରକାର ଏତେ ନିଷ୍ଠୁର—ଏତେ ନିର୍ମମ । ଅଗଣିତ ଶିକ୍ଷକର ସ୍ୱାର୍ଥ ପାଇଁ ସରକାରୀ ମୋହ ନିଦ୍ରା ଭାଙ୍ଗିବା ଉଦ୍ଦେଶ୍ୟରେ ଆମେ ଆଜି ଜଣେ ଶିକ୍ଷକଙ୍କୁ ଆସନ୍ନ ମୃତ୍ୟୁ ମୁଖକୁ ଠେଲି ଦେବାକୁ ବାଧ୍ୟ ହେଉଛୁ ।" ଏତିକି କହିବା ପରେ କଣ୍ଠ ତାଙ୍କର ବାଷ୍ପରୁଦ୍ଧ ହେଇଗଲା । ସେ ଆଉ କିଛି କହି ପାରିଲେନି । ତାଙ୍କ ବୁକୁର ବେଦନା ସତେ ଯେପରି ଫାଟି ପଡ଼ୁଥିଲା । ସେ ପିଲାଙ୍କ ପରି କାନ୍ଦି ଉଠିଲେ । ଆମେ ସମସ୍ତେ ନିର୍ବାକ୍ ଭାବେ ଚାହିଁଥିଲୁ । ଆମ ସମସ୍ତଙ୍କ ଅଜ୍ଞାତରେ ପ୍ରତ୍ୟେକଙ୍କ ଆଖି କୋଣରୁ ଲୁହ ଜକେଇ ଆସୁଥିଲା ।

ଦୁଇ ଦୁଇଟି ଆନ୍ଦୋଳନରେ—ଅନୁଭୂତିର ପର୍ଯ୍ୟାୟ ଭିତରେ ମୁଁ ଦେଖିଛି—ଶିକ୍ଷକମାନଙ୍କ ଦାବୀ ପୂରଣ ପାଇଁ, ସମସ୍ୟାର ସମାଧାନ ପାଇଁ ସେ ଏକବାରେ ପାଗଳ—ସେ ଭୁଲିଯାନ୍ତି ତାଙ୍କ ବୟସର ବାର୍ଦ୍ଧକ୍ୟକୁ ।

ଏହିପରି କଥୋପକଥନ ସମୟରେ ସେ କାହିଁକି ସଙ୍ଘ ସ୍ଥାପନରେ ପ୍ରୟାସୀ ହେଲେ ବୋଲି ମୁଁ ତାଙ୍କୁ ପଚାରିଲି । ଯେଉଁ ଘଟଣାଟି ସଙ୍ଘ ଗଠନର ଉପଜୀବ୍ୟ ସେହି ଘଟଣାଟିକୁ ସେ ମୋ ପାଖରେ ବର୍ଣ୍ଣନା କଲେ । ମୁଁ ଲକ୍ଷ୍ୟ କରୁଛି, ମଝିରେ ମଝିରେ ତାଙ୍କ ପ୍ରାଣ ବାଷ୍ପାକୁଳ ହୋଇ ଉଠୁଥିଏ । ଆଖି ଅଶ୍ରୁଳ ହୋଇ ଆସୁଥାଏ । ଘଟଣାଟି ମୋ ପ୍ରାଣକୁ ସ୍ପର୍ଶ କଲା । ମୁଁ ତାକୁ ଲେଖନୀ ମୁନରେ ରୂପ ଦେଲି ଏକ କ୍ଷୁଦ୍ର ଗଳ୍ପ ଆକାରରେ । ଗପଟିକୁ "ଶିକ୍ଷକ ଦର୍ପଣ"ରେ ପ୍ରକାଶ କରିବା ଲାଗି ଯେତେବେଳେ ତାଙ୍କୁ ହସ୍ତାନ୍ତର କଲି, ମୁଁ ଦେଖିଛି, ଗପଟିକୁ ପଢ଼ୁ ପଢ଼ୁ ତାଙ୍କ ଆଖି ପୁଣି ଥରେ ଅଶ୍ରୁ ଛଳଛଳ ହୋଇ ଉଠିଲା ।

ଶିକ୍ଷକ ସଙ୍ଘର ଜଣେ ସକ୍ରିୟ ସଭ୍ୟ ରୂପେ ମୁଁ ବ୍ରହ୍ମବାବୁଙ୍କ ସହ ବହୁ ସ୍ଥାନ ବୁଲିଛି । ବହୁ ସଭା ସମିତିରେ ଯୋଗ ଦେଇଛି । ସବୁ ଜାଗାରେ ତାଙ୍କ ପ୍ରାଣର ଆବେଗର ପରିଚୟ ପାଇଛି । ତାଙ୍କ ମମତାମୟ ଦରଦୀ ହୃଦୟର ସ୍ପର୍ଶ ଲାଭ କରିଛି । ସେ ଶିକ୍ଷକମାନଙ୍କ ଦୁଃଖ ଦୁର୍ଦ୍ଦଶା ବର୍ଣ୍ଣନା କରୁଥିବା ସମୟରେ କାନ୍ଦି ପକାନ୍ତି । ମନର କ୍ଷୋଭ ପ୍ରକାଶ କରନ୍ତି । ପ୍ରାଣ ତାଙ୍କର ବିକଳରେ ବାହୁନି ଉଠେ ।

ଶ୍ରୀଯୁକ୍ତ ବ୍ରହ୍ମବାବୁଙ୍କର ସବୁଠାରୁ ବଡ଼ ଗୁଣ ହେଉଛି, ଚିଠି ଖଣ୍ଡେ ଦେଲେ ସେ ନିଶ୍ଚୟ ଉତ୍ତର ଦେବେ । ଏ ବୟସରେ ସେ ପ୍ରତିଦିନ ଯେପରି ଶହ ଶହ ଚିଠି ପଢ଼ି ତା'ର ଉତ୍ତର ନିଜ ହାତରେ ଲେଖି ଦିଅନ୍ତି, ମହାସଙ୍ଘର ସଭାପତି ରୂପେ ସେ ଯେପରି ଧୈର୍ଯ୍ୟର ସହ ଶହ ଶହ ଶିକ୍ଷକଙ୍କ ଦୁଃଖ, ଦୁର୍ଦ୍ଦଶା ଶୁଣନ୍ତି—ସମାଧାନର ଉପାୟ ଚିନ୍ତା କରନ୍ତି, ବତାଇ ଦିଅନ୍ତି, ତାହା ଦେଖିଲେ ବିସ୍ମିତ ହେବାକୁ ହୁଏ ।

ବୟସ ତାଙ୍କର ବଢ଼ି ଗଲାଣି । ସ୍ୱାସ୍ଥ୍ୟ ଅନିଶ୍ଚିତ । ଅଧିକାଂଶ ସମୟରେ କିଛି ନା କିଛି ଶାରୀରିକ ଅସୁସ୍ଥତା ଲାଗି ରହିଛି । ତା'ରି ଭିତରେ ଶିକ୍ଷକମାନଙ୍କ ସମସ୍ୟାର ସମାଧାନ ପାଇଁ ସେ ଯେପରି ଦିନ ରାତି ନିର୍ବିଘ୍ନରେ କେତେବେଳେ ରେଳରେ; କେତେବେଳେ ବସ୍‌ରେ, କେତେବେଳେ ବା ଟ୍ୟାକ୍‌ସିରେ, ଆଜି କୋରାପୁଟ ତ କାଲି ବାଲେଶ୍ୱର ପର୍ଯ୍ୟନ୍ତ ଘୂରି ବୁଲନ୍ତି; ତାହା ତାଙ୍କ ଦୃଢ଼ ମନୋବଳର ପରିଚୟ ଦିଏ ।

ଅଶୀଦୂର ବର୍ଷର ବୃଦ୍ଧ, ଜଣେ ତରୁଣର ଶକ୍ତି, ଉତ୍ସାହ, ଉନ୍ମାଦନା ନେଇ ସେ ମାଇଲ ମାଇଲ ଚାଲି, ନଈ ନାଳ, ପ୍ରାନ୍ତର ଅତିକ୍ରମ କରି କର୍ମ ସାଧନା ପଥରେ ଆଗେଇ ଚାଲନ୍ତି ସତେ ଯେପରି ଖ୍ରୀଷ୍ଟ-ପ୍ରତିଜ୍ଞା ନେଇ ।

ଶ୍ରୀ ବ୍ରହ୍ମବୃତ୍ତଙ୍କୁ ଶିକ୍ଷା ବିଭାଗର ପଦସ୍ଥ କର୍ତ୍ତୃପକ୍ଷମାନଙ୍କ ସହିତ ଶିକ୍ଷକମାନଙ୍କ ସମସ୍ୟା ସମ୍ପର୍କରେ ଆଲୋଚନା କରୁଥିବାର ଯେ ଥରେ ଦେଖିଛି—ସେ ତାଙ୍କ ନିର୍ଭୀକତାର ସ୍ପଷ୍ଟ ପରିଚୟ ପାଇଛି । ସେତେବେଳେ ସେ ମନେ କରନ୍ତି, ସତେ ଯେପରି ସେ ଏକ ବିରାଟ ସାମ୍ରାଜ୍ୟର ମୁକୁଟହୀନ ସମ୍ରାଟ । ଥରେ ସେ ଉପ-ଶିକ୍ଷା ନିର୍ଦ୍ଦେଶକଙ୍କୁ ଆଶ୍ରମ ବାଲିକୁଦା ହାଇସ୍କୁଲ ଶିକ୍ଷକମାନଙ୍କ Direct Payment ସମ୍ପର୍କରେ କହିଲେ, "ଆପଣଙ୍କ ଅନୁଗ୍ରହ ଆମେ ଚାହିଁନୁ । ଶିକ୍ଷକମାନଙ୍କର ହକ୍ ଦାବୀ । ଆପଣ Direct Paymentର ନିର୍ଦ୍ଦେଶ ଆଜି ଦିଅନ୍ତୁ । ନଚେତ୍ ନିଜର ଅସାମର୍ଥ୍ୟ ପ୍ରକାଶ କରନ୍ତୁ । ଆମ ବାଟ ଆମେ ବାଛି ନେବୁ । ଯେ କୌଣସି ଉପାୟରେ କାନ ମୋଡ଼ି ଆମେ Direct Payment ଆଦାୟ କରିବୁ ।" ଆଉ ଥରେ ସ୍କୁଲ ବିଭାଗର ଶିକ୍ଷା ନିର୍ଦ୍ଦେଶକଙ୍କୁ କହିଲେ, "ଆପଣଙ୍କ ଅଫିସର ଜଣେ ଆସିଷ୍ଟାଣ୍ଟ୍ ବିଭିନ୍ନ ଚକ୍ରାନ୍ତ କରି ଶିକ୍ଷକମାନଙ୍କୁ ହଇରାଣ ଓ ଅପଦସ୍ଥ କରୁଛନ୍ତି, ଆପଣଙ୍କ ଆଦେଶ ମଧ୍ୟ ଅମାନ୍ୟ କରୁଛନ୍ତି, ଅଥଚ ଆପଣ ତାଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ କରି ନ ପାରି ନିଜର ଅସହାୟତା ପ୍ରକାଶ କରୁଛନ୍ତି । ଆପଣ ଏ ପଦ ପାଇଁ ଅଯୋଗ୍ୟ । ଆପଣ ସେ ଆସିଷ୍ଟାଣ୍ଟଙ୍କ ସ୍ଥାନକୁ ଯାନ୍ତୁ ସେ ଆପଣଙ୍କ ସ୍ଥାନକୁ ଆସନ୍ତୁ ।"

ଶ୍ରୀ ବ୍ରହ୍ମବୃତ୍ତଙ୍କ ସହ ବହୁ ଶିକ୍ଷକ ସମାବେଶରେ ଯୋଗ ଦେବାର ସୁଯୋଗ ମୁଁ ପାଇଛି । ବିଭିନ୍ନ ସଭାରେ ସେ ଅତିଷ୍ଠ ହୋଇ ଶିକ୍ଷକମାନଙ୍କୁ କହନ୍ତି "Be a Nuxlite !" ଶିକ୍ଷକମାନଙ୍କୁ ନିର୍ଭୀକ ହେବାକୁ ଉପଦେଶ ଦେଇ ସେ କହନ୍ତି, "ଯେ ଉଦ୍ଧତ D. I. ମାନଙ୍କୁ ମୁହଁରେ, ଆବଶ୍ୟକ ପଡ଼ିଲେ ହାତରେ ଜବାବ ଦେଇ ପାରିବ, ମୁଁ ତାକୁ ପୁରସ୍କୃତ କରିବି ।"

ଶ୍ରୀଯୁକ୍ତ ବ୍ରହ୍ମବୃତ୍ତ ଜଣେ ଗୁଣଗ୍ରାହୀ । ଶିକ୍ଷକ ମହାସଂଘର ସାଧାରଣ ସମ୍ପାଦକ ସାଥୀ ଶ୍ରୀ ଅବନୀ କୁମାର ବଳଙ୍କୁ ବିଭିନ୍ନ ରାଜନୈତିକ ରଙ୍ଗରେ ରଞ୍ଜିତ କରି ସ୍ୱାର୍ଥାନ୍ୱେଷୀ ପ୍ରତିକ୍ରିୟାଶୀଳ ଗୋଷ୍ଠୀ ତାଙ୍କୁ ବିଭ୍ରାନ୍ତ କରିବା

ପାଇଁ ବହୁବାର ବୃଥା ଚେଷ୍ଟା କରିଛନ୍ତି । କିନ୍ତୁ ଶ୍ରୀ ବ୍ରହ୍ମବୃକ୍ଷ ସ୍ପଷ୍ଟଭାବେ କହିଛନ୍ତି, "ଶ୍ରୀ ବହିଳ ଯେ କୌଣସି ରାଜନୀତିରେ ବିଶ୍ୱାସ କରନ୍ତୁ ନା କାହିଁକି, କିନ୍ତୁ ଶିକ୍ଷକ ଜାତିର ସେବାରେ ସେ ଯେପରି ନିଷ୍ଠା, ଅଦମ୍ୟ କର୍ମ ଉତ୍ସାହ ଦେଖାଇଛନ୍ତି, ତାହା ଅନ୍ୟ ଯେ କୌଣସି ବ୍ୟକ୍ତି ପକ୍ଷରେ ଅସମ୍ଭବ ।"

ସେଦିନ କଟକର ଉତ୍କଳମଧୁ ବିଦ୍ୟାପୀଠର ଶିକ୍ଷକମାନଙ୍କ ଉପରେ ହୋଇଥିବା ଅମାନୁଷିକ ଦଣ୍ଡାଦେଶର ପ୍ରତିବାଦ କରି ଆମେ ଶ୍ରୀ ବ୍ରହ୍ମବୃକ୍ଷଙ୍କ ନେତୃତ୍ୱରେ ଯାଇଥାଉ ବିଦ୍ୟାପୀଠ ସମ୍ମୁଖରେ ଧାରଣା ଦେବାକୁ । ପରିଚାଳନା ସମିତି ଓ ପ୍ରଧାନ ଶିକ୍ଷକଙ୍କର କେତେକ ଦଲାଲ ଶିକ୍ଷକ ଆମ ଶାନ୍ତିପୂର୍ଣ୍ଣ ଧାରଣା ଉପରେ ଆରମ୍ଭ କଲେ ପାଶବିକ ଗୁଣ୍ଡାମି । ଗୁଣ୍ଡା-ମାନଙ୍କର ଶତ ବାଧା ବିଘ୍ନ ସତ୍ତ୍ୱେ, ଧକ୍କା ଓ ଠେଲା ପେଲା ଖାଇ, ଜ୍ୱରଗ୍ରସ୍ତ ବୃଦ୍ଧ ବ୍ରହ୍ମବୃକ୍ଷ ଯେପରି ଦୃଢ଼, ଅବିଚଳିତ ଭାବେ ଧାରଣା ସ୍ଥାନରେ ବସି ରହିଲେ—ତାହା ଦେଖି ଆମେ ସ୍ତମ୍ଭୀଭୂତ ହେଲୁ ।

ନିକଟ ଅତୀତରେ ନୟାଗଡ଼ଠାରେ ଏକ ସାଧାରଣ ସଭାରେ ସାରା ଦେଶର ସମସ୍ତ ସ୍ୱାର୍ଥକାମୀ ଶାସକ ଓ ପ୍ରଶାସକବର୍ଗଙ୍କ ଉଦ୍ଦେଶ୍ୟରେ ସତର୍କ ବାଣୀ ଶୁଣାଇ ବଜ୍ରଗମ୍ଭୀର ସ୍ୱରରେ ସେ ଘୋଷଣା କଲେ; "ଆଜିର ଏ ଶିକ୍ଷକ ବିକ୍ଷୋଭ ଓ ସମାବେଶରୁ ମୁଁ ସ୍ପଷ୍ଟ ଦେଖି ପାରୁଛି, ବିପ୍ଳବ ଆସି ଦ୍ୱାର ଦେଶରେ । ଆଜି ସୁପ୍ତ ସିଂହ ଜାଗି ଉଠିଛି । ସାବଧାନ ଶାସକବର୍ଗ ! ପରିଣତି ଭୋଗିବାକୁ ଆଉ ବେଶୀ ସମୟ ନାହିଁ ।" ତାଙ୍କ ସ୍ୱରରେ ବଜ୍ରନିନାଦ ମତେ ରୋମାଞ୍ଚିତ କରିଥିଲା ।

ଦିନେ ମୁଁ ବ୍ରହ୍ମବୃକ୍ଷଙ୍କୁ ଚିହ୍ନିଥିଲି ପତ୍ରପତ୍ରିକାରୁ ଓ ସମ୍ବାଦ ପତ୍ରମାନଙ୍କରୁ, ଆଜି କିନ୍ତୁ ତାଙ୍କୁ ଚିହ୍ନିଛି ଜୀବନ ପ୍ରବାହର ଅସରନ୍ତି ଅନୁଭୂତିର ପର୍ଯ୍ୟାୟ ଭିତରୁ ।

ବ୍ରହ୍ମବୃକ୍ଷ ବୟସ୍କ ହୋଇପାରନ୍ତି—କିନ୍ତୁ ସେ ବୃଦ୍ଧ ନୁହନ୍ତି । ପାର୍ଥିବ ବାର୍ଦ୍ଧକ୍ୟ ତାଙ୍କୁ ସ୍ପର୍ଶ ମଧ୍ୟ କରି ପାରିନି । ବୈଶାଖର ଖରା, ଶ୍ରାବଣର ଧାର, ପୌଷର ଶୀତ, କର୍ମମୟ ଜୀବନ ପଥର ଅସୀମ ଘାତ ପ୍ରତିଘାତ, କେହି ତାଙ୍କ ଜୀବନ ଯମୁନାର ଗତିଶୀଳ ପ୍ରବାହକୁ ବ୍ୟାହତ

କରିପାରନ୍ତି । ଜୀବନ ସ୍ରୋତ ତାଙ୍କର ସାଧନା ପଥରେ ବୋହିଚାଲିଛି ସ୍ୱଚ୍ଛନ୍ଦ ଗତିରେ ସମସ୍ତ ବାଧା-ବନ୍ଧନକୁ ଅତିକ୍ରମ କରି । ସେ ସ୍ଥିତପ୍ରଜ୍ଞ, ସେ କର୍ମଯୋଗୀ । ସେ ଶିକ୍ଷକ ଜାତିର ଋଷ୍ୟମୂକ ।

ଶ୍ରୀଯୁକ୍ତ ବ୍ରହ୍ମଋଷିଙ୍କ ଆଦର୍ଶ ଓ ସାଧନା ଆମ ସମସ୍ତଙ୍କର ଧ୍ୟେୟ ହେଉ ।

ଶ୍ରୀ ପୀତବାସ ବେହୁରିଆ
ପ୍ରଧାନ ଶିକ୍ଷକ
ଜୟଚଣ୍ଡୀ ଉଚ୍ଚ ବିଦ୍ୟାଳୟ
ଦୁବକଣ, ଯାଜପୁର

---

# ଗୋଟିଏ ଉତ୍ସର୍ଗୀକୃତ ଜୀବନ

ଜଣେ ମନୀଷୀ କହିଥିଲେ—In public work, tenacity + dedication = Success. ଅର୍ଥାତ୍ ସର୍ବସାଧାରଣ କାମରେ ଅବିରତ କର୍ମସାଧନା ଓ ଗଭୀର ଆତ୍ମୋତ୍ସର୍ଗ ହିଁ ସଫଳତାର ମାପକାଠି । ଦୁଇ ହାତ ଟେକି ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କଲା ପରେ ହିଁ ଦ୍ରୌପଦୀ ବସ୍ତ୍ର ପାଇଥିଲେ । ଅଶୀତିପର ବୟସ୍କ ସନ୍ନ୍ୟାସୀ ସୁର ଦାଶ ତାନପୁର ବଜାଇ ବଜାଇ, ଚକ୍ଷୁ ମୁଦି, ଭାବ ସମୁଦ୍ରରେ ସମ୍ପୂର୍ଣ୍ଣ ମଜ୍ଜି ଗଲା ପରେ ହିଁ ଶ୍ରୀକୃଷ୍ଣ ବାଳଗୋପାଳ ମୂର୍ତ୍ତି ଧରି ଆସି ତାଙ୍କ ଆଗରେ ବସିଛନ୍ତି, ତାନପୁର ଶୁଣିଛନ୍ତି । ନିଜକୁ ନ ଭୁଲିଲେ, ଅହଂକୁ ନ ଛାଡ଼ିଲେ, ଘର ଛାଡ଼ି ମସ୍‌ଜିଦ୍‌ରେ ନ ପହଞ୍ଚିଲେ, ନିଜକୁ ନେଇ ଅନ୍ୟ ଭିତରେ ମିଶେଇ ନ ଦେଲେ ବା ସସୀମରୁ ଉଠି ଅସୀମରେ ନିଜକୁ ହଜାଇ ନ ଦେଲେ ଖାଲି ଗୋପ ଦାଣ୍ଡର ଧୂଳି ମାଟିରେ ବୁଲିବା ସାର ହୁଏ, କୃଷ୍ଣଙ୍କ ଦେଖା ମିଳେନା । ଆଉ ନିଜ ଉପରେ ଟିକିଏ ବି ନିର୍ଭର ନ କରି ବୋଉ କୋଳକୁ ଗୋଟିପଣେ ଡେଇଁ ପଡ଼ିଲେ ବୋଉ ଯେମିତି ଦୁଧସର, ଛେନା କାକରା ସାଙ୍ଗେ ସାଙ୍ଗେ ବାଢ଼ି ଦିଏ, ତାଙ୍କ ଉପରେ ନିଜକୁ ପୂରା ସମର୍ପି ଦେଲେ ସେ ସେମିତି ସାଙ୍ଗେ ସାଙ୍ଗେ ଓହ୍ଲେଇ ଆସନ୍ତି ମସ୍‌ଜିଦ୍‌ର ଅଚ୍ଚ ଶିଖରରୁ । ମୁହାଁମୁହିଁ ଠିଆ ହୋଇଯାଆନ୍ତି ତମ ଆଗରେ, ତମ କାମ କରି ଦିଅନ୍ତି ଝୀତଦାସ ଭଳି, ଯମ ମୁହଁରୁ ତମ ପୁଅକୁ ଫେରେଇ ଆଣନ୍ତି । ବାବରଙ୍କ ଡାକ ଶୁଣି ବାବରଙ୍କ ପୁଅକୁ ଫେରେଇ ଆଣିଥିଲେ ତ ସର୍ବ ମଙ୍ଗଳମୟ ଖୋଦା ! ଖାଲି ଲୋଡ଼ା ସେଇ ନିଷ୍ଠା, କାଷ୍ଠା, ବହ୍ନିଳତା, ଭାବ ସମୁଦ୍ରରେ ଅବଗାହନ । ଉପରେ ଭଗବାନ, ଭିତରେ ଆନ୍ତରିକତା, ଉପରେ ଧର୍ମ, ହାତରେ କର୍ମ, ପୂର୍ବପୁରୁଷ ଭୂମାର ଚରଣରେ ନିଜକୁ ଉତ୍ସର୍ଗ, ଆଉ ଭିତରେ କରି ଅବା ମରିବି ପଣ···ସଂକଳ୍ପ—Heart within and God overhead ଏହି ତ ଋଷିର ସାଧନା ! ଏଇ ତ ଋଷି ପ୍ରାଣେ ଦେବାବତରଣର ପନ୍ଥା ! ବନମାଳୀ

ବ୍ରହ୍ମଚାରୀ ଏହିଭଳି ଗୋଟିଏ ଋଷି—କର୍ମଯୋଗୀ, ଅନାସକ୍ତ ଯୋଗୀ, ମାନବ ପ୍ରେମୀ, ଭଗବତ୍ ପ୍ରେମୀ ।

ତାଙ୍କର ସଫଳତା ମୂଳରେ ଏଇ ଗଭୀର ଆତ୍ମବିଶ୍ୱାସ । ଈଶ୍ୱର ବିଶ୍ୱାସ, ଈଶ୍ୱରଙ୍କ ନିକଟରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ ଆଉ ତା ସଙ୍ଗେ ସଙ୍ଗେ ଅଗାଧ ପରିଶ୍ରମ ଓ ଅହରହ ନୀରବ କୃଚ୍ଛ୍ର ସାଧନା । ନିମ୍ନ ମାଧ୍ୟମିକ ଶିକ୍ଷକ ସଦନ ନିର୍ମାଣଠାରୁ ଦୋହଳ ହାଇସ୍କୁଲ ପ୍ରତିଷ୍ଠା ଯାଏ, ଶିଶୁ ସାହିତ୍ୟ ରଚନା ଠାରୁ ବେସରକାରୀ ସ୍କୁଲ କଲେଜ ଶିକ୍ଷକ ସଂଘର ସଭାପତି ଯାଏ ସବୁ କାମରେ ସେ ଜଣେ କର୍ମଠ ଯୋଦ୍ଧା, ଲଢ଼ୁଆଳ । ହେଲେ ପଦ୍ମପତ୍ରରେ ପାଣିଭଳିଏ ସବୁଥିରେ ଥାଇଁ କେଉଁଥିରେ ନ ଥିଲା ଭଳି । ସବୁ ଗୋସାଇଁଙ୍କ ଇଚ୍ଛା, ତମେ ଆମେ କେବଳ 'ନିମିତ୍ତ', ଆଉ ସେହି 'ନିମିତ୍ତ' ପୁଣି ସ୍ଥାଣମୁକ୍ତ ।, ଜୀବନମୁକ୍ତ । କରି ଦେଉଁପଣ୍ଡବ ଯୁଦ୍ଧକୁ—ଏଇ ତ ତାଙ୍କ ଜୀବନର ଦିଗ୍‌ଦର୍ଶନ—ତାଙ୍କ ସାର୍ଥକ ଜୀବନର ମାପକାଠ ।

ବନମାଳୀ ବ୍ରହ୍ମଚାରୀଙ୍କୁ ମୁଁ ଅନେକ ଦିନୁ ଦେଖିଛି । ମନେ ମନେ ମାଉବାରେ ପ୍ରଣିପାତ କରିଛି ବହୁବାର । ଏ ଯୁଗରେ ଯେତେବେଳେ ଆମେ ସବୁ କରୁଛୁ ନ୍ୟାୟକୁ ଗୁଡ଼, ଦବୁ କହୁଛୁ ସତକୁ ଗୁଡ଼, ସବୁ ପଥରେ ଯାଉଛୁ ସାଧୁତାକୁ ଗୁଡ଼, ସେତେବେଳେ ଏଇ ନୁଖୁରା, ମଳାମୁଣ୍ଡିଆ, ଅଧାପାଠୁଆ; ଲୋକଟି ଯେ କି ତପସ୍ୟା କରି କରି ଚାଲିଛି—କି କୋଣାର୍କ ଗଢ଼ି ଗଢ଼ି ଚାଲିଛି—କି ଆର୍ଯ୍ୟ ସଂସ୍କୃତିର ମୂଳଦୁଆ ପିଟି ପିଟି ଚାଲିଛି— ଏ ଅମନୋଯୋଗୀ ପୁଅଝିଅଙ୍କୁ ବାଟକୁ ଆଣିବାକୁ ଯେ କେମିତି କାନ୍ଦ କାନ୍ଦ ବିକଳ ହେଇ ଡାକ ଗୁଡ଼ୁଛି, ତା' ଦେଖିବାର କଥା, ଭାବିବାର କଥା । ହେଲେ ଦାଶେ ଆପଣଙ୍କ ଭାଷାରେ—

"ଶ୍ରୋତା ବକତା କେହି ନାହିଁ,
ବେଦନ କରୁ କାହିଁ ପାଇଁ ?"

ଗାନ୍ଧିଜୀଙ୍କୁ ନାଥୁରାମ ଥରେ ହତ୍ୟା କରିଥିଲା । ଏବେ ଆମେ ତାଙ୍କୁ ପ୍ରତିଦିନ ହତ୍ୟା କରି କରି ଚାଲିଛୁ । ଗାନ୍ଧୀ, ଜବାହରଲାଲ ଭାରତର ପ୍ରଥମ ଶତ୍ରୁ ବୋଲି ଏବେ ଲୋକେ କହିଲେଣି । ତେଣୁ ବନମାଳୀ ବ୍ରହ୍ମଚାରୀ ଯେ କେତେଦିନ ବଞ୍ଚିବେ, କେତେଦିନ ବଞ୍ଚିବ ତାଙ୍କର ଆଦର୍ଶ, ସେଥିରେ

ଯଥେଷ୍ଟ ସନ୍ଦେହ । ଏ ଯୁଗର ନବ୍ୟ ସଭ୍ୟ ତରୁଣ ତରୁଣୀ ଆଧୁନିକ ସଭ୍ୟତାର ମୋହରେ ପଡ଼ି ହୋଇ, ଦୁଇହଜାର ବର୍ଷର ଭାରତୀୟ ସଂସ୍କୃତିକୁ ଗୋଇଠା ମାରି, ଦୁଇଶହ ବର୍ଷର ଆମେରିକା ସଂସ୍କୃତି ପଛରେ ଧାଇଁ ବନମାଳୀ ବ୍ରହ୍ମଚାରୀଙ୍କ ଗୁମ୍ଫରେ ଯେ ଦିନେ ଚୁଟ ମାରିବେ, ଏଥିରେ ତିଳାର୍ଦ୍ଧେ ସନ୍ଦେହ ନାହିଁ । କିନ୍ତୁ—

ଭାରତ ଗାନ୍ଧୀ, ରବୀନ୍ଦ୍ରନାଥ, ବିବେକାନନ୍ଦଙ୍କ ଦେଶ ।
ଭାରତ ବୁଦ୍ଧ, ଚୈତନ୍ୟ, ରାମାନୁଜ, କବୀରଙ୍କ ଦେଶ ।
ଭାରତ ଧାତ୍ରୀ ପାନ୍ନାର ଦେଶ,
ଦଧୀଚିର ଦେଶ,
କର୍ଣ୍ଣର ଦେଶ,

ନାଥଙ୍କ ଦୁର୍ଭିକ୍ଷ କାଳର 'ହନାତନ' ଦେଶ ।
ଭାରତର ମନ୍ତ୍ର—ତ୍ୟାଗ, ନିଷ୍ଠା, ସେବା, ସାଧନା, ଆତ୍ମବଳ ।

ଭାରତର ଦର୍ଶନ—ବସୁଧୈବ କୁଟୁମ୍ବକମ୍ ।

ତମର ଆଦର୍ଶ—ବାପାକୁ ମାରି ରଜା ହେବ, ଅନ୍ୟ ଦେଶ ଲୁଣ୍ଠନ କରିବା ପାଇଁ ରକ୍ତର ନଦୀ ବୁହାଇ ଦେବ ।

ଭାରତର ଆଦର୍ଶ—ବାପ ସତ୍ୟ ରକ୍ଷା କରିବାପାଇଁ ପୁଅ ଚୌଦ ବର୍ଷ ବଣକୁ ଯିବ । ସତ୍ୟ ରକ୍ଷା କରିବା ପାଇଁ ରାଜା ହରିଶ୍ଚନ୍ଦ୍ର ମଶାଣିର ଚଣ୍ଡାଳ ହେବ । ଗାନ୍ଧୀ ଗୁଳି ଖାଇଲେ, ତଥାପି କହିଲେ—ନା, ପାକିସ୍ଥାନକୁ ଅବିଭକ୍ତ ଭାରତର ଅଧେ ଧନ ଦିଆଯିବ ।

ଭାରତ ଏଇଥିପାଇଁ ବଡ଼ । ବଡ଼ଲୋକ ଦେଖେଇ, ଠିକ୍ ଭଳି ଫୁଲ, ଚରମ ସ୍ୱାର୍ଥପର ହୋଇ, କୋଟି କୋଟିରେ ବଡ଼ ବା ଭାରତ ଶିଖି ନାହିଁ । ଭାରତ ଶିଖିଛି ଦଧୀଚି ଭଳି ନିଜ ହାଡ଼ ଦେଇ ଗଣକୁ ରକ୍ଷା କରିବାକୁ ।

ତେଣୁ ଭାରତ କେବେ ମରିବ ନାହିଁ,
ଗାନ୍ଧୀଜୀ କେବେ ମରିବେ ନାହିଁ ।

ବନମାଳୀ ବ୍ରହ୍ମଚାରୀଙ୍କୁ କେହି ହତ୍ୟା କରି ପାରିବେ ନାହିଁ ।

ଭାରତର ସଂସ୍କୃତି, ଭାରତର ଆତ୍ମା, ଭାରତର ଅସ୍ଥି, ମଜ୍ଜା, ମେରୁଦଣ୍ଡ 'ତ୍ୟାଗ'—ଭାରତର ତରୁଣ ତରୁଣୀ ଦିନେ ଏହା ବୁଝିବେ । ଆଉ ବୁଝିବେ ଯେ ଏଇ ତ୍ୟାଗ ଦିନେ ମଣିଷକୁ ପଶୁ ସ୍ତରରୁ ଉଠାଇ, ମଣିଷ ସ୍ତର ପାର କରାଇ, ଦେବତାର ଆସନରେ ନେଇ ବସାଇ ଦେବ ।

ସେଇ ତ୍ୟାଗର ପୂଜାରୀ ବନମାଳୀ ବ୍ରହ୍ମର୍ଷି ଅଜର, ଅମର, ଅକ୍ଷୟ ।

ବନମାଳୀ ବ୍ରହ୍ମର୍ଷିଙ୍କୁ ଆଜି ଆଉ ଥରେ ଭକ୍ତିରେ ମଥା ନୋଇଁଛୁ ।

ଶ୍ରୀ ନରସିଂହ ସାହୁ
ଅଧ୍ୟାପକ
ଖ୍ରୀଷ୍ଟ କଲେଜ, କଟକ

---

# ବ୍ରହ୍ମଚାରୀଙ୍କୁ ମୋର ଅଭିନନ୍ଦନ

ଏକାଳରେ ଏ ଯୁଗରେ ଉତ୍କଳ ଦେଶରେ ବ୍ରହ୍ମଚାରୀଙ୍କ ଜୀବନ ଏକ ବିସ୍ମୟ । ସତ୍ ସାହସ, ନିର୍ଭୀକତା ସତ୍ୟ ନିଷ୍ଠା, କର୍ତ୍ତବ୍ୟ ନିଷ୍ଠା, ତାଙ୍କର ପ୍ରେରଣାର ଉତ୍ସ । ବ୍ରହ୍ମଚାରୀ ମହାଶୟଙ୍କ ସହିତ ମୋର ବନ୍ଧୁତାର ପରିଚୟ । ଜୀବନର ପ୍ରତି ମୁହୂର୍ତ୍ତ ପରସେବା, ପର ଉପକାର ପାଇଁ ସେ ଉତ୍ସର୍ଗ କରି ଆସିଛନ୍ତି । ଶିକ୍ଷକକୁଳର ଅକୁହା କୋହକୁ ଲିଭାଇ ସେମାନଙ୍କୁ ମାନବିକ ଅଧିକାରର ପ୍ରେରଣା ଦେଇ ସେ ସଂଗ୍ରାମୀ କରି ପାରିଛନ୍ତି । ଏ ଯୁଗରେ ଏହି କାଳରେ ସେ ବଞ୍ଚିଛନ୍ତି ଓ ଶିକ୍ଷକମାନଙ୍କର ଜୀବିକା ଓ ଜୀବନକୁ ଋଦ୍ଧିମନ୍ତ କରିବା ପାଇଁ ସଂଗ୍ରାମୀ ସେ କୌଣସି ରାଜନୀତିର ଠାରି ଧାରନ୍ତି ନାହିଁ ଏବଂ ରାଜନୀତି ଭିତରକୁ ପଶି ନଥିବାରୁ ସେ ନିଜକୁ ଶୁଦ୍ଧ ପୂତ ଦେଶସେବକ ରୂପେ ବଞ୍ଚାଇ ଆଣି ପାରିଛନ୍ତି । ତାଙ୍କର ସମଗ୍ର ଜୀବନର କର୍ମ ସାଧନାର ଫଳ ସ୍ୱରୂପ ଛିଡ଼ା ହୋଇଛି ଶିକ୍ଷକବର୍ଗଙ୍କ ସେବା ପାଇଁ ଉଦ୍ଦିଷ୍ଟ ହୋଇ ରହିଥିବା ଝାଞ୍ଜିରୀମଙ୍ଗଳାର ପ୍ରକାଣ୍ଡ ଦ୍ୱିତଳ ପ୍ରାସାଦ । ସେହି କାର୍ଯ୍ୟ ଓଡ଼ିଶାର ଶିକ୍ଷକ ଓ ଛାତ୍ର ପାଇଁ ସେ କରିଛନ୍ତି । ଏକା ଉତ୍କଳମଣି ଗୋପବନ୍ଧୁଙ୍କ କର୍ମ ପଦ୍ଧତି ସହିତ ତାର ତୁଳନା ହୁଏ । ଏ ଯୁଗରେ ଏପରି ପରାର୍ଥପର ନିଃସ୍ୱ ତ୍ୟାଗୀ ଶିକ୍ଷକ ବନମାଳୀ ବ୍ରହ୍ମଚାରୀ ସୁଦୁର୍ଲ୍ଲଭ । ତାଙ୍କର ସୁଦୀର୍ଘ ଜୀବନ କଥା ସେ ନିଜେ ଲେଖିଛନ୍ତି । ଏପରି ଗୋଟିଏ ଶିକ୍ଷକ ଓଡ଼ିଶାରେ ଆଦର୍ଶସ୍ଥାନୀୟ । ତାଙ୍କର ଛାତ୍ରଙ୍କ ପାଇଁ ଉତ୍ସର୍ଗୀକୃତ ଜୀବନ ଉତ୍କଳର ଶିକ୍ଷାବିତ୍ ଓ ଶିକ୍ଷକ ମଣ୍ଡଳୀଙ୍କର ଧ୍ୟେୟ ହୋଇ ରହିବ ।

ଶ୍ରୀମତୀ ସରଳା ଦେବୀ
ତେଲେଙ୍ଗା ବଜାର, କଟକ

# ସାଧକକୁ ସାଧନା ଓ ସିଦ୍ଧି କରେ ଅମର

ସିଦ୍ଧି ହିଁ ବହୁ କଷ୍ଟକର ସାଧନାର ଫଳ । ସାଧନା ଏ ଯୁଗର ପ୍ରେମ, ଭକ୍ତି ଓ ସେବା ଉପରେ ଆଧାରିତ । ସେବା ସାଧକର ସ୍ୱଚ୍ଛ କର୍ମ, ନିଷ୍କାମ କର୍ମ ଓ ପରାର୍ଥେ ନିୟୋଜିତ ଜୀବନର କର୍ମ ବିଶେଷ । ନିଃସ୍ୱାର୍ଥ କର୍ମ ପ୍ରେମ-ପ୍ରଣୋଦିତ ହେଲେ ଆମେ ତାକୁ କହୁ ଯଜ୍ଞ । ଅଣ ଲେଉଟା ଅତୀତରେ ଆମ ପୂର୍ବପୁରୁଷମାନଙ୍କର କର୍ମ, ଆମ ଆଚାର୍ଯ୍ୟମାନଙ୍କର କର୍ମ ଓ ଆମ ବ୍ରହ୍ମଋଷିମାନଙ୍କର କର୍ମ ଥିଲା ଯଜ୍ଞ । ସେ ପବିତ୍ର କର୍ମ କରଏ ମନୁଷ୍ୟକୁ ଅମର । ସେ କାଳରେ ହୁଏ ଚିରଜୀବୀ, ଶରୀରର ମରଣ ପରେ ବି । ସ୍ୱରୂପତଃ ଠିକ୍ ଆମ ବ୍ରହ୍ମଋଷିଜୀଙ୍କ ଜୀବନ । ବନମାଳୀ ସେ ଆମର—ଏ ଧରାର ।

ପୂତ ପବିତ୍ର ଜୀବନ ଦ୍ୱାରା, ତ୍ୟାଗ ମୂଳକ କର୍ମଦ୍ୱାରା, ନିଜର ନିଷ୍କାମ କର୍ମଦ୍ୱାରା, ନିଜର ଶ୍ରମଦାନ ଦ୍ୱାରା ବଳିଷ୍ଠ କଲେ ବ୍ରହ୍ମଋଷିଜୀ ଶିକ୍ଷକ ଜାତିକୁ, ଯେଉଁମାନେ ଅଟନ୍ତି ଆମ ସମାଜର ମୂଳଦୁଆ । ସେମାନଙ୍କର ସାମୂହିକ ଚିତ୍ତଶୁଦ୍ଧି ଦ୍ୱାରା ସାମୂହିକ ଚିନ୍ତା ନିର୍ମାଣ କଲେ ସେ । ତାଙ୍କର ଉଦ୍ଦେଶ୍ୟ, ଆଚାର୍ଯ୍ୟ ଗୋଷ୍ଠିଙ୍କର ପ୍ରାଣ ହେବ ଏକ, ବିଶ୍ୱମନ ଭାବ ଜାଗ୍ରତ କରିବେ ସେମାନେ ତାଙ୍କ ଭାବୀ ବଂଶଧରଙ୍କଠାରେ । ଧନ୍ୟ ବଳୀୟାନ ଯୋଦ୍ଧା !

ସ୍ୱାର୍ଥ ହିଁ ପଶୁତା, ଆସୁରିକ । ପରାର୍ଥେ ଜୀବନ ଉତ୍ସର୍ଗ କରିବା ହିଁ ତ୍ୟାଗ— ଯାହା ଭାରତର ଆଦର୍ଶ, ଯାହା କରିଛନ୍ତି ଶ୍ରୀଯୁକ୍ତ ବ୍ରହ୍ମଋଷି, କରୁଛନ୍ତି ଓ ସେ କରିବେ ନିଜର ଜୀବଦ୍ଦଶାରେ । ଅମର ସେ ।

ନିର୍ଭୀକ ସାଧକ ସେ । ସତ୍ୟବାଦୀ ସେ । ତେଣୁ ଭୟ କପଟ ତାଙ୍କ ହୃଦୟକୁ ଛୁଇଁବ ? ତାଙ୍କର ସାଧନା ଓ ନିଷ୍ଠାପରତା ଦଳିତ

ନିଷ୍ପେଷିତଙ୍କୁ ରକ୍ଷା କରିବା । ଲେଖନୀ ତାଙ୍କର ଶକ୍ତିଶାଳୀ, ଲେଖା ଶକ୍ତିପୂର୍ଣ୍ଣ । ଅନ୍ୟାୟର ଅତ୍ୟାଚାରର ଓ ନିର୍ଯାତନାର ପ୍ରତିରୋଧ କରିବା ତାଙ୍କର ବଳିଷ୍ଠ କର୍ମ ।

ସରଳ, ଅକପଟ ସେ । ମୋଟା ପିନ୍ଧନ୍ତି, ମୋଟା ଖାଆନ୍ତି । ସାମାଜିକ ବନ୍ଧୁକ ଆଣନ୍ତି । ଯଦି ସ୍ତ୍ରୀର ଅଧିକାର ନାହିଁ ବିଧବା ହେବାପରେ ବିବାହ ହେବାପାଇଁ, ପୁରୁଷର ଅଧିକାର ଆସିଲା କିପରି ? ବଳାତ୍କାର କରି କରିବା ପଶୁର ଲକ୍ଷଣ । ସେଥିପାଇଁ ବ୍ରହ୍ମବାଦୀ ହେଲେ ବ୍ରହ୍ମଗୃହୀ । ଧନ୍ୟ ତାଙ୍କର ସଦାଚାର । ଧନ୍ୟ ତାଙ୍କର ଆଦର୍ଶ ।

ସତ୍ୟର ଉଦ୍‌ଘାଟନ ପାଇଁ, ସତ୍ୟର ରକ୍ଷା ପାଇଁ, ମୁଁ ଯେତେବେଳେ ଶ୍ରୀ ରାମଚନ୍ଦ୍ର ଭବନରେ ବ୍ରହ୍ମଗୃହୀଙ୍କ ସହିତ ଯୁକ୍ତ କଲି, ତାଙ୍କର ସ୍ନେହ, ତାଙ୍କର ଶ୍ରଦ୍ଧା ମୋ ପ୍ରତି ଅଧିକରୁ ଅଧିକତର ହେଲା । ସେ ସ୍ନେହାପ୍ଲୁତ, ପ୍ରେମାପ୍ଲୁତ ହୃଦୟରେ ଏ ଅଧମକୁ ନିକଟକୁ ଆଣିଲେ । କେଡ଼େ ମହାପ୍ରାଣ୍‌ ସେ । କେତେ ମାନବିକତା ତାଙ୍କର । ତାଙ୍କର ହୃଦୟବତ୍ତା ପାଇଁ ସ୍ୱତଃ ହୃଦୟ ବଢ଼ାଏ ।

ବନ୍ୟାରେ ପ୍ରପୀଡ଼ିତ, ଦୁର୍ଭିକ୍ଷରେ କ୍ଷୁଧାର୍ତ୍ତଙ୍କୁ କୋଳକୁ ନେଇ ସେ ଧନ୍ୟ ହୋଇଛନ୍ତି ।

ନିର୍ଯ୍ୟାତିତର ଆଖିରୁ ଲୁହ ପୋଛି, ବିଧବାର ମର୍ମ ବେଦନାରେ ତରଳି, ତାର ପିତା ହୋଇ, ତାକୁ ପୁନର୍ଜନ୍ମ ଦେଇ ସଧବା କଲ । ଧନ୍ୟ ପିତା ତମେ, ଦୁଃଖୀର ଜନକ ।

ଗୁରୁଙ୍କର ସ୍ୱପ୍ନ ତୁମେ । ଗୁରୁମାନଙ୍କର ବହୁମୁଖୀ କାର୍ଯ୍ୟକୁ ସଙ୍ଗଠନ କରି ସେମାନଙ୍କୁ ଧନ୍ୟ କରିଛ, ଧନ୍ୟ ହୋଇଛ ।

ନିର୍ମାତା ହିଁ ପିତା । ବ୍ରହ୍ମଗୃହୀ କେତେ ଅନୁଷ୍ଠାନ ତିଆରି କରି, ଶିଳାନ୍ୟାସ ଦେଇ ସେଗୁଡ଼ିକୁ ବଞ୍ଚାଇଛନ୍ତି ନିଜ ହାତରେ, ଶ୍ରମଦାନ ଦ୍ୱାରା, ଅର୍ଥଦାନ ଦ୍ୱାରା, ମନ୍ତ୍ରଦାନ ଦ୍ୱାରା ।

ଯେ ଦରିଦ୍ର ଗୃହସ୍ଥକୁ ନିଜର ସନ୍ତାନ ଭାବି ନିଜେ ତାକୁ ମଣିଷ ପରି ମଣିଷ କରି ଗଢ଼ି ତୋଳିଛନ୍ତି । ଦରିଦ୍ରର ପ୍ରତିଭାକୁ ବିକଶିତ କରିବାରେ

ସେ ଏକନିଷ୍ଠ । ବାଳ ବିକାଶ ପାଇଁ କେତେ ପୁସ୍ତକ ଲେଖିଛନ୍ତି କୋମଳମତି ବାଳକ ବାଳିକାଙ୍କ ପାଇଁ । ବ୍ରହ୍ମର୍ଷିଙ୍କର ଏହା ଏକ ମହାନ୍ ଦାନ ।

ବର୍ତ୍ତମାନ ଦେଶରେ ଦେଖା ଦେଇଛି ଦୁଃଖ, ଦୁର୍ଦ୍ଦଶା, ଝଡ଼ଝଞ୍ଜା, କ୍ଷୁଧାଗ୍ନି, ରୋଗ, ଅଜ୍ଞତା, ଅନ୍ଧକାର ଅହଙ୍କାର, ଚରିତ୍ରହୀନତା, ସଙ୍କୀର୍ଣ୍ଣତା, ସାମାଜିକ ଅସ୍ଥିରତା, ସାମାଜିକ ବୈଷମ୍ୟ, ହିଂସା, ଦ୍ୱେଷ, ମଦ୍ୟପତା ।

ତୁମର ମାନବଧର୍ମ, ସତ୍ୟନିଷ୍ଠା, ନିଃସ୍ୱାର୍ଥପ୍ରେମ, ଆନ୍ତରିକ ଶାନ୍ତିସ୍ନାନ ଜଗତକୁ ଶାନ୍ତିମୟ କରୁ, ଚରିତ୍ର ବିହୀନ ଶିକ୍ଷାକୁ ଚରିତ୍ରବାନ କରୁ । ମାନବିକତା ଶୂନ୍ୟ ବୈଜ୍ଞାନିକମାନଙ୍କ ମଧ୍ୟରେ ମାନବିକତା ଆଣୁ, ଦୁର୍ନୀତିଗ୍ରସ୍ତ ବ୍ୟବସାୟୀମାନଙ୍କୁ ଶାନ୍ତିମୟ କରୁ । ତୁମର ଧର୍ମକର୍ମ ଆମର ଆଦର୍ଶ ହେଉ । ତୁମେ ସମସ୍ତଙ୍କୁ ଆଶୀର୍ବାଦ କର, ବାତ୍ସଲ୍ୟ ପ୍ରେମ ଢାଳିଦିଅ । ସମାଜ ହେଉ ସୁଖମୟ, ନ୍ୟାୟପୂର୍ଣ୍ଣ, ବିତ୍ତବନ୍ତ । ପବିତ୍ର ହୋଇଛି ତୁମର ଜନ୍ମଭୂମି । ଧନ୍ୟ ହୋଇଛି ତୁମର କର୍ମଭୂମି । ତୁମର କର୍ମଭୂମି ହୋଇଛି ପ୍ରେମ ଭୂମି । ସ୍ନେହ ଓ ସେବାରେ ଅନାବିଳ ଆକୁଳତାରେ ଗଢ଼ି ଉଠିଛି ତୁମ ଆଶ୍ରମ । ତୁମର ଅଗାଧ ସ୍ନେହ ଓ ଅନୁଗ୍ରହ ଲାଭକରୁ ମଣିଷ ଜାତି ।

ଡକ୍ଟର **କେଶବ ଚନ୍ଦ୍ର ସାହୁ**
ପ୍ରଫେସରପଡ଼ା, କଟକ-୩

---